# ସାରଳା ମହାଭାରତ

# ବିରାଟ ପର୍ବ



ମୁଖ୍ୟ ସଂକଳକ, ସଂଗ୍ରାହକ ଓ ସଂପାଦକ
ପଦ୍ମଶ୍ରୀ ଡକ୍‌ଟର ୬ ଆର୍ତ୍ତବଲ୍ଲଭ ମହାନ୍ତି,
ଏମ୍. ଏ., ଡି. ଲିଟ୍.

# ବିରାଟ ପର୍ବ

## ସୂଚୀପତ୍ର

| ବିଷୟ | | ପୃଷ୍ଠାଙ୍କ |
|---|---|---|

# ସାରଳା ମହାଭାରତ

## ବିରାଟପର୍ବ

---

### ବିରାଟ ରାଜା ଓ ସୁଦେଷ୍ଣାଙ୍କର ପୂର୍ବଜନ୍ମ ବିବରଣ, କୀଚକ ଶତେଭାଇଙ୍କ ଜନ୍ମ ଏବଂ ବିରାଟ ରାଜାଙ୍କର ମତ୍ସ୍ୟଦେଶେ ଅଭିଷେକ

ମେରୁଶୂଳ ବଧ ଅନ୍ତରେଣ କଥା
ଆରଣ୍ୟକ ପର୍ବ ସଦା ସଂପୂର୍ଣ୍ଣ ବାରତା ।୧।
ଯେଥୁ ଅନ୍ତରେ ବିରାଟ ପର୍ବ କଥା
କହସି ମହାଋଷି ତୁମ୍ଭେ ପଣ୍ଡିତ ଭାଗ୍ୟବନ୍ତା ।୨।
ମେରୁଶୂଳ ବଧକର ପାଣ୍ଡବ ପଞ୍ଚୁବୀରେ
ବ୍ୟାସ ମାରକଣ୍ଡ ବାଲମୀକ ମୁନିବରେ ।୩।
ବହୁତ କଲ୍ୟାଣ ବାଞ୍ଛା କଲେ ଅର୍ଜୁନକୁ
ତୁମ୍ଭ ସେ ତପୀବଳ ନିଷ୍ଠଳ କଲୁ ଯେ ଆମ୍ଭଙ୍କୁ ।୪।
ଅନେକ ଦାନବେ ଯେ ଥିଲେ ଯେତୁ ବନେ
ସମସ୍ତେ ନାଶଗଲେ ଯେବା ତୋହର ପ୍ରସନ୍ନେ ।୫।
ଜମ୍ଭୀରା କନ୍ଦରା ଆଦି ବକ ହିଡମ୍ବେକ
ପାଣ୍ଡବାସୁର ରେବାସୁର ଆଜ ହିରଣେକ ।୬।
ମୋଢାସୁର କଲ୍ପାସୁର ଜପାସୁର ନିବାତ କପଟ
କୁମ୍ଭ ନିକୁମ୍ଭ ଆବର ଗୋସିଂହ କାଳଞ୍ଜ ।୭।

---

୪।୨ ତୁମ୍ଭ ସେ ତପ ନିର୍ମଳ କଲୁ ଆମ୍ଭଙ୍କୁ ।—ଣ, ଟ, ଘ, ଞ

ଜଟାସୁର ତ୍ରିଜଟା ତ୍ରିଶାଣାନ୍ତ ତହନ କଲ୍ଲ
ମେରୁଶୃଙ୍ଗ ମୂଳେ ଅନେକ ଦଇତ୍ୟ ମଲ୍ଲ । ୮ ।
ଯେତେକ ଦୁରନ୍ତେକ ଥିଲେ ଯେତୁ ବନେ
ଲୁଚଣ ସେ ତପଧର୍ମ କରନ୍ତି ମୁନିମାନେ । ୯ ।
ଯେତେକେନେକ ଦେବତାଂକର ଅଟଇ ସଞ୍ଚିତ
ତୁମ୍ଭେ ବନବାସ ନଇଲେ କେମନ୍ତେ ମରନ୍ତେ ଦଇତ । ୧୦ ।
ଆମ୍ଭେ ଯାଉଅଛୁଂ ଯେ ଯାହାର ତପସ୍ଥାନେ
ଅଗ୍ୟାଂତବାସେ ତୁମ୍ଭେ ରହିବ ଷଡଜଣେ । ୧୧ ।
ସମସ୍ତ ଋଷିମାନେ ଗଲେ ତୀର୍ଥଧର୍ମେ
ଯଦୁକୁଳ ଯେନଣ ବିଜେକଲେ ଦେବ ବଳରାମେ । ୧୨ ।
ପଦ୍ମନ ତ୍ରିଭୁବନ ମୋହିନୀ ସୁନ୍ଦରୀ
କରିବନ୍ତି ବିଭା ଯେ ସେ ଶୁଭଲଗ୍ନ ବଗୃର । ୧୩ ।
ବଜ୍ରଗିରି ଦେଶରେ ଯେ ପାଣ୍ଡବନ୍ତ ଯେନ
ରହିଲେ ନଚନ୍ତେ ତହିଂ ବଞ୍ଚିଲେ ମାସ ତିନି । ୧୪ ।
ବ୍ୟାସେ ବାସୁଦେବ ଯେ ଅଛନ୍ତି ତାଂକ ତୁଲେ
ବନବାସ ସରିଲା ବତା ଦିବସ ଗଣିଲେ । ୧୫ ।
ମହାଗୋଲକ ନାମେ ସେ ଦ୍ୱାପର ଯୁଗେ
ତହିଂକ ଆଠଲକ୍ଷ ତେର ସହସ୍ର ବରଷ ଭୋଗେ । ୧୬ ।
ପ୍ରାଗନନୁର ମଧ୍ୟେ ଧ୍ରୁବ ନାମେ ସମ୍ବତ୍ସର
ତୁଳମାସ କୃଷ୍ଣପକ୍ଷ ତ୍ରୟୋଦଶୀ ତିଥିର । ୧୭ ।

---

୮ { ତ୍ରିଜଟା ତୃଣାସେନ ଦଇତପତି ନୀଳ କପଟ ମହାବୀର
ମେରୁଶୂଳ ମୂଳେ ଯେ ଅନେକ ଦୁଷ୍ଟ ଅସୁର ।—ଜ, ଛ, ଝ

୧୬।୨ ଆଠଲକ୍ଷ ତେଷଠି ସହସ୍ର ବରଷ ଯେ ଭୋଗେ ।—ନ, ଠ

୧୭।୧ ପ୍ରଭା କପିଳାର ମଧ୍ୟେ ମରୁନାମେ ସମ୍ବତ୍ସର ।—ନ, ଠ

ଶଶାଂକ ବାରରେ ହସ୍ତାନକ୍ଷତ୍ର ଯୁଗତ
ବାଣିଜ୍ୟ ନାମେ କରଣ ଭୋଗ ଯେ ନିଯୁତ । ୧୮ ।
ବିଷ୍କୁମ୍ଭ ନାମରେ ଯୋଗ ଦୈତ୍ୟ ଉପଦ୍ରପ
ସ୍ୱେଚ୍ଛ ସମୟେ ରାଜଭୃ କଲେ ଶ୍ୱେତ ନୃପ । ୧୯ ।
ବ୍ୟାସ ବାସୁଦେବ ପଞ୍ଚୁ ପାଣ୍ଡବେ ଦ୍ରୋପଦୀ
ବିଷ୍ଣୁ ବାତ ବନେ ବିଷ୍ଣୁ ପର୍ବତେ ବସିଛନ୍ତି । ୨୦ ।
ବିଷ୍ଣୁ ଭଦ୍ରା ନାମେଣ ବହଇ ନଦୀଗୋଟି
ତହିଂରେ ନିତ୍ୟକର୍ମ ସାରିଲେ ଯୁଧିଷ୍ଠି । ୨୧ ।
ବେଳ ହୋଇଅଛୁ ପ୍ରତକ୍ଷେ ଷଡଘଡି
ବୃହସ୍ପତି ବେଳେ ଯୁଧିଷ୍ଠି ଦେବ କଥା ପାଡି । ୨୨ ।
ଭୂମିର ବ୍ୟତକେ ମୋର ଆନ ନାହିଂ ଗତି
କେବଣ ବନେ ମୁହିଂ ବଞ୍ଚିବି ଅଜ୍ଞାତ । ୨୩ ।
ବ୍ୟାସେ ଯୁଧିଷ୍ଠିଙ୍କ କହିଲେ ସ୍ୱେକାନ୍ତେ
ଅଜ୍ଞାତବାସ ଭୂମିର କୀଚକ ବଧ ନିମନ୍ତେ । ୨୪ ।
ଧର୍ମ ଆଜ୍ଞା ତୋତେ ଅଛଇ ଆକାଶେ
ବିରାଟ ରାଜ୍ୟେ ଦିନ ବଞ୍ଚିବ ଯେ ଅଜ୍ଞାତବାସେ । ୨୫ ।
ଯୁଧିଷ୍ଠି ଦେବେ ବୋଇଲେ ହୋଅ କ ସ୍ୱେମନ୍ତ
କୁଳହୀନ ବିରାଟ ଗ୍ରିତଇ ନିଯୁତ । ୨୬ ।
ଶଳାର ବାହୁବଳେ ତାହାର ରାଜ୍ୟ ଗ୍ରିତହେତୁ
ରାଜସୂୟ ଯାଗକୁ ପଶି ନ ହେଲୁ ତହିଂର ନିମନ୍ତୁ । ୨୭ ।
ବ୍ୟାସେ ବୋଇଲେ ବାବୁ ମୁହିଂ ସେ କପଟ କଲି
ତୋତେ ଚହ୍ନଇ ବୋଲ ସଭାକୁ ପଶିତ ନ ହେଲି । ୨୮ ।
ଯୁଧିଷ୍ଠି ଦେବେ ବୋଇଲେ ସେ ମୋହୋର ଭୃତ୍ୟର ଭୃତ୍ୟ
ସେବକର ଭୂମିରେ ଥିବାରତ ନୋହଇ ଉଚିତ । ୨୯ ।

---

୧୯।୧ ଧୃତି ନାମେ ଯୋଗ ଭୋଗ ଉନ୍ନଲତା ।—କ, ଟ

୨୮ {—ବ୍ୟାସେ ବୋଇଲେ ତୋତେ ଚହ୍ନଇ ବୋଲି ପଶିତେ ନ ହେଲି
ତହିଂର ନିମନ୍ତେ ଅନ୍ତର କରାଇଲି ।—କ, ଟ

ବ୍ୟାସେ ବୋଇଲେ ତୁମ୍ଭେ ହୋ କଛୁହିଂ ନ ଜାଣ
ପବଂଜନ୍ମେ ହରିଶ ଅଟଇ ବଡଜଣ । ୩୦ ।
ଯୁଦ୍ଧେଷ୍ଟି ଦେବେ ବୋଇଲେ ତୁମ୍ଭେ ଭୂତ ଭବିଷ୍ୟ ଗ୍ୟାଂତା
ମୋତେ କହିବା ହରିଶର ପୂବଂଜନ୍ମର ବାରତା । ୩୧ ।
ଶୁଣ ଧର୍ମରାଯ୍ୱେ ବଦଯୁକ୍ତ ପାରେଶ୍ୱର
ହଇହୟ ବଂଶରେ ରାଜା ବନସ୍ତ କେଶରୀ । ୩୨ ।
ତାହାର ନନ୍ଦନ ଯେ ନାମ ସଦାଶିବ
ସଦାଶିବର ନନ୍ଦନ ମଦନଧର ଦେବ । ୩୩ ।
ମଦନଧର ନନ୍ଦନ ନରେନ୍ଦ୍ର କାଶୀପତି
ସୂର୍ଯ୍ୟସେନ ବୋଲ କୁମାରେ ତା ତହୁଂ ଜଗପତି । ୩୪ ।
ସୂର୍ଯ୍ୟସେନର ନନ୍ଦନ ନାମ ଶକ୍ରଧ୍ୱଜ
ଅଂଶୁମାଳୀ ବୋଲଣ ତାହାର ତନୁଜ । ୩୫ ।
ତାହାର ନନ୍ଦନ ସୁଜାଣେଶ୍ୱର ପତି
ତାହାର ନନ୍ଦନ ହୋଇଲା ସରପାନ୍ତ । ୩୬ ।
ସରପାନ୍ତର ନନ୍ଦନ ହୋଇଲା ଭାନୁମତ
ଯେହାର ନନ୍ଦନ ଯେ ହୋଇଲାକ ଶ୍ୱେତ । ୩୭ ।
ହରବନେ କରଣ ସେ ପାଳଇ ଜନପ୍ରଜା
ବାହିକେ ଘେନଇ ସେ ତନାଯ୍ୱେକ ସଜ୍ଜା । ୩୮ ।
ଜୀବଘାତ ନ କରଇ ରାଜା ତୋଳ ଫଳ ନ ଭୁଞ୍ଜଇ
ପାଚଣ ଭୂମିରେ ପଡଲେ ତାହା ଆହାର କରଇ । ୩୯ ।
ଧର୍ମହୁଂ ଅମାନ୍ତ ସେ ନ କରଇ ରାଯ୍ୱେ
ଶିରେ ଜଟାଭର ଭସ୍ମ ଲେପନ କାଯ୍ୱେ । ୪୦ ।
ବ୍ୟାଘ୍ରଚର୍ମ କଟିମେଖଳ କୃଷ୍ଣାଜିନ ଛତ୍ରଂରୀ
ଜଗୁଜୀବ ଶିବ ବୋଲ ରାଜା ରଜ ଅଶ୍ୱନ୍ତନ ଚଢି । ୪୧ ।
ମହାଯୋଗେଶ୍ୱର ସେହୁ ନିରଞ୍ଜନ ଦୀକ୍ଷା
ଆଧାରକୁ ଇଚ୍ଛାହେଲେ ରାଜା ମାଗଇ କଣଭିକ୍ଷା । ୪୨ ।

---

୩୨/୨ ହଇହେୟ ବଂଶେ ବିକ୍ରମ କେଶରୀ ।—ଘ, ଣ

ଯେତୁକା ଈଶ୍ୱରଜା ତାର ଯେତୁକା ପୁଣ୍ୟ ଗୋଟିଏ
ଧନୁ ଗୋଟିଏ ସର୍ବେ ନାରଜ ଗୋଟିଏ । ୪୩ ।
ଯେତୁକା ନାରଜାର ନାମ ଅଟଇ ମନଭେଦୀ
ନବଦ୍ୱୀପ ସପତ ସାଗର କରଇ ରଘୁ ସାଧି । ୪୪ ।
ଦଇତ ଦାନବଂକର ନାହିଂ ଉପଦ୍ରବ
ବ୍ରତନ୍ତ ଅଇଶ୍ବର୍ଯ୍ୟେ ଯେ ଯାହାର ଅନୁରୂପ । ୪୫ ।
ଅସୁର ଜନ୍ତୁଠାରୁ କୀଟ ପତଙ୍ଗ ପରିଯନ୍ତେ
ଜଣେକହିଂ ଦରାତ ନାହିଂ ତାହାର ହେତୁବ୍ରତେ । ୪୬ ।
ଶୁଣ ହୋ ମହାରଘୁ ବଦନ୍ତି ବେଦବ୍ୟାସେ
ଅନେକ ସାଧୁ ଧୂନ ଉପୁଜନ୍ତି ଆକାଶେ । ୪୭ ।
ସତ୍ୟଯୁଗ ତିନିଲକ୍ଷ ରଜା ଭୋଗକଲା
ଯାଗ କରିବାକୁ ସେ ମନେ କଳପିଲା । ୪୮ ।
ବ୍ରହ୍ମା ଗ୍ରୁମୂରେ ବଇଧେ ରଘୁ ଶ୍ୱେତ
ଆସ୍ଥାନର ତଳେ ରଜା ଯାଇ କଲା ଶତସହସ୍ର ପ୍ରଣିପତ୍ୟ । ୪୯ ।
ଜଗତ କରତା ନାଥ ସ୍ୱାମୀ ବନ୍ଧେ ଅବଧାରି ହୋଇବା
ମୁହିଂ ଯାଗ କରିବ ମୋତେ ଯାଗନିକ ଜଣେ ଦେବା । ୫୦ ।
ଶ୍ୱେତ ମହାରଜାଂକର ବଚନେ ପରିଶ୍ରୁ
ଦେଖିଲେ ଗ୍ରୁମୂରେ ଉଭା ହୋଇଅଛନ୍ତି ବଶିଷ୍ଠ । ୫୧ ।
ତୁ ହୋ ବଶିଷ୍ଠ ଯାଅ ଶ୍ୱେତ ମହାରଜ ଯଜ୍ଞେ
ଯେମନ୍ତେ ଶ୍ୱେତରଜା ବସଇ ଅମର ସ୍ୱର୍ଗେ । ୫୨ ।
ଶ୍ୱେତକଇଂ ଘେନିଣ ଅଇଲେ ବଶିଷ୍ଠ
ତୁ ହୋ ଯାଗନିକ ମୋତେ କଲୁ, କାହିଂ ତୋର ତ । ୫୩ ।
ପଞ୍ଚବଂଶ ଅଗ୍ନି ଯେ ମୋହୋର ହୋହରି
ଋଷିମେଧ ପ୍ରୋକ୍ଷଣୀ ଅଟଇ ମୋର ସୁରି । ୫୪ ।

---

୪୬।୧ ପଶୁ ଜନ୍ତୁଠାରୁ କୀଟ ପତଙ୍ଗ ପରିଯନ୍ତେ ।—ଣ, ନ, ଠ

୫୩।୨ ତୁ ଯେ ଯାଗନିକ ମାଗିଲୁ ମୋହୋର କାର୍ଯ୍ୟକଲୁ ନଷ୍ଟ ।—ଘ, ଠ, ନ, ଅ

ତୁ ଯେବେ ରାଜା ପାରିବୁ ଘୃତ ଅଣାଇ
ଆମ୍ଭନ୍ତ ବର ସ୍ୱର୍ଗେ ବସ ମୁକତ ହୋଇଯାଇ । ୫୫ ।
ବଶିଷ୍ଠଂକ ବଚନରେ ଶ୍ୱେତରାଜା ତୋଷ
ବଶିଷ୍ଠଂକୁ ବରି ରାଜା ହୋଇଲା ହରଷ । ୫୬ ।
ରତ୍ନଝରୀ ଧରି ରାଜା ବଶିଷ୍ଠଂକ ଚରଣ ପଖାଳି
ଆସନ ସମାର୍ଜନ ପାଦାର୍ଘ୍ୟ ଦେଇ ତୋଳି । ୫୭ ।
ପୁଷ୍ପ ଗନ୍ଧ ଚନ୍ଦନ ଧୂପ ଦୀପ ନଇବେଦ୍ୟ
ଅନେକ ବନୋକ୍ତ ରାଜା ରତ୍ନମାଳି ଦେଲା ହୃଦ । ୫୮ ।
ନବତନ ବସ୍ତ୍ର ନଡ଼ିକାଳ ଫଳ
ପୂଜାବିଧି କରି ରାଜା ଦେଲା ପୁଷ୍ପମାଳ । ୫୯ ।
ବଶିଷ୍ଠ ବୋଇଲେ ରାଜା ଯଜ୍ଞଂଶାଳ ଆଞ୍ଜ
ଯେତେମାନ ପାଉ ରାଜା ଘୃତଆଣି ସଞ୍ଜ । ୬୦ ।
ଅଗ୍ନି ମନ୍ଦ ଭୋଜନରେ ଧର୍ମ ହୋନ୍ତେ ହାନି
କାରୁଣ ନ ଉପୁଜଇ ବୋଇଲେ ମହାମୁନି । ୬୧ ।
ବଶିଷ୍ଠଂକ ବଚନେ ଚଳିଲେ ମହୀପତ୍ୟେ
ଘୃତ ସମୁଦ୍ରକୁ ଖଟିଲା ପଞ୍ଚଦଶ ବରଷ ପରିଯନ୍ତେ । ୬୨ ।
ପ୍ରସନ୍ନେ ବୋଇଲେ ବର ମାଗ ମହାରାଜ
ଯେହ୍ନେ ବାଞ୍ଛା ସିଦ୍ଧ ହୋଇବ ତୋର କାର୍ଯ୍ୟ । ୬୩ ।
ଭୋ ଘୃତ ସମୁଦ୍ର ମୋତେ ପ୍ରସନ୍ନ ହୋଇବା
ମୁହିଂ ଯାଗ କରିବି ଘୃତ ମୋତେ ଦେବା । ୬୪ ।
ପିତାର ବଚନେ ମୁଂ ବରିଲି ବଶିଷ୍ଠଙ୍କ
ବଶିଷ୍ଠେ ବୋଇଲେ ମୋତେ ଘୃତସମୁଦ୍ର ଅଣାଇ । ୬୫ ।
ଘୃତ ସମୁଦ୍ର ବୋଇଲା ବଶିଷ୍ଠର ମେଘ ସ୍ତୋହାକାଠି
ବରଷିବ ଯାଗ ସରିବାଯାଏ ଯେତେକ ତାକୁ ଅଣ୍ଟି । ୬୬ ।

---

୫୫।୨ ସ୍ୱେକବର୍ଷ ପରିଯନ୍ତେ ଯଗ୍ୟଂକର ଗୂହ୍ମ ।—ଖ, ଠ, ନ
୫୮।୨ ଅନେକ ବ୍ରନୋସ୍ତୀରସ୍ତେ ମନରେ ସାନନ୍ଦ ।—ଖ, ନ, ଠ

ଶୁଣ ବାବୁ ଯୁଧିଷ୍ଠିର ବଦୟନ୍ତ ବେଦବ୍ୟାସେ
ବଶିଷ୍ଠଙ୍କୁ ଶ୍ୱେତରାଜା କହିଲା ହରଷେ । ୬୭ ।
ଯାଗ ଆରୋପଣ କଲା ହିମଗିରି ତଟେ
ସୁରଭଦ୍ରା ନଦୀ ବାଣ୍ଟାବନ୍ତର ନିକଟେ । ୬୮ ।
ଅସମ୍ଭବ ସଂକଳ୍ପ କଲାକ ନୃପତି
ଯାଗ ଆରୋପଣ କଲା ଚଉବିଂଶ ବରଷ ପ୍ରତି । ୬୯ ।
ବଶିଷ୍ଠ ଯାଗନିକ ହେଲେ ସେ ହୋମକୁଣ୍ଡର
ଶଗଡ଼ ଶୁମ୍ଭ ପ୍ରମାଣେ ମେଘ ବରଷନ୍ତି ଘୃତଧାର । ୭୦ ।
ସାଧୁ ମହାତମା ସେ ବଶିଷ୍ଠ ମହାମୁନି
ଅଗ୍ନିର ଶିଖା ହାଦେ ଉଠିଲା ସପତ ବ୍ରହ୍ମାଣ୍ଡ ଘେନି । ୭୧ ।
ଲୋଭେଣ ଘୃତ ତହିଂ ଯେ ଖାଇଲେ ବଶ୍ୟାନର
ଲୁଦୁବୁଦୁ ବ୍ୟାଧି ହୋଇଲା ମହାଅଗ୍ନି ଶରୀର । ୭୨ ।
ଲୁଦୁବୁଦୁ ବ୍ୟାଧି ହେଲା ସତ୍ୟ ତ୍ରେତା ଦ୍ୱାପର ପର୍ଯ୍ୟନ୍ତେ
ପିଳେହା ବ୍ୟାଧି ହୋଇଲା ଅଗ୍ନି ଦଇବତେ । ୭୩ ।
ଦେବ ଦାନବ ମାନବ ସବୁରିହିଂ ବ୍ୟାଧି
ଅଗ୍ନି ଦେବତା ଖଣ୍ଡିତ ନୁଆଁଶଲେ ସାଧି । ୭୪ ।
ଯେ ଯିସ ଭକ୍ଷଇ କାହାକୁହିଂ ନାହିଂ ପାର
ଲୁଦୁବୁଦୁ ବ୍ୟାଧିରେ ବସିଲେ ସଚରାଚର । ୭୫ ।
ଶ୍ୱେତ ମହାରାଜାର ଅନେକ ଯେ ପୁଣ୍ୟେ
ବ୍ରହ୍ମାଣ୍ଡ ପୁରେ ବସାଇଲେ ଦେବତାମାନେ । ୭୬ ।
ପିତାମହ ବୋଇଲେ ବ୍ରହ୍ମାଣ୍ଡ ପୁରେ ବସିଲୁ ହୋ ଶ୍ୱେତ
ପୁଣ୍ୟଧର୍ମ ସବୁ ତୋତେ ହୋଇଲା ପରାପତ । ୭୭ ।

---

୭୩। ୨ ପିଳେହା ବ୍ୟାପିଲା ବ୍ୟାଧି ହୋଇଲା ଅସୁସ୍ଥେ ।—ନ, ଖ

୭୪ } ଦେବ ମନୁଷ୍ୟ ସବୁର ଗର୍ଭେ ଅଗ୍ନି
ଅଗ୍ନି ଦେବତାଂକ ତେଜ ହୋଇଲାକ ହାନି ।—ଣ, ଙ, ଝ

୭୬। ୨ ବ୍ରହ୍ମାପୁରେ ବସାଇଲେ ଦେବତାମାନେ ।—ଘ, ଖ, ନ, ଠ

ଆମ୍ଭର ଦେବକାର୍ଯ୍ୟ ଅଛି ଜନମ ହୋଅ ମଞ୍ଚେ
ବିରାଟ ନାମ ବନ୍ଧୁକୁ ରଖିବୁ ସୁସଞ୍ଚେ । ୭୮ ।
ମଘଦେଶେ ମତ୍ସ୍ୟଦେଶେ ତୁ ହୋଅ ଅଧିକାରୀ
ଅନେକ ଗୋଧନ ଯେନ ହୋଅସି କ୍ଷୀର ଆଧାର । ୭୯ ।

ମଧ୍ୟଭୁବନେ ଯୁଧିଷ୍ଠିର ହୋଇବ ରାଜା
ଦୁଷ୍ଟ ନିରଞ୍ଜନ ସେ ମାନବେଣ ପୂଜା । ୮୦ ।

ଅଜ୍ଞାତବାସ ଯେ ବରଷେ ତେରଦିନ ପରିଯନ୍ତେ
ସେ ଯୁଧିଷ୍ଠିରଙ୍କ ସେବାନ୍ତେ ମୁକତ ହୋଇ ତୋତେ । ୮୧ ।

ବାବୁ ଶ୍ୱେତରାଜ ପୁଣି ବସିଲା ମଞ୍ଚ ବ୍ରହ୍ମାଣ୍ଡେ
ତୋହୋର ନିମନ୍ତେ ଜାତ ସେ ହୋଇଲା ମଧ୍ୟଖଣ୍ଡେ । ୮୨ ।

ଯେସନେକ ମତେ ସେ ନୃପତି ମତ୍ସ୍ୟଇନ୍ଦ୍ର
ବଡାଇ ଧାର୍ମିକ ସେ ଶ୍ୱେତ ତାହାକୁ ନ ନିନ୍ଦ । ୮୩ ।

ବ୍ୟାସଂକର କଥନେ ଯୁଧିଷ୍ଠିର ପରମ ଶାନ୍ତ
ଯିବଇଂ ବିରାଟ ରାଜ୍ୟେ ଫିଟିଲା ମନଭ୍ରାନ୍ତ । ୮୪ ।

ଯୁଧିଷ୍ଠିର ବୋଇଲେ ସେ ଯେବେ ଯେତେ ଜ୍ଞାନବନ୍ତ ରାଜା
ମୁହିଂ ତାହାଂକ ଚରଣେ କରିବଟି କି ପୂଜା । ୮୫ ।

ବ୍ୟାସେ ବୋଇଲେ ତୁ ନିରଞ୍ଜନ ସାରଷେ ଦେବା
ବିରାଟ ନୃପତି ତୋତେ କରୁଥିବ ସେବା । ୮୬ ।

ଯୁଧିଷ୍ଠିର ଦେବ ବୋଇଲେ ଯେ ପାଞ୍ଚାଳୀ ଜଜ୍ଞସେନୀ
ଦ୍ୱାରକା ଭୁବନକୁ ଯେହାଂକୁ ଜଗନ୍ନାଥେ ଯାନ୍ତି ଘେନ । ୮୭ ।

ବ୍ୟାସେ ବୋଇଲେ ବାବୁ ତୁ କର୍ମେ କହୁ ଯେମନ୍ତ
ଦ୍ରୌପଦୀ ତୁମ୍ଭ ସଙ୍ଗରେ ଥିବାର ଯୁଗତ । ୮୮ ।

ଶ୍ରୀକୃଷ୍ଣ ବୋଇଲେ ବ୍ୟାସେ ନ ଯାନ୍ତୁ ଦ୍ରୌପଦୀ
ବ୍ୟାସେ ତଥ୍ୟବାର୍ତ୍ତା ଯେବାନ୍ତେ ଜଗନ୍ନାଥଂକୁ କହନ୍ତି । ୮୯ ।

ତୁ ଦେବ ସକଳ ଭୂତ ଜଗତ ଅଧିକାରୀ
କାହିଁ ବନ୍ଧୁ ପରିଯନ୍ତେ ହୃଦଗତେ ତୋହୋର । ୯୦ ।

କେବଣ ଚୋଟେ ଅଗୋଚର ତୁ କାହା ନ ଜାଣୁ
କୁତୂହଳୀ ପୁରୁଷ ତୁ ପରଚନ୍ଦ୍ରଂ ଶୁଣୁ । ୯୧ ।
ସଂକୋଚନ ନନ୍ଦନ ଯେ କୀଚକ ମହାବୀର
ବଢ଼ାଇ ଦୃଢ଼ଭାର ସେ ପୃଥୀକି ହେଲା ମହାଭାର । ୯୨ ।
ତାହାକଇଂ ନାଶ କରିବାର ନିମନ୍ତେ
କୀଚକ ନାଶଯିବ ଦ୍ରୌପଦୀଂକ ଦେଖନ୍ତେ । ୯୩ ।
ବ୍ୟାସଂକର ବଚନେ ନାରାୟଣ ଚଳି
ବିରାଟ ଭୂବନକୁ ଯାଆନ୍ତୁ ଜଗତସେମି । ୯୪ ।
ଯୁଧିଷ୍ଠିର ଦେବେ ବୋଇଲେ ଯେବେ ଯିବେ ଦ୍ରୌପଦୀ
ଯେ କେମନ୍ତେ ଜନ ବସ୍ତିବେ ଥିବେ କାହାର ଯେ କତି । ୯୫ ।
ବ୍ୟାସେ ବୋଇଲେ ବାବୁ ସେ ବିରାଟର ପାଟରାଣୀ
ସୁଦେଷ୍ଣା ବୋଲଣ ସେ ସଂକୋଚନର ଦୁଲଣୀ । ୯୬ ।
ବାବୁ ସୁଜାଣ ବୋଲି ନଗ୍ର ଜଜାଣକାନ୍ତ
ତହିଂର ରାଜା ସେ ବୀରସେନ ଚକ୍ରବର୍ତ୍ତୀ । ୯୭ ।
କଳପାଧ୍ୱ ବଂଶେ କଲ୍ମଷପାଦ ମହାରାଜା
ବିଶ୍ୱାମିତ୍ରଂକ ଶାପେ ରାକ୍ଷସ ହୋଇ ବଶିଷ୍ଠଂକ ଶତେପୁତ୍ର କଲା ସେ ଭକ୍ଷଭୋଜା । ୯୮ ।
ବଡ଼ାଇ ପ୍ରତାପୀ ସେ ଅଟଇ ସୁନ୍ଦର ରାକ୍ଷସ
ସେହୁହାର ନନ୍ଦନ ଯେ ହୋଇଲା ଦୁର୍ଦ୍ଧକେଶ । ୯୯ ।
ଦୁର୍ଦ୍ଧକେଶର ନନ୍ଦନ ହୋଇଲା ଜଉତ୍ରଥ
ଅରୁଣସେନ ବୋଲିକରି ସେହୁହାର ପୁତ୍ର ଜାତ । ୧୦୦ ।
ଅରୁଣସେନ ନନ୍ଦନ ଯେ କର୍ଣ୍ଣାଟ କେଶରୀ
ବଇରାଷ୍ଟ୍ର ବୋଲିକରି ଯେ ତନୟ ସେହୁହାର । ୧୦୧ ।

---

୯୧।୨ କୁତୂହୋଳୀ ପୁରୁଷ ତୁ ସବ ପରମାଣୁ ।—କ, ଖ, ଣ

୯୮।୧ କଳପାଦ ବଂଶେ କଲପାଧ୍ୱ ଗୋତ୍ରୀ ରାଜା ।—ଜ, ଛ, ଘ

ବଇରାଷ୍ଟ୍ରର ନନ୍ଦନ ଯେ ନୃପତି ସୁରାଷ୍ଟ୍ର
ସୁରାଷ୍ଟ୍ରର ନନ୍ଦନ ଯେ ବରୁଣା ଶ୍ରୀବତ୍ସ । ୧୦ ।
ଶ୍ରୀବତ୍ସର ନନ୍ଦନ ଯେ ଅଭୟେ ଜଂଘମାଳ
ଯେହ୍ନାର ନନ୍ଦନ ହୋଇଲା ଯେ ଦୁରନ୍ତେକ ବଳୀ । ୧୦୩ ।
ବଳୀର ନନ୍ଦନ ଯେ ଶରଦ କଞ୍ଚଣ
ଯେହ୍ନାର ନନ୍ଦନ ଯେ ହୋଇଲା ସଂକୋଚନ । ୧୦୪ ।
ସଂକୋଚନର ଭାରିଯା ନାମ ଅଟଇ ଭୁଜୁସା
ଯେହ୍ନାର ଉଦରୁ ଜାତ ହୋଇଲା ସୁଦେଷ୍ଣା । ୧୦୫ ।
ମଦ୍ରଦେଶର ରାଜା ଯେ ଅଟଇ ବଇରାଷ୍ଟ୍ର
ବଡ ବଳାଗ୍ର ରାଜା ଅନୁବରତେ ସାଜଇ ପରଥାଠ । ୧୦୬ ।
କଳପି ଦେଶର ରାଜା କାଳ ଯେ ନଉମି
ବଇରାଷ୍ଟ୍ର ପଯ୍ୟାଣ କଲା ତାହାର ଥାଠ ଘେନ । ୧୦୭ ।
କଳପି ଦେଶେ ଯାଇଂ ବେଢିଲା ବଇରାଷ୍ଟ୍ର
କାଳନଉମି ରାଜା ସାଜିଲା ବେଗେ ଥାଠ । ୧୦୮ ।
ବହୁତ ସମର କଲା ବଇରାଷ୍ଟ୍ରର ଭୁଲେ
ମଦ୍ରଦେଶର ସଇନ ଭାଜି ପଳାଇଲେ । ୧୦୯ ।
ବଇରାଷ୍ଟ୍ର ନୃପତି ଯେ ଭାଜିଲା ରଣ ତେଜି
କାଳନଉମି ସଇନ ଯେ ଉଠିଲେ ଗଳଗାଜି । ୧୧୦ ।
ଯେତେକସରେ ବଇରାଷ୍ଟ୍ର ଅନେକ ସମର କଲା
କଳପି ରାଜାର ସଇନ ତାହାକଇଂ ଯାବତେ ବେଢିଲା । ୧୧୧ ।
ପତ୍ୟେକ ଯୋଦ୍ଧା ଘେନଣ କାଳ ଯେ ନଉମି
ବଇରାଷ୍ଟ୍ର ରାଜାଂକୁ ବେଢିଲା କୋନ୍ତ ଖଣ୍ଡଗ ଘେନ । ୧୧୨ ।
ଘାୟେଣ ବରଥୀ ଯେ ହୋଇଲା ମହେଶ୍ୱର
ଯେହ୍ନା ଘାନ୍ତକେ ପ୍ରହାର କଲା ଅଶିଳକ୍ଷ କୋନ୍ତକାର । ୧୧୩ ।

---

୧୦୫।୧ ସୁଦେଷ୍ଣା ଭାରିଜା ତାର ଅଟଇ ଗରୁଢ଼ଂସା ।—ଠ, ନ, ଖ
୧୧୩।୨ ଯେହ୍ନା ଘାନ୍ତକେ ପ୍ରହାର କଲା କୋନ୍ତଶର ।—ଠ, ନ

ସମରେ ପଡିଲା ଯନ୍ତୁଂ ବଇରାଷ୍ଟ୍ର ନୃପତି
ଅନେକ ସଇନ ଭୂଲେ ପଡିଲେ ବହୁତ ସେନାପତି । ୧୧୪ ।
ବାରତା ପାଇଣ ଯେ ପଳାଇଲା ମହାଦେଈ
ଉଜାଣିକାନ୍ତି ଦେଖେ ପଳାଇ ପଶିଲାକ ଯାଇଂ । ୧୧୫ ।
ଆସ୍ଥାନେ ବିଜୟେ ଯେ ସଂକୋଚନ ନୃପମଣି
ଶରଣ ପଶିଲା ଯାଇଂ ବଇରାଷ୍ଟ୍ର ପାଟରାଣୀ । ୧୧୬ ।
ଅନାଥୁଣୀ ଦେଖି ସେ ସଂକୋଚନ ଦୟାକଲା
ଆପଣାର ମହାଦେଈ ପୁରେଣ ସମ୍ଭାଇଲା । ୧୧୭ ।
ପଞ୍ଚମାସ ଗର୍ଭବାସ ବଇରାଷ୍ଟ୍ରର ରାଣୀ
ଯତନେ ସମ୍ଭାଳିଲା ସଂକୋଚନ ନୃପମଣି । ୧୧୮ ।
ବୃଷ ଶୁକ୍ଳପକ୍ଷ ଅର୍କବାର ଚଉଠୀ
ହସ୍ତା ନକ୍ଷତ୍ର ଯେ ରାତ୍ର ପାଞ୍ଚଦଣ୍ଡ ଘଟି । ୧୧୯ ।
ବାଳବ ନାମେ କରଣ ବରୀୟାନ ନାମେ ଯୋଗ
ଚତୁର୍ଥ ଘରେଣ ବୃହସ୍ପତିଂକର ଭୋଗ । ୧୨୦ ।
ଅମୃତ ଲଗନ ଯେ ଚନ୍ଦ୍ରଂ ମାହାନ୍ଦ୍ର ନାମେ ବେଳା
ରାତ୍ର ପାଞ୍ଚଘଡଠାରେ ପୁତ୍ର ଜନମ ହୋଇଲା । ୧୨୧ ।
ବାରତା ପାଇଣ ସେ ଉଜାଣେଶ୍ୱର ଦେବ
ବନ୍ଦୀ ମୁକତ କରାଇଣ ରାଜ୍ୟେ କରାଇଲା ଉତ୍ସବ । ୧୨୨ ।
ହସ୍ତା କନ୍ୟାରାଶି ଯେ କୁମାର ଦେବଜାତି
ପଣ୍ଡିତ ଲକ୍ଷଣେ କେନ୍ଦ୍ର ପାଦେ ଦେଖିଲେ ବୃହସ୍ପତି । ୧୨୩ ।
ବେନି କରସ୍ଥଳେ ଶୋହେ ଶଙ୍ଖନିଧି ପଦ୍ମନିଧି ଚିହ୍ନ
ଦେଖିଣ ସାନନ୍ଦ ଯେ ନୃପତି ସଂକୋଚନ । ୧୨୪ ।
ପିତାର ନାମ ତାର ଅଟଇ ବଇରାଷ୍ଟ୍ର
ତେଣୁ ସେ ପୁତ୍ରର ନାମ ହୋଇଲେକ ବିରାଟ । ୧୨୫ ।
ମହତ ଧାର୍ମିକ ସେ ରାଜା ଅଟଇ ସଂକୋଚନ
ସେ ବାଳକ ଗୋଟିକ ପାଳିଲା କରି ଅତି ଯତନ । ୧୨୬ ।

---

୧୨୩।୨ ପଣ୍ଡିତ ଚନ୍ଦ୍ରମା ପାଦେ ଥିଲେ ବୃହସ୍ପତି ।—ଠ,ନ

କଞ୍ଚନ ନାମେଣ ହାଦେ ଯେ ସ୍ୱେକଇ ମହର୍ଷକ
ଜଗମନ୍ୟୁ ବ୍ରହ୍ମ-ବେତ୍ତା ଅଗସ୍ତ୍ୟଙ୍କର ଶିଷ୍ୟ । ୧୨୭
ତାହାଂକୁ ଭଗତ୍ତ କଲ୍ଲ ସେ ସଂକୋଚନ ରାଣୀ
ଅନ୍ଧ୍ରୁଣ ମଞ୍ଜି ଶତଗୋଟି ଦଲେ ତାହାଂକୁ ଆଣି । ୧୨୮ ।
ସ୍ୱେହାକଇଂ ଗ୍ରାସ ଭୁଞ୍ଜ କରସି ଗୋ ମାସ୍ୱେ
ପ୍ରାପତ ହୋଇବ ତୋତେ ଶତଗୋଟି ତନସ୍ୱେ । ୧୨୯ ।
ଶତ୍ତତବନ୍ତ ହୋଇଣ ବଦ୍ୟାବନ୍ତର କୁମାଗ୍ଣ
ଋଷିଂକର ଗ୍ରୀମୁରେ ପ୍ରାଶନ ତାହା କର । ୧୩୦ ।
ଦେଖ ହୋ ମହାତମାର ମହାମନ୍ତ୍ରର ଉପାସ୍ୱେ
ସଂକୋଚନ ମହାରାଜାର ହୋଇଲ ଶତକୋଟି ତନସ୍ୱେ । ୧୩୧ ।
ସଂକୋଚନ ରାଜାର ଭାରଜା ଭୁଲସା ଅପର୍ଣ୍ଣା
ଆଗହୁଂ ଦୋହ୍ମତା ଜାତ ହୋଇଛୁ ସୁଦେଷ୍ଣା । ୧୩୨ ।
ପୁତ୍ରର ଜନମ ଶୁଣି ସେ କଞ୍ଚନ ମହଋଷି
ଉଜାଣିକାନ୍ତ ନଗ୍ରେ ପ୍ରବେଶ କଲେ ଆସି । ୧୩୩ ।
ଦେଖିଣ ସଂକୋଚନ ରାଜା ଅନେକ ଭଗତ
ତୋହୋର ପରସାଦେ ମୁନ ମୋର ଶତେ ପୁତ୍ର ଜାତ । ୧୩୪ ।
ପାଉକଲୁ ମହତମା ମୋତେ ଅପୁର୍ବିକ ଲକ୍ଷଣୁ
ଋଷିଂକର ଗ୍ରୀମୁରେ ଆଣି ଶୁଆଇଲେ ସବତନୁ । ୧୩୫ ।
ଦେଖିଣ ମହାତମା ଯେ ପରମ ସାନନ୍ଦ ହୋଇଲେ
ପ୍ରଥମ ପୁତ୍ରକଇଂ କାଞ୍ଚକ ନାମ ଦଲେ । ୧୩୬ ।
ସ୍ନେହେଣ ମହାମୁନ ତାକୁ ଧଇଲେକ କୋଳ
ତକ୍ଷଣେ ବୋଇଲେ ତୋହୋର ହେଉ ଶତେସିଂଘର ବଳ । ୧୩୭ ।
ବଉବେଇ ମହାତମା କୋଳେଛନ୍ତ ଧର
କାନ୍ଦଣ କୁମର ଯେ ଚରଣ ହଲାଇକର । ୧୩୮ ।

---

୧୨୭ ସଂକୋଚନ ନାମେଣ ଯେ ସ୍ୱେକଇ ମହର୍ଷି ।—ଘ, ଣ, ଜ
୧୨୭।୧ କଞ୍ଚନ ମନସିଜ ବୋଲି ସ୍ୱେକଇ ମହର୍ଷି ।—ଖ, ନ
୧୨୭।୨ ଜଗଣୀ ବ୍ରହ୍ମବେତ୍ତା ଅଗସ୍ତ୍ୟଙ୍କର ଶିଷ୍ୟ ।—ନ, ଘ, ଜ, ଛ

ଋଷିଂକର ବକ୍ଷସ୍ଥଳେ ବାଜନ୍ତି ଚରଣଗୋଟି
ମୃଷାଗତେ ମୂନ ଯେ ପଡ଼ିଲେ ମହାଲୋଟି । ୧୩୯ ।
ଘନ ଘନ ରୁଧିର ବହିଲା ନାସିକାରୁ କାଟେ
କେନପରି ପଶଯନ୍ତେ ନଚେଷ୍ଟେ ପଡ଼ିଲେ ତପୋନଷ୍ଟେ । ୧୪୦ ।
ଚେତନା ପାଇଣ ସେ ବୋଇଲେ ମୁନିବର
ପ୍ରଥମେ ଘାତକଲୁ ତୁ ମୋହୋର ହୃଦର । ୧୪୧ ।
ଯେଣୁହି କ୍ଷଣି ଶତସିଂହର ତୋତେ ଦେଲଇଂ ପରାକ୍ରମ
ଯେଣୁକସିଂହର ପ୍ରାକର୍ମେ ତୋତେ ପ୍ରାଭବ କରୁ ଖ୍ରମ । ୧୪୨ ।
ବ୍ୟାସେ ବୋଇଲେ ବାବୁ ଶୁଣ ହୋ ଯୁଦ୍ଧେଷ୍ଟି
ଯେତୁହେତନ୍ନେକ ଶାପ ଦଲେ କଞ୍ଚନ ତପନଷ୍ଟି । ୧୪୩ ।
ତୁ ଯେ ପଚୃରଲୁ ସୁଦେଷ୍ଟା ଚରିତ
ବଶିଷ୍ଟଂକ ବିବାଦେ ତପକଲେ ବିଶ୍ୱାମିତ୍ର । ୧୪୪ ।
ବାସବ ଦେବତାଂକୁ ଲାଗିଲା ବଡ ଶଂକା
ମଳୟ ବସନ୍ତ ତୁଲେ ସେ ପେଷଲେ ମେନକା । ୧୪୫ ।
ସେ ମେନକା ଅପସରା ବିଶ୍ୱାମିତ୍ରେ ଭେଟି
ଦେଖିଣ ମୋହିତ ହୋଇଲେ ସେ ବିଶ୍ୱାମିତ୍ର ତପନଷ୍ଟି । ୧୪୬ ।
ଭଗ୍ନତପ ହୋଇଣ ଋଷି ଧଇଲେ ତାକୁ କୋଳେ
ମନୋହର ବନେ ମେନକାକୁ ଶୃଙ୍ଗାର କଲେ ବଳେ । ୧୪୭ ।
ସେ ଅମୋଘ ରେତୁଂ କନ୍ୟାଏ ହୋଇଲାକ ଜାତ
ଶକୁନ୍ତଳା ନାମ ତାର ହୋଇଲା ବିଦିତ । ୧୪୮ ।
ଶକୁନ୍ତଳାକଇଂ ଘେନ ମେନକା ସ୍ୱର୍ଗପୁର ଗଲା
ବାସବ ଦେବତ ତାକୁ ଦେଖି ମହାଭୟ କଲା । ୧୪୯ ।
ବାସବ ଦେବତା ବୋଇଲେ ତୁଲେ ଯାଅ ମର୍ତ୍ତପୁର
ସଂକୋଚନ ରଜା ଘରେ ଯାଇଂ ତୁ ହୁଅସି ଅବତାର । ୧୫୦ ।

---

୧୪୩।୨ ଅବଶ୍ୟ କାଳକେ ଖ୍ରମର ହୋଇବ ଭେଟାଭେଟି ।—କ, ଣ ।
୧୪୮।୨ ଶକୁନ୍ତଳା ନାମ ତାକୁ ଦଲେକ ବିଧାତ ।—କ, ଙ, ଖ

ଶ୍ରୀକୃଷ୍ଣା ନାମ ତୋର ହୋଇବ ଯୁଗତେ
ବଇରଷ୍ଟ କୁମାର ଯେ ପ୍ରଦାନ ହେଉ ତୋତେ । ୧୫୧ ।
ମଘଦେଶେ ମହାଦେଶେ ହୋଇବୁ ଠାକୁରାଣୀ
ସମସ୍ତଙ୍କେ ଭେଟିବୁ ତୁ ଦ୍ରୁପଦ ଦୁଲଣୀ । ୧୫୨ ।
ସେ ଜନ୍ମସେମାର ଅଗ୍ୟାଂଚ ବନବାସେ
ପ୍ର ଯୁଦ୍ଧବେ ଝଟିଥିବୁ ଦ୍ରୋପଣୀର ପାଶେ । ୧୫୩ ।
ଜାତିସ୍ମର ହୋଇଣ ତୁ ଜାତ ହୋଇଥିବୁ
ପାଣ୍ଡବଂକ ଗୋପ୍ୟାନ କଥା ସମସ୍ତେ ଜାଣିବୁଂ । ୧୫୪ ।
ଜାଣିଣ ଗୋପ୍ୟାନ ତୁ ଯେ କରିବୁ ସର୍ବକଥା
ଫୁଟି କହ୍ନିଲେ ତୋତେ ପ୍ରାପତ ମୃତ୍ୟୁଗତା । ୧୫୫ ।
ଯେମନେକ ବାକ୍ୟ ଯେ କହ୍ନିଲେ ମଘବାନ
ଶକୁନ୍ତଳା ଉତପତ୍ତି ହୋଇଲା ସଂକୋଚନର ଭୁବନ । ୧୫୬ ।
ବ୍ୟାସେ ବୋଇଲେ ବାବୁ ତୁ ଯେଥକୁ ଆନ ଝଗୃର ନକର ମନେ
ଶକୁନ୍ତଳା ମୋକ୍ଷ ହୋଇବ ଦ୍ରୋପଣୀ ଦରଶନେ । ୧୫୭ ।
ବ୍ୟାସେ ବୋଲନ୍ତେ ଫିଟିଲା ମନର ସନ୍ଦେଶ
ପ୍ରଲମ୍ବିତ ହୋଇ ଯୁଦ୍ଧେଷ୍ଟି ପୁଣ ପୁଚ୍ଛନ୍ତି ବ୍ୟାସଂକର ପାଶ । ୧୫୮ ।
ବଇରଷ୍ଟ ଯେ ଉପୁଜିଲା ସଂକୋଚନ ଘରେ
ଶ୍ରୀକୃଷ୍ଣାକଇଂ ପ୍ରଦାନ ହୋଇଲା କେବଣ ପ୍ରକାରେ । ୧୫୯ ।
ବ୍ୟାସେ ବୋଇଲେ ଶୁଣ ହୋ ଧର୍ମ ଯୁଦ୍ଧେଷ୍ଟି
ଅତ୍ୟନ୍ତ ସୁନ୍ଦର ସେ ବଇରଷ୍ଟ ପୁତ୍ରଗୋଟି । ୧୬୦ ।
ପୁଷନ୍ତ ବସାଇ ରଜା ଭାଳଇ ସଂକୋଚନ
ବଇରଷ୍ଟକଇଂ ଶ୍ରୀକୃଷ୍ଣା କରିବା କ ପ୍ରଦାନ । ୧୬୧ ।

---

୧୫୧।୧ ଶ୍ରୀକୃଷ୍ଣା—ସୁଦେଷ୍ଣା ।
୧୫୬।୨ ତେଣୁ ସେ ସଂକୋଚନ କୋଳେ ଯେ ହୋଇଛୁ ଉତପନ୍ନ ।— ଠ, ଜ, ଖ
୧୫୭।୧ ବ୍ୟାସେ ବୋଇଲେ ବାବୁ ଯେଥକୁ ତୁ ଭ୍ରାନ୍ତ କରମନେ ।— କ, ଗ, ଣ

ବାବୁ ବିରାଟର ପିତାକୁ ଯେ କାଳନଜମି ବଧକଲା
ଗର୍ଭବାସ ହୋଇ ତାର ଘରଣୀ ପଳାଇ ଅଇଲା । ୧୬୨ ।
ମୁହିଂ ତାଙ୍କୁ ସମ୍ଭାଳିଲି ଅତି ଯତ୍ନକରି
ଧର୍ମବଳେ କୁମାର ଯେ ହୋଇଲା ତାହାର । ୧୬୩ ।
ବାବୁ ଅତ୍ୟନ୍ତ ଲକ୍ଷଣବନ୍ତ କୁମାର ବିରାଟଇ
ମତ୍ସ୍ୟଦେଶେ ମଘଦେଶେ ସେ ଠାକୁର ଅଟଇ । ୧୬୪ ।
ଭସ୍ମ ଆଂକୁରାଇ ଉଦିତ କରିବା ଧର୍ମ
ଶ୍ରୀକୃଷ୍ଣାକୁ ବିରାଟକଇଂ କରିବା ପ୍ରଦାନ । ୧୬୫ ।
ବାବୁ ମଘଦେଶେ ମତ୍ସ୍ୟଦେଶେ ଯେବେ କରାଇ ପାରିବୁ ରାଜା
ଲକ୍ଷେରାଜା ମୁଖେ ବାବୁ ପାଇବୁଟି ବହୁତ ପୂଜା । ୧୬୬ ।
ଶୁଣିଣ କୀଚକ ଯେ କଲାକ ସନମତ
ବଡାଇ ସମ୍ଭରେ ରାଜା ତାକୁ ଦେଲାକ ଦୁହିତ । ୧୬୭ ।
ଶ୍ରୀକୃଷ୍ଣା ଦୁହିତା ବିରାଟକୁ ପ୍ରଦାନ କରାଇ
ଲକ୍ଷେକ ରଥ ଯୋଦ୍ଧା ଜଉତୁକମାନନ୍ତ ଦେଇ । ୧୬୮ ।
ପାଞ୍ଚଲକ୍ଷ ହାଥୀ ଦଶଲକ୍ଷ ହସ୍ତେ
ବିରାଟଇ ଯଉତୁକ ଦେଲା ସଂକୋଚନ ରାସ୍ତେ । ୧୬୯ ।
ଦୁଇ ସାଗର ପାଦାନ୍ତ ଯେ ବତିଶ ଗୋଷ୍ଠ ଗାଈ
ବେନି ଭଣ୍ଡାର ରାଜା ତାକୁ ଯଉତୁକ ଦେଇ । ୧୭୦ ।
ଚୃରି ଚୃଶ ପାରିଦଣ୍ଡଂ ଗୁଡିଲାକ ରାଜଭୂଇଂ
ବିରାଟକୁ ଯଉତୁକ ଦେଲା ସଂକୋଚନ ନୃପସାଇଂ । ୧୭୧ ।
ବଇବସ୍ବତ ମନୁ ପଚୃରନ୍ତ ଅଗସ୍ତି ତପୋବନ୍ତ
ଗୋଷ୍ଠକ କେତେ ଗାଈ କହିବା ମୁନି ତଥ୍ୟ । ୧୭୨ ।
ପ୍ରେକଶତ ପଲ ହେଲେ ପ୍ରେକଗୋଷ୍ଠ ଜାଣ
ପ୍ରେଷ୍ଠିପରି ବତିଶ ଗୋଷ୍ଠ ଦେଲାକ ରାଜନ । ୧୭୩ ।
ପ୍ରେତେକ ସଂକୋଚନ ଯଉତୁକ ଦେଲା
କହୁଁ ହେଲ ନାହିଂ ବୋଲି ରାଜା ଯେ କହିଲା । ୧୭୪ ।

---

୧୬୯।୧ ପାଞ୍ଚ ପରାୟୁଧ ତୁରଙ୍ଗମ ନବ ପରାୟୁଧ ପାଦାନ୍ତ ।—କ, ଚ, ଟ

ଅନେକ ସମ୍ପରେ ବନ୍ଧ୍ୟ ସେ କରାନ୍ତି
ଅନେକ ଯୁବତୀ ବନ୍ଦାପନା କରନ୍ତି । ୧୭୫ ।
ଜୀମେକ ଶସ୍ତ୍ରଧାରୀ ହୋଇଲା ଯେତେବେଳେ
ଅନେକ ରାଜ୍ୟ ମଣ୍ଡଳ ସେ ସାଧିଲା ଭୁଜବଳେ । ୧୭୬ ।
ସଂକୋଚନ ବୋଇଲା ଯେ କୀଚକକୁ ରାଇ
ବାବୁ ବିରାଟକୁ ବସା ଯା ତାହାର ରାଜ୍ୟେ ନେଇ । ୧୭୭ ।
ସେ ମୋହୋର ତହିଂ ଯେ ପଶିଲା ଶରଣ
ତୁ ତାହାକୁ ବାବୁରେ କର ଯା କାରଣ । ୧୭୮ ।
ବିରାଟକୁ ନବବଂଶ କରଷ କୀଚକକୁ ପଞ୍ଚବଂଶ
ସମଦଣ୍ଡ ଘେନ କୀଂଚକ ବାହିଲା ମଧ ମହାଦେଶ । ୧୭୯ ।
ବଇରାଷ୍ଟ୍ରକୁ ଜିଣିଣ ସେ କାଳନଜମି ରାଯ୍ୟେ
ମହାଦେଶେ ବସାଇଛୁ ପାଶ୍ୱଦଣ୍ଡ ଗୋଟାଯ୍ୟେ । ୧୮୦ ।
ମର୍ଭୂତେକ ରଥ ଦେନ ମର୍ଭୂତେକ ହାଥୀ
ପାଞ୍ଚ ପରାଯୁଧ ତୁରଙ୍ଗମ ନବସାଗର ପାଦାନ୍ତି । ୧୮୧ ।
ଶରଣସେନ ବୋଲ ସେ ଯେ଼ବକଲ୍ଲି ପାଶ୍ୱଦଣ୍ଡ
ମାଡ଼ି ବସିଅଛୁ ସେ ମହାଦେଶ ରାଜ୍ୟଖଣ୍ଡ । ୧୮୨ ।
କୀଚକ ଦଣ୍ଡଘେନ ବାହିଲା ଯେତେବେଳେ
ଶରଣସେନ ଓଗାଳିଲା ଶରଣଭଦ୍ରା ନଦୀକୂଳେ । ୧୮୩ ।
ଅନେକ ସମର ଯେ ହୋଇଲା ମହାଘୋର
ସମରେ ନ ଝୁଞ୍ଜିଲେ ଉଭୟେ ସନ୍ୟବଳ । ୧୮୪ ।
କୀଚକ ବୋଲିଣ ସେ ଅଭୟେ ବଳବନ୍ତା
ଶତେସିଂହ ପରାକ୍ରମ ସେ ସମରେ ଶକତା । ୧୮୫ ।
କୁଞ୍ଜମାଳ ବୋଲିଣ ଯେ ଯେ଼ବଇ ପରବତେ
ଜହର୍ଗସ୍ଥଳୀ ଯେ ନବକୋଶ ପର୍ଯ୍ୟନ୍ତେ । ୧୮୬ ।

---

୧୮୬।୧ କୁବୁମାନ ବୋଲିଣ ଯେ ଯେ଼ବଇ ପରବତେ ।—ନ, ଠ, ଖ

ସେ ପର୍ବତ ଉପାଡ଼ି ସେ ଧଇଲା ନିଜକରେ
ଯେସନେକେ ନିତ୍ୟେ ଧରି ବୁଲିବନ୍ତି ଗଦାକରେ । ୧୮୭ ।
ଗିରିବର ବୁଲାଇଣ ଆକ୍ରୋଷିଣ ପିଟି
ଶତେ ସହସ୍ର ସେନା ଯେ ପଡ଼ିଲେ ମହାଲୋଟି । ୧୮୮ ।
ସାତଦିନ ସାଂଗ୍ରାମ ହୋଇଲା ଅବଶ୍ରାମ
ଶରଣସେନ ସୈନ୍ୟ ସର୍ବେ ପଡ଼ିଲେ ସଂଗ୍ରାମ । ୧୮୯ ।
ଅନର୍ଯାପ ଯୁଦ୍ଧେ ଯଦ୍ଧଂ ନଶିଲେ ସଇନ
ପଳାପ୍ୟେ ଶରଣସେନ ଭଗବଳ ହେନ । ୧୯୦ ।
ଉଜାଣେଶ୍ୱର ନୃପତି ଯେ ସମରେ ପ୍ରଚଣ୍ଡା
କଳପି ରାଜା ଥାଠଯାକ କଲା ମସୀଗୁଣ୍ଡା । ୧୯୧ ।
ପାଞ୍ଚ ଯୋଜନ ପର୍ଯ୍ୟନ୍ତେ ପାପ୍ୟେଡ଼ା ପଡ଼ିଲା
ଧାଇଂଣ କୀଚକ ଯେ ଶରଣସେନକୁ ଧଇଲା । ୧୯୨ ।
କେଶ ଧରିଣ କୀଞ୍ଚକ ଯେ ଗୃପୋଡ଼େ ପ୍ରହାରି
ଶରଣସେନ ପଡ଼ିଲା ରୁଧିର ଉଦ୍‌ଗାରି । ୧୯୩ ।
କପ୍ୟେବାର କମ୍ବଲା ହୋ ସଂକୋଚନ ନୃପତି
କଳପିବଳ ନିଶୋଧନ କଲା କୀଞ୍ଚକ ସେନାପତି । ୧୯୪ ।
ରଥ ଗଜ ଅଶ୍ୱ ତିନ ସାଗର ସଇନ
କୀଞ୍ଚକ ଧ୍ୱଂସିଲା ଯେ ଗିରିବରେ ହେନ । ୧୯୫ ।
ପାଷାଣ ରୂପେ ବିଜପ୍ୟେ ମହା ଇନ୍ଦ୍ରନାଥେ
ବିରାଟକଇଂ ହେନ କୀଞ୍ଚକ ହୋଇଲେ ପ୍ରଣିପତ୍ୟେ । ୧୯୬ ।
ଜୟ ତୁ ମହାଇନ୍ଦ୍ର ନାଥ ପ୍ରତ୍ୟକ୍ଷେ ମୀନରୂପୀ
କଞ୍ଚିତ ଅବଲୋକନେ ସପତ ବ୍ରହ୍ମାଣ୍ଡ ବ୍ୟାପି । ୧୯୭ ।
ଅକାରଣକୁ କାରଣ ଶୂନ୍ୟ ପବନ ବେତ୍ତା
ସାଧକ ପୁରୁଷ ନାଥ ଜୟ ତୁ ଅବଧୂତା । ୧୯୮ ।
ଖେଳନ୍ତ' ସିଂଘ ଜାଣି ନ ଜାଣୁ ସର୍ବଦେବା
ଆଦି ଅନ୍ତ ମଧ୍ୟ ତୁମ୍ଭ ସେ ଆଦି ଦେବା । ୧୯୯ ।

---

୧୮୭।୧ ସାତଦିନ ସଂଗ୍ରାମ ହୋଇଲା ଅବଶ୍ରାମ ।—ଗ, ଅ, ଘ, ଣ, କ
୧୯୬।୧ ପାଷାଣ ଗିରିରେ ବିଜୟେ ମହାଇନ୍ଦ୍ର ନାଥେ ।—ଁ, ଠ, ନ.

୨

ଶୂନ୍ୟ ଆସନେ ସ୍ୱାମୀ କୋଟି ବ୍ରହ୍ମାଣ୍ଡ ଘୋଟି
ଶତ ତରଣୀ ମୁଦ୍ରାୟେ ଯେ ସମ୍ପ୍ୟେକ ବ୍ୟାପି । ୨୦୦ ।
ଉଜାଣି ପବନ ଦେବ ବୁଡ଼ାଇଲୁ ପଞ୍ଚମୁଦ୍ରା
ପବନ ହେଠାଇଣ ଅବ୍ୟକତ କଲୁ ସିଦ୍ଧା । ୨୦୧ ।
ଅନନ୍ତ ସିଦ୍ଧ ଯେ ଭୁଷ୍ୱ ମହ୍ସ୍ରଇନ୍ଦ୍ର ନାଥେ
ଯାହାର ଲପ୍ୟେ କୋଟିପ୍ୟେ କଳ୍ପ ପର୍ଯ୍ୟନ୍ତେ । ୨୦୨ ।
(ସ୍ଥାନ ସମସ୍ତ) ଅନୁକାଳ ବଞ୍ଚାଇଲୁ ନାଥ ଲୋକେଶ୍ୱର ଜଟା
ନବଗୋଟି ଇନ୍ଦ୍ରୀ ବୁଡ଼ାଇଲୁ କାମ ଅସକ୍ତା । ୨୦୩ ।
ଭାବକ ଛଉଂଶ ପାବକ କୁଣ୍ଡଳୀ
ଅଗମିତ ମେଦମା କଣ୍ଠେ ରୁଦ୍ରାକ୍ଷ ମାଳ । ୨୦୪ ।
ନିରନ୍ତରେ ସେବା ମୁଂ ଯେ ମାଗଇ ପରମଯୋଗୀ
ପବନ ଆପ୍ୟାନେ ଯାହାର ଅନେକ କାଳ ଭୋଗୀ । ୨୦୫ ।
ଅନନ୍ତ ସିଦ୍ଧା ଯେ ମହ୍ସ୍ରଇନ୍ଦ୍ର ନାଥେ
ଯାହାର ଲପ୍ୟେ ନବକୋଟି କଳ୍ପ ପର୍ଯ୍ୟନ୍ତେ । ୨୦୬
ଆଦିନାଥ ପୂର୍ବର ଚରଣ ନମାମି
ଶୂଦ୍ରମୁନି ସାରୋଳ ଦାସ ଶତସହସ୍ର ଦଣ୍ଡ ପରଣାମି । ୨୦୭ ।
।୨୦୭।

---

## ବିରାଟର ମତ୍ସଦେଶ ପ୍ରାପ୍ତି, ପଞ୍ଚପାଣ୍ଡବଙ୍କର ଛଦ୍ମରୂପ ଧାରଣ ଓ ଶମୀବୃକ୍ଷ ଉତ୍ପତ୍ତି, ତାହାର କୋଟରେ ଅସ୍ତ୍ରଶସ୍ତ୍ର ରକ୍ଷଣ ଓ ପଞ୍ଚପାଣ୍ଡବଙ୍କର ଗୁପ୍ତବେଶ ଧାରଣ କରି ରହିବାର ମନ୍ତ୍ରଣା

ସ୍ୱାମୀ ମତ୍ସ୍ୟେନ୍ଦ୍ର ନାଥ ତୁ ଯେ ସଦଯ୍ୟେ ଯୋଗେଶ୍ୱର
କୀଚକ ବୋଇଲା ସ୍ୱାମୀ ବିରାଟକୁ ଦୟାକର । ୧ ।
ଶୁଣିଣ ସାନନ୍ଦ ଯେ ମତ୍ସ୍ୟେନ୍ଦ୍ର ନାଥ ମହାଯୋଗୀ
ନାଥଂକର ଚକ୍ଷୁଂ ଖସି ପଡିଲା ଅକ୍ଷୟ ଜପମାଳା । ୨ ।
ବିରାଟର କଣ୍ଠେ କୀଚକ ନେଇଣ ଲମ୍ବାଇ
ଆସ୍ତାନେ ବିରାଟକୁ ବସାଇଲା ନେଇ । ୩ ।
ଦୂତ ପେଶି ମୁନିଗଣମାନଙ୍କୁ ଅଣାଇ
ରାଜ ଅଭିଷେକ ବିଧି ସମସ୍ତ ତିଆରି । ୪ ।
ବାମଦେବ ପଣ୍ଡିତ ବରୁଣ ପିଙ୍ଗଳାକ୍ଷ
ମତ୍ସ୍ୟଦେଶେ ଅଭିଷେକ କଲେ ବିରାଟ ଦଣ୍ଡଧାରୀ । ୫ ।
ସଂକୋଚନ ବୋଇଲେ ବାବୁ ବିରାଟକୁ ଘେନ
ମତ୍ସ୍ୟଦେଶେ ଥାଆ ତୁ ସମସ୍ତ ଘେନ ସଇନ । ୬ ।
ବ୍ୟାସେ ବୋଇଲେ ବାବୁ ଯୁଧିଷ୍ଠିର ପୂର୍ବେ ସ୍ୱେଦଦେଶ ସଞ୍ଚା
ତୁମ୍ଭେ ଯେବେ ଅଜ୍ଞାତବାସ ବର୍ଷଂରେ ଥାଇ ବଞ୍ଚା । ୭ ।
ଯୁଧିଷ୍ଠିର ବୋଇଲେ ତୁମ୍ଭେ ଶୁଣ ତପୋଧନ
ପୁଣ କଳ୍ପିଦେଶ ରାଜା କଲେକ କେମନ୍ତ । ୮ ।
ବ୍ୟାସେ ବୋଇଲେ ସେ କଳପି ଦେଶର ରାଯ୍ୟେ
ଦଣ୍ଡଭଙ୍ଗ ଦେଖିଣ ସେ ଆଠ ଘେନ ଆୟେ । ୯ ।

ଅଣି ପର୍ବର୍ଦ୍ଧ ସନ୍ୟ ଯେ ସବହେଂ ମୁକୁଟ ବନ୍ଧା
ବଶାଣତେ କୋଟି ସନ୍ୟ ସବେ ରଣସିଦ୍ଧା । ୧୦ ।
ପ୍ରେକ ଛଅ ଗୋଟାପ୍ରେ ଧରଇ କାଳନଭମି
ମଘଦେଶେ ମାଡ଼ି ବସିଲ୍ଲ ମଛ ଦେଶର ସାରଭୂମି । ୧୧ ।
ବରାଟ ନୃପତକ ଆସି କହଲେ ମୁନେହ୍ବଂ
କଳପି ଦେଶ ରାଜା ଦେବ ମଘଦେଶେ ଅଛୁ ରହି । ୧୨ ।
ବରାଟକୁ ରାଜପଦେ ବସାଇ କୀଚଅକ
କାଳନଭମି ତହ୍ନଂକ ବାହ୍ବିଲ୍ଲ ଦଣ୍ଡେକ । ୧୩ ।
ବସ୍ତୁଭଦ୍ରା ନଦୀତଟରେ ଅଛନ୍ତି ବେନଥାଠ
ଉଭପ୍ନ ବଳ ସଇନ ହୋଇଲେ ଯାଇଂ ଭେଟ । ୧୪ ।
ଅସଂଖ୍ୟ ସମର ଯେ ହୋଇଲ୍ଲ ରଣରଙ୍ଗ
ନ ଘୁଞ୍ଚନ୍ତ ସଇନ ନୁହନ୍ତ କେହ୍ବି ଭଙ୍ଗ । ୧୫ ।
ରାଅ ଦିବାନ୍ତେଣ ଯେ ବଶ୍ରାମ ନାହ୍ବିଂ କଛୁ
ଯେ ଯାହାର ସମରଂ କରନ୍ତ ବଳ ଆଞ୍ଚି । ୧୬ ।
ମୀନମାସ କୃଷ୍ଣପକ୍ଷ ଅଷ୍ଟମୀର ଦିନ
ଭୂମିବାର ଜ୍ୟେଷ୍ଠା ନକ୍ଷତ୍ର ବଦ୍ୟମାନ । ୧୭ ।
ସେଦିନ ସାଂଗ୍ରାମ ଯେ ହୋଇଲ୍ଲ ପ୍ରେକମୁଖେ
କୀଚଅକ ଆପଣେ ବିଜେକଲ୍ଲକ ପ୍ରତକ୍ଷେ । ୧୮ ।
ସହସ୍ରେ ସହସ୍ରେ ଭାର ଲୁହା ଗଦା ଯେନ
ସହ୍ସ ତେଜ ପ୍ରାପ୍ରେ ଦୁସନ୍ତେକ ଜାଣି । ୧୯ ।
ଯେସନେକେ କୃତାନ୍ତକ ଯେନ କାଳଦଣ୍ଡ
ଶିରବର ମାଡ ଯେହ୍ନେ ଧାମଇ ମତ୍ତକ୍ଷଣ୍ଟ । ୨୦ ।
ତେସନେକ ସୋହୋଡ଼ ସୁନ୍ଦର ବଳବନ୍ତା
କୀଚଅକର ବଳଦର୍ପେ ତାହାର ସଇନ ଭଗନସ୍ତା । ୨୧ ।

---

୧୦।୨ ବଶାଣତେ କୋଟି ସନ୍ୟ ସମସ୍ତେ ଅଶ୍ବଯୋଦ୍ଧା ।—ବ, ଛ, ଝ
୧୪।୧ ବୀରଭଦ୍ରାନଦୀ ତଟରେ ଅଛନ୍ତ ବେନଥାଠ ।—ନ, ଠ, ଖ, ଛ
୧୬।୧ ନ ଘୁଞ୍ଚନ୍ତି ସଇନ ବଡ଼ ସମ୍ଭ୍ରରେ ରହିଛନ୍ତ ।—କ, ଘ

ଯେତୁକା ପ୍ରହାରକେ ପଡନ୍ତି ଅମାପତ ବଳ
ଯେତୁକାକେ କୀଚକ ଯେ ମନ୍ଥିଲା ମହାବଳ । ୨୨ ।
ଯେସନେକେ ମତ୍ତଗଜ ପଶଇ କଦଳୀ ବନେ
ସେହିମନ୍ତ ହୋଇଣ ନାଶିଲେ ସୈନ୍ୟମାନେ । ୨୩ ।
କାଳନଜମିର ସମଦଣ୍ଡ କଲ୍ପକ ଭଗନ
ମେଦାମେଦ ମାଂସେସେ ହୋଇଲା କର୍ଦ୍ଦନ । ୨୪ ।
ଯେ ଅବା ଲେଉଟି ନାରାଜ ବନ୍ଧଇ ତହିଂ ରହି
ତାହାଂକର ନାରାଜକୁ କୀଚକର ଭୟ ନାହିଂ । ୨୫ ।
ନାରାଜ ଫୁଟଇ କ ପର୍ବତ ଉପରେ
ଟେଳା ପ୍ରହାରେ କ ଟଳଇ ଶିବରେ । ୨୬ ।
ଯେସନେକ ପ୍ରଚଣ୍ଡ ସେ ସଙ୍କୋଚନର ବଳ
ପ୍ରତଗ୍ୟାଂ ସାମର୍ଥ ସେ ଷଣ୍ଢିଯୁ ଅସ୍ତୁର୍ଗଳ । ୨୭ ।
ମଧୁବନ ଯୁଦ୍ଧେ ଯେହ୍ନେ ହଣଇ ପାବେନ
ଯେତୁକା କୀଚକ ଧ୍ୱଂସିଲା କାଳନଜମି ସଇନ । ୨୮ ।
ଲୌହସାର ଗଦା ଧରି କାଳ ଯେ ନଜମି
କୀଚକ ଉପରେ ପିଟିଲା ବିକ୍ରମୀ । ୨୯ ।
ଦେଖିଣ କୀଚକ ଯେ ପାତିଲା ବାମକର
ଲୌହସାର ଗଦା ପଡି ତାର ଅଙ୍ଗେ ହୋଇଲା ଶତଚୂର । ୩୦ ।
ଗଦା ଭଗ୍ନ ଦେଖିଣ ସେ ପାଇଲା ମହାଭୟେ
ପ୍ରାଣ ବିକଳେ ପଳାୟେ କାଳନଜମି ରାୟେ । ୩୧ ।
ଆରେ ଆରେ ବୋଲି ହାକଇ କୀଚକ ସେନାପତି
କାଳନଜମି ଉପରେ ଗଦାୟେ ପିଟିଲାକ ଧାତି । ୩୨ ।
ଉପରେ ପଡିଣ ଯେ କୀଚକ ଗଦାବର
ଅଙ୍ଗଭଗ୍ନ ହୋଇ ରାୟେ ପଡିଲା ଭୂମିର । ୩୩ ।
ରାଜା ପଡନ୍ତେଣ ଥାଠ ଯେ ନରେଧି
କାଳନଜମି ସୈନ୍ୟଂକୁ ଗୋଡାଇ ଶରବନ୍ଧ । ୩୪ ।

---

୨୭।୨ ପ୍ରତଗ୍ୟାଂ ସାମର୍ଥ ସେ ଷଣ୍ଢିଯୁ ଅସ୍ତୁର୍ଗଳ ।—ଜ, ଛ, ନ, ଚ

ସମସ୍ତ ସଇନକ କାଞ୍ଚକ ବଧିଲେକ ମହାରୋଳେ
ମଘଦେଶ ମଚ୍ଛଦେଶ ଘେନିଲେକ ବଳେ । ୩୫ ।
ଶତେସିଂହ ପରାକ୍ରମ କାଟେଁକ ଦଣ୍ଡଧାରୀ
ମଚ୍ଛଦେଶେ: ମଘଦେଶେ ବିରାଟଙ୍କୁ କଲା ଅଧିକାରୀ । ୩୬ ।
କାଳନେଉମିର ନନ୍ଦନ ଯେ ପଳାଇଲା ହିରଣ୍ଡି
ଦୁର୍ଯୋଧନର ତହିଁ ଶରଣ ଯେ ପଶିଲା ଭୁରିତ । ୩୭ ।
ବ୍ୟାସେ ବୋଇଲେ ବାବୁ ଯେମନ୍ତ ମଚ୍ଛଦେଶ ପୁରୀ
ମଚ୍ଛଇନ୍ଦ୍ର ନାଥଙ୍କର ସଞ୍ଚିଲା ସେ ନଗରୀ । ୩୮ ।
ବାବୁ ବଇରାଷ୍ଟ୍ର ଉପର ବଂଶେ ହରିକେଶର ନୃପତି
ମଚ୍ଛଇନ୍ଦ୍ରନାଥଙ୍କୁ ସେ ବହୁତ ବିନୟେ ଭଗତି । ୩୯ ।
ସଦୟେ ବର ତାକୁ ଯାଚିଲେ ପରମ ଯୋଗୀ
ଭଗତି ଉପୁଜାଇଣ ମଚ୍ଛଦେଶ ମାଗି । ୪୦ ।
ପଦ୍ମେକ ଗୋଧନ ମଚ୍ଛଇନ୍ଦ୍ର ନାଥଙ୍କ ସଞ୍ଚିଲା
ହରିକେଶର ରାଜାକୁ ମହାତୋଷେଣ ମହାତ୍ମା ହେଲା । ୪୧ ।
ପଦ୍ମେକ ଗୋଧନ ମଚ୍ଛଇନ୍ଦ୍ରଙ୍କର ହେଲେ ପୂର୍ବେ
ଦୁହାଁଙ୍କ ଦୁଇପଦ୍ମ ଗାଈ ହୋଇଲେନ ଯେବେ । ୪୨ ।
ବରଡ ବାରଲକ୍ଷ ଅଚ୍ଛି ଯେବେ ଗାଈ
ଖଟେକ ଅଣ୍ଡିର ବଚ୍ଛା ପାଞ୍ଚଲକ୍ଷ ଅଚ୍ଛି ମାଈ । ୪୩ ।
ପ୍ରଥମେ ଚରେ ଚରେ ଦୁହିଁ ଯେ ପକାନ୍ତି ଭୂମିକି
କଟକ ବେଢି କ୍ଷୀରନଦୀ ବହୁଥାଇ ସାତ ଘଡିକି । ୪୪ ।
ଯେସନକ ସମ୍ପଦ ବାବୁ ସେ ମହାରାଜ ପୁରୀ
ଯେ ମୃତ୍ୟୁମଣ୍ଡଳେହେଁ ସେ ରାଜ୍ୟକୁ କେହି ନାହିଁ ସମସରି । ୪୫ ।
ବାବୁ ଯେକ ହେନେକ ଯେବେ ରହିବ ମଚ୍ଛପୁରୀ
ଶରୀରେ ପାପ ନ ଥିବ ତାର ଛଡମାସ ସରି । ୪୬ ।

---

୩୭।୧ କରାତର ନନ୍ଦନ ଯେ ପଳାଇଲା ହିରଣ୍ଡି ।—
ଘ, ଜ, ଛ, ଚ, ଝ, ଠ, ଞ
୪୫।୨ ଯେ ମୃତ୍ୟୁ ମଣ୍ଡଳେ ସର୍ବ ହୋଇ କେହି ନାହିଁ ସରି ।— ଘ, ଣ, ଠ

ବ୍ୟାସଂକର ବଚନେ ସନମତ କଲେ ଧର୍ମସୁତେ
ରହିବ ବିରାଟ ପୁରେ କହିବା ଉପାୟେ । ୪୭ ।
ବ୍ୟାସ ବାସୁଦେବ ଆଜ୍ଞା ଧର୍ମମ୍ୟ ପୁରୋହିତେ
ପାଣ୍ଡବ ପଞ୍ଚୁ ସାରେ ଯେ ଦ୍ରୌପଦୀ ସହିତେ । ୪୮ ।
ସ୍ୱେଚ୍ଛେକ ରହିଣ ସେ କରନ୍ତି ଗ୍ଭଲେଣି
ଗହନ ଘୋର ଅଟବ୍ୟା ସେ କେହ୍ନେଚ ନ ଜାଣି । ୪୯ ।
ମଣିଭଦ୍ରା ବୋଲିଣ ଯେକଣ ନଦୀଗୋଟି
ବହଇ ଉତ୍ତରବାହୁଣୀ ଗଣ୍ଡୁକୀ ନଦୀ ଫୁଟି । ୫୦ ।
କରୁଣାକର ବୋଲି ଯେ ସ୍ୱେକଇ ବଟ ତଳେ
ବସିଣ ଗ୍ଭଲନ୍ତି ଯେ ମଣିଭଦ୍ରା ନଦୀକୂଳେ । ୫୧ ।
ଗୋବିନ୍ଦ ବୋଇଲେ ହେ ଯୁଧିଷ୍ଠିରଂକ ପରମାଣି
ବିରାଟର ଭୃତ୍ୟ ତୁମ୍ଭେ ନୋହିବଟି ଦେବସ୍ୱାମୀ । ୫୨ ।
ବିରାଟ ସମାନେ ତୁମ୍ଭେ ବସିବ ସଭାର
ତେବେ ସେ ଭାର୍ଯ୍ୟେ ଦ୍ରଶନ କରିବେ ଆସ୍ଥାନର । ୫୩ ।
ସ୍ୱାମୀ ତୁମ୍ଭର ଯେ ବିରାଟ ନ ଜାଣଇ ପରକୃତି
ଗ୍ଭଇଂକର କୋପେ କ ତ୍ରଚଇ ମଚ୍ଛପତି । ୫୪ ।
ଆହେ ଭୀମ ଅରଜୁନ ନକୁଳ ସହଦେବ
ଆମ୍ଭର ବାକ୍ୟ ଶୁଣି ବାବୁ ଗୃହ ଯେ ପାଣ୍ଡବ । ୫୫ ।
ସମସ୍ତେ ତୁମ୍ଭେ ଥିବ ବିରାଟ ରାଜ୍ୟେ ଗୋପ୍ୟ ହୋଇ
ଅନୁବ୍ରତେ ଥିବଟି ଦ୍ରୌପଦୀଂକ ଲଯ୍ୟେ ଦେଇ । ୫୬ ।
ଯେ ଅବା ମତ୍ସ୍ୟଦେଶେ ଦ୍ରୌପଦୀଂକ ବୋଲିବ ଅମିତ
ଅବଶ୍ୟ ନାଶିବ ତାହା କରିବ ବିନଶ୍ୟତ । ୫୭ ।
ଗୁପତେ ନାଶିବ ତାହା ଜାଣନ୍ତା ନୋହି କେହି
ଜାଣନ୍ତା ହେଉ ପଛେ ତହିଂକ ବିରୋଧ ନାହିଂ । ୫୮ ।

---

୫୦।୨ ବହଇ ଉତ୍ତରବାହିନୀ ଯେ ଗଣ୍ଡୁକୀ ନଦୀ ଫୁଟି ।—ଓ, ଜ, କ, ଚ, ଛ
୫୭।୨ ଅବଶ୍ୟ ନାଶିବ ତାହା ଥିବ ତୁମ୍ଭ ମତ ।—ଽ, ଘ, କ

ଅଥବା ଜାଣନ୍ତା କେହୁ ହୋଇବାକ ଯଦ
ସେ କଥା ମୋତେ ଲଗିଲା ମୁଂ ହୋଇବ ପ୍ରତିବାଦୀ । ୫୯ ।
ଅଥବା ସେହାକୁ ପ୍ରକାଶ କରିବ ସେ ଯଦ
ତତ୍କ୍ଷଣାତ ତାର ଶିର ପକାଇବ ଛେଦ । ୬୦ ।
ଯୁଧିଷ୍ଠିରଙ୍କ ଭ୍ରାତୃଗଣ ବୋଲିବ ସେ ଅବା
ତାହା ନାଶ ତୁମ୍ଭେ କରିବଟି ବାବା । ୬୧ ।
ନାରାୟଣଙ୍କ ବଚନ ଶୁଣିଣ ସର୍ବେ କର୍ଣ୍ଣେ
ସାନନ୍ଦ ହୋଇଲେ ଶୁଣି ପାଣ୍ଡବ ପାଞ୍ଚଜଣେ । ୬୨ ।
ବ୍ୟାସେ ବୋଇଲେ ବିରାଟେ କୋପ ନ କରିବୁ ଶ୍ରମ
ଗୋପ୍ୟନ ହୋଇବୁ ସେ ନୋହିବୁ ଉଚ୍ଚକର୍ମ । ୬୩ ।
ଅଜ୍ଞାତବାସ ବରଷେ ତେରଦିନ ପର୍ଯ୍ୟନ୍ତେ
ଛିଦ୍ରେହେଂ ଜାଣନ୍ତା ନୋହିବ ଥିବଟି ଗୁପତେ । ୬୪ ।
ଯେତେକର ମଧ୍ୟେ ଯେବେ ହୋଇବଟି ଜାଣନ୍ତା
ବାହୁଡି ବନବାସ ବାର ବରଷ ଯୁଗତା । ୬୫ ।
ଏହି କଥା ଶୁଣି ମଉନ ହୋଇଲେ ଵୀରଜଣ
ଯେଥକୁ ହେ ଜଗନ୍ନାଥେ ଆମ୍ଭେ ତୋହୋର ଶରଣ । ୬୬ ।
ତୁ ଦେବ ଜଗତମୋହନ କରୁଣାମଣ୍ଡଳ
ତୁହି ଯେ ରକ୍ଷା ନାଥ କରିବୁ ସର୍ବକାଳ । ୬୭ ।
ଆମ୍ଭର ଭାର ଦେବ ନ ସହଇ ମେଦନୀ
କେମନ୍ତେ ବିରାଟ ସହରବଟି ପ୍ରଭୁପଣ ଘେନ । ୬୮ ।
ଗୋବିନ୍ଦେ ବାକ୍ୟ ଯେ ବୋଲନ୍ତି ଅଥବା
ମାଗୋ ପାଞ୍ଚାଳୀ ତୁ ଶ୍ରୀକୃଷ୍ଣଙ୍କୁ କରିଥିବୁ ସେବା । ୬୯ ।
ମାଗୋ ମହତ ଜନକୁ ଯେ ପଡଇ ପ୍ରମାଦ
ସହି ପାରିଲେ ପରମ ପଣ୍ଡିତ ହୁଅଇ ଲଭଇ ପରମ ପଦ । ୭୦ ।

---

୬୧।୨ ତାହା ବିନାଶ ତୁମ୍ଭେ କରିବଟି ମହଗର୍ବୀ ।—ଅ, ଘ, ଷ
୬୮।୨ କେମନ୍ତେ ବିରାଟ ସହିବଟି ପ୍ରଭୁପଣ ଘେନ ।—ଚ, ଛ, ଜ, ନ, ଠ
୭୦ { ମାଗୋ ମହତ ଜନକୁ ଯେ ପଡଇ ବିପତ୍ତ୍ୟ
ସହିଲେ ସେ ହୋଇ ପରମ ପଣ୍ଡିତ ।—କ, ଙ, ଘ, ଥ }

ଦ୍ରୌପଦୀ ବୋଇଲେ ତୁହେ। ସମ୍ଭୁଳ ଚିନ୍ତାମଣି
ତୁ ମାନ ଲଯ୍ୟେ ନ ଗ୍ରୁଡ଼ିବୁ ଆମ୍ଭନ୍ତ ଚକ୍ରପାଣି । ୭୧ ।
କେତେକ ମାସ ସେ ଅଜ୍ଞାତବାସ ବୋଲି
ତୋହୋର ପ୍ରସାଦେ ହରି ବଞ୍ଚିବୁ ଆମ୍ଭେ କାଲି । ୭୨ ।
ଜନଘୋଷ ବୋଲି ଯେ ଯୌକଦ୍ଦ୍ୟା ଗୋଷ୍ଠିଯେ
ପାଣ୍ଡବନ୍ତ ପ୍ରସନ୍ନେ ଶିଖାଇଲେ ପ୍ରଭୁ ଦେବରାୟେ । ୭୩ ।
ଯେମନ୍ତ ପ୍ରସନ୍ନେ ତୁମ୍ଭେ ଚିହ୍ନିବ ସବୁନ୍ତ
କେହି ଚିହ୍ନି ନୁଆରିବେ ତୁମ୍ଭ ଚିହ୍ନମୂର୍ତ୍ତି । ୭୪ ।
ମନ୍ତ୍ର ପରୀକ୍ଷ କରାଇଲେ ଜନାର୍ଦ୍ଦନ
ଯୁଧିଷ୍ଠିର ଧବଳ ବର୍ଣ୍ଣ ଦିଶିଲେ ପାଣ୍ଡୁର ବର୍ଣ୍ଣ । ୭୫ ।
ଭୀମସେନ ଶରୀର ଗଜର ବର୍ଣ୍ଣ ଦିଶି
କିଂଶୁକ ପୁଷ୍ପ ପରାୟେ ତାର ଶରୀର ପ୍ରକାଶି । ୭୬ ।
ଅର୍ଜ୍ଜୁନ ଶ୍ରୀରର ଯେ ନୀଳଉତ୍ପଳ ପ୍ରାୟେ
ଶୁଦ୍ଧ ସର୍ବ୍ବିକ ଜାଣି ଦିଶିଲା ଧନୁର୍ଜୟେ । ୭୭ ।
ନକୁଳ ଶ୍ରୀରର ଯେ ଶୁଦ୍ଧ ସୁବର୍ଣ୍ଣ ବର୍ଣ୍ଣ
ଲୋହିତ ଚମ୍ପା ଜାଣି ଦିଶିଲା ମାଦ୍ରୀର ନନ୍ଦନ । ୭୮ ।।
ସହଦେବର ଶ୍ରୀରର ସୁରଭି ପୁଷ୍ପ ଓଳି
କୁଂକୁମ ବର୍ଣ୍ଣ ଜାଣି ଦିଶିଲା ତାର ଶରୀର ସର୍ବ୍ବଳୀ । ୭୯ ।

---

୭୧।୨ ତୁ ମାନ ଦୟା କରିଥିବୁ ଚକ୍ରପାଣି ।—ଣ, ଟ
୭୧।୨ ରୁହ ପୁଣି ଆମ୍ଭନ୍ତ ନ ଛୁଡ଼ିବୁ ଚକ୍ରପାଣି ।—ଦ, ଖ, ନ, ଙ
୭୨।୨ ତୋହୋର ସୁଦୟାରେ ବଞ୍ଚିବୁ ଆମ୍ଭେ କାଲି ।— ଝ, ଘ, ନ, ଠ
୭୪।୨ କେହି ବାର ନୁଆରିବେ ରୁମ୍ଭର ବଳ ମୂର୍ତ୍ତି ।—କ, ଗ, ନ, ଠ
୭୭ { ଅର୍ଜ୍ଜୁନ ଶରୀର ଯେ ନୀଳଉତ୍ପଳ କାନ୍ତି
ନବୋଦ ସୂର୍ଯ୍ୟ ଜାଣି ଦିଶଇ ତାର ଜ୍ୟୋତି ।—ଖ, ନ }
୭୯ { ସହଦେବର ଶ୍ରୀରର ସୁରଭି ପୁଷ୍ପ ଭଳି
କନକକୁଟର ପ୍ରାୟେ ଶରୀର ତାହାର ଝଳି ।—ନ, ଜ, ଖ, ଚ, ଠ, ଡ }

ତଳତ ସୁବର୍ଣ୍ଣ ଜାଣି ଦ୍ରୋପଶର କାୟେ
ଶ୍ବଶର ବକାଶିଲ ଗଜର ବର୍ଣ୍ଣ ପ୍ରାୟେ । ୮୦ ।
ଦେଖ ହୋ ମହାତ୍ମା ନାରାୟଣଂକ ମନ୍ତ୍ରଗୋଟି
ଯେକା ମନ୍ତ୍ରକେ ସବୁର ବର୍ତ୍ତମାନ ଯେ ଲେଉଟି । ୮୧ ।
ଅଦୃଶ୍ୟ ଜଲ୍ପକ ବଦ୍ୟା ଗୋହନ ମନ୍ତ୍ର ବେନ
ପାଣ୍ଡବନ୍ତ କହିଲେ ଆବର ଜଙ୍ଘସେମ । ୮୨ ।
ଯେସନେକେ ଅନେକ ମତେତ ସେ ପାଣ୍ଡବନ୍ତ ତଆଶ
ବ୍ୟାସେ ବୋଇଲେ ଦୁର୍ଗତ ଫିଟିଲା ଯେହାଂକର । ୮୩ ।
ଯୁଧେଷ୍ଠି ଦେବଂକୁ ଯେ ନାରାୟଣ ବଚନ ପରକାଶି
ଆମ୍ଭେ ବଜେ କରୁଅଛୁ ଘେନ ବ୍ୟାସ ମହରଷି । ୮୪ ।
ଅଗ୍ୟାଂତବାସ ଭୁମ୍ଭର ନ ଜାଣିମେଟି କେହି
ଯେତେ ବୋଲ ଅନ୍ତରୀକ୍ଷେ ଗଲେ ଦେବ ଗରୁଡ ଆରୋହି । ୮୫ ।
ବ୍ୟାସେ ବାସୁଦେବେକ ବଜେ ବଇନେଶ ପିଠି
ଶୂନ୍ୟେଣ ଉହଣ ସେ ବେନୟେ ଦେଖୁଛନ୍ତ ଯେକଦୃଷ୍ଟି । ୮୬ ।
ଯୁଧେଷ୍ଠି ଦେବେ ବୋଇଲେ ଆମ୍ଭର ବୋଲ ଶୁଣ
କେବଣ ଠାବେ ଥୋଇବା ପାଞ୍ଚଧନୁ ଦଣ୍ଡଶୋଣ । ୮୭ ।
ଅନନ୍ତ କୋଟି ବ୍ରହ୍ମାଣ୍ଡର ଧନ ଅଛୁ ଲଗି
କେଉଂଣ ଠାବରେ ଯେହା ଯିବା ପରିତ୍ୟାଗୀ । ୮୮ ।
ଭୂମିରେ ଥୋଇଲେ ତ ପୃଥୀ ନ ସହିବ
ପୋଖରଣ ଥୋଇଲେ ତ ବାସୁକ ହରନେବ । ୮୯ ।
ପର୍ବତେ ଥୋଇଲେ ତ ନେବେ ବନଚରେ
ଜଳେ ବୁଡାଇଲେ ତ ନେବେ ଜଳଚରେ । ୯୦ ।

---

୮୨।୧ ଅଦୃଶ୍ୟ ଘୋଡିଣ ବଦ୍ୟା ଗୋହନ ମନ୍ତ୍ର ବେନ ।—ଅ, ଗ
୮୨।୨ ପାଣ୍ଡବନ୍ତ ଶିଖାଇଲେ ଦେବ ଚକ୍ରପାଣି ।—କ, ଖ, ଊ
୮୯।୨ ପୃଥୀରେ ଥୋଇଲେ ତ ବାସୁକ କାଢିବ ।—କ, ଗ
୯୦।୨ ଜଳେ ଥୁଅନ୍ତେଣ ନେବେ ବରୁଣ ନୃପବରେ ।—ଖ, ଣ

ଗଗଂକର ରାଜା ଯେ ଅଟଇ ଅଚଳାଚଳ ମେରୁ
ସେ ସର୍ବବଦା ଯେ ଶସ୍ତ୍ରଂକର ଗରୁ । ୯୧ ।
ମେରୁ ଅଚଳେ ଥୋଇଲେ ହରିବେ ଗନ୍ଧର୍ବେ
ଯେ ବଢାଇ ସଂକଟ ମୋତେ ପଡିଲା ବାସୁଦେବେ । ୯୨ ।
ବିଚରନ୍ତି ଧର୍ମନନ୍ଦନ ଶସ୍ତ୍ରଂକ ତେଜ ଗୁହ୍ମଂ
ଯେ ଶସ୍ତ୍ର ଥିଲେ ଆମ୍ଭେ ଗୋପ୍ୟ ହୋଇବାକ କାହ୍ମଂ । ୯୩ ।
ଯେ ମହା ଦୁରାପଦ କଥା ହୋ ପୁଚ୍ଛିବା କାହାକୁ
ଆଗହ୍ମଂ ନ ପୁଚ୍ଛିଲଇଂ ଆମ୍ଭେ ବ୍ୟାସ ବାସୁଦେବଂକୁ । ୯୪ ।
କରପତ୍ର ଯୋଡିଣ କହନ୍ତି ଧନୁର୍ଜୟେ
ଶସ୍ତ୍ର ଥୋଇବାକୁ ମୋହୋର ଅଛଇ ଉପାୟେ । ୯୫ ।
ଯୁଧିଷ୍ଠିର ଦେବ ହରଷ ହୋଇଲେ ତାହା ଶୁଣି
ଉପାୟେ ଥିଲେ ବାବୁ ଚନ୍ତାକର ଯେହ୍ମକ୍ଷଣି । ୯୬ ।
ଯୁଧିଷ୍ଠିରଂକ ବଚନ ଶୁଣିଣ କିରୀଟୀ
ହାଥରେ ଅର୍ଜୁନ ଯେ ଘେନଲେ ଖଡଗୋଟି । ୯୭ ।

---

୯୩।୧    ବିଚରନ୍ତି ଧର୍ମ ନନ୍ଦନ ସମସ୍ତଂକ ମୁଖ ଗୁହ୍ମଂ ।—ଖ, ନ, ଥ, ଛ, ଊ

୯୩।୨    "ଯେ ଶସ୍ତ୍ର ଥିଲେ ଆମ୍ଭେ ଗୋପ୍ୟ ହୋଇବାକ କାହ୍ମଂ"
ଯେହ୍ମ ସ୍ଥାନରେ 'ଖ' ଅଧିକା ଅଧିକା ପାଠ :—

ଶ୍ରୀହରି ବୋଇଲେ ତୁମ୍ଭେ ଧର୍ମରାଜ
ସହଦେବେ ପରୀକ୍ଷା କରିବ ସର୍ବ କାର୍ଯ୍ୟ ।
ଆମ୍ଭେ ଯାଉଅଛୁଂ ଯେବେ ଦ୍ୱାରାବତୀ ପୁରୀ
ଗରୁଡ ଆରୋହି ଚଳିଗଲେ ଦେବହରି ।
ବ୍ୟାସଦେବ ଚଳିଲେ ଯେ ବଦ୍ରିକା ଆଶ୍ରମେ
ଧଉମ୍ୟ ପୁରୋହିତେ ବିଜେକଲେ ଅନ୍ୟସ୍ଥାନେ ।
ଅଗସ୍ତି ବୋଲନ୍ତି ଶୁଣ ମନୁ ନରପତି
ଯେଥୁ ଅନନ୍ତରେ ପାଣ୍ଡବେ କଲେ ଯିସ ରାତି ।

ହରହର କେନଗାର କାଟିଲେ ବଦଶ୍ର
ଅବଲୋକନେ ଶୁଦ୍ଧାନ୍ତେ ବାହାର ହୋଇଲା ବେନବୃକ୍ଷ । ୯୮ ।
ପର୍ବ ପଶ୍ଚିମ ହୋଇଣ ଯେ ବେନମୂର୍ତ୍ତି
ଧବଳ ନୀଳବର୍ଣ୍ଣ ଦଶଇ କେନଂକର କାନ୍ତି । ୯୯ ।
ଶମୀ ଶିଂଶୁପା ବୋଲାଣ ବେନବୃକ୍ଷ ଗରିଷ୍ଟେ
ମଧ୍ୟରେ ବସ୍ତୀର୍ଣ୍ଣ ତାହାର ଅଛଇ ଯେକ କୋଟେ । ୧୦୦ ।
ନବତାଳ ଗଣ୍ଡିର ଯେ ବସ୍ତାର ଯେକକାଠ
କୋଶେକ ବସ୍ତାର ଡାଳ ଆକାଶେଣ ଯୋଟି । ୧୦୧ ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମେ ଚଉଡାଳ
ବସ୍ତୀର୍ଣ୍ଣ ହୋଇ ଯେ ଦଶଇ ପରିମଳ । ୧୦୨ ।
ଉପରେ ଡାଳେକ ଯେ ପଞ୍ଚତାଳ ଉଚ୍ଚର୍ଗ
ଯୋଜନେକ ଆଯେତନ ବୃକ୍ଷର ପ୍ରତି ଦାର୍ଘ । ୧୦୩ ।
ନବତାଳ ପରିଯନ୍ତେ ଡାଳ ନାହିଂ କଛୁ
ଯେସନେକ କରି ସେ ବୃକ୍ଷ ସଞ୍ଜିଲ ସବ୍ୟସାଚୀ । ୧୦୪ ।
ଯୁଧିଷ୍ଠିର ଦେବେ ଆଶ୍ରିଯ୍ୟ ହୋଇଲେ ତାହା ଶୁଣି
ବାବୁ ଯେତେନେକ ସଞ୍ଚତରେ କରିଥିଲୁ କାହିଂ । ୧୦୫ ।
ବାବୁ ବଡାଇ ଆଶ୍ରିଜ୍ୟରେ ଅଛଇ ଯେ ବୃକ୍ଷ
ଶୁଣିବେ ଇଚ୍ଛା ମୋହୋର କହ ରେ ବଦଶ୍ର । ୧୦୬ ।
ଅର୍ଜୁନ ବୋଇଲେ ସ୍ୱାମୀ ଶୁଣିମା ଧନୁର୍ଜୟେ
ଯେ ବୃକ୍ଷର ଚରିହ ମୁଂ କହଇ ଉପାୟେ । ୧୦୭ ।
ଭୁଲମାସେ କୃଷ୍ଣପକ୍ଷ ଅମାବଇ ତଥି
ସ୍ୱାଗ୍ଧ ନାମରେ ନକ୍ଷତ୍ର ବାର ବୃହସ୍ପତି । ୧୦୮ ।
ନାଗନାମେ କରଣ ଯେ ଆୟୁଷ୍ମାନ ଯୋଗ
ଈଶ୍ୱରେ ବଜେକଲେ ହଠକେଶ୍ୱର ସ୍ୱର୍ଗ । ୧୦୯ ।
ସ୍ୱାମୀ ହିରଣାକ୍ଷ୍ୟ ବୋଲିକରି ଯେକଇ ଅସୁରି
ବଇଲୋଚନ ଭଗିନୀ ସେ ଅଛଇ ଦୋଗୃରୀ । ୧୧୦ ।

୯୯।୨ ଧବଳ ନୀଳବର୍ଣ୍ଣ ଦଶଇ ଦବ୍ୟଜ୍ୟୋତ୍ର ।—ଝ, ଞ

ସୁବାହୁ ବଇତର ସେ ଅଟଇ ଗରଜା
କେଶବ ରୂପେ ତାହା ବଧିଲେ ଦେବରାଜା । ୧୧୧ ।
ସୁବାହୁ ବଧ ହୁଅନ୍ତେ ଅସୁରୀ ହରଣାକ୍ଷୀ
ପାତାଳପୁରକୁ ପଳାଇଲା ନିଜ ଭୁବନ ଉପେକ୍ଷି । ୧୧୨ ।
ସେ ହରଣାକ୍ଷୀ ଗୋପ୍ୟଗଲା ପାତାଳ ସ୍ୱର୍ଗପୁରୀ
ସାତବଟ ତଳେ ସେ ମାନବୀ ରୂପ ଧରି । ୧୧୩ ।
ବଇଲ ବାହାନେ ସେ ଚଳନ୍ତି ଦେବକାଶୀ
ସାତବଟ ତଳେ ଭେଟିଲେ ଦେବ ଆସି । ୧୧୪ ।
ପାର୍ବତୀ ସାରକ୍ଷେ ଯେ ତାହାର ରୂପ ଗୋଟି
ଦେଖିଣ ମଦନେ ବଶ ହୋଇଲେ ଧୂର୍ଜଟୀ । ୧୧୫ ।
ବୃଷଭଙ୍କ ଉଭୁରଣ ଦେବ ବିଶ୍ୱବାସୀ
ସେ ହରଣାକ୍ଷୀଙ୍କ ଦେଖି ବଚନ ପ୍ରକାଶି । ୧୧୬ ।
ସଦାନନ୍ଦଙ୍କଇଂ ଦେଖି ଉଠିଲା ମାନବୀ
ରୁଦ୍ର ଦେବତାର ପାଦେ ବନ୍ଦୋଯ୍ୟୀ ଦୟ୍ୟୀମା । ୧୧୭ ।
ଶୃଙ୍ଗାରେ ହେଳା ଯେ ଅଟଇ ପରମ ଯୋଗୀ
କାମ୍ୟେକ ପୁରୁଷ ରତିରଙ୍ଗେ ବଡଭୋଗୀ । ୧୧୮ ।
ସନ୍ନିଧେ କେହି ନାହିଂ ଦେଖିଲେ ଯେବେକାନ୍ତେ
ଆକ୍ରେଷି ଧଇଲେ ତାକୁ ମଦନ ଆରତେ । ୧୧୯ ।
ରାକ୍ଷସୀର ଭୁଲେ ରମଣ ବିଶ୍ୱବାସୀ
ପୁରୁଷ ବଶ ବିଦ୍ୟା ଜାଣଇ ସେ ରାକ୍ଷସୀ । ୧୨୦ ।
ଅନେକ ରଙ୍ଗ କଉତୁକ ଶୃଙ୍ଗାର ରସମେଳେ
କପିଳାସ ପୁରେ ବିଜେ ନ କଲେ ଦେବ ସୁତଳେ । ୧୨୧ ।

---

୧୧୩।୨ ସାଟୀବଟ ତଳେ ସେ ମାନବୀ ରୂପ ଧରି ।—ଣ, ତ, ଥ, ଞ, ଘ

୧୧୪।୨ ପାର୍ବତୀ ସାରକ୍ଷେ ଦଶେ ତାର ରୂପରାଶି ।—ନ, ଟ, ଠ

ଅନେକ କାଳ ବାଟ ଗୃହାନ୍ତ ଗିରିଜା
ଆରେ ନନ୍ଦୀକେଶ୍ୱର ନଇଲେ ତ ଦେବରାଜା । ୧୨୨ ।
ବାବୁ ଗଙ୍ଗାର ମଧ୍ୟରେ ଅବା ଈଶ୍ୱର ଛନ୍ତି ରହି
ଅନେକ ବିମୁଖ ଦେଖା ହୋଇଲେ ବାଟ ଗୃହିଂ । ୧୨୩ ।
ମାୟା ମୋହିମା ସେ ଅଟଇ ବାରାଙ୍ଗନା
କୁଗ୍ୟାନ କୁମନ୍ତ୍ର ସେ ଜାଣଇ ଅପୁଷ୍ପ ଅପର୍ଣ୍ଣା । ୧୨୪ ।
ପାତାଳ ଭୁବନେ ସେ ରହିଲେ ବିଶ୍ୱବାସ
ପିଙ୍ଗୃଶୁଣୀ ସଙ୍ଗତେ ରହିଲେ ଏକାଦଶ ବରଷ । ୧୨୫ ।
ଅନେକ ଦୂତ ଯେ ପେଷିଲେ ଶାକାମ୍ଭେଶ୍ୱ
ସ୍ୱର୍ଗ ମର୍ତ୍ତ୍ୟ ଭୁବନ ନ ପାଇଲେ ଲୋଡ଼ିକରି । ୧୨୬ ।
ସ୍ୱାମୀ କକଡ଼ା ମାସ ଶୁକଳ ପଞ୍ଚମୀ ଅଟଇ
ଯେ ଦିନ କଇଲାସେ କୃଷ୍ଣ ସଙ୍ଗେ ଥିଲ ଯାଇ । ୧୨୭ ।
ଗୋବିନ୍ଦ ପୃଚ୍ଛାକଲେ ଅମଙ୍ଗଳ ଭୁବନ ଦେଖି
ନାରାୟଣ ବଦନ ଗୃହିଂ ବୋଇଲେ ଶଶୀମୁଖୀ । ୧୨୮ ।
ଈଶ୍ୱରେ କାହିଂ ଛନ୍ତି ଦେଖିଲ କି ଜଗନ୍ନାଥେ
କପିଳାସୁଂ ଗଲେକ ଏକାଦଶ ବରଷ ପରିଯନ୍ତେ । ୧୨୯ ।
ଗୋବିନ୍ଦ ଗୃହିଂଲେ ଯେ ମୋହୋର ବଦନ
ଈଶ୍ୱରଂକ ତଦନ୍ତ କି ଜାଣିଛୁ ଅରଜୁନ । ୧୩୦ ।

---

୧୨୨।୧ "ଅନେକ କାଳ ବାଟ ଗୃହାନ୍ତ ଗିରିଜା"
ଏହି ପାଠ ପରେ 'ଛ' ପୋଥିରେ ଅଧିକା ପାଠ :—

କେବଣ ଉପାୟେ କରିବା କହରେ ନନ୍ଦୀକେଶର
ତୁ ଜାଣୁକି କେବଣ ଠାରେ ରହିଅଛନ୍ତି ଶୂଳଧର ।
ନନ୍ଦୀକେଶର ବୋଇଲା ମାଗୋ ନ ଜାଣଇ ମୁହିଂ
ଏକସରେ ଈଶ୍ୱରେ ଗଲେ କାହାକୁ ନ କହି ।
ଏମନ୍ତ ଶୁଣି ପାର୍ବତୀ ଯେ ଅନେକ ବିକଳ
ନୟନଯୁଗ୍ମଂ ଲୋତକ ବହଇ ଢଳଢଳ ।

୧୨୪।୨ କୁଗ୍ୟାନ କୁମନ୍ତ୍ର ସେ ଜାଣଇ ଅପୁଷ୍ପ ଅନପୂର୍ଣ୍ଣା ।—ଗ, ନ, ଛ, ଠ

ନାରାୟଣଂକ ବଚନେ ଗାଣ୍ଡିମ ଧନୁ ଧର
ନାରାଜ ପୂରୋଇଣ ଈଶ୍ୱରଂକୁ ଲକ୍ଷ୍ୟେ କର । ୧୩୧ ।

ମନଭେଦୀ ନାରାଜ ଧନୁରେ ପୂରୋଇଲେ
ଅନନ୍ତ କୋଟି ବ୍ରହ୍ମାଣ୍ଡ ଦିଶଇ ଗୃହ୍ୱଂଲେ । ୧୩୨ ।

ନାରାଜ ପୂରୋଇଣ ଗୃହ୍ୱଂଲେ ସବ୍ୟସାଚୀ
ଦେଖିଲ୍ ରୁଦ୍ରଦେବତାଂକୁ ଘୋଟିଛି ରାକ୍ଷସୀ । ୧୩୩ ।

ପାର୍ଥଙ୍କଂକ ଅଗ୍ରତେ ଯେ ଅର୍ଜୁନ କହିଲ୍
ମାଗୋ ହରଣାକ୍ଷୀ ରାକ୍ଷସୀ ତୋ ଈଶ୍ୱରଂକୁ ମୋହିଲ୍ । ୧୩୪ ।

ସ୍ୱାମୀ ହଠକେଶ୍ୱର ଭୁବନକୁ ଯିବାର ବାଟର
ଅନ୍ଧାର ଭୁବନେକ ଯେ ଅଛଇ ଅଭ୍ୟନ୍ତର । ୧୩୫ ।

ସେହି ବାଟରେ ଯେ ଯାଆନ୍ତେ ଦେବକାଶୀ
ପାର୍ବତୀ ରୂପ ଧରଣ ଯେ ମୋହିଲ୍ ରାକ୍ଷସୀ । ୧୩୬ ।

ଗଜଗ ବୋଇଲେ ମୋତେ କର ପ୍ରତିକାର
ଯେମନେକେ ରାକ୍ଷସୀ ମୁଖଂ ପାଇବୋନ୍ତୁ ଦେବହର । ୧୩୭ ।

ହୃଦଗତେ ଚନ୍ତଇ ଅର୍ଜୁନ ଶରଭେଦୀ
ଲକ୍ଷେ ଯୋଜନକଇଂ ବୋଲି ଶର ଯେ ସମ୍ପାଦ । ୧୩୮ ।

ହରଣାକ୍ଷୀ ବସିଅଛି ସଦାନନ୍ଦ କୋଳେ
ରଙ୍ଗରସ କୁତୂହୋଳ ପରହାସ ବେଳେ । ୧୩୯ ।

ଅର୍ଜୁନ କହିଲେ ମାୟେ ସ୍ତ୍ୱେସନେକ ଚରିତ
ଶୁଣିଣ ଉତ୍ତର ଯେ ହଅନ୍ତି ଜଗନ୍ମାତ । ୧୪୦ ।

କାବୁ ତୁ କ୍ଷବୀ ଅଟୁ ବୀର ଧନୁର୍ଜୟେ
ଈଶ୍ୱରଂକ ଆସିବାକୁ କର ତୁ ଉପାୟେ । ୧୪୧ ।

ଅର୍ଜୁନର ଶର ଭେଦିଲ୍ ଯୋଜନ ଲକ୍ଷ ଲକ୍ଷ
ଟଳିପଡେ ରାକ୍ଷସୀର ହୃଦପରେ ପ୍ରତକ୍ଷ । ୧୪୨ ।

ହୃଦଗତେ ପଡି ନାରାଜ ପିଠି କନ୍ତକ ଗଲ କଣ୍ଠି
ଗର୍ଜଣ ରାକ୍ଷାସୁଣୀ ଯେ ପଞ୍ଚୁ ତାଳ ଉଚ୍ଛେ ଉଠି । ୧୪୩ ।

ଈଶ୍ୱର ଦେଖନ୍ତେ ଯେ ଦହନ ତାର କାୟେ
ଅସ୍ଥି ଚର୍ମ ମାଂସ ନ ରହିଲା ନାରଜର ଘାୟେ । ୧୪୪ ।
ଘୋର ଅନ୍ଧକାର ଯେ ହୋଇଥିଲା ଭୁବନ
କପିଳାସ ପୁରେ ଆସି ଭଜୟେ ତ୍ରିଲୋଚନ । ୧୪୫ ।
ଦେଖିଣ ଆଶ୍ଚର୍ଯ୍ୟ ଯେ ହୋଇଲେ ମହାମାୟେ
ବୋଇଲେ ଫାଲଗୁନ ଧନ୍ୟ ଧନ୍ୟ ତୋର କାୟେ । ୧୪୬ ।
ଅନେକ ପ୍ରଶଂସା ମୋତେ କଲେ ମହାମାୟୀ
ଅତହିଂ ଆନନ୍ଦ ହେଲେ ଈଶ୍ୱରଙ୍କୁ ପାଶେ ଗୃହିଂ । ୧୪୭ ।
ଈଶ୍ୱରଙ୍କୁ ଦେଖି ଆମ୍ଭେ ପାଥ ଜଗନ୍ନାଥ
ପାର୍ବତୀଙ୍କ ସହିତେ ଆମ୍ଭେ ଯେ ହୋଇଲୁ ପ୍ରଣପତ୍ୟ । ୧୪୮ ।
ଈଶ୍ୱର କହିଲେ ନାରାୟଣଙ୍କ ଅଗ୍ରତେ
ପାର୍ବତୀ ସାରକ୍ଷେ ଅପୂର୍ବ ରୂପ ଦର୍ଶୀଲକ ମୋତେ । ୧୪୯ ।
ସେ ଅନ୍ଧାର ଘୋର ଭୁବନ ଦର୍ଶୀଲ କପିଳାସ ସ୍ୱର୍ଗ ଜାଣି
ମୋହୋର ଗ୍ୟାନ ନାହିଂ ସେ ପୁରେ ଥିଲା ପିତୃଶୁଣୀ । ୧୫୦ ।

---

୧୪୪।୨ ଅସ୍ଥ ଚର୍ମ ମାଂସ ତାର କିଛୁ ନ ଦେଖିଲେ ଦେବରାୟେ ।—
କ, ଗ, ଣ, ଙ, ଘ, ଅ

୧୪୪।୨ "ଅସ୍ଥି ଚର୍ମ ମାଂସ ନ ରହିଲ ନାରଜର ଘାୟେ"
ପରେ 'ଠ' ପୋଥିରେ ଅଧିକା ପାଠ :—।
ଈଶ୍ୱରଙ୍କ ଆଗେ ତାର ଯାଅନ୍ତେ ଜୀବନ
ଶିବଙ୍କର ତୁଟିଗଲା ତା ମାୟା ବନ୍ଧନ ।
ତହୁଂ ମନେ ପଡ଼ିଗଲା କଇଲାଶ ନଗଗ୍ରୀ
ବେଗେ ଭଜୟେ କରିଲେ ସେ ତ୍ରିଶୂଳଧାରୀ ।

୧୪୬।୨ ଉମା ବୋଇଲେ ସାଧୁ ସାଧୁରେ ଧନୁର୍ଦ୍ଧରେ ।—କ, ଣ, ଗ, ଅ

ଭଗନ୍ତି ମହିମାଂ ତାର କହିତେ କ ପାରି
ଶରୀର ବନ୍ଧଣ କେ ଆସିବାକ ଉବୁରି । ୧୫୧ ।
କାମଦେବ ବୋଲକରି ଯେତେକ ବଳବନ୍ତ
ଯେତେକ ଅସାଷ୍ଟମ ସେ କରଇ ଦଇବତ । ୧୫୨ ।
ଈଶ୍ୱରେ ବୋଇଲେ ପାଣ୍ଡବ ଜୀବନ ଚୋର ଧନ
ଯେତେବେଳେ ଦୁର୍ଗତିରୁ ଅଇଲୁ ମୋତେ ଘେନ । ୧୫୩ ।
ନାରାଜର ମହିମାଂ ଦେଖ ହୋ ବନମାଳୀ
ମୋହୋର କୋଳେ ଥାଇଂ ଅସୁରୀର ଗଲ ଜଳି । ୧୫୪ ।
ନାହିଂ ନାହିଂ କ୍ଷତ୍ରୀ ଯେ ତିନ ଭୁବନ ସ୍ୱର୍ଗ
ଗୁଣସାଗର ପାଥ ଖାଇ ଅଭୟେ ବର ମାଗ । ୧୫୫ ।
ଯେତକ ସମାସ୍ୟାଯେ ବୋଇଲେ ହରହର ବେନ
ଯେ ଆମ୍ଭର ସତ୍ୟ ସତ୍ୟ ଦେବୁଂ ଫାଲଗୁନ । ୧୫୬ ।
ପାବତୀ ବୋଇଲେକ ବର ମାଗ କନା ପାଥ
ଗୁଣବନ୍ତ ଲୋକଂକର ଭଗତ ବହୁତ । ୧୫୭ ।
ଶୁଣ ହୋ ମନୁଷ୍ୟେ ବଦନ୍ତି ଅଗସ୍ତି ମୁନିବର
ହରହର ଗିରିଜା ଯେତକାବେଳେ ଦଲେ ବର । ୧୫୮ ।
ଅର୍ଜୁନ ବୋଇଲେ ସ୍ୱାମୀ କିସ ବର ମାଗିବି
ପୁଣ ପୁଣ ଜନ୍ମିଣ ତ ନୋହିବ ହିଜୀବି । ୧୫୯ ।

---

୧୫୧।୨  ଶରୀର ବନ୍ଧଣ କେ ଆସିବାକ ଉବୁରି"
ପରେ 'କ' ପୋଥିରେ ଅଧିକା ପାଠ :—
ଭଗତର ମହିମାଂ କହିତେ ନ ଜାଣି
ପୁରୁଷବଶ ମନ୍ତ୍ରବିଦ୍ୟା ସେ ଜାଣଇ ମୋହିନୀ ।
ପୁରୁଷ ଦେହ ଧରି କେ ଆସିବ ଉବୁରି
ମୋହିନୀ ରୂପ ଧରି ସେ ବହିଲ ଚରୁଣି ।

୧୫୬।୧  ସମାସ୍ୟା—ବଚନ

ଅର୍ଜୁନ ବୋଇଲା ସ୍ୱାମୀ ଯେମନ୍ତ ବାଞ୍ଛା କରଇ
ହରିହର ଗିରିଜାଯେ ବେଳେକେ କହଇ । ୧୬୦ ।
ସ୍ୱାମୀ ଅଜ୍ଞାତବାସ ବୋଲି ଆମ୍ଭଙ୍କୁ ଧର୍ମର କଷଣ
ଗୋପ୍ୟାନ ହୋଇବୁ ଯାଇଂ କବଟ ଗର୍ଜ୍ୟେଣ । ୧୬୧ ।
ହରିହର ପାଣ୍ଡବ ତୁମ୍ଭେ ହୋଇବ ବୃକ୍ଷଗୋଟି
ଆମ୍ଭର ଶସ୍ତ୍ରମାନ ଥୋଇବୁ ବୃକ୍ଷକୋଟି । ୧୬୨ ।
ଅର୍ଜୁନର ମୁଖୁଂ ଯେସନେକ ବାକ୍ୟ ଶୁଣି
ଡାହାଣ ଭୁଜୁଂ କେଶବ ବାହାର କଲେ ଶ୍ରୋଣି । ୧୬୩ ।
ଈଶ୍ୱରଙ୍କର ବିଭୂତି ପାଣ୍ଡବଙ୍କର ଜପାମାଳ
ବ୍ରହ୍ମାଙ୍କର କପୋଳ ଭରି ମର୍ଦ୍ଦିଲେ ବନମାଳୀ । ୧୬୪ ।
ସବୁନ୍ତ ସମାଯୁକ୍ତ କରି ନାରାୟଣ ଚକଟି
ବେନକରେ ବଳ ଦେବ ଭିଆଇଲେ ଖଣ୍ଡଗୋଟି । ୧୬୫ ।
ଈଶ୍ୱରେ ବୋଇଲେ ତୋର ଯେତେବେଳେ ପଡ଼ଇ କାର୍ଯ୍ୟ
ଭୂମିରେ ତିନଗାର କାଟିଲେ ହୋଇବ ସରେଜ । ୧୬୬ ।
ଅର୍ଜୁନ କହିଲେ ଯେ ଯୁଧିଷ୍ଠିରଙ୍କ ଆଗର
ଶମୀ ଶିଂଶୁପାଯେ ଯେ ପାଣ୍ଡବ ହରିହର । ୧୬୭ ।
ସ୍ୱାମୀ ଶମୀବୃକ୍ଷ ଅର୍ଦ୍ଧଅଙ୍ଗ ଯେ ସଦାଶିବର କାୟେ
ଶିଂଶୁପା ଅର୍ଦ୍ଧଅଂଗଟି ବାସୁର ଅଂଶ ସ୍ୱୟେଂ । ୧୬୮ ।
ବିଭୂତି ମେଞ୍ଚିଲେ ଯେ ବ୍ରହ୍ମାର କପୋଳ
ଧାତାର ଗୃହ ବଦନ ଯେ ବୃକ୍ଷର ଗୃହଡାଳ । ୧୬୯ ।
ସ୍ୱାମୀ ମଧ୍ୟେଣ କୋଟେକ ଅଛୁ ପ୍ରତକ୍ଷେ ଗିରିଜା
ଯେହୁ ସେ ଶମୀବୃକ୍ଷଟି ଜାଣ ଧର୍ମରାଜା । ୧୭୦ ।

---

୧୬୨।୨ ପାଞ୍ଚ ଭାଇଙ୍କ ଶହସ୍ର ବୃକ୍ଷେ ଥୋଇବୁଟି । ଙ୍ଗ, ନ, ଖ, ଛ
୧୬୪।୧ ସଦାନନ୍ଦର ବିଭୂତି ପାଣ୍ଡବର ମଳ ।—ନ, ଣ
୧୬୫।୨ ବେନକରେ ଧରି ଦେବ ଭିଆଇଲେ ବୃକ୍ଷଗୋଟି ।—
ଙ, ଚ, ଟ, ନ, ଜ

ଅର୍ଦ୍ଧଅଙ୍ଗ ଯେବେ ନୋହୁବଟି ଯେହ୍ନାଂକର
ଆନ କେ ସହ୍ମ ପାରିବଟି ଯେ ଶସ୍ତ୍ରଂକର ଭର । ୧୭୧ ।
ଶୁଣିଣ ଅର୍ଜୁନକଇଂ ପ୍ରଶଂସା କରନ୍ତି ଯୁଧିଷ୍ଠି
ଯେତେହେନେକ ସଞ୍ଚିତ କରିଅଛୁ ମୋହୋର ଭାଇଗୋଟି । ୧୭୨ ।
ଅର୍ଜୁନ କହିଲେ ମୁଂ ଡାଳେ ଯାଇଂ ଉଠଇ
ଭୀମସେନ ଠାକୁରେ ବଢାଇ ଦିଅନ୍ତୁ ଥୋଇବି କ୍ରୋଡେ ନେଇ । ୧୭୩ ।
ବୃକ୍ଷକୁ କୋଳକରି ବୁଜିଲା ନୟନ
ଡାଳେ ଯାଇଂ ବସିଲେ ମନଭେଦୀ ଅର୍ଜୁନ । ୧୭୪ ।
ନବତାଳ ନବଲକ୍ଷ ଉଚ୍ଚର୍ଗ ଭୀମସେନର କାୟେ
ଶସ୍ତ୍ର ବଢାଇ ଦିଅନ୍ତେ ଥୁଅଇ ଧନୁର୍ଜୟେ । ୧୭୫ ।
ପାଞ୍ଚଧନୁ ବିଶଦୋଣ ଥୋଇଲା କ୍ରୋଡର ଗର୍ଭଗତେ
ଭୀମସେନର ଗଦାବର ନକୁଳର କୋନ୍ତେ । ୧୭୬ ।
ଅର୍ଜୁନର ଗାଣ୍ଡିବ ଯୁଧିଷ୍ଠିଂକର ଶାୟକ
ସହଦେବଂକର ଖଡଗ ଫଳା ନେଇ ଥୋଇଲାକ । ୧୭୭ ।
ବୃକ୍ଷରୁ ଓହ୍ଲାଇ ସେ ପାଣ୍ଡବ ଫାଲଗୁନ
ଶମୀବୃକ୍ଷକୁ ସେ ବହୁତ ବନୋୟୀ ଦକ୍ଷିଣା । ୧୭୮ ।
ଜୟନ୍ତୁ ମହନ୍ତ ବୃକ୍ଷ ଗଗନଭେଦୀ ସ୍ୱାମୀ
ପ୍ରଳୟ ଉଦ୍ଧାରଣ ତୁ କଳପି ମହାବ୍ରହ୍ମି । ୧୭୯ ।

---

୧୭୫।୧ ନବତାଳ ଉତ୍ସର୍ଗେ ଯାଇଂ ଲଗିଲା ଫାଲଗୁନ ।—କ, ଖ, ଗ, ଅ, ଘ
୧୭୫।୧ ଶତେତାଳ ଉତ୍ସର୍ଗ ସେ ଭୀମସେନର କାୟେ ।—କ, ଖ, ଗ
୧୭୮।୨ ସବଜନ ତାରଣ ରୁ ଅଟୁ ବୃକ୍ଷ ବେନ ।—ଖ, ଗ
୧୭୯।୧ "ପ୍ରଳୟ ଉଦ୍ଧାରଣ ରୁ କଳପି ମହାବ୍ରହ୍ମି" ପରେ
'କ'.ପୋଥିରେ ଅଧିକା ପାଠ :—
ସଂସାର ଅସ୍ତ୍ର ଦ୍ରୋଣଗୁରୁ ଭେଟି
ମହାଯୋଗ ବୃକ୍ଷକୁ ଭେଟିଲେ ଯୁଧିଷ୍ଠି ।
ହରିହର ଅବତାର ଅଟଇ ସେ ବୃକ୍ଷ
ତେବେ ସେ ଶସ୍ତ୍ର ବହି ପାରିଲେ ଶରିଷ୍ଟ ।
ଯେବଣ ସହସ୍ର ସହି ନୁଆରଇ ପୃଥୀ
ସେ ବୃକ୍ଷ ତହିଂ ଛେଦିଲେ ପ୍ରଜାପତି ।

ସଂକେତ ବାଞ୍ଛାବୃକ୍ଷ ମହତ ବୃକ୍ଷଗୋଟି
ଗଗନକୁ ଶୀଖା ପାତାଳକୁ ପାଞ୍ଚ ଯୋଜନ କଣ୍ଟି । ୧୮୦ ।
ଅକାମ ପୁରୁଷ ତୁ ଅକାମ ଅର୍ଥଦାତା
ଯେମନ୍ତେ ବାଞ୍ଛା ତୁ ପ୍ରାପତ କରନ୍ତା । ୧୮୧ ।
ଶ୍ରୀ ବାଞ୍ଛାବଟ ତୁ ମହତ ବୃକ୍ଷ ଶମୀ
ଶୂଦ୍ରମୁନ ସାରଳା ଦାସ ଶତେ ସହସ୍ର ଦଣ୍ଡ ପରଣାମି । ୧୮୨ ।
କ୍ରୋଟରେ ଶହସ୍ରମାନ ପଶିଲା ଯେତେବେଳେ
ଆଦିତ୍ୟ ଉଦୟେ ପ୍ରାପ୍ତେ ଦଶଇ ବାହକାଳେ । ୧୮୩ ।
ଶୁଣ ହୋ ବଇବସ୍ୱତ ମନୁ ଶମୀବୃକ୍ଷର ମହିମାଂ
ସେ ବୃକ୍ଷରେ ବସି ନବସଷ୍ଟି ଭଆଇଲା ବେଦବ୍ରହ୍ମା । ୧୮୪ ।
ସାରଥିକଂକ ଖମ୍ବ (ପକ୍ଷୀ) ଦ୍ରୋଣ ଧର୍ମକ ଗୃଦ୍ରପକ୍ଷୀ
ମହାଯୋଗ ଭେଦ ସେ ଭେଟିଲେ ତାକ୍ଷୀ । ୧୮୫ ।
ଯେ ଗୃଦ୍ରପକ୍ଷୀ ପୁଣ ବୃକ୍ଷର ଡାଳରେ ଥାଆନ୍ତି
ସର୍ବଦା ରାମନାମ ଯେ ସ୍ମରଣ କରନ୍ତି । ୧୮୬ ।
ଯୁଧିଷ୍ଠି ବୋଇଲେ ବାବୁ ଶୁଣ ଫାଲଗୁନ୍ୟ
ଯେତିକା ଧନୁରେ ଲଗିଅଛୁ ବାବୁ ବାଆନ କୋଟି ଭଣ୍ଡାର ଧନ ।୧୮୭।
ଦଇତ ଦାନବ ଦକ୍ଷ କନ୍ନର ଗନ୍ଧର୍ବେ
ନ ପୁଣ ହରଣ କରନ୍ତି ଯେ ରତ୍ନାକରଂ ଲୋଭେ । ୧୮୮ ।
ଅଥବା ଦଗପାଳମାନଂକର ଚନ୍ଦ୍ରଂକ ଇଚ୍ଛା
ସୁବୁଦ୍ଧି ସୋଦରରେ କେମନ୍ତେ ହୋଇବ ଯେ ରକ୍ଷା । ୧୮୯ ।
ଅର୍ଜୁନ ବୋଇଲା ଯେତିକୁ ଦେବ ନ କର ଚିନ୍ତା
ବଡ ବଳବନ୍ତ ପୁରୁଷେକ ସେ ଅଛଇ ରଖନ୍ତା । ୧୯୦ ।
ସେହି ଖଡ ଯେଣ ଲେଖନ କଲ୍ୟକ ପିତୁଳୀ
ସେହି ପିତୁଳୀ ବଦାର ବାହାର ହୋଇଲା ପ୍ରଚଣ୍ଡ ବଳୀ । ୧୯୧ ।

---

୧୯୦।୨ ପୁରୁଷେକ ରକ୍ଷା କରବ ସେ ବଡାଇ ବଳବନ୍ତା । – ଣ, ବ
୧୯୧।୨ ସେ ପିତୁଳ ବଦାର ବାହାର ଗନ୍ଧର୍ବ ପ୍ରଚଣ୍ଡ ବଳୀ । ତ, ଡ

କର ଚରଣ ନାହିଂ ଯେ ନାହିଂ ତାର ମୁଣ୍ଡ
ପେଟ ପିଠି ନାହିଂ ଅଂଗ ମେଦ ମୃତ୍ତିପିଣ୍ଡ । ୧୯୨ ।
ଯୁଦ୍ଧିଷ୍ଠିରଙ୍କ ପ୍ରଣପତ୍ୟ କରି କହଇ ଧନୁର୍ଜୟେ
ଯେ ରକ୍ଷା କରିଥିବନ୍ତି ଅଗ୍ୟାଂତବାସ ସରିବା ଯାଏ । ୧୯୩ ।
ଯୁଦ୍ଧିଷ୍ଠିର ଦେବେ ହସିଲେ ଭୀମସେନ ମୁଖ ଗୃହିଂ
ବାବୁ ଯେହେନ୍ନେକ ପରପଞ୍ଚ ଦେଖିଲୁତ ଆମ୍ଭର ନାହିଂ । ୧୯୪ ।
ଆରେ ମୁହିଂ ଅଟଇ ଧର୍ମପୁରୁଷ ଯଥାର୍ଥ ପ୍ରକୃତ
ହାଥସୁଖେ ପଶା ଖେଳ ହରାଇଲ ରାଜ୍ୟ ଯେ ବଭୂତ । ୧୯୫ ।
ଆରେ ମୋତେ ଖଟାଉଣୀ ନମନ୍ତେ ତୋହୋର ଯେତେ ଛଟା
ଶହସ୍ରନ୍ତ ରଖିବ କେମନ୍ତେ ଯେ ମୃତ୍ତିପିଣ୍ଡ ଗୋଟା । ୧୯୬ ।
ଅର୍ଜୁନ ବୋଇଲୁ ଦେବ ଶୁଣିମା ଧର୍ମସୁତେ
ସମସ୍ତ ଗୋପ୍ୟାନ କଲୁ ଯେ ସଂସାର ଜନହିତେ । ୧୯୭ ।
ସ୍ୱାମୀ ଶିର କନ୍ଧ ନାସା ଶ୍ରବଣ ଗୃର ଚରଣ ହୋଇଲେ
ମେରୁ ଟଳିବନା ଯେହ୍ୱାର ହାକ ହଲେ । ୧୯୮ ।
ଅର୍ଜୁନ ତ ଲୟେ କରି ଚନ୍ତାଲ ବକ୍ଷସ୍ଥଳେ
ଧାଉକାରେ ମୃତ୍ତିପିଣ୍ଡ ଲାଗିଲାକ ଯାଇଂ ତାଳେ । ୧୯୯ ।
ଅଦଭୁତଯେ ଅବଲନେ ଲାଗିଲୁ ତାର କାଯେ
ବୃକ୍ଷର ଉପରେ ବୁଲିଲୁ ସେ ତମ୍ଭାଚକ୍ର ପ୍ରାୟେ । ୨୦୦ ।
ବଦନ ବହ୍ନନେ ସେ ଗ୍ଡିଲୁ ଘୋର ରଡ
ଭୂମିରୁ ପର୍ବତ କ ପଡିଲେ ଉପୁଡ । ୨୦୧ ।
ଯୁଦ୍ଧିଷ୍ଠିର ଭୀମସେନ ନକୁଳ ସହଦେବ
ମୂର୍ଛାଗତ ହୋଇ ପଡିଲେ ଗୃର ଯେ ପାଣ୍ଡବ । ୨୦୨ ।

---

୧୯୪।୧ ଯୁଦ୍ଧିଷ୍ଠିର ଦେବେ ହସିଲେ ଅର୍ଜୁନ ମୁଖ ଗୃହିଂ ।—ଛ, କ, ଠ, ନ, ଜ, ଖ

୨୦୦।୨ ବୃକ୍ଷରେ ବୁଲିଲା ସେ କୁସାଳ ଚକ ପ୍ରାୟେ ।—ଜ, ଟ

୨୦୧।୨ ସ୍ଥାବର ଜଙ୍ଗମ କୀଟ ପତଙ୍ଗ ପଡିଲାକ ଝଡି ।—ଣ, ଘ, ଝ, ଗ

ସନକ ବିଶ୍ୱଦେବ ବିଦ୍ୟାଧର ପୁରୁଷେ
ଶୂନ୍ୟେ ବିହନ୍ତା ପୁରୁଷେ ରହି ନୁଆଁଇଲେ ଆକାଶେ । ୨୦୩ ।
ଯୁଧିଷ୍ଠିଂକ କୋଳକରି ଧଇଲେ ସବ୍ୟସାଚୀ
ସାଷ୍ଟାମ କରାଇଣ ମୁଖେ ଜଳ ସିଞ୍ଚି । ୨୦୪ ।
ଅର୍ଜୁନ ବଚନେ ମୃତୁପିଣ୍ଡ ହୋଇଲାକ ଶାନ୍ତ
ଆଜ ରଡସ୍ୱେ ହେଲେ ନିଶ୍ଚେ ଗୁଡନ୍ତେ ଜୀବନ୍ତ । ୨୦୫ ।
ମୁଖେଣ ଅମୃତ ଯହ୍ନୁଂ ସିଞ୍ଚିଲେ ଅର୍ଜୁନ
ନକୁଳ ସହଦେବ ଯେ ସାଷ୍ଟାମ ଭୀମସେନ । ୨୦୬ ।
ଯୁଧିଷ୍ଠିଦେବେ ପୃଚ୍ଛାକଲେ ସ୍ୱେତ ବଡ଼ାଇ ଦୁର୍ଲଭ
ସ୍ୱେ ମୃତୁପିଣ୍ଡ ବାବୁ କେ ଅଟଇ ପୂର୍ବଗର୍ଭ । ୨୦୭ ।
କର ଚରଣ ନାସିକା ରୁପ ନାହିଂ କଚ୍ଛି
ବଦନ ବିହୁନେ ସ୍ୱେତ ଘୋରରଡ ପାଡୁଅଛି । ୨୦୮ ।
ଅର୍ଜୁନ ବୋଇଲେ ସ୍ୱାମୀ ମୁଂ ଯେବଣ ବେଳେ ଗଲି ସ୍ୱର୍ଗେ
ନିବାତକବଚଙ୍କୁ ମାଇଲି ମୁହିଂ ବାସବର ରାଗେ । ୨୦୯ ।
ଦେବଗନ୍ଧର୍ବ ନାମେ ନୃପତି ବିଶ୍ୱାବସୁ,
ସେହାର ନନ୍ଦନ ନାମ ଅଟଇ କଣସ୍ୱପ୍ରଶୁ । ୨୧୦ ।
କଣସ୍ୱପ୍ରଶୁର ନନ୍ଦନ ବିରଞ୍ଚି ଯେ ଧ୍ୱଜ
ବୃଦ୍ଧଶ୍ରବା ବୋଲାଣ ଯେ ସେହାର ଆତ୍ମଜ । ୨୧୧ ।
ବୃଦ୍ଧଶ୍ରବାର ନନ୍ଦନ ନାମ ଯେ ପ୍ରଚଣ୍ଡବଳୀ
ସେହାର ଭାରଜା ନାମ ଅଟଇ ଗନ୍ଧକାଳୀ । ୨୧୨ ।
ଅମରାଧି ନାଥଂକୁସ୍ୱେ ନେଇ ଯୋଗାସ୍ୱେ ଗୃରୁଗନ୍ଧ
ସୁନ୍ଦର ପଣେ ସେହାଙ୍କୁ ବାସବର ବଡ଼ାଇ ସଧ । ୨୧୩ ।

---

୨୦୩।୨ ତେତିଶ କୋଟି ଦେବତାସ୍ୱେ ପାଇଲେ ମନେ ତ୍ରାସେ ।—ଠ, ଜ, ଛ, ନ, ଦ, ଖ, ଚ

୨୦୬।୧ ଯହ୍ନୁଂଣ ମୁଖେ ଜଳ ସିଞ୍ଚିଲେ ଅର୍ଜୁନ ।—ଖ, ଗ, ଣ, କ, ଟ

୨୧୧।୨ କଣସ୍ୱପ୍ରଶୁର ନନ୍ଦନ ମାର ଋତ୍ରଧ୍ୱଜ ।—କ, ଘ, ଙ

ସ୍ୱାମୀ ନିବାତକବଚ ଧାଡିଦେଲା ଯେତେବେଳେ
ଅନେକବାର ବାସବ ହାରିଲେ ତାକୁ ଗେଲେ । ୨୧୪ ।
ଅମରଭୁବନ ଉପେକ୍ଷି ପଳାଇଲେ ବିଦ୍ୟାଧରୀ
ନିବାତକବଚ ବଳେ ଆଣିଲା ତାଂକୁ ହରି । ୨୧୫ ।
ସେ ଗନ୍ଧକାଳୀକି ହରି ନିବାତକବଚ ନେଲା
ଗନ୍ଧମାଦନ ପର୍ବତେ ନେଇ ଗୁପତେ ଥୋଇଲା । ୨୧୬ ।
ମୁହିଂ ଯେତେବେଳେ ନିବାତକବଚ ବଧକଲି
ଯେ ଯାହାର ପଦାର୍ଥମାନ ଆଣି ବିଦ୍ୟାଧରୀନ୍ତ ଦେଲି । ୨୧୭ ।
ସ୍ୱାମୀ ପ୍ରଚଣ୍ଡବଳୀ ଗନ୍ଧର୍ବ ମୋତେ କୋଳକରି ଧରି
ବୋଇଲା ବର ମାଗ ପାଥ ନାଶକଲୁ ମୋ ଦାଗ ବଇରି । ୨୧୮ ।
ମୁହିଂ ବୋଇଲି ସ୍ୱାମୀ ଯେବେ ମୋତେ ଦେବୁ ବର
ଅଗ୍ରୀଂଚ ବନବାସ ବରଷେ ତେରଦିନ
ମୋର ଶସ୍ତ୍ର ରକ୍ଷାକର ।୨୧୯।
ସେ ପ୍ରଚଣ୍ଡବଳୀ ବୋଇଲା ବାବୁ ତୋହୋର କାର୍ଯ୍ୟକାଳେ
ମୃତୁପିଣ୍ଡ ହୋଇ ଲାଗିଥିବ ଶମୀବୃକ୍ଷ ଡାଳେ । ୨୨୦ ।
ତୋହୋର ଉପର ବଂଶେ ମୃଗସେନ ନୃପତି
ପ୍ରଚଣ୍ଡବଳୀ ଗନ୍ଧର୍ବ ମୁଂ ହୋଇଅଛୁ ଉତପତ୍ତି । ୨୨୧ ।
ଯଦ୍ୟପି ବ୍ରହ୍ମା ବିଷ୍ଣୁ ମହେଶ୍ୱର ସୁରପତି
ମୋହୋର ରଢିଘାତେ କେହି ନ ଆସିବେ କତି । ୨୨୨ ।
ବିଶ୍ୱାବସୁ ଗନ୍ଧର୍ବର ପୁଅ ଅଟଇ ପଣନାଥ
ବଡାଇ ଗନ୍ଧର୍ବ ପୁଅ ଅଟଇ ମହାଛତ୍ରୀ । ୨୨୩ ।
ଅର୍ଜୁନ ବଚନ ଯେ ଶୁଣିଣ ଧର୍ମସୁତେ
ବଡାଇ ସାନନ୍ଦ ଯେ ହୋଇଲେ ଦେବକୋଳେ । ୨୨୪ ।
ବାବୁ ବିରାଟ ରାଜ୍ୟେଣ ତ ରହିବା ଗୁପତେ
ଧନ ହରିବା ଆମ୍ଭେ କେବଣହିଂ ମତେ । ୨୨୫ ।
ଭୀମସେନ ବୋଇଲା ଦେବ ଚିନ୍ତା ନ କର ଆମ୍ଭର କଥାକୁ
ଯେହେନ୍ଲେକ ବାଗେ ଆମ୍ଭେ ଭଣ୍ଡ ବୁ ବିରାଟକୁ । ୨୨୬ ।

ଯିସ ଭସ କହିଲେ ଆମ୍ଭଂକୁ ନାହିଂ ଦୋଷ
ମିଥ୍ୟାକଥା କହି ଧନ ବଞ୍ଚିବୁ ଅଗ୍ୟାଂତବାସ । ୨୨୭ ।
ସ୍ୱାମୀ ସତ୍ୟହିଂ ମିଥ୍ୟା ଯେ ନୁଆସଇ ତୁମ୍ଭର ବାକ୍ୟେ
ଯୁଦ୍ଧେଷ୍ଟି ନାମ କହିଲେ ଜାଣିମେ ସର୍ବଲୋକେ । ୨୨୮ ।
ଯୁଦ୍ଧେଷ୍ଟି ବୋଇଲେ ତୁ ଆମ୍ଭଂକୁ ନ କର ଚନ୍ତା
ଧର୍ମକୁ ସତ୍ୟହିଂ ଆମ୍ଭେ ନ କହିବୁଂ ମିଥ୍ୟା । ୨୨୯ ।
ଭୀମସେନ ହସିଲା ଯୁଦ୍ଧେଷ୍ଟିଂକ ବଚନେ
ସହେକ ଧବସେକ ଯେତୁ ଅଟଇ ଲେଖନେ । ୨୩୦ ।
ସ୍ତ୍ରୀଯେକ ପୁରୁଷଯେକ ପାପେକ ପୁଣ୍ୟେକ
ହାରିବା ଜିଣିମା ହୋ ସତ୍ୟେକ ମିଛେକ । ୨୩୧ ।
ଯେଥିର ମଧ୍ୟରେ କିସ ଅଛଇଟି ଧର୍ମ
ପୂର୍ବର ଲେଖନ ମେଣ୍ଟଣ ନ ଯାଇଟି କର୍ମ । ୨୩୨ ।
ଯୁଦ୍ଧେଷ୍ଟି ଦେବ ବୋଇଲେ ଯାହା କହିଲୁରେ ଭାଇ
ଧର୍ମେଣ ଯେକଣ କଥା ଅଛି କହିବ ତୁକୁଇଂ । ୨୩୩ ।
ତୁ ଯେ ବୋଇଲୁ ଭୀମ ସହେକ ଧବସେକ
ତହିଂର ମଧ୍ୟେ ଅଛଇ ସନ୍ଧ୍ୟା ଅବଶେଷକ । ୨୩୪ ।

---

୨୨୭ { ଯେବଣ ହିଂ ବାଗେ କହିଲେ ଆମ୍ଭନ୍ତ ନ କରଇ ନାଶ
ମିଥ୍ୟା କହିଲେ ଧନ ହରିବୁଂ ଅଗ୍ୟାଂତବାସ ।—କ, ଣ

୨୩୧।୨ "ହାରିବା ଜିଣିମା ହୋ ସତ୍ୟେକ ମିଛେକ"
ପରେ 'କ, ଗ, ଣ' ପୋଥିରେ ଅଲଗା ପାଠ :—
ଚନ୍ଦ୍ରେକ ସୂର୍ଯ୍ୟେକ ଧର୍ମେକ ଅଧର୍ମେକ
ଗ୍ୟାଂତେକ ଅଗ୍ୟାଂତେକ ପଣ୍ଡିତେକ ଅପଣ୍ଡିତେକ ।
ଭଲେକ ମନ୍ଦେକ ଶୁଭେକ ଅଶୁଭେକ
ହରଷେକ ବିରସେକ ସମ୍ପଦେକ ବିପଦେକ ।
କୀର୍ତ୍ତି ଅକୀର୍ତ୍ତି ଯେମନ୍ତ ଅଛଇ ଅନେକ
ଯେଥିର ମଧ୍ୟରେ ଯେ ଅଛଇ ବିସ୍ତରକ ।

୨୩୨।୨ ସବୁପ କର ମୋତେ କହିବା ଦେବ ଧର୍ମ ।—କ, ଣ, ଗ

ତୁ ଯେ ବୋଇଲୁ ଗ୍ରାମ ତରୀଏକ ପୁରୁଷଏକ
ତାହାର ମଧ୍ୟେ ଅଛି ଜନ ନପୁଂସେକ । ୧୩୫ ।
ତୁ ଯେ ବୋଇଲୁ ଘାଇ ପାପେକ ପୁଣ୍ୟେକ
ତହିଁର ମଧ୍ୟରେ ଆବର ଅଛଇ ମଜନେକ । ୧୩୬ ।
ତୁ ଯେ ବୋଇଲୁ ଗ୍ରାମ ଚନ୍ଦ୍ରେକ ସୂର୍ଯ୍ୟେକ
ତହିଁର ମଧ୍ୟେ ଅଛି ତାରା ଯେ ଅସଂଖ୍ୟେକ । ୧୩୭ ।
ତୁ ଯେ ବୋଇଲୁ ଗ୍ରାମ ସତ୍ୟେକ ମିଛେକ
ତହିଁର ମଧ୍ୟରେ ଅଛଇଟି ସାକ୍ଷଲୋକ । ୧୩୮ ।
ଭୀମସେନ ବୋଇଲା ଏ ଦୁଃସହ ସଙ୍କଟ
କେବଣ ଉପାୟେ ହୋଇବ ନାମ ଯେ ପାଲଟ । ୧୩୯ ।
ଯୁଧିଷ୍ଠିର ବୋଇଲେ ଆମ୍ଭେ ସର୍ବ୍ବପଣ୍ଡା ହୋଇବୁ
ଧର୍ମ୍ମ ବିପ୍ରର ଆମ୍ଭେ କୋଳଭଟ୍ଟ ନାମ ବହିବୁ । ୧୪୦ ।
କୋଳଭୋଜର ନନ୍ଦନ ବୋଇଲା ମାତା ଆମ୍ଭର ଯୁଗତେ
କୋଳଭଟ୍ଟ ନାମ ଆମ୍ଭେ ବହିବୁ ସାକ୍ଷାତେ । ୧୪୧ ।
ଭୀମସେନ ବୋଇଲା ତୁମ୍ଭେ କେବଣ ଗୁଣଗ୍ରାହୀ
ଅର୍ଥକୁ ଗଜରେକ ଗୁଣକୁ ପଜା ପାଇ । ୧୪୨ ।
ସ୍ୱାମୀ ଅର୍ଥକୁହିଁ ହାରିଲୁ ଗୁଣକୁ ହେଲ ଅଟ
ସମ୍ମାନ୍ୟ ପୂଜା ତୁମ୍ଭଂକୁ କେମନ୍ତେ କରିବ ବିରାଟ । ୧୪୩ ।
ଯୁଧିଷ୍ଠିର ବୋଇଲେ ହୋ ଗୃରହେଂ ତୁମ୍ଭେ ଶୁଣ
ସମାନେ ବସିବା ଆମ୍ଭର ଅଛଇ ଏକଗୁଣ । ୧୪୪ ।
ପଶା ଖେଳିବୁ ଆମ୍ଭେ ବିରାଟର ତୁଲେ
ତେବେ ସେ ସମାନେ ବସିପାରୁଂ ଭଲେ । ୧୪୫ ।
ଭୀମସେନ ବୋଇଲା ବାବୁ ଉଠ ହୋ ଅର୍ଜ୍ଜୁନ
ବାହୁଡ଼ ପଶିବା ଚାଲ ଗହନ ଅରଣ୍ୟ । ୧୪୬ ।
କେବଳେ ବେଳେ ଏହାଂକର ବସିଲା ଦୁର୍ବୁଦ୍ଧି
ଧୃତରାଷ୍ଟ୍ର ପୁଅନ୍ତ ହଲେ ଅଚଳାଚଳ ସମୃଦ୍ଧି । ୧୪୭ ।
ଏକାବେଳେକ ପଶାଏ ହାରିଲେ ସମସ୍ତ
ଆମ୍ଭେ ବନ୍ଦ୍ରେ ହୋଇଲୁଂ ଘାଇ ଘରଜା ସହିତ । ୧୪୮ ।

ସଭାର ତଳେ ନେଇ ବସାଇଲେ ସବୁନ୍ତ
କେଶଧରି ବିବସନ କରାଇଲା ଦ୍ରୋପଦୀ । ୨୪୯ ।
ଯେବକା ପଶାକେ ଯେ ହୋଇଲୁ ଯେତେଦୂର
ଦୁଜେ ପଶା ଖେଳ ହାରିଲୁ ରାଜ୍ୟ ଭଣ୍ଡାର । ୨୫୦ ।
ଯେଉଂ ପଶା ଖେଳରେ ବୁଲୁଥାଇ ବନଘୋର
ପୁଣ ସେ ପଶା ଖେଳବେ ବିରାଟ ସଙ୍ଗର । ୨୫୧ ।
ଯେଘାନ୍ତ କସ ହୋଇବଟି ଧନ ଧର୍ମ ହିଂ ତ ନାହିଂ
ପ୍ରାଣଘାତ ହୋଇବା କ ଯେହ୍ନ ପଶାର ପାଇଂ । ୨୫୨ ।
ଯୁଧିଷ୍ଠି ବୋଇଲେ ତୁ ଶୁଣରେ ପାବେନ
କପଟେ ପଶାଖେଳାଇ ଆମ୍ଭଂକୁ ହରାଇଲା ଶକୁନ । ୨୫୩ ।
ଉଚିତ ପଶାଖେଳରେ କେ ଅଛୁ ଆମ୍ଭନ୍ତ ସରି
କଉତୁକ ଉପୁଜାଇ ହୋଇବୁ ଅଧିକାରୀ । ୨୫୪ ।
ପଶାଖେଳେ ଆମ୍ଭେ ଅଟୁ ଜଗୁଜିତା
ଇହଲୋକେ ଆମ୍ଭନ୍ତ କେହ୍ନି ନାହିଂନା ଜଣନ୍ତା । ୨୫୫ ।
ଶୁଣିଣ ଭୀମସେନ ମନରେ ବିଷାଦ
ନମସ୍କାର କରିଣ ସେ ଧରଇ ବେନପାଦ । ୨୫୬ ।
ଯେହ୍ନ ଆମ୍ଭର ବଚନ ଶୁଣସି ଧର୍ମରାୟେ
ପଶା ଛାଡ଼ି ଅଚ୍ଛୁକ ଆନ ଯେ ଉପାୟେ । ୨୫୭ ।
ଯୁଧିଷ୍ଠି ବୋଇଲେ କ ଆଜ ଅଛୁ ଆନ ବୁଦ୍ଧି
ସମାନ୍ୟେ ବସିବାକୁ ଯେହ୍ନା ମୁଂ ଅଛୁ ସାଧି । ୨୫୮ ।
ଆମ୍ଭେ ବସିଲେ ହୋ ରାଜାର ସମାନେ
ମହାଦେବେଶେ ରହିବ ତୁମ୍ଭେ କାହାର ଦରଶନେ । ୨୫୯ ।

---

୨୫୫।୨ ଇହଲୋକ୍ୟେ କେ ଅଛୁ ହୋ ଆମ୍ଭଂକୁ ଜଣନ୍ତା ।—ଚ, ଛ, ଜ

୨୫୯।୧ ଆମ୍ଭେ ନ ବସିଲେ ହୋ ରାଜାର ଆସ୍ଥାନେ ।—ଗ, ଜ

ପ୍ରକୃତ ଜାଣି ତୁମ୍ଭେ ଖଟିବ ପରିଚର୍ଯ୍ୟା
ତୁମ୍ଭନ୍ତ ସମାଜ ନା କରି କ ପାରିବା । ୨୬୦ ।
ବିରାଟର ଭୁଲେ ଆମ୍ଭେ ସଭାରେ ବସିଥିବୁଂ
ଜାଣିଣ ସନମାନ ତୁମ୍ଭନ୍ତ କରାଇବୁଂ । ୨୬୧ ।
ଯୁଧିଷ୍ଠିରଙ୍କ ବଚନେ ଫିଟିଲା ମନଭ୍ରାନ୍ତି
ଭୀମସେନ ବଦନ ଗୃହ୍ବୁଂ ବଦସ୍ଯନ୍ତ ଧର୍ମ ନୃପତି । ୨୬୨ ।
ତୋହୋର କଥାକୁ ଚରେ ଭୀମ ମୋହୋର ବଡ଼ ଚିନ୍ତା
ମଚ୍ଛଦେଶେ କେହ୍ବ ତୋତେ ନୋହିବେ ଅନ୍ନଦାତା । ୨୬୩ ।
ଷାଠିଏ ପଉଟି ଅନ୍ନ ବେଲକେ ଅଭିପ୍ରେତ
ତିନବେଳେ ଭୁଞ୍ଜିଲେ ତୋତେ ନ ଅଣ୍ଟେ ତିନଷାଠି ପଉଟି । ୨୬୪ ।
ଭିକ୍ଷା ମାଗିଲେ ତ ଭିକ୍ଷା ଦିଅନ୍ତା କେହ୍ବ ନାହ୍ବିଂ
ସମସ୍ତେ ଭୟ କରନ୍ତି ତୋର ବକ୍ର ନୟନକଇଂ ଗୃହ୍ବିଂ । ୨୬୫ ।
ପଣ୍ଡିତ ଧାର୍ମିକ ନୋହୁ ତୁ ନ ଜାଣୁ କପଟ ଛନ୍ଦ
ଯେଣେ ଯାଉ ତେଣେ ଅନୁବ୍ରତେ କରୁ ଦ୍ୱନ୍ଦ । ୨୬୬ ।
ବାବୁ କଣପୂପର୍ବତ ଜାଣି ଦିଶଇ ତୋର କାୟେ
ସେହ୍ବା ଗୋପ୍ୟ କରିବୁଟି ତୁ କେବଣ ଉପାୟେ । ୨୬୭ ।
ଭୀମସେନ ବୋଇଲ୍ଲ ଦେବ ଅଛଇ ମୋର ବୁଦ୍ଧି
ମୁହ୍ବିଂ ସୂପକାର ହୋଇବ ଜାଣଇ ଅଗ୍ନି ସିଦ୍ଧି । ୨୬୮ ।
ବିରାଟର ରାଜ୍ୟେ ମୁହ୍ବିଂ ବଲ୍ଲଭ ହୋଇବ
ସୂପକାର ରୂପେଣ ମୁଂ ମତ୍ସଦେଶରେ ରହିବ । ୨୬୯ ।
ଯୁଧିଷ୍ଠିର ଦେବ ବୋଇଲେ ତୁ କସ ଅବା ରାନ୍ଧିବୁ
ତୁକୁଇ ସେ ଭୋଜନ ହୋଇବ ଆନକୁ କସ ଦେବୁ । ୨୭୦ ।

---

୨୬୦ { ପ୍ରକୃତମାନ ତୁମ୍ଭର ନ ଜାଣିମ ମହାନାହା
ତୁମ୍ଭଂକୁ ଶାନ୍ତକରି କହିବ ବାକ୍ୟ କାହା ।—କ, ଡ, ଛ

୨୬୪।୨ ତିନବେଲ ଭୁଞ୍ଜିଲେ ସ୍ୱେଚ୍ଛମତ ପ୍ରତି ପ୍ରତି ।—ଘ, ଟ

୨୬୪।୨ ତିନବେଲ ଭୁଞ୍ଜିଲେ ସ୍ୱେଚ୍ଛମତ ପ୍ରକୃତ ।—କ, ଗ

ଭୀମସେନ ବୋଇଲା ଦେବ ବରାଟ ରାଜ୍ୟେଣ
ସବୁ ସୂପକାର ଛଡ଼ାଇ ମୁଂ ହୋଇବ ସୈ‌ନ୍ଯକଜଣ । ୨୭୧ ।
ଲକ୍ଷେ ସୂପକାରଙ୍କୁ ପଡ଼ି ହୋଇବାକ ଯେତେ
ସବୁନ୍ତ ଛଡ଼ାଇ ବରାଟ ଯେ ସୈକା ଦେବ ମୋତେ । ୨୭୨ ।
ଯୁଧିଷ୍ଠିର ଦେବ ବୋଇଲେ ରେ କେବଣ ଗୁଣ ତୋହୋର
ରାନ୍ଧଣା ବଧାନ କେମନ୍ତେ ଜାଣିଲୁ ଆବର । ୨୭୩ ।
ଭୀମସେନ ବୋଇଲା ଦେବ ଜାଣଇ ନତପ୍ରତ
ଅମୃତ ଯୋଗାଡ଼ମାନ ଜାଣଇ ନତପ୍ରତ । ୨୭୪ ।
ହାଣ୍ଡିରେ ଯୋଗାଡ଼ି ଦେବ ବସାଇଲେ ଚୂଲରେ
ସୂର୍ଯ୍ୟପାକ ହୋଇବ ସୈକଇ ସମ୍ଭାରେ । ୨୭୫ ।
ସୈହେନ୍ନେକ ବଧାନେ ଦେବ ଜାଣଇ ମୁହିଂ ରାନ୍ଧ
ଯୁଧିଷ୍ଠିର ଦେବ ବୋଇଲେ ସୈତ ଗଉଷା ସଉଷା ନଳବଧି । ୨୭୬ ।
ସୈତେକ ମହିମାଂ ତୋର ଆମ୍ଭଂକୁ ଶୁଣିଲାତ ନାହିଂ
ସୈ ତନପ୍ରତ ରାନ୍ଧଣା ବାବୁ ପାଇଲୁ କାହିଂ । ୨୭୭ ।
ଭୀମସେନ କହଇ ଯୋଡ଼ଣ କରପଦ୍ମ ବେନ
ସୈ ତନପ୍ରତ ରାନ୍ଧଣା ମୋତେ କହିଲୁ ଦୋହବା ଅଗ୍ନି । ୨୭୮ ।
ଯୁଧିଷ୍ଠିର ଦେବେ କହିଲେ ତୋହୋର କେବଣ ଭଗତ
ସେବାଗୁଣ ଆମ୍ଭେ ତୋର ଜାଣୁନା ସମସ୍ତ । ୨୭୯ ।
ଯେଣେତେଣେ ଥିଲେ ତୁ ଅଶୁଚବନ୍ତେ ଆସୁ
ବେନ ଚରଣ ଦେଖାଇଣ ଅଗ୍ନିକ ଆକ୍ରୋଷୁ । ୨୮୦ ।
ସୈତେମାନେ ଭଗତକ ହୋଇଲେନା ପ୍ରସନ୍ନ
ଥୋକାସ୍ତେ ବନେ ଅଗ୍ନିରେ ତୁ କରୁ ଆଂଗେବନ । ୨୮୧ ।
ଆମ୍ଭେ ଅନେକ ବନୋସ୍ତୀ ବହୁତ ପ୍ରକାରେ ଅଗ୍ନିକ କରଥାଉ ସେବା
ଘୃତ ଆହୁତ ଦେଇ ବନୋସ୍ତୀ ରାଜ ବବା । ୨୮୨ ।
ଦେଖି ନୁଆରିଲୁ ଅଗ୍ନିଦେବତାଂକ ନଜ ମୂର୍ତ୍ତ
ନର୍ଦ୍ଧୟା ଅଣାକାର ସେ ଅଚନ୍ତ ବହନ୍ତ । ୨୮୩ ।
ଭୀମସେନ ବୋଇଲା ଦେବ ଶତଶିଂଗ ପର୍ବତେ
ରାନ୍ଧଣା ପାକ ଦେବ ଭକ୍ଷଣ କରଇ ମୁହିଂ ନତ୍ୟେ । ୨୮୪ ।

ଅନ୍ନ ମେଞ୍ଜନ ମୁଂ ଯେ ଭୁଞ୍ଜଇ ଅର୍ଧେ ଅର୍ଧେ
ପାଞ୍ଚବନରେ ପୁଅ ମୁଂ ଭୋଜନକୁ ଯେତେ ସଧେ । ୨୮୫ ।
କୋଇନ୍ତାଯେ କହିଲେ ଯେ ପଣ୍ଡୁରାଜାଂକର ପାଶେ
ସ୍ୱାମୀ ମଢ଼ପୁଲ ଯୋଗାଡ଼ ନ ଥାଇ ଅର୍ଧଶେଷେ । ୨୮୬ ।
କେ ଯେହ୍ୱା ଆଧାର କରଇ ଯେ ବସି ନିତ
ସାତ ବରଷ ହୋଇଲାନ ଯେତ୍ୱପରି ପ୍ରତ । ୨୮୭ ।
ଶୁଣିଣ ପଣ୍ଡୁ ରାଜା ଚକିତ ପ୍ରାୟେ ହୋଇ
ସେ କଥାକୁ ମନରେ ପ୍ରତ୍ୟେ ନ କଲେ ଗୋସାଇଂ । ୨୮୮ ।
ବୃଷଭମାସ ଶୁକଳ ପୂର୍ଣ୍ଣିମା ଅର୍କବାର
ଅନୁରାଧା ନକ୍ଷତ୍ରେ ଜ୍ୟେଷ୍ଠା ପ୍ରହରକର । ୨୮୯ ।
ଶ୍ରୀକରେ କୃପାଣେକ ଘେନିଣ ପଣ୍ଡୁମହାରାୟେ
ସେ ଜଗିଛନ୍ତି ସ୍ତ୍ରୀହାନକୁ ଗଲେ କୋଇନ୍ତାୟେ । ୨୯୦ ।
ଅନ୍ଧାର ମଧ୍ୟରେ ଯେ ପଣ୍ଡୁରାଜା ଛନ୍ତି ବସି
ଶଯ୍ୟା ଯୁଗଳୁଂ ଯେ ଉଠିଣ ମୁହିଂ ଆସି । ୨୯୧ ।
ରନ୍ଧଣାଶାଳେ ପଶି ମୁଂ କରୁଅଛୁ ଭକ୍ଷ
ସରୁପେ ମହାରାଜା ଦେଖିଲେ ପ୍ରତକ୍ଷ । ୨୯୨ ।
କୃପାଣ ବୁଲାଇଣ ସେ ଧାମନ୍ତି ମହାରାୟେ
ଧାଡ଼କାରେ ପଳାଇଲ ମୁଂ ପିତାଂକର ଭୟେ । ୨୯୩ ।
ଧାମନ୍ତି ସୋମବଂଶୀ କରେ କୃପାଣ ଟୁଣି
ଆରେ ଦୁଷ୍ଟ କୁମର ପଳାଇବ ତୋତେ ହାଣି । ୨୯୪ ।
ଦେଖିଣ ପଣ୍ଡୁଂକୁ ଧଇଲେ ଦେବୀ କୋଇନ୍ତେ
ରଗେଣ ଫିଙ୍ଗି ପକାନ୍ତେ ମୁଂ ପଳାଇଲ ଭୁରତେ । ୨୯୫ ।
ମୁହିଂ ଆଗେ ପଳାଇ ପଛେ ପଣ୍ଡୁ ଯେ ନପତି
ଅଗ୍ନିଦେବତା ବ୍ରାହ୍ମଣ ସରୁପ ହୋଇ ପଛେ ଗୋଡ଼ାଇ ଅଛନ୍ତି । ୨୯୬ ।
ସେ ବ୍ରାହ୍ମଣ ପଛକତ ଭୋଜର କୁମାରୀ
ନସରେ ପଳାଇଲ ବନସ୍ତେ ଯୋଜନ ଶତ ଚାରି । ୨୯୭ ।

---

୨୮୭।୨ ପାଞ୍ଚ ବରଷର ପୁଅ ଭୋଜନକୁ ଯେତେ ସଧ ।—ଓ, କ

ଲେଉଟି ଗୃହାନ୍ତେଣ ମୁଂ ପଡ଼ିଲ ମୁଦ୍ଦଂ ମାଡ଼
ଉପରେ ଖଣ୍ଡା ନେଇ ରାଜା ପିଟିଲେ ମୋଦ୍ଦୋର । ୨୯୮ ।
ସେ ବ୍ରାହ୍ମଣ କୋଳକରି ଧଇଲେ ଚନ୍ଦ୍ରୁଙ୍କୁ
କାଂକେ ନାଶକରିବୁ ଯେ ବାଳୁତ କୁମରକୁ । ୨୯୯ ।
ଘୁଡ ଘୁଡ ପଣ୍ଡାସ୍ଥେ ମାଣବ ଯେହ୍ନୁ ଦୁଷ୍ଟ
ନତ୍ୟାପନ୍ତ ମଣୋଦ୍ଧି ଯୋଗାଡ଼ ନପ୍ପ କରଇ ଉଚ୍ଛିଷ୍ଟ । ୩୦୦ ।
ବ୍ରାହ୍ମଣ ବୋଇଲେ ତୁ ବାତୁଳ ହୋଇଲୁ କ ରାସ୍ୱେ
ଆତ୍ମଘାତକ ଅପାର ଦୋଷ ଯେ ନାଶକରନ୍ତି ତନସ୍ୱେ । ୩୦୧ ।
ପୁଦ୍ରଂକର ଉଚ୍ଛିଷ୍ଟକୁ (ଉଚ୍ଛିଷ୍ଟ) ଦୋଷ ନ ଲାଗଇ
ଇନ୍ଦୁର ମଜ୍ଜାଂଶ ଛୁଇଂଲେ କ ପାକ ପକାଇ ଦେଇ । ୩୦୨ ।
ଚନ୍ଦ୍ର ରାଜା ବୋଇଲେ ମୋତେ ହୋଇଲାକ ଅଯୋଗ୍ୟ
ଦେବ ପିତ୍ରେ ଦାଅଇ ଯେ ଅଗ୍ରଂତ ଅନ୍ନଭୋଗ । ୩୦୩ ।
ବ୍ରାହ୍ମଣ ବୋଇଲେ ସେ ଅଗ୍ୟାନ ତନସ୍ୱେ
ସେହ୍ମାଂକର ଦୋଷ ଯେ ନ ଘେନନ୍ତି ଦେବତାସ୍ୱେ । ୩୦୪ ।
ଚନ୍ଦ୍ରୁ ବୋଇଲେ ଯେବେ ଦେବତାଂକୁ ଦାଲ
ଦୋହରି ଅଗ୍ନିକ ଯେ ଉତଷ୍ଟ ପରଶିଲ । ୩୦୫ ।

---

୩୦୧।୨ ଆତ୍ମାରୁ ଜାତ କଶଛୁଂ ବାଳୁତ ତନସ୍ୱେ ।—ଖ, ନ

୩୦୧।୨ "ଆତ୍ମଘାତକ ଅପାର ଦୋଷ ଯେ ନାଶ କରନ୍ତି ତନସ୍ୱେ"
ପରେ 'ଛ' ପୋଥିରେ ଅଧିକା ପାଠ:—
ବାଳୁତହତ୍ୟା ପାତକ ଯେ ସଂସାରୁ ବାହାର
ଯେବଣ ହତ୍ୟାକୁ ପୁଣ ନାହିଂଟି ପ୍ରତିକାର ।
ଚଣ୍ଡାଳ ବାଳକ ହୋଉ ଅବା ବ୍ରାହ୍ମଣ ବାଳକ ହୋଉ
ମୃଗ ପଶୁପକ୍ଷୀ ବାଳକ ହୋଉକନା କୀଟ ପତଙ୍ଗ ବାଳକ ହୋଉ ।
ସେମାନଂକୁ ନାଶିଲେ ହୋ ପରଲୋକେ ପାଇ ଦଣ୍ଡ
ଇହଲୋକେ ଅପକୀର୍ତ୍ତି ପରଲୋକେ ନର୍କଖଣ୍ଡ ।
ସେବେଳକେ ସେହାକଇଂ ଘୁଡ ହୋ ରାଜନ
ମାଛ ଗଞ୍ଜାର ଉଚ୍ଛିଷ୍ଟ ନ ଲାଗଇ ଜାଣ ।

ବ୍ରାହ୍ମଣ ବୋଇଲେ ହୋ ବାହ୍ଲୁତଂକ ଉଚ୍ଛିଷ୍ଟ
ଉଦର ଅଗ୍ନି ଯେ ହୋଅନ୍ତି ତହ୍ନଂକ ତୁଷ୍ଟ । ୩୦୬ ।
ତୁ ଯେବେ ମନେ ଅପ୍ରତେ କରୁ ମହାବୀର
ଆମ୍ଭେ ସେ ବଶ୍ୟାନର ଅନଳ ଉଦର । ୩୦୭ ।
ତୁମ୍ଭ ସେ ଆଜ ସିନା ଦେଖିଲୁ ହୋ ପଣ୍ଡୁ
ସାତ ବରଷ ହୋଇଲାନ ଆମ୍ଭେ ଯେହାର ଉଚ୍ଛିଷ୍ଟ ଭୁଞ୍ଜୁ । ୩୦୮ ।
ନରୁଚାନ୍ତ ରୂପ ଯତୁଂ ଧଇଲେ ବହନ୍ତି
କୋପ ଗୁଡ଼ି ପ୍ରଣପତ୍ୟ ହୋଇଲେ ପଣ୍ଡୁ ଯେ ନୃପତି । ୩୦୯ ।
ଉଦର ବୋଇଲେ ଯେ ତୋହୋର ପୂସଗୋଠି
ଭୋଜନେ ଅସିପୁତ୍ର ଯେହାକୁ ଆଧାର ନ ଅଣ୍ଟି । ୩୧୦ ।
ଆମ୍ଭନ୍ତକୁମ୍ଭଂ ଘୃତ ଯେହ୍ନେ ଭୁଞ୍ଜନ୍ତେ ନ ଅଣ୍ଟେ
କୋଷ୍ଠ ଅନଳ ରୂପେ ଥିବୁ ଯେହାର ଗର୍ଭଗତେ । ୩୧୧ ।
ଦବାରହେ ଯେହାର ଅନ୍ନକୁ ହୋଇବ ବଡ଼ସ୍ରାଗ
ଯେହାର ରାନ୍ଧନ୍ତେ ହୋଇବ ଅମିୟ ରସପାଗ । ୩୧୨ ।
ଗଜଘ ସଜଘ ନଳବଧି ଭନପ୍ରନ୍ତ
ସ୍ଵାମୀ ପ୍ରସନ୍ନେ ଦଲେ ମୋତେ ଉଦର ବହନ୍ତି । ୩୧୩ ।
ସ୍ଵାମୀ ଯେସନେକ ବଧାନ ମୁଂ ପାଇଛଇଂ ପୁର୍ବେ
ବିରାଟ ଘରେ ସୂପକାର ହୋଇବ ବଲ୍ଲଭ ନାମ ଯେବେ । ୩୧୪ ।
ଯଦ୍ୟପି ଶରଧା କରିବ ମହାରାଜ ସାଇଂ
ଅଥବା ମାଲଯୁଦ୍ଧ କରିବ କୁତୂହଳେ ମୁହିଂ । ୩୧୫ ।
ଗୋସାଇଂ ଆସ୍ଥାନେ ତୁମ୍ଭେ ବସିଥିବ ଅନୁବ୍ରତେ
ପରବସ୍ତୁ ଯୁଦ୍ଧ ପଡ଼ିଲେ ହକାରା କରିବାକ ମୋତେ । ୩୧୬ ।
ଭୀମସେନର କହନ୍ତେ ଯେ ଫିଟିଲା ମନଭ୍ରାନ୍ତି
ସ୍ଵାମୀ ସନ୍ଧ ହୋଇ ବସିଥିବ ତୁମ୍ଭେ ବିରାଟର କତି । ୩୧୭ ।
ଆମ୍ଭେ ଭ୍ରମଣ କରିବୁ ଯେତେବେଳେ
ଭୃତ୍ୟପଣେ ଆସଇ କ ଆମ୍ଭର ସବାକାଳେ । ୩୧୮ ।

---

୩୦୮।୨ ସାତ ବରଷ ହୋଇଲାନ ଆମ୍ଭେ ଅନ୍ନପାଣି ଛାଡ଼ୁ ।—କ, ଖ

ଯେବଣ ବଚନ କହ ଅବା ଆମ୍ଭେ ନୁଆରବୁ ଆସ୍ତାନେ
ତୁମ୍ଭେ ପୂରେଇ କହିବନା ରାଜାର ସନ୍ନିଧାନେ । ୩୧୯ ।
ଯୁଧିଷ୍ଠି ର କହନ୍ତେ ପୁଣ ଅର୍ଜୁନର ମୁଖ
ତୁ କେହ୍ନେ ଗୋପ୍ୟାନ କାବୁ ହୋଇବୁ ରେ ବତ୍ସ । ୩୨୦ ।
ଅର୍ଜୁନ ବୋଇଲା ସ୍ଵାମୁରେ କରପଦ ଯୋଡି
ବିରାଟ ରାଜ୍ୟେ ମୁଂ ଯେ ବୋଇବ ବୃହନ୍ନଳା । ୩୨୧ ।
ରାଣୀହଂସ ପୁରେ ମୁଂ କରାଇବ ନୃତ୍ୟ
ବେଣୁ ବୀଣା ଯନ୍ତ୍ରତାଳ ତାଣ୍ଡବ ଭରଥ ସଙ୍ଗୀତ । ୩୨୨ ।
ପଞ୍ଚହଂଶ ତାଳ ଖଣ୍ଡଣ ଯେକବଂଶ ମୂର୍ଚ୍ଛନା (ମୂର୍ଛନା)
ଅନନ୍ତ ବନୋଦ ବୃନ୍ଦାଅର୍କ ମୋହନା । ୩୨୩ ।
ଅର୍ଜୁନ ବଚନ ଶୁଣି ଧର୍ମରାଯ୍ୟେ ବୋଇଲେ
ଅନ୍ତେଶ୍ଵର ପୁରେ କେସନେକେ ପଶିବୁ ପୁରୁଷ ଭାବ ଥିଲେ । ୩୨୪ ।
ଅଣ୍ଡିରମାନେ ନ ପଶନ୍ତି ଅନ୍ତେଶ୍ଵର ପୁରେ
ଗୋଟା ଘରବା ନ ପଶଇ ରାଜାବାର ପୁରେ । ୩୨୫ ।
ଅର୍ଜୁନ ବୋଇଲା ମୋର ହୋଇବ ସ୍ତିରୀବେଶ
କାମିନୀ ରୂପେଣ ଖୋଷା ଖୋଷିବ ଦେବ କେଶ । ୩୨୬ ।
ତରୀବେଶ ଅଳଂକାରେ ପିନ୍ଧିବ ଦେବ ଶାଢୀ
ବୃହନ୍ନଳା ବେଶ ହୋଇବ ମୋହୋର । ୩୨୭ ।
ଯୁଧିଷ୍ଠି ର ବୋଇଲେ ତୋତେ ହୋଇବ ଶରଧା
ଆସ୍ତାନେ ବିରାଟ ନଚେ କରିବଟି ଶୋଧା । ୩୨୮ ।
ଅର୍ଜୁନ ବୋଇଲା ଦେବ ମୁଂ ନପୁଂସକ ହୋଇବ
ଗୁଣ ଘୃଷ୍ଟ ଫଳବାର ବେନ ବାହୁ ପିନ୍ଧିବ । ୩୨୯ ।

---

୩୨୨।୧ କନ୍ୟାର ପୁରେ ମୁଂ କରାଇବ ନୃତ୍ୟ ।—ଝ, ଥ, ଡ

୩୨୮।୨ ଆସ୍ତାନେ ବିରାଟ ତୋତେ ଯେନମାକ ଶୋଧା ।—ଘ, ଝ, କ, ଥ

୩୨୯।୨ ଗୁଣ ଗୋଷ୍ଠି ପିନ୍ଧିଛ ବେନବାହୁ ପିନ୍ଧିବ ।—ଡ, ଓ

ଯୁଧିଷ୍ଠିର ଦେବ ବିଷାଦ ଯେ ଅର୍ଜୁନ ବଚନେ
ନପୁଂସକ ଲକ୍ଷଣ ବାବୁ ତୁ ହୋଇବୁ କେସନେ । ୩୩୦ ।
ସୈରନ୍ଧ୍ରୀ ଭବିଷ୍ୟ କହିଲେ ଙ୍କଂକେ କଥା
ମମ ହୃଦେ ଶୁଣିତେ ଲାଗଇ ବଡ଼ ଚିନ୍ତା । ୩୩୧ ।
ଧୂର୍ତ୍ତ ସିଂହାଣ ନୃପତି ଅଟଇ ଗୁହ୍ୟେ ମଛ
ଅବଶ୍ୟ ଶୋଧିବ ସେ ଯେ କରିବ ପରୀକ୍ଷ । ୩୩୨ ।
ଅର୍ଜୁନ ବୋଇଲା ଦେବ ନପୁଂସକ ରୂପ
ବିରାଟ ଶୋଧାକଲେ ହୋଇବ ସରୂପ । ୩୩୩ ।
ଯୁଧିଷ୍ଠିର ପୁଚ୍ଛାକଲେ ସୈରନ୍ଧ୍ରୀ ଅଛଇ କି ପୂର୍ବେ
ନିଜ ନାମ ଗୋପ୍ୟାନ ତୋର ହୋଇଥିଲାକ କେବେ । ୩୩୪ ।
ଅର୍ଜୁନ ବୋଇଲା ମୁଂ ଯେତେବେଳେ ଗଲଇ ଅମର ମଣ୍ଡଳେ
ନିବାତକବଚକଇଂ ବଧକଲି ପିତାମହର ଛଳେ । ୩୩୫ ।
ତୋଷେଣ କୋଳେ ମୋତେ ବସାଇ ମଘବାନ
କିରୀଟୀ ନାମ ମୋତେ ଦିଲେ ପାକ ଯେ ଶାସନ । ୩୩୬ ।
ବାସବ ଦେବତାଂକର ଯେତେ ଅଳଂକାର ଭୂଷଣ
ସମସ୍ତ ଅଙ୍ଗେ ମୋର କଲେକ ଆଭରଣ । ୩୩୭ ।
ଦେଖିଣ ମୋହିତ ହୋଇଲେ ସକଳ ଅପକ୍ଷରୀ
ଅନେକ ବେଶ ବେଶନେ ଯେ ତାଣ୍ଡବ ନୃତ୍ୟକରି । ୩୩୮ ।
ବାସବର ପ୍ରିୟବିଶ୍ୱ ଅଟଇ ଉର୍ବଶୀ
ନୃତ୍ୟ ଆରମ୍ଭରେ ମୁଂ ଆସ୍ଥାନେ ଥିଲି ବସି । ୩୩୯ ।
ସେ ଅପକ୍ଷରୀ ମୋହରେ କଲାକ ମାନସୀ
ମୋତେ ଦେଖିଣ ସେ କାମସାଗରେ ଯେ ଭାସି । ୩୪୦ ।

---

୩୩୨।୨ ଅବଶ୍ୟ ଶୋଧା ତୋତେ ରେ କରିବ ପ୍ରତକ୍ଷ ।—ନ,ଛ,ଗ,ଙ୍କ
୩୩୩।୨ ବିଗ୍ରହ ଶୋଧାକଲେ ନ ଥିବ ସରୂପ—ଗ,ଥ
୩୩୭ ଦେବ ଅଳଂକାରମାନ ମୋତେ କଲେ ଆଭରଣ
ଗନ୍ଧପୁଷ୍ପ ଚନ୍ଦନ ମୋ ଶରୀରେ ଲେପନ ।—ଙ୍ଗ,ଛ,ଠ

ମୋହୋର ବଦନ ସେ ଗୃହ୍ନିଲା ଯତ୍ନେ ଆସି
ମୁହିଁ ତାହାର ବଦନ ନ ଗୃହ୍ନିଲି ସନ୍ତୋଷି । ୩୪୧ ।
ମୁହିଁ ତାହାର ବଦନ ନ ଗୃହ୍ନିଲି ଯତ୍ନେ ତୋଳି
ବଚନ ନୃତ୍ୟକର ପଡିଲା ବାଳୀ ତଳି । ୩୪୨ ।
କଞ୍ଚୁକ କରଣ ସେ ଯେ ଗୃହ୍ନିଲା ଫେକଦୃଷ୍ଟି
ମଦନଶରେ ବାଳୀ ହୋଇଲା ଅସାଷ୍ଟ । ୩୪୩ ।
ବାସବ ଜାଣିଲେ ଯେ ଉର୍ବଶୀର ପ୍ରକୃତି
ମୋହୋର ଶୟନ ସ୍ଥାନକୁ ପେଶିଲେ ନଶାରାତି । ୩୪୪ ।
ସ୍ୱାମୀ କପାଟ ପାଡଣ ମୁଂ ପଲଂକେ ବସି ଶରମାନ ଗୁଣି
ପ୍ରିୟମ୍ବଦା ଉର୍ବଶୀ ଦ୍ୱାରେ ମିଳିଲେ ବେଳ ଯେ ତରୁଣୀ । ୩୪୫ ।
କପାଟ ଫିଟାଅ ବୋଲି ବଚନେ ବୋଲନ୍ତି ଦ୍ୱାରେ
ରାତ୍ରେକ ମଣାଇ ମୋତେ କହିଲେ ଉତ୍ତରେ । ୩୪୬ ।
ମାତାହିଂ ଆନ ମୁଂ ଯେ ନ ବୋଲଇ ତାହାରେ
ବନୋପ୍ରି ରାତ୍ରେକ ସେ ବସିଲା ମୋର ଦ୍ୱାରେ । ୩୪୭ ।
କପାଟ ନ ଫେଡଣ ମୁଂ ନ ଗୃହ୍ନିଲି ତାର ମୁଖ
ରଜନୀ ଶେଷ ହୋଇଲା ସେ ହୋଇଲା ବିମୁଖ । ୩୪୮ ।
କାମ କଷ୍ଟୋରେ ଉର୍ବଶୀ କୋପେ ବହ୍ନିଲା ମୋତେ ଶାପ
ମୁହିଂ ଜଗତମୋହିନୀ ରେ ମୋର ଭାଙ୍ଗିଲୁ ଯିନା ଦର୍ପ । ୩୪୯ ।
ମୋତେ ଅପ୍ରାପତ ଯେବେ ହୋଇଲୁ ଫାଲଗୁନ
ଆବର ରତିରଙ୍ଗ କରିବୁ କି ଅନ୍ୟ ତିଶ୍ରୀ ଯେନ । ୩୫୦ ।
ମୋତେ ଭୁହି ନାଶରେ କଲୁ ଅକାରଣେ
ତୋତେ ପ୍ରାପତ ହେଉ ନପୁଂସକ ଲକ୍ଷଣେ । ୩୫୧ ।
ସ୍ୱାମୀ ଇନ୍ଦ୍ର ଦେବତା କୋପକଲେ ତାହା ଶୁଣି
ନକଳଂକ ପୁତ୍ରେ ମୋର କଳଂକ ଲଗାଇଲୁ ଆଣି । ୩୫୨ ।

---

୩୪୩।୧ କଞ୍ଚୁକ କର ମୁହିଂ ଯେ ଗୃହିଂଲି ଫେକଦୃଷ୍ଟି ।—ଟ,ଚ,ଜ,ଡ

୩୪୫।୨ ପ୍ରିୟମ୍ବଦା ଉର୍ବଶୀ ଆସି ମାଗନ୍ତି ରମଣି ।—କ,ଥ,ଗ

ସ୍ବର୍ଗଂ ତୋତେ ଯେବେ ଶାପ ଦେବରଙ୍ଗ ଉର୍ବଶୀ
ପ୍ରଳମ୍ବିତ ହୋଇ ବାଳୀ ବାସବେ ବଚନ ସମ୍ଭାଷି । ୩୫୩ ।
ଉର୍ବଶୀ ବୋଇଲା ମୋରେ କୋପ ନ କର ସୁରନାଥା
ମୋର ଶାପ ପରମ ହିତ ହୋଇବ ପରମାଣି ବୁଝ ଯେହ୍ବା ।୩୫୪।
ସ୍ୱାମୀ ଅଜ୍ଞାତବାସ ଯେ ବରଷେ ତେରଦିନ
ତେତେଦିନ ଯାଏ ନପୁଂସକ ହୋଇବ ଅରଜୁନ । ୩୫୫ ।
ସ୍ୱାମୀ ହିତକାଳଯେ ଯେବେ ମୋତେ ସୁମରଣ
ତେତେବେଳେ ହୋଇବ ସେ ନପୁଂସକ ଲକ୍ଷଣ । ୩୫୬ ।
ତୁମ୍ଭଂର ନିମନ୍ତେ ସେ କରିବ ସୁମରଣ
କାହାରେ ଅନ୍ୟଥା ନୋହଇଟି କପାଳ ଲେଖନ । ୩୫୭ ।
ସ୍ୱାମୀ ସବୁକାଳେ ସମ୍ପଦେ କାହାର ନ ଯାଇଟି ଦିନ
ସଦା ବିପତ୍ତି ଦେବ ନୋହଇ ଲେଖନ । ୩୫୮ ।
ରାଜ ଦିବସ ଯେହ୍ନେ ସମ୍ପଦ ବିପଦ ତେହ୍ନେ
କାହାରବେଳେ ସେ ଯେ ହୋଇବାକ ଆନେ । ୩୫୯ ।
ଅଣହିତ କାଳେ ଯେ ନ ଥିବ ତାର ତତ୍ତ୍ୱଂ
ଶୁଣିଣ ସାନନ୍ଦ ଯେ ହୋଇଲେ ସୁରସାଇଂ । ୩୬୦ ।
ଯୁଧିଷ୍ଠିରଦେବ ପାଦତଳେ ଅର୍ଜୁନ ପରମାଣି
ଯେଥକଇଂ ଭ୍ରାନ୍ତ ତୁମ୍ଭେ ନ କର ଦେବସ୍ୱାମୀ । ୩୬୧ ।
ଅର୍ଜୁନ ବଚନେ ସେ ହୋଇଲେ ପରମ ଶାନ୍ତ
ସାନନ୍ଦ ଭଜଣ ଦେବ ହୋଇଲେ ହରିପୂନ୍ତ । ୩୬୨ ।
ନକୁଳ ବଦନ ଚୃହ୍ନଂ ବୋଇଲେ ଯୁଧିଷ୍ଠିର
ତୁ କେମନ୍ତ କର ବିଷ୍ଣୁରେ ସୁକୁମାର ଭାଇ ଗୋଟି । ୩୬୩ ।
ବାବୁ ଯେ ମହାଘୋର ଅରଣ୍ୟରେ ତେତେ ହଂସୁଲୀ ସୁପାନ୍ତ
ଶତେପଳ ଚନ୍ଦନରେ ଲେପୁଥାଉଂ ନିତ୍ତ । ୩୬୪ ।

---

୩୬୪। { ଯୁଧିଷ୍ଠିର ବୋଇଲେ ଶୁଣ ହୋ ନକୁଳ କୁମାର
ତୁ କେହ୍ନେକ ବିଷ୍ଣୁରୁ କହନ ମୋ ଆଗର । —ଚ, ଜ, ଟ
ନ, ଖ, ଠ

ବାବୁ ବିଦ୍ୟାଧର ପରାୟେ ସୁକୁମାର ତୋର କାୟେ
ମୋ ଚକ୍ଷୁଂ ବ୍ୟବେକେ ଆନକୁ କହି ନୂଆରୁ କଥାୟେ । ୩୬୫ ।
ଶୁଦ୍ଧ ସୁବର୍ଣ୍ଣ କୁଂକୁମ ଜାଣି ଶୋଭିତ ତୋର ବର୍ଣ୍ଣ
ଅଗ୍ୟାଂତବାସେ ବାବୁ ବଞ୍ଚିବୁ କେହ୍ନ ଦିନ । ୩୬୬ ।
ବାବୁ କୋହ୍ନଣି ବିଦ୍ୟାରେ ତୁ ନୋହୁସିରେ କୁଶଳ
କେବଣ ମତେ ଦିନ ବଞ୍ଚିବୁରେ ନକୁଳ । ୩୬୭ ।
ବାବୁ ତୋହୋର କଥାକୁ ମୋହୋର ବଡ଼ ଚିନ୍ତା
ମୋହୋର ଅର୍ଜିଲା କର୍ମ ଭୁଞ୍ଜୁଛ ରେ ଗୃହେଭ୍ରାଥା । ୩୬୮ ।
ନକୁଳ ବୋଇଲେ ଦେବ ତୁମ୍ଭରେ ମୁହିଂ ସୁଖୀ
ଲଲାଟ ଲେଖନ ଦେବ କାହାର ବେଳେ ହୋଇବ ଉପେଖି ।୩୬୯।
ସଦା ସମ୍ପଦେ ପ୍ରାଣୀଂକର ନ ଯାଇଛି ଦିନ
ସଦା ବିପତ୍ତି ଯେ କେବେ ନୋହଇ ଲେଖନ । ୩୭୦ ।
ରାତ୍ର ଦିବସ ଯେହ୍ନେ ହୋଅଇ ତେସନ ସମ୍ପତ୍ତି ବିପତ୍ତି ଜାଣ
କାହ ର ବେଳେ ଦେବ ହୋଇବ ସେ ଆନ । ୩୭୧ ।
ମୋହୋର କଥାକୁ ଦେବ କଛିହିଂ ନ ଭଳ
ତନ୍ତିକାର ନାମେ ମୁଂ ଯେ ହୋଇବି ବାଜିପାଳ । ୩୭୨ ।
ଯୁଧିଷ୍ଠି ପୃଚ୍ଛାକଲେ ତନ୍ତିକାର ବାଜିପାଳ କାହାକୁ ଯେ ବୋଲି
ଯେ କେମନ୍ତ ଚରିତଟି ମୁଂ ବୁଝିତ ନୂଆରିଲି । ୩୭୩ ।
ନକୁଳ ବୋଇଲା ମୁଂ ପାଗଡ଼ା ବାରୁଆଳ ହୋଇବି
ବିରାଟ ନୃପତିକଇଂ ଅଶ୍ୱ ଲାଗ କରାଇବି । ୩୭୪ ।
ସ୍ୱାମୀ ମୋହୋର ହାଥରେ ଯେବଣ ଅଶ୍ୱ ସାଜ
ଆକାଶ ଷେପୀ ପାରନ୍ତି ସେ ହୁଅନ୍ତି ମହାତେଜ । ୩୭୫ ।
ଯୁଧିଷ୍ଠି ଦେବେ ବୋଇଲେ ଆମ୍ଭର ଦେଖିଲା ଶୁଣିଲା ନାହିଂ ପୂର୍ବେ
ଅଶ୍ୱ ଲକ୍ଷଣ ବିଦ୍ୟା ଜାଣିଲୁ କେମନ୍ତ ତୁ ଯେବେ । ୩୭୬ ।

---

୩୭୪।୧ ନକୁଳ ବୋଇଲା ଦ.ଜା ଯେ ଘୋଡ଼ାମୁହିଂ
ବାରୁଆଳ ହୋଇବି । — ଚ,ଜ

୩୭୬ { ଯୁଧିଷ୍ଠି ବୋଇଲେ ଯେହା ଦେଖିଲ ନାହିଂତ ନୟନେ
ଅଶ୍ୱ ଲକ୍ଷଣ ବିଦ୍ୟା ତୁ ଜାଣିଲୁ କେସନେ । — ଛ,ଖ,ନ,ଠ ଙ୍କ

ନକୁଳ ବୋଇଲେ ଦେବ ଶୁଣିମା ସାବଧାନେ
ଜୟନ୍ତ ନାମେ ସତ୍ୟଯୁଗ ବିଦ୍ୟମାନେ । ୩୭୭ ।
ସ୍ୱାମୀ ତୁଳମାସ ଆଦିତ୍ୟ ବିଷ୍ଣୁ ଯେ ପ୍ରଭବ
ବିଚ୍ଛମାସେ ଅନନ୍ତ ନାମ ଯେ ସମ୍ଭବ । ୩୭୮ ।
ଦିବାକର ଆଦିତ୍ୟ ଯେ ହୋଇଲେ ଧନୁମାସେ
ସହସ୍ର କିରଣ ତେଜ ଯେ ପରକାଶେ । ୩୭୯ ।
ମକର ମାସେ ଆଦିତ୍ୟ ଅରୁଣ ନାମେ ବିଦିତ
ନାରାୟଣ ମୂର୍ତ୍ତି ଉଦେ କୁମ୍ଭମାସେ ପ୍ରକାଶିତ ; ୩୮୦ ।
ଭାସ୍କର ନାମେଣ ଆଦିତ୍ୟ ମୀନମାସେ ପ୍ରକାଶଇ
ଅନନ୍ତ ମୂର୍ତ୍ତି ଦେବ ତେଜ ଅଦୃଶ୍ୟ ଯେ ହୋଇ । ୩୮୧ ।
ମେଷମାସେ ଆଦିତ୍ୟ ଯେ ହୁଅଇ ଉଦିତ
ନିଦାଘ ଆଦିତ୍ୟ ଜ୍ୟେଷ୍ଠମାସେ ତେଜମୂର୍ତ୍ତି । ୩୮୨ ।
ମିଥୁନ ମାସେ ଉଦିତ ତପନ ନାମେଣ ସୂର୍ଯ୍ୟ
କର୍କଡା ମାସେ ଯେ ଜଳଧର ନାମେ ତେଜ । ୩୮୩ ।
ବନାନଳ ଆଦିତ୍ୟ ସିଂହମାସେ ଉଦେ
ମାର୍ତ୍ତଣ୍ଡ ନାମେ ଆଦିତ୍ୟ କନ୍ୟମାସେ ଉଦେ ହାଦେ । ୩୮୪ ।

---

୩୭୭।୨    ସନମାନ ନାମେ ସତ୍ୟଯୁଗ କଥାର ପ୍ରସଙ୍ଗେ ।—ଖ, ନ, ଠ

୩୭୯    ସୂର୍ଯ୍ୟଙ୍କର ଦ୍ୱାଦଶ ନାମ ଯଥାକ୍ରମେ "ଆଦିତ୍ୟ ହୃଦୟ" ମତେ, ମେଷ, ବୃଷ, ମିଥୁନ, କର୍କଟ, ସିଂହ, କନ୍ୟା, ତୁଲା, ବିଚ୍ଛା, ଧନୁ, ମକର, କୁମ୍ଭ, ମୀନ ମାସରେ :—

ତପନ, ଇନ୍ଦ୍ର, ରବି, ଗଭସ୍ତି ଯମ, ହିରଣ୍ୟରେତା, ଦିବାକର ମିତ୍ର, ବିଷ୍ଣୁ, ଅରୁଣ, ସୂର୍ଯ୍ୟ ଓ ବେଦାଙ୍ଗ ।

ଅଧିକାଂଶ ପୋଥିରେ ଗୃହୀତ ମାସରେ ସୂର୍ଯ୍ୟଙ୍କର ନାମ ଅଛି ଓ ଅନ୍ୟ କେତେକ ପୋଥିରେ ଦ୍ୱାଦଶାଦିତ୍ୟଂକର ନାମମାନଙ୍କରେ ବୈସାଦୃଶ୍ୟ ଥିଲେହେଁ ତୁଳନା କରି ଉପରୋକ୍ତମତେ ଗୃହୀତ ହୋଇଅଛି ।

ଦ୍ୱାଦଶ ମାସେ ଯେ ଯେ ଦ୍ୱାଦଶ ଆଦିତ୍ୟ
ନକୁଳ କହଇ ଯେ ଯୁଧିଷ୍ଠିରଙ୍କ ଅଗ୍ରତ । ୩୮୫ ।
ସ୍ୱାମୀ ଦକ୍ଷର ନନ୍ଦନୀ ଯେ ସଂଜ୍ଞା ମହାସତୀ
ଦରଞ୍ଚ ନାରାୟଣଙ୍କର ସେ ଅଟେ ପ୍ରିୟବତୀ । ୩୮୬ ।
କୋଟିଏ କିରଣ ଯେ ଦରଞ୍ଚ ନାରାୟଣ ମୂର୍ତ୍ତି
ସଂଜ୍ଞା ସହି ନୁଆରିଲା ପ୍ରଖର ମହାଜ୍ୟୋତି । ୩୮୭ ।
ସ୍ୱାମୀ ରୂପଜ୍ୟୋତି ଦେଖି ସେ ସଂଜ୍ଞା ଅପୂର୍ଣ୍ଣା
ଶରୀରୁ ଜାତକଲେ ଛାୟାନାମେ ବରାଙ୍ଗନା । ୩୮୮ ।
ସ୍ୱାମୀର ପ୍ରକୃତିମାନ ସମସ୍ତ ତାକୁ କହି
ସ୍ତମ୍ଭନମୋହନ ବଶ ଉଚାଟନ ଗୁଟିକା ଅଞ୍ଜନ ତାକୁ ସମସ୍ତ
ଶିଖାଇ । ୩୮୯ ।
ମୁହିଂ ଗୋପ୍ୟାନ ହେଉଛି ମେରୁକୋଟ
ଆରାଧନା ଭଗତି କରି ତୁହି ଦରଞ୍ଚ ନାରାୟଣକଇଂ ଘଟ ।୩୯୦।
ଛାୟାକୁ ସମର୍ପିଣ ତହୁଂ ସଂଜ୍ଞାଂଗଲା ଗୋପେୟ
ମେରୁକୋଟେ ପଶିଲା ସେ ହୋଇଣ ଅଶ୍ୱରୂପେ । ୩୯୧ ।
ଛାୟା ଖଟିଲା ଯେ ନାରାୟଣ ଦରଞ୍ଚ
ସଂଜ୍ଞାଂହୁଂ ଅଧିକ ଗୁଣେ ଭଗତି ସେହୁ ସଞ୍ଚ । ୩୯୨ ।
ଯେ ବଧିରେ ସତ୍ୟ ତ୍ରେତା ଦ୍ୱାପର ଯେ କଳି
ଯେକସ୍ତ୍ରୀ ଗଣ୍ଡା ଯୁଗ ଖଟିଲା ଅଂଶୁମାଳୀ । ୩୯୩ ।
ଅନେକ ପ୍ରୀତି ଭାବେ ଖଟଇ ରମଣୀ
ଦରଞ୍ଚ ନାରାୟଣ ତାହା ନୁଆରିଲେ ଜାଣି । ୩୯୪ ।
ମନୁସାନନ୍ଦ ବେଳଣ ଯେକଇ ସଂବତ୍ସରେ
କୁଣ୍ଡଳ ନାମେଣ କାଳ ଅବଦ ଭୋଗ କରେ । ୩୯୫ ।
କୃତାନ୍ତକ ବୋଲକର ଯେକଇ କନ୍ୟାମାସେ
କୃଷ୍ଣପକ୍ଷ ଯେକାଦଶୀ ସଂକ୍ରାନ୍ତ ଦିବସେ । ୩୯୬ ।

---

୩୯୬।୧ କୃତାଶ୍ୱ ବୋଲକର ଯେକଇ ସତ୍ୟମାସେ ।—ଗ, ଥ
୩୯୬।୧ କୃତାନ୍ତକ ଦୋଲକର ଯେକଇ କଳ୍ପମାସେ ।—ଚ, ଟ, ଛ
୩୯୬।୧ କୁଣ୍ଡଳ ନାମେ ଯେକଇ କଳ୍ପମାସେ ।—ଖ, ଠ, ନ

ଉତ୍ତମ ବାର ନୈଋତ ଯେ ମଘାସିଂହ ରାଶି
ବାଳବ ନାମେ କରଣ ଯୋଗ ଯେ ହରଷ । ୩୯୭ ।
ସେହି ଦିନ କୃତାନ୍ତକ ଛାୟା ସଙ୍ଗେ କଳି
ଅନେକ ଭର୍ତ୍ସନା କରିଣ ଛାୟା ଦେଲେ ଗାଳି । ୩୯୮ ।
ସହି ନୁଆରି ଯେ କୋପକଲେକ ଯମ
ଛାୟାର ଉପରେ ପାଦ ପ୍ରହାର କଲା ତମ । ୩୯୯ ।
କୋପେଣ ଛାୟା ଯେ ଶାପ୍ୟଦେଲେ ହେଳୁଂ
ଯାଆରେ ଯମ ତୋର ବାମ ଚରଣ ଅକ୍ଷୋଭ ହୋଇ ଗଳୁ ।୪୦୦।
ଅଥବା ଯେବେ ମୁହିଂ ଅଟଇ ତୋର ମାଏ
ଗଳିତ କୋଷ୍ଠ ବ୍ୟାଧି ହେଉ ପ୍ରହାର କଲୁ ଯେବଣ ପାଏ ।୪୦୧।
ଏମନ୍ତେ ଶାପ୍ୟ ଦିଲେ ଛାୟା ମହାମାଏ
ଗଳିତ କୋଷ୍ଠ ବ୍ୟାଧି ହୋଇଲା ଯମ ଦେବତାଂକର ପାଏ ।୪୦୨।
ନିତ୍ୟକର୍ମ ବିଧି ଯେ ସମ୍ପୂର୍ଣ୍ଣ କଲା ଚନ୍ଦ୍ର
ଆପଣା ଭୁବନେ ଆସି ବନ୍ଦେ କରଇ ସବିତା । ୪୦୩ ।
ଦେଖିଲେ ଯମର ଚରଣେ ଗଳିତ କୁଷ୍ଠ
ବାବୁ କାହାର ଶାପ୍ୟରେ ତୋହର ଶରୀରେ
ହୋଇଲା ଏତେକେ କଷ୍ଟ । ୪୦୪ ।
କ୍ରୋଧେ ଗଦଗଦ ହୋଇଣ ଯେ ନାଶକର ବୋଇଲା
ମାତାର ଶାପେ ମୋତେ ଏତେ କଷ୍ଟହେଲା । ୪୦୫ ।
ପୁତ୍ରର ବାକ୍ୟ ଶୁଣି ବିସରିଲେ ଅଂଶୁମାଳୀ
ପୁତ୍ରକୁ ବାଧଇ ନିକ ମାତାଂକର ଗାଳି । ୪୦୬ ।
ସବେ୍ୟ ଅସବେ୍ୟ ପୁତ୍ରେ ମାତାକୁ କରିବେ ଦୋଷ
ମାତାଏ ରାଗେ ପୁତ୍ରଂକୁ ଶାପ୍ୟ ଦିଅନ୍ତି ଅବଶ୍ୟ । ୪୦୭ ।
ଏମନ୍ତ ହୋଇ ମାତାଂକର ଶାପ ପଡ଼ିଲେ
ବଂଶ ରହିବ କି ବିରଞ୍ଚି ନାରାୟଣ ବୋଇଲେ । ୪୦୮ ।

---

୪୦୩ { ନିତ୍ୟକର୍ମ ବିଧି ଯେ ସମ୍ପୂର୍ଣ୍ଣ କଲା ଚନ୍ଦ୍ର
ଆପଣା ଭୁବନେ ଆସି ପ୍ରବେଶ କଲେ ରବି ଜ୍ୟୋତି ।—
କ, ଗ, ଘ, ଥ

ଜାତଯେ ଆମ୍ଭର ଏ ନୋହଇ ବନ୍ଧୁଏ
ମାୟା କରଣ ସେ ଆମ୍ଭନ୍ତ ଅଟ୍ଟ ସେହ । ୪୦୯ ।
ଧ୍ୟାନେଣ ଜାଣିଲେ ତାହା ଗଗନ ବହାଘ
ବଗୃର ଜାଣିଲେ ଯେ ପୁତ୍ରଂକର ନୋହେ ଗର୍ଭଧାଘ । ୪୧୦ ।
ତେଜ ସହି ନୁଆର ସଗ୍ୟାଂ ଆମ୍ଭନ୍ତ କଲାକ ହ'ଦେ ମାୟା
ଧ୍ୟାନେ ଜାଣିଲେ ସେ ଯେ ଅଟଇ ଦେବୀ ଛାୟା । ୪୧୧ ।
ସଗ୍ୟାଂର ଗୋପ୍ୟ ସେ ଜାଣିଲେକ ଦେବ ହୃଦେ
ଛାୟାକୁ ପ୍ରସନ୍ନ ବୋଇଲେ ଦେବ ପରମ ସାନନ୍ଦେ । ୪୧୨ ।
ଯେତେକାଳ ପ୍ରକୃତ ଜାଣି ଖଟିଲୁ ଯେ ଭୁବି
ସଗ୍ୟାଂ ଦେବୀର ବଲ୍ଲଭ ଯେ ଅଟଇ ହାଦେ ମୂର୍ଦ୍ଧଂ । ୪୧୩ ।
ସଗ୍ୟାଂକଇଂ ଲେଡବାରେ ଗଲେକ ବିରଞ୍ଚି
ସୁସଞ୍ଚ ତୁରଙ୍ଗମ ହୋଇଲେ ଦେବ ସଞ୍ଚି । ୪୧୪ ।
ହ୍ରେସାରବ କରଣ ଯେ କଲେକ ଶବଦେ
ଅନନ୍ତ କୋଟି ବ୍ରହ୍ମାଣ୍ଡ କମ୍ପିଲ ରଡନାଦେ । ୪୧୫ ।
ଯେସନେକେ ଅଶ୍ୱଜାତି ତେସନେକେ ପ୍ରକୃତି
ସଗ୍ୟାଂକ୍ୱଂ ହସିଲେ ବରହ ଭାବମତି । ୪୧୬ ।
ଶବଦକୁ ଗୋଡାଇ ଦେବ ପଶିଲେ ମେରୁକୋଟେ
ମାଡି ବସିଲେ ଦେବ ସଗ୍ୟାଂଦେବୀର ପୃଷ୍ଠେ । ୪୧୭ ।

---

୪୧୨।୨ ଛାୟାର ଯାସ ଯେ ଜାଣିଲେ ଦେବ ହୃଦେ ।—(ଗ, ଥ)
୪୧୨।୨ ଶାପ୍ୟର ଯାସ ଯେ ଜାଣିଲେ ଦେବ ହୃଦେ ।—(କ, ଣ)
୪୧୨।୨ ସଗ୍ୟାଂର ଛଦ୍ମ ଜାଣିଲେକ ଦେବ ହୃଦେ ।—(ନ, ଠ)
୪୧୩।୨ ଛାୟାର ବଲ୍ଲଭ ନାମେ ସକେତ ଅଟଇ ମୂର୍ଦ୍ଧଂ ।—କ, ଥ
୪୧୪।୨ ସୁଚଞ୍ଚି ତୁରଙ୍ଗମ ହୋଇଲେ ଦେବଇଛି ।—ଘ, ଣ
୪୧୮।୧ ସ୍ତ୍ରୀକା ରମଣ ହୋଇଲା ବଡଣ ଦଣ୍ଡ ପରଯନ୍ତ ।—କ,ଣ,ଗ,ଘ,
ଥ, ଛ
୪୧୮।୨ ପ୍ରିୟା ପ୍ରିୟା ବୋଲିକର ପୁଣ କଲେକ ରେତପାତ । – କ, ଣ

ସ୍ୱେକଗତ ହୋଇଲା ବତଶ ଧନ ପଚପନ୍ତେ
କେହି କାହାକୁ ଓଛ ନୁହନ୍ତି ଜଗତେ । ୪୧୮ ।
ଗର୍ଭରେ ଗ୍ଭଡଲେ ଦେବ ଅମୋଘ ବନ୍ଦୁରେତ
ସାର୍ଯ୍ୟ ପଡନ୍ତେ ଗର୍ଭରୁ ପୁତେକ ହୋଇଲେ ସମ୍ଭୂତ । ୪୧୯ ।
ସେ ବନ୍ଦୁରୁ ଜାତ ହୋଇଲେ ଅଶ୍ୱିନୀକୁମାର
ଅଶ୍ୱର ମୁଖଗୋଟି ସେ ମାନବ ଶରୀର । ୪୨୦ ।
ପୁତ୍ରର ବସମ ରୂପଣ ଦେଖି ଅଂଶୁମାଳୀ
ଅତିହିଁ ଆନନ୍ଦେ ପୁଣ ସଗ୍ୟାଂର ପାଶେ ମିଳି । ୪୨୧ ।
ପୁତ୍ରଜନ୍ମ ହେବାରୁ ରବି ନ ଆଶିଲା ଯେତେ ରେତ
ଅସମ୍ଭାଳ ହୋଇଣ ସେ ପଡିଲା ପୃଥ୍ୱୀଗତ । ୪୨୨ ।
ତହିଁରୁ ପୁଣ ପୁତେକ ହୋଇଲାକ ଜାତ
ଅଯୋନି ସମ୍ଭୂତ ସେ ନାମଗୋଟି ରେବନ୍ତ । ୪୨୩ ।
ରେବନ୍ତଂକର ଅଶ୍ୱକାଯ୍ୟେ ଦଗପାଳ ଶିର ଗୋଟି
ଆକାଶ ପୁରୁଷ ହୃଦଗତେ ଅଜପା ଲଯ୍ୟେ ଘୋଟି । ୪୨୪ ।
ସ୍ତମ୍ଭନ ମୋହନ ବଶ୍ୟ ଉଚାଟନ ଗୁଟିକା ଅଞ୍ଜନ
ଉଲୂକ କୁହୁକ ବଦ୍ୟା ସଜନ ଯାଜନ । ୪୨୫ ।
ଧରଣ ଧାରଣ ପର୍ବତ ରସାୟନ ମଉଷଧି
ଅବ୍ୟୟ ପୁରୁଷ ସେ ସ୍ୱୟଂ ସମସ୍ତ ମନ୍ତ୍ର ସାଧି । ୪୨୬ ।
ସ୍ୱାମୀ ପଣ୍ଡୂଂକର ଅବସ୍ଥାନେ ମାଦ୍ରୀ ମୋତେ ଯେବେ କୋଳାଗ୍ରତେ
ଅନନ୍ତ ବଇତରଣୀ କୂଳେ ସେ ଭେଟିଲେ ରେବନ୍ତେ । ୪୨୭ ।

---

୪୧୮।୨ ରେ ରେ ତ୍ରିସ୍ଥା ବୋଲିକର ପୁଣ କଲେକ ରେତପାତ ।—ଥ,ଞ୍ଜ,ଗ

୪୨୪ { ରେବନ୍ତଂକର ଅଶ୍ୱଲକ୍ଷଣ କାଯ୍ୟେ,
ଦଗପାଳ ଶରୀର ଅକାମ ଅଜପା ଅଲଯ୍ୟେ ।—ଜ, ଣ

୪୨୬।୨ ଅନଲ ପୁରୁଷ ସେ ସମସ୍ତ ମନ ସାଧି ।—କ, ଛ, ଚ, ଟ, ଠ, ନ

୪୨୬।୨ ରସ ରସାୟନ ବଦ୍ୟା ସର୍ବ ମଉଷଧି ।— କ, ଖ

୪୨୬।୨ ଅସାଧ୍ୟ ସାଧନ ହୋଇପାରେ ମଉଷଧି ।—ଗ, ଞ୍ଜ

ସ୍ୱାମୀ ଅଶ୍ୱଲକ୍ଷଣ ଯେ ସମସ୍ତ ମଉଷଧି
ରେହନ୍ତ ସାରଥି ମୋତେ କହିଲେ ସର୍ବବୁଦ୍ଧି । ୪୨୮ ।
ସେ ପରମ ପୁରୁଷ ମୋତେ ଧରଣ କୋଳାଗ୍ରତେ
ପଞ୍ଚବଂଶ ମନ୍ତ୍ର ମୋତେ କହିଲେ ରେହନ୍ତେ । ୪୨୯ ।
ଅଗି ଅରୁକତ ତପନ ସିଦ୍ଧଗୁଣ୍ଡି
ରୁଜସମ ଧନଧର୍ମ ଆବର ମନ୍ତ୍ରଗୁଣ୍ଡି । ୪୩୦ ।
ସ୍ୱାମୀ ସ୍ୱେତେକ ବଦ୍ୟା ଯେତେ ସାଧି ପାରଇ ସଦ୍ଧ
ବ୍ୟାଧି ନ ପୀଡଇ ମୃତ୍ୟୁ ନୋହୋଇ ଅଶ୍ୱ ଯେ ନୋହନ୍ତ ବୃଦ୍ଧ । ୪୩୧ ।
ଅଶ୍ୱଧାମା ବୋଲଣ ଯେ ସ୍ୱେକ ମନ୍ତ୍ର ଗୋଟିଏ
ତାହା ପଢି ସାଜିଲେ ଆକାଶେ ଖେପନ୍ତ ହୟେ । ୪୩୨ ।
ଅରୁଣ ମନ୍ତ୍ର ବଳ କର୍ମଣ ମନ୍ତ୍ର ବେଳ
ଅଶ୍ୱ ରଣେ ସାଜ ଜଣନ୍ତ ଯେ ପାରନ୍ତ ଚହ୍ନି । ୪୩୩ ।
ସାମ ତତ କଙ୍ଗ ନାମେ ଅଛଇ ତିନ ମନ୍ତ୍ରେ
ଅକାଠ ଅପୁଠ ସ୍ୱେ ଉଲୁଙ୍କଣ ହୟେ ଯେତେ । ୪୩୪ ।
ଶୁଣ ଦେବ ମହାରାଜା ବୋଧିବ ଗ୍ୟାନଗୁରୁ
ବନର ଅଶ୍ୱେ ଆସି ଖଟିବେ ମୋହର ମନ୍ତ୍ର ପଢ଼ୁ । ୪୩୫ ।

---

୪୩୦ { ଅଗ୍ନି ଅରୁକତ ପନ୍ନସିଦ୍ଧ ଗୁଣ୍ଡି ଦାହାଣ୍ଡି
ରୁଜସ ମେଧ ଆଉ ମନ୍ତ୍ର ମୃତ୍ୟୁଗଣ୍ଡି ।—ଖ, ନ

୪୩୦ { ସଂଗ୍ୟା ଆରାଧକ ତପନ ସିଦ୍ଧ ଗୋଟି
ରୁକ ସାମ ଧନୁରୁଷନ ମୃତ୍ୟୁ ଫୁଟି ।—ଥ, ଗ

୪୩୧ { ସ୍ୱାମୀ ସ୍ୱେତେକ ବଦ୍ୟା ସାଧି ପାଇଲା ସଦ୍ଧ
ନରେଗୀ ହୋଇ ଅଶ୍ୱ ନୁହନ୍ତ ମୃତ୍ୟୁବ୍ୟାଧି । —ଖ, ନ

୪୩୧।୨ ସ୍ୱେମନ୍ତ୍ର ସାଧିଲେ ଆକାଶେ ଖେପନ୍ତ ହୟେ ।—କ, ଛ, ଝ

ପଳିତ ଗଳିତ ଅଶ୍ୱ ମୋହୋରେ ତେଜମସ୍ତେ
ଥାଠ ନ ଜିଣିଲେ ଦେବ କୁଆପନ୍ତ ମୋର ହସ୍ତେ । ୪୩୬ ।
ମନ୍ଦାଅର୍କ ବୋଲିଣ ଅଛଇ ବେଦମନ୍ତ୍ର ସଂଗ୍ୟାଂ
ଯେହା ଉଦ୍ଦେଶ୍ୟ କରନ୍ତେ ସବୁନ୍ତ ଅଟଇ ଆଗ୍ୟାଂ । ୪୩୭ ।
ନକୁଳ କହନ୍ତେ ଥମ୍ଭୀଭୂତ ଧର୍ମସୁତେ
ବିପତ୍ତି କାଳକୁ ଧାତା ସଞ୍ଚ ଅଛଇ ନିଯୁତେ । ୪୩୮ ।
ଯୁଧିଷ୍ଠି ବୋଇଲେ ବାବୁ ଶୁଣସିରେ ବତ୍ସ
ଅଶ୍ୱ ଗୋଟିଯେ ଉାକନ ରେ ଦେଖିବା ପ୍ରତକ୍ଷ । ୪୩୯ ।
ନୋହିଲେ କି ବିରାଟ ରାଜ୍ୟକୁ ତୋତେ ପାରଇକି ନେଇ
ଜଣେକ ଉଦ୍ଧତ ହୋଇଲେ ଜାଣିମେ ସବୁଂକୁହିଂ । ୪୪୦ ।
ନକୁଳ ଗୃହିଂଲା ଅଶ୍ୱ ଅଂଜନକଇ ଘେନ
ଦେଖିଲା ଅଶ୍ୱଜାତ ବନ ଯୋଜନ ଶତ ତିନ । ୪୪୧ ।
ନକୁଳ ବୋଇଲା ସ୍ୱାମୀ ଶୁଣିମା ସାବଧାନେ
ବାରସ ପର୍ବତ ଦେବ ତିନିଶତ ଯୋଜନେ । ୪୪୨ ।
ତହିଂ ଅଶ୍ୱମାନଂକର ଜନମଥାନ ଭୂମି
କଳା ପାଟଳ ହରିତ ଶ୍ୱେତ କୁଂକୁମ ଶ୍ୟାମରୂପ ସ୍ୱାମୀ । ୪୪୩ ।

---

୪୩୬।୨ ଥାଇ ନ ଘୁଞ୍ଚିଲେ ଦେବ ନ ବାହୁଡ଼ଇ ମୋର ହସ୍ତେ ।—ଥ, ଗ

୪୩୭।୧ ଚନ୍ଦ୍ର ଅର୍କ ବୋଲିଣ ଯେ ଅବନ୍ଦ ମନ୍ତ୍ରଶାଖା
ସେ ମନ୍ତ୍ର ବଶ କରନ୍ତେ ସବୁହିଂ ବାରନ୍ତା ।—ଥ, ଗ, ଟ

୪୩୯।୨ "ଅଶ୍ୱ ଗୋଟିଯେ ଉାକନ ରେ ଦେଖିବା ପ୍ରତକ୍ଷ" ପରେ ଣ, ଖ ପୋଥିରେ ଭିନ୍ନପାଠ:—

ଯୁଧିଷ୍ଠି ଦେବ ବୋଇଲେ ଶୁଣ ରେ ବିବସ୍ତ୍ର
ବିପତ୍ତି କାଳକୁ ଧର୍ମ ସିନା ଆମ୍ଭନ୍ତ ସାହାପକ୍ଷ ।
ନୋହିଲେ ବିରାଟ ରାଜ୍ୟକଇଂ ପାରନ୍ତ କି ତୁମ୍ଭନ୍ତ ନେଇ
ଜଣେ ନିଜ ରୂପ ହୋଇଲେ ଜାଣିମ ସମସ୍ତଂକୁହିଂ ।
ଅର୍ଜୁନ ବୋଇଲେ ନକୁଳ ମୁଖ ଗୃହିଂ
ଠାକୁରଂକର ଆଗ୍ୟାଂ ତୁ କରସି ରେ ଭାଇ ।

କେମନ୍ତ ଅଶ୍ୱ ଗୋଟିଏ୍ଟ ଆସିବ ଦେବ କତ
ଶ୍ୱେତ ଅଶ୍ୱ ଗୋଟିଏ୍ଟ ଅସ୍ତୁ ଦଧିମଙ୍ଗଳ ସୁଗନ୍ଧ । ୪୪୪ ।
ଅଶ୍ୱ ଆଗମ ମନ୍ତ୍ର ବାମାଙ୍କରୈକ ପଢିଲ କୁମାର
ଅଦଭୂତେ ଅଶ୍ୱେକ ଆସି ମିଳଲା ଛାମୁର । ୪୪୫ ।
ଧର୍ମଂକର ନନ୍ଦନ ତାହା ଦେଖିଣ ଆଶ୍ରିକ
ବାକୁ ତୋହୋର ପ୍ରସନ୍ନେ ପ୍ରାପତ ହୋଇବ ମୋତେ ରାଜ୍ୟ ।୪୪୬।
ବାକୁ ଅଶ୍ୱଂକର ପ୍ରସନ୍ନେ ଶତ୍ରୁକୁ ହୋଏ୍ଟ ଜୟୀ
ଯେବେ ଯେ ଉଦତ ମୋତେ ହୋଇଲ ଦଣ୍ଡପାଣି । ୪୪୭ ।
ଆବର କଉରୋବଂକୁ ଜସ ମୋର ଭଏ୍ଟ
ବେଗକର ଅଗ୍ୟାଂତବାସ ସାରବା ଛଅଜଣହେ । ୪୪୮ ।
ସହଦେବର ବଦନ ଯେ ଗୃହ୍ନଂଲେ ଧର୍ମସୁତେ
ତୁହ୍ୱ ସେ ସର୍ବଗ୍ୟଂ ବାବୁ କସ କହ୍ୱବାକ ତୋତେ । ୪୪୯ ।
ଆମ୍ଭ ସବୁଂକୁହ୍ନଂ ବାବୁରେ ତୁହ୍ୱ ସେ ବୁଦ୍ଧିଦାତା
ଶୁଣିବେ ଇଚ୍ଛା ମୋର ତୁ କେବଣ ଗୃଣେ ଜାତା । ୪୫୦ ।
ସହଦେବ ବୋଇଲ ଦେବ ଶୁଣ ଧର୍ମରାଏ୍ଟ
ଗୋପ୍ୟାନ ହେବାକୁ ମୋର ଅଛଇ ଉପାଏ୍ଟ । ୪୫୧ ।
କହ ବୋଲି ବୋଲନ୍ତି ସେ ଧର୍ମର ନନ୍ଦନ
କରପଦ୍ମ ଯୋଡଣ କହେ ମାଦ୍ରୀର ନନ୍ଦନ । ୪୫୨ ।
ଶୁଣ ଦେବ କଉଶିକ ଋଷିଂଙ୍କର ଗୋତ୍ରେ
ସାମନ୍ତୁ ମହଋଷି ବୋଲି ତାହାଂକର ପୁତ୍ରେ । ୪୫୩ ।
ସାମନ୍ତୁଂକର ପୁତ୍ର ଯେ ଅଭଏ୍ଟମନ୍ତୁ ବୋଲି
କୃତାଶ୍ୱ ମହଋଷି ତାହାର ପୁତ୍ର ଯେ କହ୍ୱଲ । ୪୫୪ ।

---

୪୫୩।୨ ଶାମଳ ମହଋଷି ବୋଲି ତାହାଂକର ପୁତ୍ରେ । – ଙ, ଚ, ଛ, ଖ, ନ

୪୫୬ { ବୃନ୍ଦାଅର୍କର ନନ୍ଦନ ମନୁମନ ଭେଦୀ
ସେହାର ନନ୍ଦନ ଯେ ହୋଇଲ ଜମ୍ବୁଧି ।—କ, ଥ

କୃତାଶ୍ୱର ନନ୍ଦନ ଯେ ଅଜମୀଢ ମହାଋଷି
ବୃନ୍ଦାଅର୍କ ବୋଲିକରି ଯେହାଙ୍କର ଶିଷି । ୪୫୫ ।
ବୃନ୍ଦାଅର୍କର ନନ୍ଦନ ମନମନ ସିଦ୍ଧି
ଯେହାଙ୍କର ନନ୍ଦନ ହୋଇଲେ ଜମ୍ବୁବେଦୀ । ୪୫୬ ।
ଜମ୍ବୁବେଦୀର ନନ୍ଦନ ଯଦୁ ନାମେ ମହାଋଷ
ଯେଥିକୁ ଯେ ଯଦୁବଂଶ ହୋଇଲା ବଖାଣି । ୪୫୭ ।
ଯଦୁର ନନ୍ଦନ ଯେ ହୋଇଲା ସୁରଥ
ଯେହାଙ୍କର ନନ୍ଦନ ଯେ ହୋଇଲା ମନୁରଥ । ୪୫୮ ।
ମନୁରଥର ନନ୍ଦନ ହୋଇଲା ଶୂନ୍ୟଋଷି
ବଇଷ୍ଣବ ବୋଲିକରି ଯେହାଙ୍କର ଶିଷି । ୪୫୯ ।
ବଇଷ୍ଣବ ଋଷିଙ୍କର ନନ୍ଦନ ଯେ ଅଟଇ ଅରୁଣତେଜ
ଯେହାଙ୍କର ନନ୍ଦନ ଯେ ଅନନ୍ତ ମନସ୍ୱୀଜ । ୪୬୦ ।
ଅନନ୍ତର ନନ୍ଦନ ଯେ ହୋଇଲା ସୁରଦେବ
ସୁରଦେବର ନନ୍ଦନ ଯେ ହୋଇଲା ସୁଦେବ
ସୁଦେବର ନନ୍ଦନ ଯେ ହୋଇଲା ବସୁଦେବ । ୪୬୧ ।
ବସୁଦେବର ଭାରିଜା ଅଟଇ ଦେବକୀ
କଂସର ଭଉଣୀ ଯେ ସୁପୁତ୍ର ଜାତକୀ । ୪୬୨ ।
ସ୍ୱାମୀ ହେନେକ ନାରଦଙ୍କୁ ଯେ ପୁଚ୍ଛାକଲା ରାଜେ କଂସ
ଭୂତ ଭବିଷ୍ୟ ଗ୍ୟାଂତା ମୁନହେ ମୃତ୍ୟୁ ମୋତେ କିସ । ୪୬୩ ।
ନାରଦ କହିଲେ ଯେ ଶାହସ୍ର ସଙ୍ଗତେ
ତୋହୋର ମୃତ୍ୟୁ ହେବ ହାଦେ ଭଣଜାର ହାଥେ । ୪୬୪ ।
ନାରଦେ କହିଲେ ସତ୍ତ୍ୱଂ ମୃତ୍ୟୁଅର୍ଥ ବାଣୀ
ପାମର କଂସାସୁର ଯେହା ନୁଆରିଲା ଜାଣି । ୪୬୫ ।
ଯେକା ଦେବକୀଙ୍କ ପଦ୍ମ ମାରି ପକାଇଥାଆନ୍ତା
ଭଗ୍ନୀ ନାଶଗଲେ ଭଣଜା କାହୁଂ ଉପୁଜନ୍ତା । ୪୬୬ ।

---

୪୫୯।୧ ମନୁରଥର ନନ୍ଦନ ହୋଇଲା ପୁଣ୍ୟମା ମହାଋଷି ।—ଖ,ନ

ଗର୍ଭବାସ କାଳେ ଭର୍ଗ୍ଗୀକି ରକ୍ଷା କରୁଥିଲ
ବାତ୍ସୁକ ପୁତ୍ର ଗୋଟିକି ସେ ଆଗମେ କଗୃତଲ । ୪୬୭ ।
ଛଡପୁତ୍ର ମାଇଲାକ ଦୈବ୍ୟମତେ ପାଷାଣେ କଗୃତ
ସପତମ ଗର୍ଭେ ସେ ବଳରାମେ ଅବତର । ୪୬୮ ।
ଦେବକୀ ଗର୍ଭରୁ ଦେବ ଉଭାରଣ ଯାଇଂ
ରୋହିଣୀ ଗର୍ଭେ ଦେବ ଜନ୍ମିଲେ ହଳସାଇଂ । ୪୬୯ ।
ଅଷ୍ଟମ ଗର୍ଭେ ସେ ଦେବକୀ ଉଦରେ
ଜନ୍ମିଲେ ପ୍ରଭୁ ସେ ଦେବ ଚକ୍ରଧରେ । ୪୭୦ ।
ସ୍ବାର୍ମୀ ସିଂହମାସ କୃଷ୍ଣପକ୍ଷେ ଅଷ୍ଟମୀ ଚନ୍ଦ୍ରବାର
କୃତ୍ତିକା ଅନ୍ତରେ ରୋହିଣୀ ପ୍ରବେଶ ରାତ୍ର ସେ ଅର୍ଦ୍ଧର । ୪୭୧ ।
କଂସର ଆଜ୍ଞାଂୟେ ଜଗିଛନ୍ତି ସେ ଅନେକ ପାହାର
ନଆଳ ପିନ୍ଧାଇଛନ୍ତି ଦେବକୀକ ଯତ୍ନକରି । ୪୭୨ ।
ସେହ୍ନ ନଶିଅର୍ଦ୍ଧେ ହେଲେ ହରି ଜାତେ
ବାସୁଦେବଂକ ମାୟାରେ କରି ସବୁରି ଅଚେତନା କାୟେ । ୪୭୩ ।
ବାସୁଦେବଂକୁ ଘେନଣ ବାସୁଦେବ ସେ ବାହାର
ଖାକ୍ରକାରେ ଭେଟିଲ ସେ ଉଗ୍ରସେନ ବୀର । ୪୭୪ ।
ଉଗ୍ରସେନକଇଂ ଦର୍ଶନ କରାଇଲେ ହରି
ପାଟେ ରାଜା କରିବେ ବୋଲି ବାନ୍ଧିଦଲେ ଶାଢ଼ୀ । ୪୭୫ ।
ସେ କଥାକୁ ନ ଜାଣଇ ବାସୁଦେବ ସ୍ବର
ଖାଡକାରେ ପ୍ରବେଶିଲ ଯମୁନା ନଦୀତୀର । ୪୭୬ ।
ସେ ଯମୁନା ବଢିଅଛି ବେନକୂଳ ମାଡ
କେଶବ ମାୟାରେ ସେ ଜଳ ଗଲ ଗୁଡ । ୪୭୭ ।
ବାମ ଡାହାଣେ ସେ ବେନତାଳ ଉଚ
ବାସୁଦେବଂକ ଗମନେ ବାଟ ହେଲ ସେକସଞ୍ଚ । ୪୭୮ ।
ବାମ ଡାହାଣରେ ସେ ଅନେକ ତାଳ ଗଞ୍ଜ
ସମସ୍ତ ଦେବଂକର ଗମନ ବାଟ ହୋଇଅଛି । ୪୭୯ ।

---

୪୭୨।୧ ପାହାର = ପ୍ରହରୀ, ଦ୍ୱାରୀ ।

କୃଷ୍ଣଙ୍କୁ ଜନ୍ମ କରାଇ ଇନ୍ଦ୍ରାଦି ଦେବଗଣ
ମଥୁରାରୁ ଗୋପକୁ ସେ କରନ୍ତି ପୟାଣ । ୪୮୦ ।
ଜେଣୁ କର ଯମୁନା ନଦୀ ଥୋଇଅଛୁ ଥଳ
ବେଳପାଖେ ରହିଅଛୁ ବହୁଳ ସେ ଜଳ । ୪୮୧ ।
ସ୍ୱକ୍ଷେଣ ବାସୁଦେବ ନଦୀ ହୋଇଲେକ ପାର
ଗୋପପୁରେ ପ୍ରବେଶ ସେ ରାତ ଦଣ୍ଡଚାର । ୪୮୨ ।
ଯେବଣ ଦିନ ଶ୍ରୀକୃଷ୍ଣ ଗର୍ଭରେ ସଞ୍ଚରିଲେ
ସେହିଦିନ ଯଶୋବନ୍ତୀ ଗର୍ଭବାସ ହେଲେ । ୪୮୩ ।
ଆଦି ଅନ୍ନପୂର୍ଣ୍ଣୀ ଯେ ରହିଲା ତାର ଗର୍ଭେ
ବରୁଣ ଭିଆଣ କଲେକ ସର୍ବଦେବେ । ୪୮୪ ।
ନନ୍ଦର ଘରଣୀ ଯେ ଦେବୀ ଯଶୋବନ୍ତୀ
ତାହାର ଦୋହିତାଙ୍କୁ ଯେ ଜନ୍ମିଛୁ ସେହି ରାତି । ୪୮୫ ।
ପୁତ୍ରକଇଁ ଦେଇଣ ସେ ଆଣିଲା ଦୋହିତ
କୁମାରୀକ ଦିଲେ ନେଇ ଦେବକୀ ଅଗ୍ରତ । ୪୮୬ ।
ପ୍ରଭାତରେ ଆସିଣ କଂସ ଦେଖିଲାକ ତାହା
ସେ ବଜ୍ର କନ୍ୟାକୁ କରୁଛଇ କଂସ ନୃପନାହା । ୪୮୭ ।
ଅନ୍ତରୀକ୍ଷେ ପିଟକାଇ ଗଲା ସେ ଅନାଦି ଭଇରବୀ
କଂସର ମୃତ୍ୟୁଭେଦ କହିଗଲେ ଶୂନ୍ୟେ ମହାଦେବୀ
କେଶବଂକୁ ଗୋପପୁରେ ଯଶୋବନ୍ତୀ ସେବ । ୪୮୮ ।
ଶୁଣିଣ ମହାରାଜା ପାଇଲା ମହାଭୀତ
ଗୋପପୁରକୁ ଶାପ ଅଛୁ ନ ଯିବ ତହିଂ କତ । ୪୮୯ ।
ଅଷ୍ଟମଲ୍ଲଂକୁ ବରୁଣ ବୋଇଲା ତୁମ୍ଭେ ଯାଅ
ଗୁପତେ ମାରିବ ତୁମେ ନନ୍ଦ ଗଉଡର ପୁଅ । ୪୯୦ ।
ଶୁଣି ଅଷ୍ଟମଲ୍ଲଂକ ମଧ୍ୟେ ପୂତନା ଯୁବତୀ
ବୋଇଲା ସେହି ଗୁର ବାଳକ ମୁଂ ଆସିବି ନପାତି । ୪୯୧ ।
ସେତେ ବୋଲି ପୂତନା ଯେ ଅଇଲା ଗୋପପୁର
ଦିବ୍ୟରୂପ ଧରିଣ ଯେ ପଶିଲା ନନ୍ଦ ଘର । ୪୯୨ ।

ଦେଖିଲା କୃଷ୍ଣ ଶୋଇଅଛନ୍ତି ଅନୁତ୍ତର ଶାଟଳ
ଥନ ନେଇ ସମର୍ପିଲା କୃଷ୍ଣର ବଦନରେ । ୪୯୩ ।
କ୍ଷୀର ପିବନ୍ତେ ଯେ ହରି ବଧକଲେକ ପ୍ରୋହ୍ଣୀ
ପାଦେଣ ଭଞ୍ଜିଲେ ଯେ ଯାମଳା ଅର୍ଜୁନ ବୃକ୍ଷ ବେନି । ୪୯୪ ।
ପାଦ ପ୍ରହାରନ୍ତେ ଯେ ଭଞ୍ଜିଲେ ଶକଟା
ବାଳୁତ ଖେଳେ ଥାଇଂ ହରି ବଦାରଲେ ତୃଣାବର୍ତ୍ତା । ୪୯୫ ।
ବତ୍ସା ଚ୍ୟୁଖନ୍ତେଣ ବନେ ବଧକଲେ ଷଣ୍ଢ
ବକାସୁରକୁ ଯେ ଚିରଲେ ବେନିଖଣ୍ଡ । ୪୯୬ ।
ଅଘାସୁରକୁ ଯେ ମାଇଲେ ପରଚଣ୍ଡା
ବ୍ରାହ୍ମଣୀ ଅନ୍ନେ ସନ୍ତୋଷ ହେଲେ ବାହୁଡ଼ାଇ ଦେଲେ ପଣ୍ଡା । ୪୯୭ ।
ଦାବାଗ୍ନି ଭକ୍ଷିଣ ଯେ ଦଳଲେ ଦେବ କାଳୀ
ଶତଭାର ପଦ୍ମପୁଷ୍ପ କଂସକୁ ଦେଲେ ତୋଳ । ୪୯୮ ।
କାଳନ୍ଦୀର ତୀରେ ବଜପ୍ରେ କଦମ୍ବତରୁତଳେ
ହରଷେ ରମିଲେ ଗୋପ ନାୟେକା କ୍ରୀଡାରଙ୍ଗ କୁଞ୍ଜହାଲେ ।୪୯୯।
ପୁଷ୍ୟୋକ ନନ୍ଦନୀ ଯେ ରାଧିକା ଅପର୍ଣ୍ଣା
ନାରାୟଣେ ଅପ୍ରୀତି ସେ ବଡାଇଲା ବରାଙ୍ଗନା । ୫୦୦ ।
ସ୍ୱାମୀ ରାଧିକା ନଇଲା ଦୂତିକାର ବୋଲେ ଯହୁଁ
କେଶବ ବସରଲେ କଂସକୁ ବଧକରିବ ମୁଂ ଆବର ଯେ କାହୁଁ ।୫୦୧।
ପୁଷ୍ୟେକ ନନ୍ଦନୀ ରାଧିକା ଯେବେ ମୋହୋରେ ଅପ୍ରୀତି
ଅଥବା ଆବର ମୋହୋର କସ ଯେ ଜୀବନ୍ତି । ୫୦୨ ।
ବସର ବସିଲେ ହରି କଦମ୍ବ ବୃକ୍ଷତଳେ
ଧାତା ବଜେକଲେ ଆସି ନଶିଅର୍ଧକାଳେ । ୫୦୩ ।
ବ୍ରହ୍ମାପ୍ରେ ବୋଇଲେ ହରି କଂଭୂତେ ନବଶ
ମହାଭର ଉଶ୍ୱାସେ ତୁ ନଧନକର କଂସ । ୫୦୪ ।

---

୫୦୦।୨ ନାରାୟଣେ ଭଗତ ବଢାଇଲା ବରଙ୍ଗନା ।—କ, ଣ
୫୦୦।୨ ନାରାୟଣଂକୁ ମୋହିଲା ସେହି ବରଙ୍ଗନା ।—ଖ, ନ

ଯେଉଁଥେ ତୁ ପଶିବୁ ଯେବେ ରଂଗ କଉତୁକେ
ଅନେକ ଭୟେ ଯେ କଲେନ ବୃନ୍ଦାଅର୍କେ । ୫୦୫ ।
ବଦସୂନ୍ତ କେଶବ ଯେ ବରଞ୍ଚର ଆଗ
ପୁଷ୍ପୀକ ନନ୍ଦନୀ ମୋତେ ନ ହଲା ଅଙ୍ଗଭୋଗ । ୫୦୬ ।
ଅନେକ ଧନରତ୍ନ ଦେଇ ମୁହିଂ ଦୁନ୍ତକ ହଲା ପେଷି
ତାହାଫିଙ୍ଗି ପକାଇଲା କହିଲା ନଗରୀ । ୫୦୭ ।
ଧାତାଯେ ବୋଇଲେ ହରି ତୁ କୃଷ୍ଣବର୍ଣ୍ଣ କଳା
ତେଣୁକରି ତୋତେ ନ ଭଜିଲା ପୁଷ୍ପେକ ଅବଳା । ୫୦୮ ।
ବାଇଂଶୀ ଗୋଟିଯେକ ଯେ ହଲେ ବେଦବର
ଥମ୍ଭନ ମୋହନବଶ ଉଚାଟନ କୁହୁକ ପଞ୍ଚସ୍ୱର । ୫୦୯ ।
ରାଧିକା ନାମ ଧରି ବେଣୁ ପ୍ରଥମ ସ୍ୱରେ ବଜା
ହୋଇବ ବରହିତା କରିବ ସମସ୍ତ ପରିତ୍ୟେଜା । ୫୧୦ ।
ଛୁଡିବ ଘର ମୁହାଂସ କୁଟୁମ୍ବ ସର୍ବଜନ
ତୋ ତହୁଂ ବ୍ୟାଳକେ ବଲ୍ଲଭ ନୋହିବ ଆନଜନ । ୫୧୧ ।
ଆବର କଥାଯେ ତୁ ଶୁଣସି ନନ୍ଦବତ୍ସ
ଯେ ବଇଂଶୀରେ କାମବାଜ ତୁ ଜପିବୁ ପ୍ରତକ୍ଷ । ୫୧୨ ।
ତେବେ ସେ ରାଧିକା ଯେ ହୋଇବ ମୋହମାନ
ନିମିଷେ ନ ଛୁଡିବ କହିଲୁ ତୋତେ କାହ୍ନ । ୫୧୩ ।
ଆରେକ ସ୍ୱରେ ହରି ବାଇଲେ ବାଇଂଶୀ
ଗୋପ କୁମାରମାନେ ଯେ ହୋଇବେ ନପୁଂସି । ୫୧୪ ।
ସବୁରି ଉପସ୍ଥ ଯେ ଲୁଚିବ ତଳମାର୍ଗେ
ଶୃଙ୍ଗାର ଇଛା ନୁଆରିବେ ଗୋପ ସ୍ତ୍ରିମାଂକର ସଙ୍ଗେ । ୫୧୫ ।

---

୫୦୫।୨ ଅନେକ ଦୁଃଖ ସେ ଯେ ପାଇଲେ ବୃନ୍ଦାଅର୍ଦ୍ଧେ ।—କ, ଖ
୫୧୪।୧ ଗୋପ କାମିନୀମାନେ ମିଳିବେ ସର୍ବେ ଆସି ।—'ଖ'
୫୧୫ ୧ ସବୁରି ଉପସ୍ଥ ଯେ ଲୁଚିବ ତଳମର୍ଗେ ।—ଜ ଟ

ତୃତୀୟ ସ୍ୱରେ ହରି ବାଇଲେକ ବଂଶୀ
ହତ ଗୋଧନମାନେ ପ୍ରାପତ ହୋଇବେକ ଆସି । ୫୧୬ ।
ଅସାଧ ସାଧ ହୋଇବେ ସଙ୍ଗପିବେ ବନ୍ଧ୍ୟା
ନାନା ରୋଗ ବ୍ୟାଧିମାନେ ଗୋରୁଂଙ୍କୁ ନ କରିବେ ବାଧା । ୫୧୭ ।
କରଂଠୀ ଅକରଂଠୀ ମଡିଛୁ ଅଛନ୍ଦା ଅଦୁହାଂ ଗାଈ
ସୁଖେଣ କ୍ଷୀର ଦେବେ ଯେତେକ ଇଚ୍ଛାହୋଇ । ୫୧୮ ।
ସ୍ୱାମୀ ଚତୁର୍ଥ ସ୍ୱରେ ବଂଶୀ ଯେ ବାଇଲେ
ଦେବତାଯେ ତୁଷ ହୋଇବେ ବେଦବ୍ରହ୍ମାଯେ ବୋଇଲେ । ୫୧୯ ।
ଯକ୍ଷଂକ ପେଷିବୁ ସେ କରିବେ ତୋର ବାଣୀ
ଯେ ବଇଂଶୀଗୋଟି ତୋତେ ପ୍ରାପତ ହୋଇ ଯେ ଚକ୍ରପାଣି ।୫୨୦।
ପଞ୍ଚମସ୍ୱରେ ହରି ଯେବେ ବଇଂଶୀ ବାଇବୁ ଗାଢେ
ଛତ୍ରୀଂକ ହାଥରୁ ଶସ୍ତ୍ର ସମରେ ଛୁଡିପଡେ । ୫୨୧ ।
ରଥ ଗଜ ଅଶ୍ୱ ପାଦାନ୍ତ ଯୋଦ୍ଧା ଆଦିକରି
ସକଳ କ୍ଷତ୍ରୀମାନେ ଭୂମିରେ ଯେ ପଡିବେ ପ୍ରାଣହାରି । ୫୨୨ ।
ଜଳଚର ବଚନର ପକ୍ଷୀ ଜନ୍ତୁମାନେ
ସମସ୍ତେ ସନ୍ନିଧେ ଆସିଣ ହୋଇବେ ବଶ୍ୟମାନେ । ୫୨୩ ।
ଯେ ମୋହନ ବଂଶୀ ତୁମ୍ଭନ୍ତେ ବେଳ ଷଷ୍ଠ
ଶତେ ଯନ୍ତ୍ର କଳଣୀଥିଲେ ଫିଟିବ କପାଟ । ୫୨୪ ।
ସପତମେ ବଂଶୀ ଧରି ଯେବେ ତୁମ୍ଭେ ବୁ ଦେବ ହରି
ଷୋଳ ସହସ୍ର ଗୋପୀ ତୋତେ ଖଟିବେ ପରିଗୃହୀ । ୫୨୫ ।
ବେଣୁ ଦେଇ ଧାତା ଗଲେ ପୁର ଯଶୋବନ୍ତୀ
ଅନ୍ଧକାରେ ଥାଇଂ ବଇଂଶୀ ବଜାଇଲେ ଶ୍ରୀପତି । ୫୨୬ ।
ନଶୀ ଅର୍ଦ୍ଧେ ଯାଇଂ ପ୍ରବେଶ ହୋଇଲେ ଚନ୍ଦ୍ରାବଳୀ
ସୁଖେଣ ଅଙ୍ଗଭୋଗ ତହିଂ କଲେକ ବନମାଳୀ । ୫୨୭ ।

---

୫୧୯।୨ ଦେବତାଯେ ତୁଷ୍ୟ ହୋଇବେ ନାମ ଧରି ଗାଇଲେ ।—କ, ଣ
ଥ, ଘ

୫୨୨।୨ ସକଳ ଛତ୍ରୀମାନେ ପଡିବେ ଯୁଦ୍ଧେ ହାରି ।—ଟ, ନ, ଠ, ଖ

ସ୍ୱାମୀ ସ୍ୱେଚ୍ଛାମତେ ଷୋଳସହସ୍ର ନାୟିକା
ତେଜିଲେ ନିଜ କର ହୋଇଲେ ନିଶଂକା । ୫୨୮ ।
ଅନେକ ରଙ୍ଗରସେ ଦେବ ମୋହିଲେ ଗୋପସ୍ତିରୀ
ନାଇକା ସମାନେ ଦେବ କ୍ରୀଡ଼ାରଙ୍ଗ ସାରି । ୫୨୯ ।
ସ୍ୱାମୀ ଗୋପାଙ୍ଗଣୀମାନଙ୍କ ସେହିକ୍ଷଣ ଦେବ ହରି
କୁମ୍ଭ ଶୁକ୍ଳ ଦଶମୀରେ ଫଗୁଯାତ୍ରା କରି । ୫୩୦ ।
ମୁହିଂ ଯାଇଂ ଭେଟିଲି କାଳିନ୍ଦୀ ନଦୀ ଯେ ବଟତଳେ
ଗୋବିନ୍ଦେ ବିଜେକଲେ ପ୍ରୋଷ୍ଟ ପଦାର ଦୋଳେ । ୫୩୧
ଦୂରେଣ ନାରାୟଣ ଦୋଳରେ ଥାଇ ଦେଖି
ଆପଣେ ବିଜେକଲେ ଯାହା ଯେ ଉପେଖି । ୫୩୨ ।
ଭୁଜେଣ ଭିଡ଼ି ଦେବ ଧଇଲେ ମୋତେ କୋଳେ
ସ୍ନାହାନକରି ଦେବ ବସିଲୁ ଯାଇଂ ଦୋଳେ । ୫୩୩ ।
ଯାହା ବିଧାନ ଯେ ସାରଣ ଦେବହରି
ସମସ୍ତ କୁଶଳ ମୋତେ ଗତ ଆଗତ ପଚାରି । ୫୩୪ ।
ମୁହିଂ ବୋଇଲି ତୋହୋର ରଙ୍ଗଯାତ୍ରା ଖଣ୍ଡ
ତୋହୋର ତହିଂକ ମଗଧେଶ୍ୱର ସାଜିଲାକ ଦେବ ଦଣ୍ଡ । ୫୩୫ ।
ତୁ ଯେବେ ବଧ କରିବୁ କଂସ ମହାରାଜା
ହେତୁ ପ୍ରହେତୁ ତାର ବେନି ଯେ ଦାରିକା । ୫୩୬ ।
ଜରାସନ୍ଧର ସେ ଦୁହେଂ ଅଟନ୍ତି ନନ୍ଦିନୀ
ବିଧବା ହୋଇ ଯମୁରେ ତୋର କରିବେ ଅଶ୍ରୁବାଣୀ । ୫୩୭ ।
ହୋଇଛତାଂକର ବିକଳ ଜରାସନ୍ଧ ଦେଖି
ମଥୁରାକୁ ଦଣ୍ଡ ସାଜିବ ମଗଧ ଉପେକ୍ଷି । ୫୩୮ ।
ତେଇଶି ଅକ୍ଷୌହିଣୀ ବଳ ସେହିକ୍ଷଣ ଜରାସନ୍ଧ ରାଜା
ସମସ୍ତେ ନାରାୟଣ ଗୋପପୁରେ କରିବେ ତେଜ୍ୟା । ୫୩୯ ।

---

୫୨୯।୧ { ଅନେକ ହରଷେ ସେ ମୋହିଲେ ଗୋପନାରୀ
ନାଇକା ସନୋହେ ପ୍ରଭୁ କ୍ରୀଡ଼ାରଙ୍ଗ କରି ।—ଜ୍ଞା, ୨

ସ୍ୱାମୀ ମୋହୋର ବଚନ ଶୁଣିଣ ଜନାର୍ଦ୍ଦନ
ମୋତେ ସମର୍ପିଲେ ଗୋଧନ ପଲମାନ । ୫୪୦ ।
ଭୁ ଯେହ୍ନାନ୍ତ ଯେନଣ ଯାଂଅ ବାରୁଣା ପ୍ରଶସ୍ତେ
ସୁଖେଣ ଗୋଧନ ପଲ ବ୍ରଚନ୍ତୁ ବନସ୍ତେ । ୫୪୧ ।
ଗୋଧନ ସମର୍ପି ଦେବ ହଲେ ମୋତେ ବରହ ବଇଂଶୀ
ଯେଣେ ସେ ଗୋଧନ ପଲ ସାଧ୍ୟ ହୋଅନ୍ତି ଆସି । ୫୪୨ ।
ଗୋଲକ୍ଷ ବିଦ୍ୟାଟି ଯେତେକ ମନ୍ତ୍ରମାନ
ସମସ୍ତ ଶିଖାଇ ମୋତେ ହଲେକ ଜନାର୍ଦ୍ଦନ । ୫୪୩ ।
ମୁହିଂ ଗୋ ଲକ୍ଷଣ ବିଦ୍ୟା ଜାଣଇଂ ସମସ୍ତ
ମୁକୁଇଂ ଶିଖାଇଛନ୍ତି ଦେବ ପଦ୍ମନେତ୍ର । ୫୪୪ ।
ସ୍ୱାମୀ ନାରାୟଣ ପ୍ରସନ୍ନେ ମୁଂ ଗୋ ଲକ୍ଷଣ ବିଦ୍ୟାଯେ଼ଣ ଜତା
ମତ୍ସ୍ୟଦେଶେ ଗୋଧନ ଦେବ ରଖିବ ଅପ୍ରମିତା । ୫୪୫ ।
ମୋହୋର ନାମ ଧରନ୍ତେ ଗୋଧନ ତରନ୍ତି
ତନ୍ତ୍ରୀପାଳ ନାମ ବହିବ ଗୋପାଳ ମୂରତି । ୫୪୬ ।
ସହଦେବର ବଚନେ ସମସ୍ତ ଭେଟି
ଶୁଣିଣ ସାନନ୍ଦ ଯେ ହୋଇଲେ ଯୁଧିଷ୍ଠିର । ୫୪୭ ।
ଦ୍ରୌପଦୀଂକ ପୁଚ୍ଛା କଲେ ତୁମ୍ଭର କିସ ବୁଦ୍ଧି
ଦ୍ରୌପଦୀ ବୋଇଲେ ବ୍ୟାସଂକର ବଚନେ ଥିବ ମୁଂ ସୁଦେଷ୍ଣାଂକୁ
ଆରାଧି । ୫୪୮ ।
ଚତୁସମ ଯୋଗାଇବ ଯେ଼କଯୋଗ କରି
ଅଲେଖ ତଳେଖ କରାଇବ ସଂକୋଚନର କୁମାରୀ । ୫୪୯ ।

---

୫୪୧।୨ ସୁଖେଣ ଗୋଧନ ପଲ ଚରିଥିବୁ ବନସ୍ତେ ।—କ, ଣ
୫୪୫।୨ ମତ୍ସ୍ୟଦେଶେ ଗୋଧନ ପଲ ଅଛଇ ଅପ୍ରମିତ ।—ଥ, କ, ଣ କ
୫୪୭ { ସହଦେବ ବାକ୍ୟେ ହର୍ଷ ଧର୍ମ ମହୀପତି
ଶୁଣି ତୁଷ୍ଟ ହୋଇଲେ ଗୁଡିଲ ମନୁ ଭ୍ରାନ୍ତି ।—ଖ, ନ, ଠ
୫୪୯.୧ ଚତୁସମ ଭେଟାଇବ ଯେ଼କଯୋଗ କରି ।—କ, ଣ, ନ

ଯେମନ୍ତେ ବିରାଟ ନ ଦେଖଇ ନଜକାୟେ
ଦେଖିଲେ ଇଚ୍ଛା କରିବ ଲଂଘିଲେ ନାଶ ଯାୟେ । ୫୫୦ ।
ଅଥବା ବିରାଟ ହୋଉ କିବା ଆନଜନ ହୋଉ
ତୁମ୍ଭନ୍ତ ଲଂଘିଲେ ନାଶଯିବ ଧର୍ମିଙ୍କ ପଛେ ଯାଉ । ୫୫୧ ।
ଏସନେକ ବାକ୍ୟ ଯନ୍ତୁଂ କହିଲେ ଯୁଧିଷ୍ଠି ନୃପତି
ପାଞ୍ଚାଳୀ ବୋଇଲେ ମୁଂ ଚନ୍ଦ୍ରବୃତ୍ତି ଥିବଟି ନବର୍ତ୍ତି । ୫୫୨ ।
ତୁମ୍ଭେ ଯେ ଯାହାର ନାମ କରସି ଗୋପନ
ସଇରନ୍ଧ୍ରୀ ନାମ ମୋହୋର ହୋଇବ ବିଦ୍ୟମାନ । ୫୫୩ ।
ଯୁଧିଷ୍ଠି ଦେବ ଶୁଣିଣ ପୁଚ୍ଛାକଲେ ତନ୍ତୁଂ ବାଣୀ
ମିଥ୍ୟା କହିଲେଟି ନାଶଯାନ୍ତି ପ୍ରାଣୀ । ୫୫୪ ।
ଦ୍ରୋପଦି ବୋଇଲେ ଦେବ ନୁହଇଟି ମିଥ୍ୟା
ସଇରନ୍ଧ୍ରୀ ନାମନ୍ତୁଂ ମୋହୋର ନାହିଂ ଆନ ପାକ୍ଷା । ୫୫୫ ।
ସଇରନ୍ଧ୍ରୀ ସଦାରାୟେ ସଦାହିନ ହରି
ତେନ୍ୟାସୁଂ କରି ସଇରନ୍ଧ୍ରୀ ନାମ ହୋଇଲା ମୋହୋରି । ୫୫୬ ।
କାଳ ଅନୁରୂପେ କରିବା ନା ସେବା
ପ୍ରସ୍ତାବ ଅନୁରୂପେ ଯେ ସମସ୍ୟା କରିବା । ୫୫୭ ।
ପବନ ଅନୁରୂପେ ବାରିବା ଅନୁକୂଳ
ଧର୍ମ ଅନୁରୂପେ କଣ୍ଟିବା ଦିନକାଳ । ୫୫୮ ।
ଅନୁରୂପ ସାଧେ ଭାଷିବା ନାହିଂକ ବାଣୀ
ପଣ୍ଡିତ ଜନେ ସେ ଏହା ପରମାଣି । ୫୫୯ ।

---

୫୫୦।୨ ଦେଖିଲେ ସେ ଇଚ୍ଛଇ ଖାଇଲେ ନାଶ ଯାୟେ ।—କ, ଟ, ଘ
୫୫୫।୨ ଇନ୍ଦ୍ରକ ଇଚ୍ଛା ମୋର ନାହିଂଟି ସର୍ବଥା ।—କ, ଥ, ଘ
୫୫୫।୨ ସଇରନ୍ଧ୍ରୀ ନାମନ୍ତୁଂ ମୋହୋର ନାହିଂ ଆନ ଇଚ୍ଛା ବାଞ୍ଛା ।—ଟ, ନ, ଖ
୫୫୫।୨ ସଇରନ୍ଧ୍ରୀ ନାମ ମୋହୋର ଅଛଇ ପୂର୍ବର ବ୍ୟବସ୍ଥା —ଞ, ଣ, ତ
୫୫୬।୨ ସଇରନ୍ଧ୍ରୀ ଶିଳ୍ପ କର୍ମ ଅଛୁ ଯ ଦ୍ୱାର ସେ ସଇରନ୍ଧ୍ରୀ—ଡ
୫୫୬।୧ ସଇରନ୍ଧ୍ରୀ ବ୍ୟବସାୟରେ ସଦାହିନ ହରି ।—ଖ, ନ
୫୫୮।୨ କର୍ମ ଅନୁରୂପେ କଣ୍ଟିବା ଦିନକାଳ ।—ଣ, ଛ, ନ, ଠ, ଥ, ଘ
୫୫୯।୧ କର୍ମ ଆଦରଣି ଯେ ଥିବା ଦିନ ଜାଣି ।—ଜ, ଚ, ଛ

ଶୁଣିଣ ଧର୍ମନନ୍ଦନ ପରମ ସାନନ୍ଦେ
ସବୁଂକର ମନଭ୍ରାନ୍ତି ଫିଟିଲଙ୍କ ହୀଂଦେ । ୫୭୦ ।
ଜୟ ତୁ ଜଗୁନ୍ମୋହନ ଦେବ ଶ୍ରୀସ୍ୱକସ୍ତ୍ର
ତୋହୋର ପ୍ରସନ୍ନେ ମୋର ସର୍ବସିଦ୍ଧ ବାଞ୍ଛା । ୫୭୧ ।
ସ୍ୱାମୀ ନ ଗଲି ତୀର୍ଥ ଯେ ନ କଲି ଧର୍ମମାନ
ଶ୍ରବଣେ ଶୁଣିଲି ଯାହା ଦେଖିଲି ନୟନ । ୫୭୨ ।
ନ ପଢ଼ିଲି ଶାହାସ୍ତ୍ର ମୁଂ ନ ଜାଣିଲି କଛୁ
ନୋହୁଲି ଭଗତ ମୁହିଂ ଭଗତଜନ ବାଛୁ । ୫୭୩ ।
କରୁଣାସାଗର ନାଥ ଅଲେଖନ ଚକ୍ରପତି
ହୃଦଗତେ ବଢସୁ ମମ ଶ୍ରୀକୃଷ୍ଣ ନାମ ଗୋଟି । ୫୭୪ ।
ଶିବ ଶୁକବ୍ରହ୍ମା ଯେଉଂଣ ପାଦ ବନ୍ଦେ
ସ୍ତ୍ରିଜଗ ସ୍ତବକର୍ମ ଗୁଣନାଥ ଅମୀତକ ବାଟ ନନ୍ଦେ । ୫୭୫ ।
ବଉଦ୍ଧ ରୂପେ ନାରାୟଣ ସମ୍ପୂଜଜନ ଚନ୍ତା
ବୃଉନ୍ତା ସିଦ୍ଧଜନ୍ତୁଂ ତୁହି ସେ ଦେବ ଉଦ୍ଧରନ୍ତା । ୫୭୬ ।
ମୂର୍ଖ ଅପଣ୍ଡିତ ମୁହିଂ ନ ଜାଣଇ କଛୁ
ଶୂନ୍ୟ ଶବଦ ବାକ୍ୟେ ତୁହି ସେ ସର୍ବସାକ୍ଷୀ । ୫୭୭ ।
ବସ୍ତୁର ଆଶ୍ରା ବ୍ୟହେକେ ନ ଜାଣଇ ଆନ
ତୁକୁଇଂ ନାଥ ମୁଂ ମାଗଇ ତୋର ଜପତପ ଧ୍ୟାନ । ୫୭୮ ।
ସ୍ରିୟମ୍ବଦାର ପ୍ରାଣବଲ୍ଲଭ ତୁଳସୀର ପ୍ରାଣବନ୍ଧୁ
ଶୃଦ୍ରମୁନ ସାରଳା ଦାସ ଶ୍ରୀ ପୁରୁଷୋତ୍ତମ ପାଦେ ବନ୍ଦ । ୫୭୯ ।

———— । ୭୭୬ ।

---

୫୭୧। ଜୟ ତୁ ଜଗୁଜୀବନ ମୋହନ ଶ୍ରୀପତି
ତୋହୋର ପ୍ରସନ୍ନେ ମୋର ମନବାଞ୍ଛା ସିଦ୍ଧଗତି ।—ଜ, ଟ, ଛ

୫୭୩।୨ ନ ଭେଦଲି ଅକ୍ଷର ମୁଂ ଭଗତଜନ ବାଛୁ ।—କ, ଣ

୫୭୫।୨ ଶୁଭାଶୁଭ କର୍ମ ଦେବ ଆନଗତି ନନ୍ଦେ ।—ଛ, ନ

୫୭୯।୧ ଶ୍ରୀ ସାରଦାର ବଲ୍ଲଭ ତୁଳସୀର ପ୍ରାଣବନ୍ଧ ।—ଟ, ଛ

## ଯୁଧିଷ୍ଠିରଙ୍କର ବାଞ୍ଛାକଳ୍ପତରୁ ସ୍ତବ ଓ ସାହାଡା ପତ୍ରର ମାହାତ୍ମ୍ୟ

ଶୁଣ ହେ ଚଇତନ ଶମୀବୃକ୍ଷ ଶିଂଶୁପା ଲତା ତଳେ
କଣଯୁଭଦ୍ରା ନଦୀର ଉତ୍ତର ଭାଗ କୂଳେ । ୧ ।
ବସ୍ତ୍ରୁ ବାତ ବୋଲକର ସେ୍ଥକଇ ପର୍ବତେ
ତହିଁ ବସି ଆରଣ୍ୟେକ ବାସ କଲେ ସମାପତେ । ୨ ।
ଧନୁମାସ ଶୁକ୍ଳପକ୍ଷ ଚଉଠିର ଦିନ
ଶତଭିଷା ଋକ୍ଷ ଗୁରୁବାର ଅଟେ ଜାଣ । ୩ ।
ବବନାମେ କରଣ ବ୍ୟତିପାତ ନାମେ ଯୋଗ
ଧନୁ ସଂକ୍ରାନ୍ତିକ ଉଣେଇଶି ଦିନ ଭୋଗ । ୪ ।
ଆରଣ୍ୟକ ବନବାସ ଦ୍ୱାଦଶ ବରଷ
ଉଚିତ ପ୍ରମାଣେ ଯାହା କହିଲେ ବେଦବ୍ୟାସ । ୫ ।
ଶ୍ରୀ ଗଦାଧର ଫଲୁଙ୍କା ପ୍ରସନ୍ନରୁଂ
ବନବାସ ସମାପତ କଲେ ସେହି ଦିନୁ । ୬ ।

---

୨।୧ ବସ୍ତ୍ର ପ୍ରସାଦ ବୋଲକର ସେ୍ଥକଇ ପର୍ବତେ ।—ଖ, ଣ, ନ, ଠ
୨।୨ ତହିଁ ଆରେଣ୍ୟକ ପର୍ବ କଲେ ସମାପତେ ।—ଚ, ଛ, ଞ, ଗ, ଜ
୩।୨ ଶତଭିଷା ନକ୍ଷତ୍ର ଗୁରୁବାର ଲେଖନ ।—ଖ, ନ, ଠ
୪।୧ କସ୍ତୁଘ୍ନ ନାମେ କରଣ ଆୟୁଷ୍ମାନ ନାମେ ଯୋଗ ।—ଣ, ନ, ଠ, କ
୫।୨ ଉଚିତ ପଣାସ୍ତେ ଯାହା କଲେକ ଅଭ୍ୟାସ ।—ନ, ଖ, ଜ
୬।୨ "ବନବାସ ସମାପତ କଲେ ସେହି ଦିନୁ" ପରେ
'ଠ' ପୋଥିରେ ଅଧିକା ପାଠ:—

ସହଦେବଠାରୁ ବୁଝି ଧର୍ମଙ୍କ ନନ୍ଦନ
ଅଜ୍ଞାତବାସକୁ ତହିଁ ବଳାଇଲେ ମନ
ବୋଇଲେ କହ ବାବୁ ଅନୁକୂଳ ଗୋଟି
ଯେପରକ ଅମଙ୍ଗଳ ଆମ୍ଭକୁ ନ ଘଟି ।
ଶୁଣି ସହଦେବ କହେ ଧର୍ମଙ୍କ ପାଦେ ନମି ।

କାଞ୍ଚା ହୋଇ ହୃଦଗତେ ଶ୍ରୀ ସର୍ବମଙ୍ଗଳେ
ଅଜ୍ଞାତବାସକୁ ଆମ୍ଭେ କରିବା ଅନୁକୂଳେ । ୭ ।
ସହଦେବ ବୋଇଲା ଯେ ଯୁଧିଷ୍ଠି ଚରଣେ ପ୍ରଣାମି
ଧନୁମାସ ଶୁକ୍ଳପକ୍ଷ ଗୁରୁବାର ଦଶମୀ । ୮ ।
ତଇତଳ ନାମେ କରଣ ନକ୍ଷତ୍ର ରେବତୀ
ଚନ୍ଦ୍ରଂକର ଶୁଭବେଳା ଅଟେ ଦିବା ରାତ୍ରି । ୯ ।
ସ୍ୱାମୀ ପ୍ରାତକାଳେ ଯୋଗ୍ନୀ ଯେ ମହାଲକ୍ଷ୍ମୀ ମୂରତି
ମଗର ବାହାନେ ଈଶାନ୍ୟେ ଦେଖା ଥିଲି । ୧୦ ।
ମତ୍ସ୍ୟଦେଶକଇଂ ଗମନ ଦକ୍ଷିଣ କର ଅଙ୍ଗ
ଧନୁଲଗ୍ନେ ପାପଗ୍ରହ ନାହିଂ ମାହାନ୍ଦ୍ର ଅଟେ ଯୋଗ । ୧୧ ।
ଲେଖନ୍ତେ ପଢନ୍ତେ ସର୍ବ ଶୁଭ ଅନୁକୂଳେ
ଦିବସେକ ବଞ୍ଚିଲେ ପାଣ୍ଡବେ ବାଞ୍ଛାବଟ ତଳେ । ୧୨ ।
ହେ ମହତ ବଟ ଶୁଣ ଆମ୍ଭର ଯେ ବାଞ୍ଛା
ମତ୍ସ୍ୟଦେଶେ ଗୋପ୍ୟାନ ହୋଇବୁ ନ କହିବୁ ମିଥ୍ୟା । ୧୩ ।
ଅଜ୍ଞାତବାସ ବରଷେ ତେର ଯେ ଦିବସ
କେହି ଆମ୍ଭର ଚିହ୍ନନ୍ତା ନୋହିବ ଅବଶ୍ୟ । ୧୪ ।
ବଞ୍ଚିବୁ ଦିନ ଆମ୍ଭେ ଚରିବୁ ଅପ୍ରମାଦେ
ଶୁଭଯୋଗେ ବଞ୍ଚିବୁ ବଟ ତୋହୋର ପ୍ରସାଦେ । ୧୫ ।
ଶ୍ରୀବଚ୍ଛାଙ୍କ ଜଗନ୍ନାଥ ବାସ୍ତେଂଛା କଳ୍ପବୃକ୍ଷ
ଯେ ଯାହା ଇଚ୍ଛଇ ଭୁ ତାହା ଫଳାଇ ପ୍ରତକ୍ଷ । ୧୬ ।
ମହତ କଳ୍ପବଟ ଅନୁକୂଳ ସର୍ବସିଦ୍ଧି
ଗୁଣସାଗର ଚତୁର୍ବର ସଞ୍ଚିତ କଳ୍ପନିଧି । ୧୭ ।
ତହିଂରେ ସନ୍ନିଧେ ଅଛି ସାହାଡ଼ ନାମେ ବୃକ୍ଷ
ତହିଂର ତଳେ ବସିଲେ ଯାଇ ପବନର ବତ୍ସ । ୧୮ ।
ସାହାଡ଼ ବୃକ୍ଷରୁ ପଡିଲା ପତ୍ରଗୋଟିଏ
କ୍ଷୀରରେ ଯେମନ୍ତ ଶ୍ୟାମ ତାହା ଦେଖିଲେ ଯୁଧିଷ୍ଠି । ୧୯ ।

---

୧୩ । ମତ୍ସ୍ୟଦେଶେ ଗୋପ୍ୟ ହିମନ୍ତେ କହିବୁ ଅମ୍ଭେ ମିଥ୍ୟା ।— କ, ଚ

ସହଦେବ ମୁଖ ଶୁଣିଣ ହସିଲେ ଧର୍ମସୁତେ
ଅନର୍ଥୀପ ବାଟ ସେ ଥାଇ ଅନୁବ୍ରତେ । ୨୦ ।
ବାଟେ ନ ଚଳଇ ଶ୍ରୀମା ଅମନ୍ତା ମାଡଇ
ସର୍ବଂ ଧର୍ମ ଛାଡ଼ି ସେ ଦଣ୍ଡକେ ଗୁଡଇ । ୨୧ ।
ସୁଗ୍ୟାନ ପଣ୍ଡିତଂକ ଭୁଲେଣ ନ ଭେଟି
କୁଜନ ଲୋକଂକ ଭୁଲେଣ ଚାର ଭଲ ଗୋଷ୍ଠୀ । ୨୨ ।
କୁଭୂମି ପାଇଲେ ସେ ସୁସ୍ଥାନ କରଇ ଚେଷ୍ଟା
ସୁପାଡ ଉପେଖିଣ ଭୂମିରେ କରଇ ଶେଯ୍ୟା । ୨୩ ।
କୁମନ୍ତ୍ର ବିଦ୍ୟା ପଢେ କୁଜନ ସଙ୍ଗେ ଭେଟି
କୁଗ୍ୟାନ କର୍ମ ସୁସଙ୍ଗେ ନୋହେ ଗୋଷ୍ଠୀ । ୨୪ ।
ବାଞ୍ଛାବନ୍ତ ଯେତେ ଯେ ମହତ କଳ୍ପତରୁ
ସମସ୍ତେ ବାଞ୍ଛାକରୁ କେମନ୍ତେ ଅଗ୍ୟାଂଚ ପାରକରୁ । ୨୫ ।
କହିବଂ ନ ବୋଇଲା ବୃକ୍ଷକୁ ଭଗତ୍ତି ନୋହିଲା
ସାହାଡ଼ା ବୃକ୍ଷ ତଳେ କକଟି ବୋଇଲା । ୨୬ ।
ଦୋହେଗ କର ଦେବାର ଯେତେହିମନ୍ତ ହୋଇବ
ସୂପକାର ବୃତ୍ତି ଯେତେହାର କହିବଂ ନୋହିବ । ୨୭ ।
ଶ୍ରୀମସେନ ବୋଇଲା ଦେବ ତୁମ୍ଭେ କହିବଂ ନ ଜାଣ
ଯେତେ ସାହାଡ଼ା ବୃକ୍ଷର ଦେବ ଅଛଇ ବହୁତ ଗୁଣ । ୨୮ ।
ଯୁଧିଷ୍ଠିର ବୋଇଲେ ଭୀମ କେମନ୍ତେ ତୁହି ଯେତେହା ଜାଣୁ
ମୋହୋର ଆଗରେ କମ୍ପା ଯେତେ କଥା ନ ବଖାଣୁ । ୨୯ ।
ଭୀମସେନ ବୋଇଲା ଦେବ କପିଳାସ ଦେବରାଜେ
ବୃଷଭ ଆରୋହଣ ସଦାନନ୍ଦ କଲେ ଦଗବଜେ । ୩୦ ।
ବାମେଣ ସାହାଡ଼ା ବୃକ୍ଷେକ ଦେଖିଲେ ସଦାଶିବ
ପଞ୍ଚଗୋଟିଯେତେ ମଥାରେ ଘେନଲେ ବୃଷଭ । ୩୧ ।

---

୨୦।୨ ଅନାଥ ବାଟେ ଭୀମା ଥାଇ ଅନୁବ୍ରତେ ।—ଛ, ଞ୍ଜ, ଚ
୨୮।୨ ଯେତେ ସାହାଡ଼ା ବୃକ୍ଷ ଦେବ ଅଟଇ ବଡଜନ ।— ନ, ଖ, ଣ, C

ଈଶ୍ୱର ପଚ୍ଚାରିଲେ ବଇଲ ତୁ ମହାଗ୍ୟାନୀ
ଯେ ବୃକ୍ଷରୁ ପତ୍ର ଗୋଟିଏ କମ୍ପେ ଶିରେଣ ଭୁଞ୍ଜି ଯେନ । ୩୨ ।
ଚନ୍ଦନ ଅଗ୍ର ଯେ ଦେବଦାରୁ ନଡ଼ୀକାଳ
ଗନ୍ଧ ସୁଗନ୍ଧ ଯେ ଦାକ୍ଷ ଚୂତଫଳ । ୩୩ ।
ଯେମାନ ଛୁଞ୍ଜଣ ତୁ ଯେହା କଂକେ ବନ୍ଧୁ
ଅଗନ୍ଧ ଅସ୍ୱାଦୁ ଯେ ଅଟଇ ଅଖାଦୁ । ୩୪ ।
ବଇଲ ବୋଇଲା ଦେବ ବାମେଣ ସାହାଡ଼ା ବୃକ୍ଷ ଥିଲେ
ପୁଷ୍ଟ ଭୋଜନ ମିଳଇ ଯେଥୁ ପତ୍ରେକ ଶିରରେ ଘେନିଲେ । ୩୫ ।
ଈଶ୍ୱର ହସିଲେ ସେ ବଇଲ ବଚନ ଶୁଣି
କେମନ୍ତେ ଅନ୍ନ ମିଳିବ ଆଜ ତୋତେ ପଶ୍ଚାତେ ବୁଝି ଜାଣି । ୩୬ ।
ଯେତେକ ବିଚାରିଲେ ସେ ରୁଦ୍ର ମାରତଣ୍ଡ
ଅବଶ୍ରାମେ ଭ୍ରମୁଛନ୍ତି ସପତ ବ୍ରହ୍ମାଣ୍ଡ । ୩୭ ।
ଅନୁବ୍ରତେ ଧୂଆଂବନ୍ତ ବଇଲ ମହାବେଗ କରି
ଜଳତୃଣ ସମ୍ଭବତେ ସେ ନୁଆରଇ ଚରି । ୩୮ ।
ଭ୍ରମନ୍ତେ ଭ୍ରମନ୍ତେ ଯେ ଆଦିତ୍ୟ ଅସ୍ତଗଲେ
କପିଳାସ ସ୍ୱର୍ଗକଇଂ ରୁଦ୍ର ବାହୁଡ଼ିଲେ । ୩୯ ।
ଅମୃତ ପାକ ମୁଣୋହ୍ନି ସମ୍ପାଦିଲେ ଦେବୀ ଉମା
ସ୍ୱାମୀଙ୍କ ବାଟ ଗୃହ୍ଣଂ ବିମୁଖ ସଦାନନ୍ଦର ବାମା । ୪୦ ।
କେଉଂଣ ଭୁବନେ ଅବା ରହିଲେ ଈଶାନେ
ଅଥବା ମୁଣୋହ୍ନି ହୋଇଲା କେବଣ ଭୁବନେ । ୪୧ ।
ବେଳ ଅବସାନ ଯଦ୍ଧଂ ସନ୍ଧ୍ୟାର ଯୁଗତେ
ଆପଣେ ମୁଣୋହ୍ନିରେ ବିଜେକଲେ ଜଗତମାତେ । ୪୨ ।
ପଞ୍ଚ ଗ୍ରାସ ମାତ୍ର କରିଅଛନ୍ତି ଯେ ଦେବୀ ସତୀ
ଡମ୍ବରୁ ଶବଦ ଯେ ଶୁଭିଲା ତତକ୍ଷଣାନ୍ତ । ୪୩ ।
ସ୍ୱାମୀର ଆଗତ ବୋଲି ଦେବୀ ଉଠିଲେ ଧାଡ଼ିକାରେ
ସେ ମୁଣୋହ୍ନି ଯୋଗାଡ଼ମାନ ଭରିଲେ ନେଇ ବୃଷଭର ଗୁଆଣିରେ ।୪୪

---

୪୪।୨ ସେ ମୁଣୋହ୍ନି ଯୋଗାଡ଼ ଭରିଲେ ନେଇ ବୃଷଭ କୁଣ୍ଡରେ ।
—ଛ, ନ, ଠ, ଖ

ଗୁଆଣି ଭିତରେ ତାହା ଲୁଗ୍ଭଇଲେ ଗୋସାମଣି
ଅଳଆ ଘାସ ନେଇଗ ଚାଙ୍ଗ ଉପରେ ଘୋଡ଼ାଇ ଦିଲେ ଆଣି । ୪୫ ।
ଆଂଗେ ବନ ସାର ଦେଖା ଶିବଙ୍କରେ ଯେନଣ ଭୈରବ୍ରୀ ।
ସ୍ୱାମୀଙ୍କ ଓଳଗିଲେ ଆସି ଦାଣ୍ଡେଣ ଉତ୍ତର । ୪୬ ।
ଆପଣେ ବୃଷଭ ପିଠିରୁ ଉତ୍ତୁରି ତ୍ରିଲୋଚନ
ଗୁହାଳେ ବୃଷଭକୁ ବାନ୍ଧିଲେ ଅତି ଯତନ । ୪୭ ।
ନନ୍ଦୀକେଶରକୁ ବୋଇଲେ କଥାଏକ ମୋର ଅଛି
ବଇଲକୁ ଘାସପାଣି ଆଜ ନ ଦେବୁରେ କିଛି । ୪୮ ।
କ୍ଷୁଧାରେ ବୃଷଭ ଯେ ରହିଲ ଗୁଆଣି
କୋପଗ୍ଭ ଭିତରେ ମୁଖ ଭରଦେଲାକ ଆଣି । ୪୯ ।
ଷଡରସ ଯୋଗାଡ ଅମୃତ ମଡଫୁଲ
ବୃଷଭ ଚବୁରଇ ଆଜନ୍ଧନ ମୁଂ ଅମୃତ ଭୋଜନ ପାଇଲି । ୫୦ ।
ଆହାର କରଇ ସେ ମହାତୁଷ୍ଟେ ବଇଲ
ସ୍ୱାହାନ ଭୋଜନ ନୃତ୍ୟ ସାରିଲେ ସୋଢ଼ଳ । ୫୧ ।
ମୋହୋର ସେବକ ହୋଇ ମୋତେ ନ କରିବ ସେବା
ସାହାଡା ବୃକ୍ଷକୁ ସେ ବନ୍ଦଇ କେମେ ଅବା । ୫୨ ।
ଜାଣିମାନା କେମନ୍ତେ ଆଜ ପ୍ରାପତ ହୋଇବ ଆଧାର
ରଜନୀ ପ୍ରଭାତେ ସ୍ୱାମୀ ପ୍ରବେଶ ହେଲେ ବୃଷଭ କତର । ୫୩ ।
ଆଧାର ସନ୍ତୁଷ୍ଟେ ବୃଷଭ ମହାସୁଖ ପାଇ
ସୁଖେଣ ବଇଲ ଯେ ପଡ଼ଇ ନିଦ୍ରାଯାଇ । ୫୪ ।
ସଦାନନ୍ଦ ବୋଇଲେ ହୋ କେମନ୍ତ କଲୁ ବଇଲ
ସାହାଡା ବୃକ୍ଷ ସେବ କସ କସ ପାଇଲ । ୫୫ ।

---

୪୯।୧ କ୍ଷୁଧାରେ ବୃଷଭ ଯେ ଖୋଜଇ ଗୁଆଣି ।— କ, ଘ, ଖ

୫୪।୨ ସୁଖେଣ ବଇଲ ଯେ ଅଛଇ ମହାନିଦ୍ରା ଯାଇ ।— ଚ, ଛ, ଝ

ବୃଷଭ ବୋଇଲା ସ୍ୱାମୀ ଶାହାସ ନୋହଇ ମିଥ୍ୟା,
ଅବଶ୍ୟ ପ୍ରାପତ ହୋଇଅଇ ମନରେ କଲେ ବାଞ୍ଛା । ୫୬ ।
ସ୍ୱାମୀ ଯେତେକ ଯୋଗାଡ ଯେ ତୁମ୍ଭର ମଡ଼ପୂଲ୍‌
ସାହାଡ ବୃକ୍ଷକୁ ସେବଣ ମୁଂ ସମସ୍ତ ପାଇଲ । ୫୭ ।
ଅମୃତ ଭୋଜନ କଲି ସକଳ ଶ୍ରମ ଗଲା
ସବୁଦନଠାରୁ ଅଧିକ ଆଧାର ମୋତେ ମିଳଲା । ୫୮ ।
ଭୀମାଂକ ବଚନ ଶୁଣିଂ ବୋଲନ୍ତ ଶୂଳପାଣି
ତୁମ୍ଭେ ଯେତେହାକୁ ଭାବେ ଆଧାର ଦଲ କେଗୋ ଆଣି । ୫୯ ।
ପ୍ରଣପତ୍ୟ ଭାବେ ଯେ ବଦନ୍ତନ୍ତ ପାଣ୍ଡବ
ସ୍ୱାମୀ ତୁମ୍ଭନ୍ତ ବାଟ ଚୃହୁଂ ଚୃହୁଂ ହୋଇଲା କଡୁଗଡ । ୬୦ ।
ସମସ୍ତ ଯୋଗାଡ ମୁଂ ବାଛି ଲା ଯେତେକଯୋଗେ
ମୁଣୋହରେ ବଜେକଲା କ୍ଷୁଧାର ଆରତେ ଅନ୍ତବେଗେ । ୬୧ ।
ସର୍ବେ ଅନ୍ନ ପଞ୍ଚୁଲୁଣ୍ଡି କରନ୍ତୁ ମୁଂ ଗ୍ରାସ
ଧାତକାରେ ତୁମ୍ଭେ ବଳଯେତେ କଲ କପିଳାସ । ୬୨ ।
ଆରତେ ସମସ୍ତ ଦ୍ରବ୍ୟ ଘେନଣ ଗଲି ତୋଳି
ବୃଷଭ କୋଠରୀରେ ସମସ୍ତ ଦଲ ଦେବ ତୋଳି । ୬୩ ।
ଯେତେହା ଶୁଣି ହସିଲେ ଯେ ଦେବ ସଦାନନ୍ଦ
ଯେତେ ଗୋଲେକ ବୃକ୍ଷକୁ ହୋ ସମସ୍ତେହେଂ ବାନ୍ଧ । ୬୪ ।
ଭୀମସେନ ବୋଇଲା ଦେବ ଯେତେସନକ ଅଛୁ ପୂର୍ବେ
ମୁଂ ତାହା ଶୁଣି ଦେବ ଗୋଡାଇ ଅଛୁ ଯେତେବେ । ୬୫ ।
ଶୁଣିଣ ସାନନ୍ଦ ହେଲେ ଧର୍ମରାଯେତେର ବଳା
ମୂର୍ଖ ହୋଇ ତୋହୋର ପଣ୍ଡିତ ବୁଦ୍ଧି ଅନର୍ଗଳା । ୬୬ ।

---

୫୭।୧ ସାହାଡାବୃକ୍ଷ ପ୍ରସାଦେ ମୁଂ ସମସ୍ତ ପାଇଲ ।—ଖ, କ
୫୭।୧ ସାହାଡାବୃକ୍ଷ ବାଞ୍ଛାରେ ସମସ୍ତ ପାଇଲ ।—ଘ, ଜ
୬୩।୨ ବୃଷଭ ଗୁଆଳରେ ସମସ୍ତ ଦଲ ଡାଲ ।—ଚ, ଝ,
୬୫।୨ ମୁହିଂ ତାହା ଶୁଣି ସେବୁଅଛୁ ଯେତେବେ ।—କ, ଣ
୬୫।୨ ତେଣୁକର ପଦେକ ଘେନଲ ମୁହିଂ ଯେତେବେ ।—ଚ ଞ, ଛ

ଯେଣୁ ଅନନ୍ତରେ ପୁଣ ବାଞ୍ଛାକଳ୍ପତରୁ ତଳେ
ବସିଲେ ପଦ୍ମ ଆସନେ ପଣ୍ଡୁସୁତଙ୍କର ବାଳେ । ୬୭ ।
ଉଦ୍ୟେଣୀ ବନ୍ଧୁଣ ସୁମରନ୍ତି ବାକ୍ୟଦେବୀ
ବିରାଟର କଣ୍ଠେ ବିଜେକର ଗୋ ପରମ ବଇଷ୍ଣବୀ । ୬୮ ।
ସୁବଚନ ବରଷୁ ଗୋ ତବ ପରସନ୍ନେ
ତବ ବିନଯ୍ୟ ସ୍ତବୁଂ ଶକ୍ତ ନ ବଳୁ ହେ ଆନେ । ୬୯ ।
କୃପାଜଳ ନନ୍ଦନୀ ଗୋ ଅଭୟେ ଧବଳାଙ୍ଗୀ
କାମଇଚ୍ଛାୟେ ଗୋ ତୁ ମୋହିଲୁ ପରମ ଯୋଗୀ । ୭୦ ।
ଶ୍ୱେତପଦ୍ମ ଆସନୀ ଗୋ କରେଣ ବ୍ରହ୍ମବେଣୀ
ମୋହିଲୁ ନାରାୟଣ ଗୋ ଗନ୍ଧାର ରସବାଣୀ । ୭୧ ।
ବିଚ୍ଛେକ ବାହନୀ ଗୋ ନମାମି ମମ ଆଶ
ବଦନ୍ତି ଶୂଦ୍ରମୁନି ସାରଳ ଚଣ୍ଡୀ ଦାସ । ୭୨ ।

।୮୪।

—:୦:—

୬୮ ।୨ ବିରାଟର କଣ୍ଠକେ ବିଜେକର ଗୋ ବଇଷ୍ଣବୀ ।—ଗ, ଚ, ଜ
୭୦।୨ କାମକୁ ଅଣଇଚ୍ଛାୟେ ମୋହିଲୁ ପରମ ଯୋଗୀ ।— ନ,ଣ
୭୨।୧ ସିଂଘବାହିନୀ ଗୋ ତବ ଚରଣେ ମମ ଆଶ ।—କ, ଚ, ଞ୍ଜ, ନ, ଖ

## ତ୍ରିପୁରାସୁର ବଧ

ବିଜୟେ ପାଣ୍ଡବେ ଯେ ତ୍ରିପୁରାନ୍ତକ ପରବତେ
ଧର୍ମ ବୋଇଲେ ତ୍ରିପୁର ବଧ ହୋଇଥିଲା କେଉଁଥେ । ୧ ।
ଦ୍ରୋପଦୀ ବୋଇଲେ ତ୍ରିପୁର ବୋଲଣ ସେ କେବଣ କଉଣୋପ
କାହାର ପୁତ୍ର ସେ ଯେ କେ ତାହାର ମାତା ବାପ । ୨ ।
କହନ୍ତି ଯୁଧିଷ୍ଠିର ଶୁଣରେ ପାଞ୍ଚାଳୀ
ଅପାର କାଳର କଥା ଶୁଣରେ ଶୁଦ୍ଧଶାଳୀ । ୩ ।
ବଇତରଣୀ କୂଳେ ମଧୁପୁର ବୋଲି ଏକ ନଗ୍ର ବଦ୍ୟମାନେ
ବହୁତ ଶାସନକ ତହିଁ ବସନ୍ତି ଦ୍ୱିଜମାନେ । ୪ ।
ଏକ ବ୍ରାହ୍ମଣ ତହିଁ ମଧଶର୍ମଣ ବୋଲି
ତାହାର ଭାରିଜା ନାମ କୁରଞ୍ଜନୀ ବାଳୀ । ୫ ।
ଜ୍ୟେଷ୍ଠମାସ କୃଷ୍ଣପକ୍ଷ ଅଷ୍ଟମୀ ଅର୍କବାର
ପ୍ରଥମ ରଜୋବନ୍ତୀ ବାଳୀ ହୋଇଲା ସେ ଦିନର । ୬ ।
ସମ୍ବତ୍ସର ଅନ୍ତେ ତାର ସ୍ୱାମୀ ନାଶଗଲା
ସୋମେକ ନାମେ ଶୂଦ୍ରକୁ ଘେନି ସେ ଘରକଲା । ୭ ।
ବଯୂସ ସଂହାର ନୁଆଗଲା ସେ ବିଧବା ବ୍ରାହ୍ମଣୀ
ଶୂଦ୍ରକୁ ଘେନିଣ ସେ କଲା ପର ଦାରାଯେଣୀ । ୮ ।
ସେ ବ୍ରାହ୍ମଣୀର ରଜ ସେହୁ ଶୂଦ୍ରର ଯେ ବୀର୍ଯ୍ୟେ
ଗର୍ଭରେ ଜନ୍ମିଲା ତାର ଏକଇ ଆତ୍ମଜେ । ୯ ।
କାର୍ତ୍ତିକ ଶୁକ୍ଳପକ୍ଷ ପୂର୍ଣ୍ଣିମୀ ଗୁରୁବାର
କୃତ୍ତିକା ନକ୍ଷତ୍ର ଯେ ଅଟଇ ସେ ଦିନର । ୧୦ ।

---

୨ { ଦୋପଦୀ ବୋଇଲେ ତ୍ରିପୁର ବୋଲଣ ସେ କେବଣ ଅସୁର
କାହାପୁତ୍ର କେଉଁଠାରେ ତାହାର ନଗର ।—ଖ, ନ, ଠ

୧୦।୧ କାର୍ତ୍ତିକ ଶୁକ୍ଳପକ୍ଷ ପୂର୍ଣ୍ଣିମୀ ଅର୍କବାର ।—ଛ, ଘ, କ,

ବିଷ୍ଟିନାମେ କରଣ ଯେ ନାଗନାମେ ଯୋଗ
ପଞ୍ଚମ ଘରେ ରାହୁ କରେ ହିବ୍ୟଭୋଗ । ୧୧ ।
ସେ ଦିନ ବ୍ରାହ୍ମଣୀ ଗର୍ଭୁଂ ଜାତ ହେବ କୁମାର
ଅନ୍ଧାର ନିଶି ଯେ ରାତ୍ର ପାଞ୍ଚ ଘଡ଼ିକର । ୧୨ ।
ନଗରୁଁ ବ୍ରାହ୍ମଣୀ ପଶିଲେ ଘୋର ବନସ୍ତର
ପୁତ୍ରେକ ଜାତକଲା ରାତ୍ର ତେରଦଣ୍ଡ ଠାର । ୧୩ ।
ଜାତି ବ୍ରହ୍ମରକ୍ଷସ କୁଣ୍ଡିକା ବୃଷ ରା
ତାମ୍ରବର୍ଣ୍ଣ ପ୍ରାୟେକ କୁମର ବର୍ଣ୍ଣ ରାଶି । ୧୪ ।
ଯେତେବେଳେ ବ୍ରାହ୍ମଣୀ ଗର୍ଭବାସ ହୋଇଲା
ସେ ସୋମେକ ଶୂଦ୍ର ତାକୁ ଛାଡ଼ି ପଳାଇଲା । ୧୫ ।
ସେ ପୁତ୍ରକଇଂ ଘେନିଣ ସେ ବିଧବା ବ୍ରାହ୍ମଣୀ
ବନେ ରହିଥାଇ ସେ ପିତୃଶୂଣୀ ବୃତ୍ତି ଜାଣି । ୧୬ ।
କନ୍ଦମୂଳ ଭକ୍ଷଣେ ବଞ୍ଚଇ ଦିବାରାତ୍ରି
ସପତ ବରଷର ପୁତ୍ରୁଂ ହୋଇଲା ସନ୍ତତି । ୧୭ ।
ସିଂହମାସ କୃଷ୍ଣପକ୍ଷ ଅମାବଇ ଉତ୍ତମବାର
ନାରଦେ ବିଜେକଲେ ସେହି ବନସ୍ତ ଭିତର । ୧୮ ।
ତୁଙ୍ଗଭଦ୍ରା ନଦୀକୂଳେ ଖେଳଇ ବାଳଶିଷି
ଦଣ୍ଡ କମଣ୍ଡଳ ଘେନି ଯାଉଛନ୍ତି ଋଷି । ୧୯ ।
ସେ ନନ୍ଦନ ବୋଇଲା ମୁନି ହେ ତୁମ୍ଭ ପାଦେ ମୋହୋର ନମସ୍କାର
ଦେଖିଣ ବିସ୍ମୟେ ହେଲେ ବ୍ରହ୍ମାଂକ କୁମର । ୨୦ ।
ଆରେ ନର ଗୃଣ୍ଡାଳ ତୁ ଆମ୍ଭଂକୁ ପ୍ରଣପତ୍ୟ
ଆଜ ଆମ୍ଭର ଗଲା ରେ ଦିନକର ସୁକୃତ । ୨୧ ।
ସେ ପୁତ୍ର ବୋଇଲା ମୁନି ହେ ମୁଂ ବ୍ରାହ୍ମଣ ଦେଖିଲେ
ନିତି ପ୍ରତି ପ୍ରଣପତ୍ୟ କରଇ ତାହାଂକ ପଦ୍ମରେ । ୨୨ ।
ବ୍ରାହ୍ମଣ ସୁକୃତ ହରଇ ଶୂଦ୍ରେ ନମସ୍କାର କଲେ । ୨୩ ।

---

୧୫।୧ ଯେତେବେଳେ ବ୍ରାହ୍ମଣୀ ପୁତ୍ର ପ୍ରସବ ହୋଇଲା ।—ଠ. ଣ. ଛ

ନାରଦେ ବୋଇଲେ ତୁ ମୋତେ ହୋଇଲୁ ପ୍ରଣପତ୍ୟ
ଜାତି ନର ଚଣ୍ଡାଳରେ କେ ତୋର ପିତାମାତ । ୨୪ ।
ଧାତାର ନନ୍ଦନ ତୁମ୍ଭେ ଭୂତ ଭବିଷ୍ୟ ଜାଣନ୍ତା
ତୁମ୍ଭେ ସେ କହ ଗୋସାଇଂ ହେ କେଉଁ ମୋହୋର ପିତା । ୨୫ ।
ନାରଦ ବୋଇଲେ ରେ ମନ ଜାଣେ ପାପ
ଆର କେଉଁ କହିବ ରେ ତୋ ମାତା ଜାଣେ ବାପ । ୨୬ ।
ମାତାକୁ ଯାଇଣ ତୋର ପଚ୍ଛର ତଦନ୍ତ
କେ ତୋହୋର ପିତା ନାମ ସେ କହିବ ଯୁଗତ । ୨୭ ।
କହିଣ ନାରଦ ସେ ଗଲେ ଅନ୍ତର୍ଦ୍ଧାନେ
ମାତାର ଅଗ୍ରତେ ଯାଇଂ ପୁଚ୍ଛଇ ନନ୍ଦନେ । ୨୮ ।
କେ ମୋହୋର ପିତା ଗୋ କହସି ମହାମ୍ରାଣୀ
ମାତା ବୋଲେ ବାବୁ ମୁଂରେ ବିଧବା ବ୍ରାହ୍ମଣୀ । ୨୯ ।
ପିତା ତୋହୋର ଯେ ସୋମେକ ଶଦ୍ର ବୋଲି
ପ୍ରସବ ମାସକେ ପୁତ୍ର ରେ ପଳାଇଲା ଛାଡ଼ି । ୩୦ ।
ସେ ମୋତେ ହରିଲା ମୁଂ ନର ଚଣ୍ଡାଳୁଣୀ ହୋଇଲି
ବେଦ ମାତ ମୁହିଂ ନଚରେ ନରଚଣ୍ଡାଳ ହୋଇଲି । ୩୧ ।
ତୋହୋ ଯୋଗେ ମାତା ମୁଂ ହୋଇଲି କଳଂକିତ
କହ କାହାକଇଂ ସେବେ ମୁଂ ହୋଇବି ମୁକତ । ୩୨ ।
ଏତେ ମହାପାତକ ଖଣ୍ଡିବଇଂ କାହାରହିଂ ବୋଲେ
ଦୁଷ୍କୃତ ଖଣ୍ଡିବରେ ବାବୁ ଶିବ ସେବାକଲେ । ୩୩ ।
ସାତବରଷର ନନ୍ଦନ ମାତାକୁ କଲାକ ଉପେକ୍ଷା
ଶିବ ସେବାରେ ସେ ଯେ କଳାଇଲା ଇଚ୍ଛା । ୩୪ ।
ସେହି ପରବତେ ବସିଣ ଅନେକ ତପକଲା
ଷାଠିଏ ସହସ୍ର ବରଷ ପବନ ଭକ୍ଷିଲା । ୩୫ ।
କଷ୍ଟୋର ତପ ଦେଖିଣ ସେ ବିଜୟେ ପଶୁପତି
ଜୀବନ୍ୟାସ ମନ୍ତ୍ରେ ସେ ସିଞ୍ଚିଲେକ ବିଭୂତି । ୩୬ ।
ବସିଲା କୁମର ଯେ ପାଇଣ ସାକ୍ଷାତ
ବୋଇଲା କାହିଂର ମଣ୍ଡଳ ହୋ ନାଟକଲ ଧର୍ମି । ୩୭ ।

ଈଶ୍ୱରେ ବୋଇଲେ ତୁ କାହାକୁ କରୁ ସେବା
ମୁହିଂ ସେ ବିଶ୍ୱନାଥ ଅନାଦି ବିଶ୍ୱଦେବା । ୩୮ ।
ସେ କୁମର ବୋଇଲା ହେ ନାଥ ତୁ ଯେବେ ଈଶାନ
ନିଜରୂପ ଧରି ଆହେ ଦେବ ତ୍ରିଲୋଚନ । ୩୯ ।
ତତକ୍ଷଣେ ନିଜରୂପ ଧଇଲେ କାପାଳୀ
ନବଲକ୍ଷ ଡମ୍ବରୁ ଯେ ଅନ୍ତରୀକ୍ଷେ ବାଜିଲି । ୪୦ ।
ସଦ୍ୟ ବାମ ଘୋର ଈଶାନ ତତପୁରୁଷ ପଞ୍ଚଶିର
ପଞ୍ଚଦଶ ଲୋଚନ ବିରାଜଇ ଦେବ ହର । ୪୧ ।
ସଙ୍ଗମ ମେଖଳ ନନ୍ଦକ ପିଙ୍ଗଳ ଜଟା
ଶୁଦ୍ଧ ସ୍ଫଟିକ ଶରୀର ବାଘବସନ ଉଲୁଟା । ୪୨ ।
କଣ୍ଠେଣ ଶୋଭିକନ ରୁଣ୍ଡ ମୁଣ୍ଡମାଳା
ଅନନ୍ତ ଭୁଜଙ୍ଗ ଯାର କଟିରେ ମେଖଳା । ୪୩ ।
ଶ୍ୱେତପଦ୍ମ ମହାପଦ୍ମ ତକ୍ଷକ ନାଗ ଅଣ୍ଟି
ଭୁଜରେ ନାଗ ଯେ କଂକଣ ବାହୁଟି । ୪୪ ।
ଗଙ୍ଗା ଯମୁନା ସରସ୍ୱତୀ ତ୍ରିନଧାରି
ସେ ତ୍ରିନହେଂ ସଙ୍ଗମ ହୁଅନ୍ତି ମିଳି ଚନ୍ଦ୍ର ଜଟାରି । ୪୫ ।
ଭସ୍ମ ବିଲେପନ ତାମ୍ରବର୍ଣ୍ଣ ଫେଣୀ ମାଥେ
ନୀଳ ଲୋହିତ ପିଙ୍ଗଳ ଧବଳ ହୃଦଗତେ । ୪୬ ।
ନିଜ ରୂପ ଧରିଣ ବିଜେକଲେ ଦେବରାଜା
ହୃଦଗତେ ପଦ୍ମ ଆସନେ ବିଜୟେ ଶଇଳଜା । ୪୭ ।
ପିନାକ ସାରଙ୍ଗ ତ୍ରିଶୂଳ ଦଣ୍ଡପାଣି
ଖଟ୍ବାଙ୍ଗ ମୁଦ୍ଗର ଶୁଦ୍ଧ ସ୍ଫଟିକ ଫଣି ମଣି । ୪୮ ।
ଅନନ୍ତ ଅମୃତ କୁଣ୍ଡଳ ମଣିରେ ଶୋଭ
ତିମିର ବିଦାରଣ ମଣି ମେଖଳ କଟି ପ୍ରଭ । ୪୯ ।
ଜପା ଅଜପା ଲୟେ ଗମଇ ଯୋଗମତେ
ଅଧାଟି ଗଣପତି ଶରଗୁଣା ସର୍ବଯନ୍ତେ । ୫୦ ।
କ୍ଷଣେ କ୍ଷଣେ ଯୋଗ ଆସନେ କ୍ଷଣେ ରଙ୍ଗଖେଳା
ଭ୍ରୂକୁଟୀ ସଙ୍ଗତେ ନାଟ ହାସ୍ୟ ଅନର୍ଗଳା । ୫୧ ।

ଦକ୍ଷିଣେ ଗଜାନନ୍ଦ ବାମେଣ କାର୍ତ୍ତିକ
ଭୃକୁଟୀ ଭୁଲେ ମହାକାଳ ପଞ୍ଚକ । ୫୨ ।
ଟିଣାସୁକ ଖଣାସୁକ ଜୟନ୍ତକ ଅଜୟନ୍ତକ
ଚଣ୍ଡ ପ୍ରଚଣ୍ଡ ଯେ ମଣିଭଦ୍ର ଖେଟମେକ । ୫୩ ।
ଡବ ଡବ ଡମ୍ବରୁ ବାଜଇ ଘନ ଡାକ
କୋଟି କିରଣ ସୂର୍ଯ୍ୟ ପ୍ରାୟ ଶୋଭା ଦଶଇ ପିନାକ । ୫୪ ।
ଯେସନେକ ସରୂପେ ବିଜୟେ ବିଶ୍ଵବାସୀ
ବର ମାଗରେ ନନ୍ଦନ ବଦୟନ୍ତ ଦେବକାଶୀ । ୫୫ ।
ସ୍ଵାମୀ ଷାଠିଯେ ସହସ୍ର ବରଷ କଲିଣି ମୁହିଂ ତପ
ଇଚ୍ଛାବର ମୋତେ ହୋ ଦେବା ବିଶ୍ଵରୂପ । ୫୬ ।
ସ୍ଵାମୀ ତିଶିଂକ ତିନବର ପୁରୁଷକୁ ଦଶବର
ଯେସନେକ ବର ଦେବ ହେ ଦେବହର । ୫୭ ।
ଦଶବରୁଂ ବରେ ଅଧିକ ମାଗିଲେ
ଶିରଚ୍ଛେଦନ ହୋଅଇ ପୁରାଣେ ବୋଇଲେ । ୫୮ ।
ତିନବରୁଂ ଅଧିକ ମାଗନ୍ତି ଯେବଣ ତିଶି
ନାସା ଛେଦନ ଅବଶ୍ୟ ହୋଅଇ ତାହାର । ୫୯ ।
ଇଚ୍ଛାଯେ ବର ଦେବା ମାଗଇଂ ମୁହିଂ ତୋତେ
ଉଦେହେଲା ଠାରୁ ବର ଦେଇଥିବୁ ରବିଅସ୍ତ ପରିଯନ୍ତେ । ୬୦ ।
ସଦାନନ୍ଦ ବୋଇଲେ ମନ ଯାହା ଇଚ୍ଛ
ହୋଉ ତୋତେ ପ୍ରାପତ ଯିଏ ମନେ ବାଞ୍ଛୁ । ୬୧ ।
ସ୍ଵାମୀ ଇଚ୍ଛାବର ମୋତେ ଦେବାକ ଧୂର୍ଜଟି
ଭୃଣଯେ ବହିଲୁ ତୁ କେବଣ ନାମଗୋଟି । ୬୨ ।

---

୫୭।୨ ଦଶବର କସ ମାଗିବ ଦେବହର ।—କ, ଘ, ଠ, ଖ

୬୨।୨ ତୃଣସ୍ଥ ଅକ୍ଷର ଭୁମ୍ଭର ଯେବଣ ନାମଗୋଟି —ଣ, ଖ

ଈଶ୍ୱରେ ବୋଇଲେ ମୋର ନାମ ତ୍ରିପୁରାରି
ସେ ବୋଇଲା ତ୍ରିପୁର ନାମ ମୋତେ ଦେବା କି ଶୂଳଧାରି । ୭୩ ।
ତୁ ଯେ ତିନିପୁର ଭସ୍ମିଲୁ ବିଶ୍ୱନାଥ
ମୁହିଂ ଜିଣିମି ଦେବ ଯେ ତିନି ଜଗତ । ୭୪ ।
ସ୍ୱାମୀ ନରଚଣ୍ଡାଳ ରୂପେ ହୋଇଲା ମୁହିଂ ଜାତ
ସେ ପାତକ ମୋର କ୍ଷୟ ହେଉ ବିଶ୍ୱନାଥ । ୭୫ ।
ଈଶ୍ୱରେ ବୋଇଲେ କଲା ପାପକ୍ଷୟେ
ସ୍ୱାମୀ ବ୍ରହ୍ମ ନିର୍ବାଣ ଯେ ହେଉ ମୋର କାୟେ । ୭୬ ।
ତ୍ରିପୁର ଶରୀରେ ଲେପିଲେ ବିଭୂତି ବଜ୍ରଚର୍ମଙ୍ଗ
ଶରୀର ଯାକ ବଜ୍ର ଯେ ହୋଇଲା ତାହାର । ୭୭ ।
ସ୍ୱାମୀ ପୃଥୀ ଆପ ତେଜ ବାୟୁବ୍ୟ ଆକାଶ
ପଞ୍ଚଧାତୁ ମଧ୍ୟେ ଯେ ପଞ୍ଚ ଯେ ପୁରୁଷ । ୭୮ ।
ଯେବେ ପଞ୍ଚଧାତୁମାନଙ୍କୁ ପାଇବ ମୁହିଂ ସାଧି
ଶହସ୍ର ଧରନ୍ତେ କେହୁ ସମାନ ନୋହିବେ ମୋତେ ଯୋଧୀ । ୭୯ ।
ସ୍ୱାମୀ ଇନ୍ଦ୍ର ଚନ୍ଦ୍ର ଆଉ ପବନ ଆଦିତ୍ୟ
ଯମ କୁବେର ଅନଳ ନଇଋତ ବରୁଣ ବିଧାତ । ୮୦ ।
ଯେମାନଙ୍କ ସମରେ ଜିଣିମି ମୁହିଂ ଧରି
ବାଞ୍ଛା ସିଦ୍ଧି ହେଉ ସାଧୁ ହୋ ବୋଇଲେ ତ୍ରିପୁରାରି । ୮୧ ।
ସ୍ୱାମୀ ଅଗ୍ନିରେ ପଶିଲେ ନ ପୋଡ଼ିବ ମୋର କାୟେ
ମହା ପ୍ରଳୟକାଳେ ଜଳ ମୋତେ ହୋଇବ ଆଶ୍ରୟେ । ୮୨ ।
ଋଷିଙ୍କର ଶାପ ମୋତେ ନ କରିବ ବାଧା
ଦେବତାୟେ ଭସ୍ମକଲେ ହୋଇବ ମୁଂ ସିଦ୍ଧା । ୮୩ ।

---

୭୭ { ଯେ ଶରୀର ବଜ୍ରପରି ହୋଇବ ମୋହୋର
ଦେବ ଦାନବ ମୋତେ ନ ଜିଣିବେ ସମର ।—ଖ, ଠ

୮୦।୧ ଯେମାନଙ୍କ ସମରେ ଜିଣିମି ମୁହିଂ ଶସ୍ତ୍ର ଧରି ।—ଖ, ଠ

ପାତାଳେ ନାଗଲୋକ ମଞ୍ଚରେ ନରଲୋକ
ଗନ୍ଧର୍ବ କିନ୍ନର ଯେ ଦକ୍ଷ ରାକ୍ଷସଯାକ । ୭୪ ।
ସବୁନ୍ତ ସମରେ ଜିଣିମି ମୁହିଂ ଧରି
ଈଶ୍ୱରେ ବୋଇଲେ ଅସ୍ତୁ ହୋଇ ଯେ ତୋହୋର । ୭୫ ।
ଦିବ୍ୟଚକ୍ଷୁ ପ୍ରାପତ ହୋଇ ମୋତେ ଦିଅସି ଆଦିଦେବ
ଯେଉଁଠେ ଥାଇ ଚାହିଁଲେ ମୋତେ କୋଟି ବ୍ରହ୍ମାଣ୍ଡ ଦିଶିବ । ୭୬ ।
ଶସ୍ତ୍ରମାନ ଭେଦ ନୋହିବ ଯେ ମୋର ଅଙ୍ଗ
ବଜ୍ର ଶକତି ବ୍ରହ୍ମ ଶକତି ଶୂଳ ଶକତି ଚକ୍ର ସମସ୍ତ ହୋଇବ ଭଙ୍ଗ । ୭୭ ।
କାଳପାଶ ନାଗପାଶ ଯମପାଶ ଛିନ
କାଳଦୂତ ବଶ ମୋତେ ହୋଇବେ ସଞ୍ଜୀବନୀ । ୭୮ ।
ତିରିଶି ବରଷଠାରୁ ଚାଳିଶ ବରଷ ପରିଯନ୍ତେ
ଯେତେକହିଂ ଅଧିକ ବୟସ ମୋତେ ନୋହିବ ଯୁଗତେ । ୭୯ ।
ସ୍ୱାମୀ ଯେତେକସ୍ତରି ଗଣ୍ଡା ଯୁଗେ ହୋଏ ଯେତେକମନୁ
କାଳେହେଂ ବିଚଳିତ ନୋହିବ ମୋର ତନୁ । ୮୦ ।
ଈଶ୍ୱରେ ବୋଇଲେ ରେ ସମସ୍ତ ହୋଇ ଅସ୍ତୁ
ଯେତେକ ମାଗୁ ତେତେକ ହୋଇ ତୋତେ ପରାପତୁ । ୮୧ ।
ସ୍ୱାମୀ ଦିବ ଭୂମି ପାତାଳ ଯେତେ ତିନପୁର
ବିଶ୍ୱରୂପ ଘୋଟିବ ମୋହୋର ଶରୀର । ୮୨ ।
ନାରାୟଣର ହାତେ ଯେ ନୋହିବ ମୁହିଂ ହତ
ଅଶତଚକନ୍ତେ ବିଦ୍ୟା ସାଧିବ ସମସ୍ତ । ୮୩ ।
ଶୂନ୍ୟ ପୁରୁଷମାନେ ଯେତେକ ବିହନ୍ତା
ସମସ୍ତେହେଂ ଖଟିଥିବେ ମୋତେ ହୋଇଣ ବଶ୍ୟଗତା । ୮୪ ।
ତୁମ୍ଭ ମୋତେ ସମାନ ନୋହିବୁ ଦେବହର
କୈଳାସ କନ୍ଦରୁ ତୁ ନୋହିବୁ ବାହାର । ୮୫ ।
ତୁମ୍ଭର ଚରଣେ କେହି ନ କରିବେ ପୂଜା
ତୁମ୍ଭ ସ୍ଥାନେ ବସି ମୁହିଂ ବୋଲାଇବ ଦେବରାଜା । ୮୬ ।

---

୮୬।୧ ପୁରୁଣା ଈଶ୍ୱରେ ଥିଲେ ନୂଆ ଈଶ୍ୱରଂକୁ କାହିଂ ପୂଜା ।—କ, ଖ

ଈଶ୍ୱରେ ବୋଇଲେ ରେ ହୋଇଲା ମୋର ସତ୍ୟ
ତୁ ଯାହା ମାଗିଲୁ ରେ ସିଦ୍ଧ ହୋଉ ସମସ୍ତ । ୮୭ ।
ସ୍ୱାମୀ ପିନାକ ଶାରଙ୍ଗ ଯେ ଅକ୍ଷୟ ବେନତୋଣ
ଏହା ମୋତେ ବିଶ୍ୱନାଥେ ଦେବାକ ଏହିକ୍ଷଣ । ୮୮ ।
ତ୍ରିଶୂଳ ଶକତି ଅମୋଘ ଶକତି ଯେ ମୁଦ୍‌ଗର
ଅଧାଚକ୍ର ମହାକାଳ ପାଶୁପତ ରୁଦ୍ରାଶର । ୮୯ ।
ତ୍ର ପୁର ବଚନେ ରୁଦ୍ର ଦେଲେ ଯେ ସମସ୍ତ
ଏହି ତୋହୋର ବୋଇଲ ମୋତେ ଦେବାକ ବିଶ୍ୱନାଥ । ୯୦ ।
ଏକାଦଶ ଲୋକେ ମୋତେ ଜଣନ୍ତା ନୋହୁ କେହି
ତ୍ରଇଲୋକ୍ୟ ସେବା ମୋତେ କରିବେ ଗୋସାଇଂ । ୯୧ ।
ଈଶ୍ୱର ବୋଇଲେ ତର ହୋଇଲା ତ୍ରିପୁନ୍ତ
ବଇଲ ଡମ୍ବରୁ ସହିତେ ଭୋଳେ ଦେଲେକ ପଶୁପତି । ୯୨ ।
ବର ମାଗନ୍ତେଣ ଦେବତାଏ ମନେ କଲେ ଶଂକା
ଗାଇଲେ ବାକ୍ୟଦେବୀ ଆଦି ଯେ କେତୁକା । ୯୩ ।
ତୁ ଦେବୀ ହଜେକର ତ୍ରିପୁର ହୃଦଗତେ
ଗଙ୍ଗା ପାର୍ବତୀଙ୍କ ଏହି ନ ମାଗଇ ଯେମନ୍ତେ । ୯୪ ।
ଦେବଙ୍କ ବଚନେ ଦେବୀ ବିଜୟେ ସରସ୍ୱତୀ
ତ୍ରିପୁରର ହୃଦଗତେ ବିଜୟେ ଚଡ଼ନ୍ତି । ୯୫ ।
ସମସ୍ତ ମାଗିଲା ସେ ଗଙ୍ଗା ପାର୍ବତୀଙ୍କ ଗୁଡ଼ି
ଭୋଳେଣ ଈଶ୍ୱରେ ଯେ ଦେଲେ ସମସ୍ତ କାନ୍ତ । ୯୬ ।
ଆଦିତ୍ୟ ଦେବତାଙ୍କୁ ବୋଇଲେ ପିତାମହ
ବନ୍ଧନ ହୋଇ ମେରୁ ଉହ୍ଲାଡ଼େଣ ରୁହ । ୯୭ ।
ବ୍ରହ୍ମାଙ୍କର ବଚନେ ଆଦିତ୍ୟ ଦେବତା
ଚନ୍ଦ୍ରବଂଶ ଦଣ୍ଡେ ସେ ଯେ ଗଲେ ଅସ୍ତଂଗତା । ୯୮ ।

---

୯୧.୨ ତ୍ରିଦଶେ ସେବା ମୋତେ କରିବେ ଗୋସାଇଂ ।—କ, ଖ

ବର ମାଗନ୍ତେ ଯେ ଆଦିତ୍ୟ ଅସ୍ତଗତ
କଇଳାସ ସ୍ୱର୍ଗେ ଯାଇଂ ବିଜୟେ ବିଶ୍ୱନାଥ । ୯୯ ।
ସୈନ୍ୟ ପର୍ବତେ ସେ ତ୍ରିପୁର ବୀର ଥାଇ ରହି
ଭୟେଣ ଅମରଗଣ ଭୁଲାଇଲେ ମୁଣୋହି । ୧୦୦ ।
ଦିନେ ରଯ୍ୟଣୀ ପ୍ରଭାତେ ବିଜୟେ କଉଣୋପ
ଦେବସଙ୍ଗକୁ ବିଜୟେ ଈଶ୍ୱର ସରୁପ । ୧୦୧ ।
ପଞ୍ଚବଦନ ଯେ ପଞ୍ଚଜଟା ମାଥେ
ପିନାକ ତ୍ରିଶୂଳ ଯେ ଖଟ୍ୱାଙ୍ଗ ଡମ୍ବରୁ ପ୍ରଭୁହାଥେ । ୧୦୨ ।
ଦିଗବସନ ଯେ ବଇଲ ବାହାନେ
ବିଜୟେ ତ୍ରିପୁର ଯେ ଅମର ସବସ୍ଥାନେ । ୧୦୩ ।
ଦୁଷ୍ଟ ଈଶ୍ୱର ରୁପ ସରୁପେଣ ଦେଖି
ଉଠିଲେ ଦିଗପାଳେ ଆସନ ଉପେଖି । ୧୦୪ ।
ଈଶ୍ୱର ଆସନେ ଯାଇଂ ତ୍ରିପୁର ବସଇ ମାଡ଼ି
ଦିଗପାଳମାନେ ଉଭା ହୋଇଲେ କରପଦ୍ମ ଯୋଡ଼ି । ୧୦୫ ।
ମହାଭୟେ କରଣ ଯେ ସମସ୍ତ ଦିଗପାଳେ
ପ୍ରଣିପତ୍ୟ ହୋଇଲେ ଯେ ତ୍ରିପୁର ପାଦତଳେ । ୧୦୬ ।
ସେ ଦିନ ନାରାୟଣେ ବିଜୟେ ମେରୁସଙ୍ଗ
ତ୍ରିପୁରକୁ ପିଠିକରି ବସିଲେ ଆଦିଦେବା । ୧୦୭ ।
ତ୍ରିପୁର ବିଚାରଇ ଯେ କଲା ମନପଣ
ପ୍ରଭୁ ହେନ ସେହି ଶୀରଗୋଟି ଛେଦିବ ସେହିକ୍ଷଣ । ୧୦୮ ।
ମୁହିଂ ଈଶ୍ୱର ଅଟେ ସେ ପିଠିକଲା ମୋତେ
ପ୍ରଥମେ ପ୍ରମାଦ ସେହାକୁ କରିବ କେମନ୍ତେ । ୧୦୯ ।
ମତ୍ତଗର୍ବେ ମୋତେ ତ ସେ ନୁଆରିଲା ଚହ୍ନି
ବୋଇଲା ଜାଣୁ ଜାଣୁ ସିନା ସେ କରଇ ଅମାନ । ୧୧୦ ।
ପଣ୍ଡିତପଣେ ରାଗ ସଂହରିଲା ତ୍ରିପୁର
ତାହାର କୋପଖଣ୍ଡି ଜାଣିଲେ ଦାମୋଦର । ୧୧୧ ।
ନକରୁ ମାନ୍ୟ ପଛେ ନ ବୋଲିବ କିଛି
ସ୍ଥିରହୋଇ ବସିଲା ତ୍ରିପୁର ମନେ ପାଞ୍ଚି । ୧୧୨ ।

ନାରଦପୁଣ ପ୍ରତିଉତ୍ତର ଦିଲେ ତ୍ରିପୁରକୁ
ଆହୋ ନମସ୍କାର କମ୍ପେ ନ କଲେ ଆମ୍ଭଂକୁ । ୧୧୩ ।
ତ୍ରିପୁର ବୋଇଲା ତୁ ଯେ ପୁରୁଷ ଉତ୍ତମ
ଈଶ୍ୱର ଦେବତାଂକୁ ତୁ କରୁଛି କ ପ୍ରଣାମ । ୧୧୪ ।
ନାରଦପୁଣ ବୋଇଲେ ଈଶ୍ୱର ଆମ୍ଭର ସାନଭ୍ରାଥ
ତାହାକୁ ଆମ୍ଭର ନମସ୍କାର ନୋହଇ ବିହିତ । ୧୧୫ ।
ଶିରରେ ଧବଳାଙ୍ଗୀ ପାର୍ବତୀ ଥାନ୍ତି ହୃଦେ ଯେବେ
ତହିଂକ ନମସ୍କାର କରୁ ଆମ୍ଭେ ହାଦେ । ୧୧୬ ।
ମହିଷା ବଧକର ସେ ହୋଇଲେ ଜଗମାୟେ
ତେଣୁକର ନମସ୍କାର କରନ୍ତି ସର୍ବ ଦେବତାୟେ । ୧୧୭ ।
ଆହୋ ଈଶ୍ୱର ଯେ ଅଟନ୍ତି ଜଗତଭୂତ ବାଇ
ତାହାକୁ ଯେ ସେବା କରଇ ହୋଇବ ସେ ବାଇ । ୧୧୮ ।
ତୋତେ ଯେବେ ଈଶ୍ୱରପଦ ବର ଦେଇଥାନ୍ତା
ଗଙ୍ଗା ପାର୍ବତୀଂକ ସେ କଂପେ ନ ଦିଅନ୍ତା । ୧୧୯ ।
ଈଶ୍ୱର ପଦ ଯେବେ ତୋତେ ସେ ପ୍ରାପତ
ଚନ୍ଦ୍ର ଗଙ୍ଗା ପାର୍ବତୀ ଥାନ୍ତେ ବସ୍ତୁମାତ । ୧୨୦ ।
ତୋତେ ଯେବେ ଦେଇଥାନ୍ତାଂ ଗୃହ ଯେ ଭାରିଜା
ତେବେ ସିନା ହୁଅନ୍ତୁ ତୁହି ଦେବରାଜା । ୧୨୧ ।
ଆରେ ନରଚଣ୍ଡାଳ ଦେଖି ତୋତେ ଈଶ୍ୱର ଭଣ୍ଡିଲା
ବାହିଜ ବରମାନ ତୋତେ ଜାଣି ଦିଲା । ୧୨୨ ।
ଆମ୍ଭର ବୋଲକରେ ଯାଅ ଯା ଯେହିକ୍ଷଣ
ଗୃହଜାପ୍ୟା ଯାଇ ଈଶ୍ୱର ତହୁଂ ଆଣ । ୧୨୩ ।
ତେବେ ସେ ନତଯେ ହୋଇବୁ ଦେବରାଜ, ସ୍ୱାମୀ
ସମସ୍ତେ ଦେବେ ତୋତେ ହୋଇବେ ପଦ୍ମଣାମି । ୧୨୪ ।
ଈଶ୍ୱର ଭାରିଜା ତୋତେ ନ ଦିଅଇ ଅଥବା
ଦୁଷ୍ଟ ଭାରିଜା ଆଣିଲେ ଅର୍ଦ୍ଧଶ୍ୱର ପଦସେବା । ୧୨୫ ।
ଯଦ୍ୟପି ତୋତେ ଦୁଇ ଭାରିଜାଇଂ ନ ଦେବ
ବୃଦ୍ଧ ଈଶ୍ୱର ସେ ଆଜ ତହୁଂ କଂପା ଥିବ । ୧୨୬ ।

କପିଳାସେ ଫଣୀ ତାର ଶିର ଛେଦପକା
ଆଣ ଗୃଭ ଭାର୍ଯ୍ୟା ତୋତେ ଈଶ୍ବରପଦ ହୋଇ ପ୍ରେକା । ୧୨୭ ।
ପୂରୁଣା ଈଶ୍ବର ସେହିମତେ ଥିଲେ
ତୋତେ କଂପେ ପୂଜିବୁ ପ୍ରେହା ଜଗନ୍ନାଥେ ବୋଇଲେ । ୧୨୮ ।
ନାଗସ୍ପୃଣ କହିଲେ ଯଦ୍ଧଂ ଚକ୍ରକୂଟ ବୁଦ୍ଧି
ମୂର୍ଖ ପାମର ସେ ନ ଜାଣିଲା କଥା କୂଟଛନ୍ଦ । ୧୨୯ ।
ଅନ୍ତଅନ୍ତ ଭୃଗ୍ରବର ମାଗିଲା ତ୍ରିପୁର
ନକଟେ ମୃତ୍ୟୁ ତାକୁ କରାଇଲେ ଦାମୋଦର । ୧୩୦
ନାଗସ୍ପୃଣଂକ ବଚନେ ଧାମଇ କଉଣୋପ
ରୁଦ୍ର ଦେବତାଂକୁ କରଣ ମହାକୋପ । ୧୩୧ ।
ଆରେ ଆରେ ବୋଲ ଧାମଇ ସେ ପାପିଷ୍ଠ
କପିଳାସ କନ୍ଦରେ ଯାଇ ବଜସ୍ପେ ଭ୍ରପିଷ୍ଟ । ୧୩୨ ।
ସଇନ୍ଲେକ କଂପମାନ ଅସୁର ଘୋରବୋଦ୍ଧ
ତ୍ରିପୁର ଆଗତ ବୋଲ କହିଲେ ମହାଦେବୀ । ୧୩୩ ।
ଧ୍ୟାନେଣ ଜାଣିଲେ ତାହା ଦେବ ବିଶ୍ବନାଥେ
ଅନ୍ତ ଉଗ୍ରବର ପ୍ରାପତ ହୋଅଇ କ ଯୁଗତେ । ୧୩୪ ।
ମାଧବ ଚିନ୍ତିଲେକ ଚକ୍ରକୂଟ ବୁଦ୍ଧି
ଯେମନ୍ତ ଦାନବ ମରଣ କରାଇବେ ସିଦ୍ଧି । ୧୩୫ ।
ଈଶ୍ବରେ ବିଜେକଲେ ଉତ୍ତର କୋଣ କାଛେ
ତ୍ରିପୁର ଭେଟିଲେ ଦେବ ପଞ୍ଚମୁଛେ । ୧୩୬ ।

---

୧୨୭।୨ "ଆଣ ଗୃଭ ଭାର୍ଯ୍ୟା ତୋତେ ଈଶ୍ବରପଦ ହେଉ ପ୍ରେକା"
ପରେ 'ଖ' ପୋଥିରେ ଅଲଗା ପାଠ :—
ତେବେ ରୁଦ୍ର ତନ୍ତ୍ରଂ ଦେଖାଇବୁ ବାରପଣ
ଈଶ୍ବର ଦେବତାଂକର ମସ୍ତକ ଛେଦଣ ।
ରୁଦ୍ର ଯେବେ ତାଂକ ପତ୍ନୀମାନଂକୁ ଆଣିବୁ
ତା ସଙ୍ଗେ ଅମରେ ତୁ ସୁନ୍ଦର ହଣବୁ ।

୧୩୬।୨ ପଞ୍ଚମୁଛେ—ପଞ୍ଚମୁଣେ ।

ଚମ୍ପାଚକ୍ର ପର୍ବତେ ଭ୍ରମଇ ବେନିଆଖି
ଈଶ୍ୱର ଦେବତାଙ୍କେ ଭୟ କଲେ ତାହା ଦେଖି । ୧୩୭ ।
ତ୍ରିଶୂଳ ବୁଲାଇ ବୋଲଇ ତ୍ରିପୁର
ଆହୋ ଈଶ୍ୱର କେବଣ ପ୍ରକୃତି ହୋଇଲା ତୋହୋର । ୧୩୮ ।
ଷାଠିଏ ସହସ୍ର ବରଷ ଦୁଖେ ଅରଜିଲି ତପ
ବାଞ୍ଛିତ ବର ଯାହା ଦେଲୁ ନରୁତାନ୍ତ କଲୁ ଗୋପ୍ୟ । ୧୩୯ ।
ଦେବତାଙ୍କେ ବସିଣ ନ ଦେଲେ ମୋତେ ମେରୁସଙ୍ଗ
ଯେବେ ମୋତେ ସଞ୍ଚିଲା ତୋର ଗୃହ ଖରଜା ମୋତେ ଦେବା ।୧୪୦।
ଈଶ୍ୱର ବୋଇଲେ ତୁ ପାମର ଗୋଳଗୁଣ୍ଡ
ଆରେ ଗୁରୁପତ୍ନୀ ହରଣ କଲେ ଛେଦନ ହୋଇବ ମୁଣ୍ଡ । ୧୪୧ ।
ତ୍ରିପୁର ବୋଇଲା ସ୍ୱାମୀ ତୁ ହରିଲୁ ତୋ ନିଜମାତେ
ଈଶ୍ୱରପଦ ତୋଠାରେ ରହଇ କେମନ୍ତେ । ୧୪୨ ।
ସଦାନନ୍ଦ ବୋଇଲେ ମାଗିଥାନ୍ତୁ ଯେବେ କାଲି
ତେବେ ଅସ୍ତେ ପରସନ୍ତେ ଯାହା ମାଗିଲୁ ତାହା ଦେଲି । ୧୪୩ ।
କାଲି ଯେବେ ମାଗିଥାନ୍ତୁ ଗୃହ ଯେ ଘରଣୀ
ନରସ୍ତେ ଦେଇଥାନ୍ତି ସ୍ତେ ମୋହୋର ସତ୍ୟବାଣୀ । ୧୪୪ ।
ତ୍ରିପୁର ବୋଇଲା ତୁ ମୋହୋର ପରମ ଗୁରୁ
ଦୁଇ ଖରଜା ଦେଅ ମୋତେ କଂପେ ନାସ୍ତି କରୁ । ୧୪୫ ।
ଯେବେହିଁ ନ ଦେବୁ ମୋତେ ଗଙ୍ଗା ଯେ ଗିରିଜା
କପିଳାସ ଭଙ୍ଗି ତୋର ମୁଣ୍ଡ ହୋଇବ ଦେବରାଜା । ୧୪୬ ।

---

୧୪୨।୧ "ତ୍ରିପୁର ବୋଇଲ ସ୍ୱାମୀ ତୁ ହରିଲୁ ତୋ ନିଜ ମାତା"
ଏହି ପାଦାନ୍ତ ପରେ 'ଘ' ପୋଥିରେ ଦ୍ୱିତୀୟ ପାଦ :—
ମୋତେ ଆଜ ଦେବୁ ହର ତୋହୋର ବନିତା ।

୧୪୬।୨ କପିଳାସ ଭଙ୍ଗ ତୋର ମୁଣ୍ଡ ହୋଇବ ଦେବରାଜା"
'ଖ, ଠ' ପୋଥିରେ ଅଲଗା ପାଠ:—
ଯେବେ ଦୁଇ ଖରଜା ନ ଦେବୁ ରୁଦ୍ର ମୋତେ
କପିଳାସ ଭଙ୍ଗ ନାଶ କରିବି ମୁଁ ତୋତେ ।

ଶୁଣିଣ କୋପକଲେ ଦେବ ଶୂଳପାଣି
ଯେତୁ ତୋହୋର ମୃତ୍ୟୁଭେଦ ଭୁରେ ନୁଆଣିଲୁ ଜାଣି । ୧୪୭ ।
ତ୍ରିପୁର ବୋଇଲା ରେ ଆଜ ଛେଦିବି ତୋର ଶିର
ତେବେ ସେ ଈଶ୍ୱରପଦ ହୋଇବ ମୋହୋର । ୧୪୮ ।
କରେ ଧନୁ ଧରିଣ ସେ ନାରାଚେକ ପୂରେଇ
ବନ୍ଧନ୍ତେ ଈଶ୍ୱରଂକ ପାଦତଳେ ପଡ଼ିଲେକ ଯାଇ । ୧୪୯ ।
ଦେଖି ପ୍ରଜ୍ୱଳିତ ଯେ ହୋଇଲେ ପଞ୍ଚମନୁ
ବେଗେ ବିଶ୍ୱନାଥେ କରେ ଧଇଲେ ଶିବଧନୁ । ୧୫୦ ।
ପୁଣି ସହସ୍ରେକ ନାରାଚ ସନ୍ଧିଣ ତ୍ରିପୁର
ଈଶ୍ୱର ଉପରକୁ ବିନ୍ଧଇ ମହାବୀର । ୧୫୧ ।
ଗର୍ଜିଣ ନାରାଚମାନ ଅଇଲେକ ଉଡ଼ି
ଈଶ୍ୱର ପାଦତଳେ ସକଳ ଶସ୍ତ୍ର ପଡ଼ି । ୧୫୨ ।
ସହସ୍ରେକ ନାରାଚ ବିନ୍ଧିଲେ ଦେବକାଶୀ
ତ୍ରିପୁରକୁ ଚୁମ୍ବ ଦେଇ ମୁଖେଣ ସମ୍ଭାଷି । ୧୫୩ ।
ପୁଣି ସହସ୍ରେକ ନାରାଚ ଧରିଣ ତ୍ରିପୁର
ଈଶ୍ୱରଂକ ଉପରକୁ ବିନ୍ଧିଲା ମହାବୀର । ୧୫୪ ।
ବାୟୁବ୍ୟ ଶରେକ ବିନ୍ଧିଲେ ଶୂଳପାଣି
ତ୍ରିପୁର ଶସ୍ତ୍ରମାନ ପକାଇଲେ ହାଣି । ୧୫୫ ।
ଅନ୍ୟୋଅନ୍ୟ ସମରେ ବଢ଼ିଲା ମହାବେଳ
ବାଣ ଜାଳାବଳୀ ବରଷ ଧାର ଶସ୍ତ୍ରମାଳ । ୧୫୬ ।
ଲାଘବ ସମରେ କେହି କାହାକୁହିଂ ନ ଜିଣି
ଦେବ ଶସ୍ତ୍ରମାନ ସବୁ ଆଧାନ କଲେ ଆଣି । ୧୫୭ ।
ଭୂର୍ଲୋକ ସ୍ୱର୍ଗଲୋକ ପାତାଳ ଆଦିକରି
ଉଲ୍‌କାପାତ ଜାଣି ଦିଶିଲା ତିନପୁରୀ । ୧୫୮ ।
ଅବିଶ୍ରାମ ସମର ଲାଗିଲା ରାତି ଦିବା
ଆହାର ନିଦ୍ରା ଅବକାଶ ନାହିଂ ଯେ ଅଥିବା । ୧୫୯ ।

୧୫୬।୨ ଏ ।ନରେ "ଦୁହିଂକର ଶରୀର ବହେ ଶ୍ରମ ଝାଳ" ।
'ଖ ଣ, ଠ' ପୋଥିରେ ପାଠ ହେଉଛି —

ମହା ରଣଘୋର ଯେ ଲାଗିଲା ଅପ୍ରମିତେ
ସମର ବଢ଼ିଲା ଷାଠିଏ ସହସ୍ର ବରଷ ପର୍ଯ୍ୟନ୍ତେ । ୧୬୦ ।
ଯୁଦ୍ଧେଣ ବିମୁଖ ସେ ପାଇଲେ ତ୍ରିଲୋଚନ
ଦେବ ଦେବ ହରକାନ୍ତ ଭାଳନ୍ତ ପଞ୍ଚମୁନ । ୧୬୧ ।
ବିଘ୍ନରାଜେ ଜାଣିଲେ ବିଶ୍ୱନାଥଙ୍କ ମତ
ବୋଇଲେ ସ୍ୱାମୀ ସମରେ ଶ୍ରମ ପାଇଲ କି ପଶୁପତି । ୧୬୨ ।
ଈଶ୍ୱରେ ବୋଇଲେ ବାବୁ ମୁହିଁ ଛାଡ଼ଇ ଯେତେ ଶର
ସମସ୍ତ ଚୂର ହୋଇ ତ୍ରିପୁର ଶରୀର । ୧୬୩ ।
ବିଘ୍ନରାଜ ବୋଇଲେ ଯେହ୍ନାର ଶରୀରେ ଖଞ୍ଜିଲ ବଜ୍ରର ଛଉଂସି
ତେଣୁକରି ଶସ୍ତ୍ରମାନ ନ ଭେଦନ୍ତି ଯେହ୍ନାର ଶରୀ । ୧୬୪ ।
ଯେବେ ତୁ କେମନ୍ତ ବିଚାର କରୁ ଦେବ ମନେ
ଦୁଇଭାବଜ୍ଞା ଦେବବୋଲ ବୋଇଲେ ଈଶାନେ । ୧୬୫ ।
ଆପଣେ ଦେବଇଂ ଯେ ବାରହ୍ମା ବସୁମତୀ
ତେବେ ସେ ହଇତ ଯେ ହୋଇବ ତ୍ରିପୁଷ୍ଠ । ୧୬୬ ।
ଅଥବା ତ୍ରିପୁଷ୍ଠ ଯେବେ ନୋହିବ ତ୍ରିପୁରା
କଷ୍ଟୋର କଲେ ଦେବ ଖଙ୍ଗା ଯେ ଗଉରୀ । ୧୬୭ ।
ବିଘ୍ନରାଜ ବୋଇଲେ ତୁମ୍ଭକୁ ସେହୁ ସେବ
ତାହାନ୍ତ ପାଇଲେ ତ୍ରିପୁର ହୋଇବ ତ୍ରିଜବା । ୧୬୮ ।
ସ୍ୱାମୀ ଯେ କଥା ଯୁଗତ ନୁହଇଂ କଦାଷ୍ଟିତେ
ମୋହୋର ତହୁଂ ଶୁଣ ତ୍ରିପୁରା ବଧ ହୋଇବ କେମନ୍ତେ । ୧୬୯ ।
ସ୍ୱାମୀ ଯେ ଶସ୍ତ୍ରମାନ ଯେ ଦେଖିଲ ତୋର ତହୁଂ
ତେଣୁ ସେ ବଧ ପୁଣ ହୋଇବ ହାଦେ କାହୁଂ । ୧୭୦ ।
ସ୍ୱାମୀ ସ୍ୱର୍ଗର ଶସ୍ତ୍ରମାନ ଆଣ ଯେତେକ୍ଷଣ
ତେବେ ସେ ତ୍ରିପୁରର ହୋଇବ ମରଣ । ୧୭୧ ।
ବ୍ରହ୍ମା ବିଷ୍ଣୁ ଦେବଇନ୍ଦ୍ର ଆଉ ଚନ୍ଦ୍ର ସୂର୍ଯ୍ୟ
ପବନ ଅନଳ ଆଦିକରି ଆଣ ଦେବରାଜ । ୧୭୨ ।
ବିଘ୍ନରାଜଙ୍କର ବୋଲେ ଦେବ ଯେ ଧୂର୍ଜଟୀ
ସୁମରିଲେ ହଗପାଳେ ଦେବତା ତେତିଶ କୋଟି । ୧୭୩ ।

ସଦାନନ୍ଦ ସୁମରନ୍ତେ ଅଇଲେ ବୃନ୍ଦାଅର୍କେ
ଆକାଶ ଗଙ୍ଗାକୂଳେ ଭଜନ୍ତି ଦେବଲୋକେ । ୧୭୪ ।
ବହ୍ମଗଜ ବୋଇଲେ ଆମ୍ଭେ ନାଶକରିବା ତ୍ରିପୁର
ଆପଣେ ନାରାୟଣ ହୋଇବ ତୁମ୍ଭେ ଶର । ୧୭୫ ।
ବଷ୍ଣୁର ଶରେ ଫଳ ହୋଇବ ବଇଶ୍ୟାନର
ପବନ ପଞ୍ଝପକ୍ଷୀ ହୋଇ ଲାଗବ ତହିଂର ଉପର । ୧୭୬ ।
ଅନାଦ ଧନୁ ଆରଦ୍ରାବଳୀ ଯେ ହୋଇବ
ସେ ଶଦସ୍ତ୍ର ଧେନକର ଈଶ୍ୱର ବନ୍ଧିବ । ୧୭୭ ।
ଋକ ଯଜୁ ସାମ ଅଥର୍ବ ଯେ ବେଦ ଚାର
ସେହି ଅଶ୍ୱ ହୋଇ ଶୂନ୍ୟ ଚାଲିବେ ବେଗକର । ୧୭୮ ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଚାରଦିଗ ରୁଣ୍ଡ
ସେହି ଚାରହେଂ ରଥକୁ ହୋଇବେ ଚାରକାଣ୍ଡ । ୧୭୯ ।
ଆବର୍ତ୍ତିକ ସଂବର୍ତ୍ତିକ ଦ୍ରୋଣ ଯେ ପୁଷ୍କର
ସେହି ଚାରମେଘ ରଥକୁ ହୋଇବେ ଚାରପୀଢ଼ । ୧୮୦ ।
ସତ୍ୟ ତ୍ରେତୟା ଯେ ଦ୍ୱାପର ଯୁଗ କଳ
ସେହି ଚାରହେଂ ହୋଇବେ ରଥକୁ ଚାରଚକ ଫଳ । ୧୮୧ ।
ମଧ୍ୟପୁର ଭୂମି ସପ୍ତକୂଳ ବସୁନ୍ଧରା
ଦ୍ୟାବା ପୃଥିବୀ ହୋଇବ ରଥଚକ କଢ଼ି । ୧୮୨ ।
ହିମବନ୍ତ ମାଲ୍ୟବନ୍ତ ବିନ୍ଧ୍ୟମାଳ ଗନ୍ଧ ଯେ ମାଦନ
ସେହି ଚାରନ୍ତ ରଥକୁ ଖୁରାକଲେକ ତ୍ରିଲୋଚନ । ୧୮୩ ।
ଦେବେ ଯେ ଚଳନ୍ତି ପିତାମହର ବୋଲେ
ଆପଣେ ବ୍ରହ୍ମା ରଥକୁ ସାରଥି ହୋଇଲେ । ୧୮୪ ।

---

୧୭୮।୨ ସେହି ଅଶ୍ୱ ହୋଇବେ ଶୂନ୍ୟେ ଯେ ଆଚର ।—କ, ଘ

୧୭୯।୨ ଚାରହେଂ ଉପରକୁ ହୋଇବେ ଚାରଅମ୍ବ ।—କ, ଘ

ଅଷ୍ଟକୁଳ ନାଗେ ରଥକୁ ହୋଇଲେ ଦଉଡ଼ି
ତେତିଶକୋଟି ଦେବତାଏ ଧର ଧର ମାର ମାର ବୋଲି ବୋବାପାଡ଼ି
। ୧୮୫ ।

ତ୍ରିପୁରକୁ ଈଶ୍ୱର ସମରେ ନୁଆଁଇଲେ
ବେନ ଭାରଜା ଦେବ ବୋଲି ଶାନ୍ତ କରାଇଲେ । ୧୮୬ ।
ଗଣେଶ ଗଜାନନ ଯେସନେକ କଲେ କଟବୁଦ୍ଧି
ସମର ଆରମ୍ଭିଲେ କଥାକର ସନ୍ଧି । ୧୮୭ ।
ଈଶ୍ୱର ରଥୀ ହେଲେ ବ୍ରହ୍ମା ସାରଥି ହୋଇଲେ
ତ୍ରିପୁର ଛାମୁରେ ଯାଇଂ ଈଶ୍ୱର ମିଳିଲେ । ୧୮୮ ।
ଦୂରେ ଥାଇକରି ଦେଖିଲା ଯେ ଅସୁର ତ୍ରିପୁର
ଈଶ୍ୱରଂକ ମୂରତି ଦେଖିଲା ସ୍ୱର୍ଗଧାର । ୧୮୯ ।
ଭୟ ଉପୁଜିଲା ମନେ ତ୍ରିପୁର ବିଚାରିଲା
ନଚଏ ହାଥୀମୁଣ୍ଡା ମୋ ମୃତ୍ୟୁଭେଦଟି କହିଲା । ୧୯୦ ।
ବୃଷଭ ବାହାନେ ଯେ ପଳାଇଲା ତ୍ରିପୁର
ଗଗନେ ଖେପିଲେ ରୁଦ୍ର ଗୋଡାବନ୍ତ ଖର । ୧୯୧ ।
ଜଗନ୍ନାଥେ ବୋଇଲେ ସ୍ୱାମୀ ଯେ ସ୍ୱର୍ଗଧାର ହେବଶର
ଯେକାବେଳକେହିଂଟି ପେଷିବ ନରଧାର । ୧୯୨ ।
ସ୍ୱାମୀ ନାଭିଗର୍ଭର ଗର୍ମୀରେ ଯେ ନ ପଶିଲା ବଜ୍ରଛିଂଗ୍ର
ସେଠାବକୁ ଶର ଯେ ବାନ୍ଧ ଶୂଳଧାରୀ । ୧୯୩ ।
ସ୍ୱାମୀ ବିଷ୍ଣୁ ଅଗ୍ନି ଫଳ ପବନ ଦେବତା
ଅନ୍ୟ ଠାବରେ ପଡିଲେ ନାଶ ନୋହିବ ଦଇତା । ୧୯୪ ।
ହେବଶର ବେଳକେଟି ହୋଇ ପରପତ
ନାଭିକ ଦେଖି ନାରଜଗୋଟି ବାନ୍ଧିବ ବିଶ୍ୱନାଥ । ୧୯୫ ।
ଦୁର୍ଗାମାଧବ ସୁମରି କର ଭୁ ଅନକୂଳ
ବଜଏ ବନାୟକ ରଥର ଧ୍ୱଜର । ୧୯୬ ।

---

୧୯୪ { ଅଥବା ବିଷ୍ଣୁ ପବନ ଅଗ୍ନି ଦେବତା
ଆନଠାରେ ପଡିଲେ ନାଶ ନୋହିବ ଦଇତା ।—ଣ, ଘ

ତ୍ରାସେ ପଳାଇଲେ ଯେ ନର ଗଣ୍ଡାଳ ତ୍ରିପୁର
ପବନଙ୍କ ବେଗେ ଯେ ଗୋଡାବନ୍ତି ଦେବହର । ୧୯୭ ।
ଅନ୍ତରୀକ୍ଷେ ପଳାବଇ ନଗ୍ରଙ୍କୁ ନେଇଣି
ନାଭ୍ର ନ ବଣଇ ନାରାଜ ବାନ୍ଧନ୍ତି ଧୂର୍ଜଟୀ । ୧୯୮ ।
ଛତିଶୀ ସହସ୍ର ବରଷ ଯୁଦ୍ଧ କଲେ ପ୍ରଥମେ
ଛତିଶି ସହସ୍ର ବରଷ ପଳାଇଲେ ମହାଶ୍ରମେ । ୧୯୯ ।
ଯେମନ୍ତେ ଯୁଦ୍ଧ ଷାଠିଏ ସହସ୍ର ସମ୍ବତ୍ସର
ପୂରୋଇ ଶହସ୍ର ଯେ ନ ପେଷନ୍ତି ଦେବହର । ୨୦୦ ।
ନଦାଘର କାଳ ଯେ ବଇଶାଖ ମାସ
ଶୁକ୍ଳପକ୍ଷ ଉତ୍ତମବାର ଦ୍ୱାଦଶୀ ଦିବସ । ୨୦୧ ।
ହସ୍ତାନାମ ନକ୍ଷତ୍ର ଯେ ଭୋଗ ସେ ଦିନର
ବେଳ ହୋଇଅଛି ଅଷ୍ଟାଦଶ ଦଣ୍ଡର । ୨୦୨ ।
ତ୍ରିପୁର ପଳାଇ ନୁଆର ଉତ୍ତଳକ ପୁଟି
ବ୍ରହ୍ମରାଜ ବୋଇଲେ ଦେବ ଶରବନ୍ଧ ହେ ଧୂର୍ଜଟୀ । ୨୦୩ ।।
ମହା ବଇଷ୍ଣବୀ ଅଟେ ମହା ଖ୍ଷବାଣ
ନାମ ଧର ବୋଇଲେ ପଡ ତ୍ରିପୁର ନାଭିରେଣ । ୨୦୪ ।
କୋଟେକୋଟି କଇଣଟି ଯେଉଂଣ ଶରତେଜ
ନାଭିରେ ପଡନ୍ତେ ତ୍ରିପୁର ହୋଇଲା ଦଗ୍ଧ୍ୟ । ୨୦୫ ।
ତ୍ରଇଲୋକ୍ୟେ ଶୁଭିଲାକ ଜୟେ ଜୟେ ବାଣୀ
ତ୍ରିପୁର ଧଂସନ ନାଥ ଜୟ ତୁ ଶୂଳପାଣି । ୨୦୬ ।
ତବ ପଦ୍ମପାଦେ ବନ୍ଦେ ଭଗତ
ଦେବ ଦାନବ ଆଦିକରି ସମସ୍ତେ ତୋଷମନ୍ତ । ୨୦୭ ।
ମେରୁଶିଖେ ସଭାକରି ବସିଲେ ସମସ୍ତ ଦଇବତେ
ତ୍ରିପୁରକୁ ବଧକରି ବଜେ ବିଶ୍ୱନାଥେ । ୨୦୮ ।
ସାନନ୍ଦେ ଆରୋପଣ କଲେ ତାଣ୍ଡବ ଯେ ନୃତ୍ୟ
ଦେଖିଲେ ସାନନ୍ଦେ ଦେବ ଦାନବମାନନ୍ତ । ୨୦୯ ।
ଆପଣେ ପିତାମହ କରେ ବାଇଲେ ମର୍ଦ୍ଦଳ
ଇନ୍ଦ୍ର କଂସାଳ ଧଇଲେ ପବନ ଧଇଲେ କାହାଳ । ୨୧୦ ।।

ନାରଦ୍ଦ ତାଳ ଧରି ଗାଇଲେ ମଧୁର ସଂଗୀତ
କୁବେର ବୀଣା ଯେ ସପ୍ତସ୍ୱର ଜାତ । ୨୧୧ ।
ବସନ୍ତ ବଇଂଶୀ ଯେ ଅନଙ୍ଗ ସରଗୁଣ
ବିନାୟକ ଧଇଲେ ଯେ ପିନାକ ବ୍ରହ୍ମବୀଣ । ୨୧୨ ।
ଓଂକାର ଶବଦ ସୁରସ ସୁସ୍ୱରେ ଆଳାପନ୍ତି
ନୃତ୍ୟ ଆରମ୍ଭଣେ କାଚ୍ଛେଣୀ ପଶୁପତି । ୨୧୩ ।
ସବୁ ଦେବତାଂକ ମନେ ଆନନ୍ଦ ଅପାର
ବୀଣାନାଦ ଶବଦେ ନାଚନ୍ତି ନୃତ୍ୟକାର । ୨୧୪ ।
ଦେବତାଙ୍କେ ଭାସ୍କର ନବାଗ୍ର ଉଦିତ କିରଣ ଜ୍ୟୋତି
ରୁଦ୍ର ଦେବତାର ଶିରେ ମୁକୁଟ ବାନ୍ଧନ୍ତି । ୨୧୫ ।
ନବାଗ୍ର ଉଦୟେ କ କିରଣ କୋଟି କୋଟି
ରୁଦ୍ରଦେବତାଂକ ଫଣୀ ମୁକୁଟଗୋଟି । ୨୧୬ ।
କାମ୍ୟକ ଚଞ୍ଚଳା ମୋହିନୀ ବିଦ୍ୟାଧର ଗୀତ
ଷୋଳସହସ୍ର କଳା ଚନ୍ଦ୍ର ଲଲାଟେ ବିରାଜନ୍ତି । ୨୧୭ ।
ଶଙ୍ଖପଦ୍ମ ମହାପଦ୍ମ ତକ୍ଷକ କର୍କୋଟକ
ବାସୁକୀ କୁଳକ ଅଷ୍ଟକୁଳା ନାଗଲୋକ । ୨୧୮ ।
କର୍ଣ୍ଣାଞ୍ଚଳ ବାହୁଟି ଯେ ଅଷ୍ଟକୁଳା ନାଗେ
ଅନନ୍ତନାଗ ମେଖଳା ଲଗେ କଟିଭାଗେ । ୨୧୯ ।
କାଳ କାମ ରୁନ୍ଧେକ ଛନ୍ଦେକ ବନ୍ଧକ ପଞ୍ଚମୁଦ୍ରା
ଯେକବଂଶ ପ୍ରୋଚ୍ଛନା ତମ୍ବୁର ନାମ ମୁଦ୍ରା । ୨୨୦ ।
ବେନଲକ୍ଷ ପର୍ବତ ଘାଘୁଡ଼ିମାଳ ବେନପାଦେ
ନବଲକ୍ଷ ଡମ୍ବୁରୁ ବାଜଇ ଶୂନ୍ୟମାର୍ଗେ ମହାନାଦେ । ୨୨୧ ।
ନାଚନ୍ତେ ବାଦନ୍ତେ ଯେ ଟଳଟଳିତ ମେରୁ
ଧରଣୀ କମ୍ପଇ ଯେ ଅନନ୍ତ ନାଗ ଫେରୁ । ୨୨୨ ।

---

୨୧୩।୧ ଓଂକାର—ଓଂକାର ।

୨୧୩ { ନାରଦ୍ଦ ତାଳଧରି ଗାଇଲେ ମଧୁର ସଙ୍ଗୀତ
ସରସ୍ୱତୀ ଯାହାଂକର ଚରଣେ ବନ୍ଦିତ ।—ଖ, ଠ }

୨୧୩।୧ ଅନନ୍ତ ପଉଲସ୍ତ କଣ୍ଠ ମାର୍କଣ୍ଡ ଭାସ୍କର ।—ଖ, ଘ

ସଙ୍ଗମ ଅଲେଖ ନିଲେଖ ନନ୍ଦନ ପିଙ୍ଗଳ ପଞ୍ଚୁଜଟା
ମହାତାଣ୍ଡବ ନାଚେ ଯେ ଚଳିତ ଭ୍ରୂକୁଟା । ୨୨୩ ।
ସମ୍ପୂର୍ଣ୍ଣ ମହାବ୍ରହ୍ମ ଗ୍ୟାନରେ ନିଶ୍ଚଳତା
ପିଙ୍ଗଳ ମୁର୍ଦ୍ଧନା ଦିଗବସନ ଅଟେ କନ୍ଥା । ୨୨୪ ।
ତ୍ରିପୁର ବିଦାରଣ ଚରଣେ ନମସ୍ତେ
ଇଦଂଭୂତ ଶମ୍ଭୁଂ ତଳୟେ ମମ ହୃଦଗତେ । ୨୨୫ ।
ସୁରବର ନାଥ ଚରଣ ଶମ୍ଭୁଂ ହୃଦେ
କୁତୂହୋଳ ପୁରୁଷ ନାଥ ସଦାନନ୍ଦେ । ୨୨୬ ।
ବହଇ ସହସ୍ରଧାର ଶିରେ ଧବଳାଙ୍ଗୀ
ଶୁଦ୍ଧ ସ୍ଫଟିକ ବର୍ଣ୍ଣ ଅଟୁ ପରମ ଯୋଗୀ । ୨୨୭ ।
ସେବକ ଜନକଇଂ ଦୋଉତୁ ସୁଖାସନ ଦଣ୍ଡଛତ୍ର
ଆପଣେ ବଇଲ ବାହାନେ ବିଜୟେ ବିଶ୍ୱନାଥ । ୨୨୮ ।
ତ୍ରିପୁର ବିଧଂସି ଦେବତାଂକ ମନରଞ୍ଜି
ଅନେକ ସାନନ୍ଦେ ଯେ ଅମୃତକୁଣ୍ଡ ଭୁଞ୍ଜି । ୨୨୯ ।
ଚଳିଲେ ଦେବତାୟେ ଯେ ଯାହା ଭୁବନ
କପିଳାସେ ବିଜେକଲେ ଦେବ ତ୍ରିଲୋଚନ । ୧୩୦ ।
ତ୍ରିପୁର ବିନାଶନେ ସାନନ୍ଦ ହୋଇଲେ ଦେବୀ
ଅନେକ ଉତସଲ୍ୟ କଲେକ ଦିବଭୁବ । ୨୩୧ ।
ଇତି ଶ୍ରୀ ଶିବପୁରାଣ ବାକ୍ୟ ଯେ ସଂଗତେ
ମୁହିଂ ଯେହ୍ନା ବଖାଣିଲ ସଂସାର ଜନହିତେ । ୨୩୨ ।
ତ୍ରିପୁର ବଧ ଯେ ଶ୍ରବଣେ ଶୁଣନ୍ତି ଯେକମନେ
ପାବନ୍ତି କପିଳାସନ ନ ଭେଟନ୍ତି ଯମଗଣେ । ୨୩୩ ।
ଶ୍ରୀ ବିଶ୍ୱନାଥ ବାଣରଶୀ ପୁର ନିତ୍ୟ
ଜନ୍ମେ ଜନ୍ମେ ଅଭ୍ୟାସଇ ଶରୀର ଅନୁବ୍ରତେ । ୨୩୪ ।
ମୁହିଂ ରୁଦ୍ର ଗଣ ନନ୍ଦୀକେଶ୍ୱର କଳା
ଶୂଦ୍ରମୁନି ସାରଳା ଦାସ ରୁଦ୍ରଗଣ ସଙ୍ଗେ ମେଳା । ୨୩୫

———

। ୧୦୮୩ ।

## ଯୁଧିଷ୍ଠିରଙ୍କର ବିରାଟ ସଭାକୁ ଗମନ

କହନ୍ତି ଅଗସ୍ତି ମୁନି ବ୍ରହ୍ମଙ୍କୁ ଶୁଣ
ଅଷ୍ଟାଦଶ ପର୍ବେ ଯେ ବିରାଟ ପର୍ବ କଥା । ୧ ।
ଧର୍ମର ଆଜ୍ଞାଂ ଯେ ଅଲଂଘିତ ଶିରେ
ଅଜ୍ଞାତ ବନବାସ ପାଣ୍ଡବଙ୍କ ମଚ୍ଛଦେଶରେ । ୨ ।
କୀଚକର ଭାରି ଯେ ସହି ନୁଆରଇ ପୃଥ୍ୱୀ
ତାହାର ବଧ ନିମନ୍ତେ ପାଣ୍ଡବଂକୁ ପ୍ରେରିତେ ଶାସ୍ତି । ୩ ।
ଯୁଧିଷ୍ଠିରଦେବେ ବୋଇଲେ ଭୀମ ଯାଅ ବିରାଟ ସଭାକୁ
ବିରାଟ ଚହ୍ନି ପାରଇ କି ନୁଆରଇ ତୁକୁ । ୪ ।
ଯେବେ ତୋତେ ଚହ୍ନି ନୁଆରେ ବିରାଟର ନାହା
ଯିବା ବିରାଟ ରାଜ୍ୟକୁ ତୁ ଆଗେ ହୋଇ ଯାଆ । ୫ ।
ଭୀମସେନ ବୋଇଲା ଆଗ ଯେବେ ଯିବ
ବିରାଟ ସଭାରେ ମୁଂ କାହା ମୁଖ ଗୃହିଂ ସମ୍ବାଦ କହିବ । ୬ ।
ଜାଣି ବିରାଟ ନ କଲେ ଗଉରବ
ସ୍ୱାମୀ ଆମ୍ଭର କୋପରେ ସେ ନିଚୟେ ନାଶଯିବ । ୭ ।
ତୁମ୍ଭେ ବସିବ ଯାଇଂ ବିରାଟ ଆସ୍ଥାନେ
ସମସ୍ତ ସିଦ୍ଧ ହୋଇବ ତୁମ୍ଭର ଦରଶନେ । ୮ ।
ଭୀମସେନର ବଚନେ ସଜ ହୋଇଲେ ଦେବ କୋନ୍ତେ
ସନ୍ନ୍ୟାସୀ ରୂପ ଧଇଲେ ଗୋପ୍ୟାନେ ନିମନ୍ତେ । ୯ ।
ଲମ୍ବିତ ଜଟା ଯେ ନିବଦ୍ଧ ବସନ
ତାମ୍ରବସ୍ତ୍ର ପରିହରଣ ବିଭୂତି ଶରୀରେ ଲେପନ । ୧୦ ।
ସଉରଭେ ତମ୍ବାପାତ୍ରୀ କରେଣ ବେଦ ଯେ କରାଣ୍ଡି
ଦ୍ୱାଦଶ ତିଳା ଶ୍ରୀବତ୍ସ ଲାଞ୍ଛନ ବାମକରେ କୁଶଦଣ୍ଡ । ୧୧ ।
ଦେବ ସମାର୍ଜନେ କାଖେ ବସ୍ତୁ ପୁରାଣ ଯେ ପୋଥି
ବାମେ କାନ୍ଧେଣ ପଇତା ଉତ୍ତରୀ ପଡଅଛି । ୧୨ ।

ଶ୍ରୀକରେ ପଞ୍ଚମୁଖୀ ରୁଦ୍ରାକ୍ଷ ଊହାଣାବ୍ରତେକ
ଗୃଲନ୍ତେ ଜଗୁଜନ ମୋହୋଇ ତିନଲୋକ । ୧୩ ।
ନବୀକାର ପୁରୁଷ ନାଥ ଧର୍ମରାୟେ ଯେ ସୃଷ୍ଟି
ପବନା ଊଡ଼ସୀ ଯେ ଅଙ୍ଗୁଷ୍ଟିରେ କୁଶଗଣ୍ଠି । ୧୪ ।
ମନୁ ସମ୍ଭାଷଣେ ଯେ ଗୋପ୍ୟାନ ହୋହୋନ୍ତି
ଅଜପା ଗାୟତ୍ରୀ ପବନ ବ୍ରହ୍ମଯୋଗ । ୧୫ ।
ଯେହେନ୍ତେକ ହୋଇଣ ବ୍ରାହ୍ମଣ ଦିବ୍ୟବେଶ
ପଣ୍ଡୁର ନନ୍ଦନ ଯେ ଗମଇ ମଚ୍ଛଦେଶ । ୧୬ ।
ପଣ୍ଡିତ ରୂପଗୋଟି ଧଇଲେ ଧର୍ମବାଳ
ସୁମରନ୍ତ ଦଧିବାହନ ସର୍ବ ଯେ ମଙ୍ଗଳ । ୧୭ ।
ପଶ୍ଚିମ ମୁଚଣ୍ଡ ହୋଇଲେ ବାଞ୍ଛାବଟର ତଳେ
ସୁମରନ୍ତ ବାକ୍ୟଦେବୀ ଶ୍ରୀ ସର୍ବ ସାରୋଲେ । ୧୮ ।
ଧନୁମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ଗୁରୁବାର
ପୁନର୍ବସୁ ନକ୍ଷତ୍ର ଅଟଇ ସେ ଦିନର । ୧୯ ।
ତଇତିଳ ନାମେ କରଣ ଇନ୍ଦ୍ରନାମେ ଯୋଗ
ତାରଚନ୍ଦ୍ର ବେଳେଣ ହେବୁଣୀ ଘରେ ଭୋଗ । ୨୦ ।
ବିଜୟେ ଧର୍ମନନ୍ଦନ ଶୁଭଯୋଗ ଘେନି
ଲଳିତ ପାଦଗତି ଜଳେ ହଂସ ଜିଣି । ୨୧ ।
ଧର୍ମନନ୍ଦନ ଗୃଲନ୍ତେ ପୃଥିବୀ ଶୋହଇ
ମତ୍ତଗଜ ଲୀଳା ତ୍ରଇଲୋକ୍ୟ ଜନ ମୋହଇ । ୨୨ ।
ସ୍ମିତହସିତ ବଦନେ ପକ୍ୱବିମ୍ବ ଅଧର ପରକାଶ
ମଚ୍ଛଦେଶେ ଯାଇ ହୋଇଲେ ପରବେଶ । ୨୩ ।
ନଗ୍ରେ ଗୃଲନ୍ତେଣ ଦେଖନ୍ତି ପୁରଜନେ
ଅମରାଧି ନାଥ କି ବିଜୟେ କଲେ ମଦ୍ଧବାନେ । ୨୪ ।
କେବଣ ଦେଶୀ ଯେ ଆସି ମଧ୍ୟପୁରେ ପଶି
ମନୁଷ୍ୟ ଅବତାର ତ ସରୂପ ନ ଦିଶି । ୨୫ ।

---

୧୫।୨ ଅଜପାସ୍ତ୍ରୀ ଗାୟତ୍ରୀ ପବନ ବନ୍ଧ ଜୋଡ଼ା ।—ଙ୍, ଥ

ସମସ୍ତେ ଆସ୍ତାନେ ବିଜୟେ ମଣ୍ଡପରେ
ବାମଦେବ ପୁରୋହିତ ଯାଚକେଶ୍ୱର ମନ୍ତ୍ରୀ । ୨୬ ।
ବତିଶଲକ୍ଷ ଯୋଦ୍ଧା ତିନଶତ ପାରିଦଣ୍ଡ
ଖଟନ୍ତି ଆସ୍ଥାନ ତଳେ ଯେ ଯାହା ଭୂଅଖଣ୍ଡ । ୨୭ ।
ଲକ୍ଷେକ ପାଟଛତ୍ର ଯେ ବେଦିନଲକ୍ଷ ଉଦଣ୍ଡ
ଗୃହିଲକ୍ଷ ଆଲମ୍ବ ତିନିଲକ୍ଷ ଚାମର ପ୍ରଚଣ୍ଡ । ୨୮ ।
ସାତକ୍ଷଉଣୀ ବଳ ଯେ ଅଛନ୍ତି ପଛୋଆସ୍ତ
ତିନି ଅକ୍ଷୟ ବାଜନ୍ତ୍ର ବାଦ୍ୟନାଦ ପୂରି । ୨୯ ।
ଲକ୍ଷେକ ଶଙ୍ଖ ଯେ ଫରଇ ଆସ୍ଥାନର ତଳେ
ପାଣ୍ଡବ ସୁନ୍ଦର ଯାଇଁ ବିଜୟେ ଧର୍ମବାଳେ । ୩୦ ।
ଦ୍ୱାରେଣ ଉଭା ଯେ ହୋଇଲେ ଯୁଧିଷ୍ଠିର
ଆସ୍ଥାନର ଲୋକେ ଯେ ହୋଇଲେ ଏକଦୃଷ୍ଟି । ୩୧ ।
ଭୟେଣ ଦ୍ୱାର ଯେ ଛାଡିଲେ ଦ୍ୱାରପାଳ
ବିରାଟ ବୋଇଲେ ଏ କେବଣ ଦିଗପାଳ । ୩୨ ।
ଯଶୋବନ୍ତୀପୁର ତେଜ କି ବିଜେକଲେ ବେଦବ୍ରହ୍ମା
ଅଳେକ ବୋଧନ କି ଏ ଗୁଣସାଗର ମହାତମା । ୩୩ ।
ଅଳକାର ନାଥ କି ଏ ଅଟଇ କୁବେର
ଅମରାଧି ନାଥ କି ଏ ବିଜେ ସୁରେଶ୍ୱର । ୩୪ ।
କି ଅବା ଈଶ୍ୱରେ ଏ କପିଳାସବାସୀ
ବାହାନ ଅଭାବେଣ କି ପାଦେ ଗମିଆସି । ୩୫ ।
ବିରାଟର ଅଗ୍ରତେ ଯେ ମନ୍ତ୍ରୀବର ପ୍ରକାଶଇ
ମୂର୍ଛନା ଅଭିଷେକୀ ପ୍ରାୟେକ ଦିଶଇ । ୩୬ ।
ମୂର୍ଛନା ଅଭିଷେକୀହୋଇ ପାଦେଣ ନ ଗଲା
ରାଜ୍ୟଭ୍ରଷ୍ଟ ରାଜାପ୍ରାୟେ ବସ୍ତ୍ରର ମୁଣ୍ଡାଂ କଲା । ୩୭ ।

---

୨୯।୨ ତିନି ଅକ୍ଷୟ ବାଜନ୍ତ୍ର ଶବ୍ଦ ପାହାର ।—କ,ଡ,ପ
୩୭।୨ ହୃତରାଜ୍ୟ ପ୍ରାୟେକ ବସ୍ତ୍ରର ମୁଣ୍ଡାଂ କଲା ।—କ,ପ,ଡ,ଥ

ଆକୁଞ୍ଚିତ କେଶ ଯେ ମକରନ୍ଦ ବର୍ଣ୍ଣ
ଉପାଣିଲ୍ କଣ୍ଠୁ ପ୍ରାପ୍ତେକ ଲଲାଟ ଘଟଣ । ୩୮ ।
, ନୀଳରେଖ ପ୍ରାପ୍ତେ ତଥିର ରୋମାବଳୀ
ହିରଣ୍ୟ ଉପରେ ଯେ ନୀଳାରେଖ ଝଳ । ୩୯ ।
ଖଗବର ଚଞ୍ଚୁ ଜାଣି ନାସା କଟି କଣ୍ଠୁ ମେଖଳା
ଗୁଞ୍ଜଫଳ ଜାଣି ଚଳନ୍ତ୍ର ବେନଡୋଳା । ୪୦ ।
ପଂକୁବିମ୍ବ ପ୍ରାପ୍ତେକ ଦିଶଇ ଅଧର
ଡାଳିମ୍ବ ବୀଜ ଜାଣି ଦଶନ ଶୋଭାକର । ୪୧ ।
ଘଟଣ ଗ୍ରୀବ ପ୍ରାପ୍ତେକ ଶୋହେ ଗଣ୍ଡସ୍ଥଳ
ବିସ୍ତାର ବକ୍ଷସ୍ଥଳ ଉଚ୍ଚର୍ଗ ବୃଷାଳ । ୪୨ ।
କୁଞ୍ଜର ହାଥ ଜାଣି ବେନବାହା ଦିଶି
ଚମ୍ପେକ କଡି ଜାଣି ଅଙ୍ଗୁଳ ବିକାଶି । ୪୩ ।
ଶୁଦ୍ଧ ସଫ୍ଟିକ ଜାଣି ଦିଶଇ ଦଶନହ
କୁଂକୁମ ବର୍ଣ୍ଣ ଜାଣି ସୁବଳିତ ଦେହ । ୪୪ ।
ପୃଥୁଳ ପ୍ରାପ୍ତେକ ବପୁ ଶୋଭା ଦିଶଇ ଯେ କୁକ୍ଷୀ
ଗମ୍ଭୀର ନାଭିକୁନ୍ଦ ଘଟଣ ଜାଣି ଗଛି । ୪୫ ।
ଉଲଟ ରମ କଦଳୀ ଜାଣି ଶୋହଇ ବେନଜାନୁ
ସଙ୍କୀର୍ଣ୍ଣ ମଝା ଯେ ଅଳପ ତଳଇ ତନୁ । ୪୬ ।
ଅପ୍ତେଂଳା ପୁଷ୍ୟ ପ୍ରାପ୍ତେକ ପାଦ ତଳପାର କାନ୍ତ
ଘଟଣ ପୋପ୍ତେଲା ଜାଣି ଅଙ୍ଗୁଷ୍ଠି ଧିରଜନ୍ତ୍ର । ୪୭ ।

---

୪୫।୨ ଗମ୍ଭୀର ନାଭିକୁନ୍ଦ ଘଟଣ ଜାଣି ଗଛି 'ଥ,ଚ,ଦ' ପୋଥିରେ ଅଧିକା ପାଠ :—

ସ୍ଥୂଳ ପ୍ରଳମ୍ବ ବପୁ କଣ୍ଠୁ ପସକୁଛୀ
ଗମ୍ଭୀର ନାଭିକୁନ୍ଦ ଘଟଣ ଜାଣି ଗଛି ।

୪୬।୨ କେଶରୀ ଜିଣି ମଝା ଅଳପ ଚଳଇ ତନୁ ।—ପ,ଙ,ଘ

ତହିଁ ପାଖୁଡ଼ା ପ୍ରାୟେକ ହିଶଇ ଲକ୍ଷରେହ
ମାନବଜନ୍ମ ପ୍ରାୟେକ ନୋହୋଇ ଯେହାଂକର ଦେହ । ୪୮ ।
ଆସ୍ଥାନ ଯାକେ ସମସ୍ତେ ତଣ୍ଟିଂ କଲେ ମହାଭୟେ
ଉପରେ ଉଠିଲେ ଯାଇଂ ତପୋଧନ ପ୍ରାୟେ । ୪୯ ।
ମନ୍ତ୍ରୀ ବୋଇଲେ ଦେବ ଉଠ ଉଠ ହୋ ବିରାଟ
ଆଜ ତୁ ପାଇଅଛୁ ମହାତ୍ମା ପୁରୁଷର ଭେଟ । ୫୦ ।
ଦେବ ବିପ୍ର ତପୋଧନ ଦେଖିଲେ କର ପୂଜା
ମନ୍ତ୍ରୀବର ବଚନେ ଯେ ଉଠିଲା ମଛରାଜା । ୫୧ ।
ତୟେଣ ମହାରାଜା ଜନ୍ମ ଆସ୍ଥାନ ଗୁଡ
ବିରାଟର ଆସ୍ଥାନେ ବସିଲେ ରାୟେ ମାଡ଼ । ୫୨ ।
ଆସ୍ଥାନରେ ବସନ୍ତେ ନିରଞ୍ଜନର ସାଇଛ
ଦେଖିଣ ପ୍ରଲମ୍ବ ଯେ ହୋଇଲେ ରାୟେ ମଛ । ୫୩ ।
ସମସ୍ତେ ପ୍ରଣପତ୍ୟ ହୋଇଲେ ଯୁଧିଷ୍ଠିରଙ୍କ ପାଦତଳେ
ସମସ୍ୟା ନ ଫିଟଇ ବୃହାନ୍ତ ବେନଡ଼ୋଳେ । ୫୪ ।
ସମସ୍ତେ ମଉନବ୍ରତ କାହାର ନ ଫୁରଇ ବାଣୀ ।
ମସ୍ତକେ ହାଥଦେଇ ଭୃତ୍ୟର ଭୃତ୍ୟ ଜାଣି । ୫୫ ।
ମନ୍ତ୍ରୀବର ବୋଇଲା ଦେବ ସମସ୍ୟା କର ରାୟେ
ବିରାଟ ବୋଇଲା ମୋତେ ଲାଗୁଛି ବଡ଼ ଭୟେ । ୫୬ ।
ହୋ ମନ୍ତ୍ରୀ ତୁ ତାହାଂକୁ କହ ଭୁସ୍ତିବାଣୀ
କସ ଉତ୍ତର କହନ୍ତି ତୋହର ବଚନ ଶୁଣି । ୫୭ ।
ମନ୍ତ୍ରୀ ବୋଇଲା ତୁମେ ରାଜ୍ୟର ଅଧିକାରୀ
ସେମାନେ କ ସମସ୍ୟା ଦେଇବ ଆମ୍ଭେ ପାରି । ୫୮ ।
ବେନକର ଯେ ଡ ଗୁମୁରେ କହଇ ବିରାଟ
ଗୋସାଇଂ କେବଣ ଭୁବନର ଠାକୁର ତୁମେ ଅଟ । ୫୯ ।
କେବଣ ଦିଗପାଳ କେବଣ କୁଳଜାୟେ
କେବଣ ରାଷ୍ଟ୍ର କେ ଅଟଇ ପିଯୁର ମାୟେ । ୬୦ ।

ବଦପୂନ୍ତ ଧର୍ମସୁତେ ଶୁଣ ହେ ମଛପତି
ପଚ୍ଛିମ ସଉରାଷ୍ଟ୍ର କୁଞ୍ଜଗଳ ଚନ୍ଦବତୀ । ୬୧ ।
ବଇରାଷ୍ଟ୍ର ଗୋତ୍ର ଧର୍ମଦାସ ପଣ୍ଡାପ୍ରେ ଆମ୍ଭ ପିତା
ଭୋଜର ନନ୍ଦନୀ ମାନହଂସୁଣୀ ଆମ୍ଭର ଯେ ମାତା । ୬୨ ।
ବେଦ ଶାସ୍ତ୍ରେ ନିର୍ଜିତା ସୁବାକ୍ୟ ସୁଧର୍ମ
ଜନରଞ୍ଜନ ଭାବକୁ କୋନ୍ତପଣ୍ଡା ଆମ୍ଭ ନାମ । ୬୩ ।
ହସ୍ତିନା ଠାକୁର ଦେବ ଯେ ଯୁଧିଷ୍ଠି ନୃପତି
କଉରୁକେ ପଶାଖେଳ ଖେଳାଇଲ ମାନଚନ୍ଦବୃତ୍ତି । ୬୪ ।
ପଶାଖେଳେ ପନ୍ଥଂ ହାରିଲେ ରାଜ୍ୟଭାର
ଦ୍ୱାଦଶ ବରଷ ଯେ ସେ ବୁଲିଲେ ବନଘୋର । ୬୫ ।
ଆମ୍ଭେ ସେ ଯୁଧିଷ୍ଠିରଙ୍କର ସଭାପଣ୍ଡା ହୋଇ
ଧର୍ମ ବଚ୍ଚରନ୍ତେ ଆମ୍ଭେ ପ୍ରେତଆତ୍ମା ସେହୁ । ୬୬ ।
ପ୍ରେତଭୂତ ହୋଇ ଆମ୍ଭେ ଯେ ନିରଞ୍ଜନ ଦେବ ଖଟୁଂ
ଯେ ସେ ଯୁଧିଷ୍ଠି ହେ ପ୍ରତକ୍ଷ ଆମ୍ଭେ ଅଟୁଂ । ୬୭ ।
ପ୍ରେହେଷ୍ଟ୍ରୈକ ମହାତ୍ମା ସେ କରନ୍ତି ଆମ୍ଭକୁ ଦୟେ
ମେ ଯୁଧିଷ୍ଠି ଦେବଙ୍କର ଆମ୍ଭର ଅଟଇ ପ୍ରେତକାୟେ । ୬୮ ।
ଆହୋ ବରାଟ ପଞ୍ଚ ବଟୀ ହ ଦେ ପାଣ୍ଡବେ ଚହିଥିଲେ
ତୋହୋର ରାଜ୍ୟକୁ ଯେ ଯୁଧିଷ୍ଠି ପ୍ରେହ୍ମଷଣି ଅଇଲେ । ୬୯ ।
ତାହାଙ୍କର ଅଇଲ ଶବଦେଣ କରି
ଆମ୍ଭେ ଯୁଧିଷ୍ଠିଦେବଙ୍କୁ ଆସିଅଛୁ ଲୋଡ଼ି । ୭୦ ।
ସଧୂ ସାଧ୍ୱ ମହ୍ମମାଂ ସେ ଧର୍ମରାୟେ ସୁତ
ସତ କହ ପାଣ୍ଡବେ ହୋଉଛନ୍ତି ଗୁପତ । ୭୧ ।
ଯଦ୍ୟପି ବଧାତା ଆହୋ ବହ୍ନିଲକ ଶାସ୍ତି
କଦାଚ୍ଚିତେ ମିଥ୍ୟା ନୁଆସଇ ପ୍ରକୃତି । ୭୨ ।

---

୬୧।୨ ପଚ୍ଛିମ ସଉରାଷ୍ଟ୍ରେ କୁନ୍ତଗଳ ଦେଶେ ଆମ୍ଭର ବାଉବୃତ୍ତି ।—
'ଜ,ଡ,ଦ,ଛ'

ବିରାଟ ବୋଇଲେ କୋନ୍ତ ମୋହୋର ଯେତେକ ପୁଣ୍ୟ କାହିଁ
ବଂଶ ମୋହୋର ମୁକତ ହୋଇବନା ଯୁଧିଷ୍ଠିରଙ୍କ
ପାଦପଦ୍ମ ଗୃହିଁ । ୭୩ ।
ରାଜସୂୀ ଯାଗ ସେ କଲେ ଯେବଣ କାଳେ
ତୁମ୍ଭେ ଥିଲଟିକ ମହାତ୍ମା ସେ ସଭାତଳେ । ୭୪ ।
ଆହୋ ବିରାଟ ତୁ ଦେଖି ନୁଆରିଲୁ ଅମ୍ଭର ବର୍ଣ୍ଣଚିହ୍ନ
ଯୁଧିଷ୍ଠିର ଆମ୍ଭର ନାହିଁ ଭିନ୍ନାଭିନ୍ନ । ୭୫ ।
ବିରାଟ ବୋଇଲ ମୁଂ ପାଞ୍ଚ ଉତ୍ତର ଶତେଭାର ସୁବର୍ଣ୍ଣ ଘେନଗଲ
ଷୋଳହଜାର ପରସନ୍ତେ ଦେଖି ନୁଆରିଲ । ୭୬ ।
ସାତଷଉଣୀ ବଳ ଘେନ ଭୁଞ୍ଜୁଥାଇ ଛଅଶାଳେ
କେହି ଜାଣନ୍ତା ନାହିଁ ସେ ସର୍ବ୍ବର ତଳେ । ୭୭ ।
ହେନେକ ଜଣାଇଲ ଭୀମସେନ ଠାକୁରଙ୍କୁ
ଗଣ୍ଡସ୍ଥଳେ ହାଥଦେଇ ସେ ଅନ୍ତରୀକ୍ଷେ ଘେନଗଲେ ମୁକୁ । ୭୮ ।
ଯେତେହେଳେକ ଅନ୍ତରୀକ୍ଷେ ନେଲେ ମୋତେ ବୀର ଭୀମସେନ
ଶରୀରେ ଜୀବନ ରହିଲ ମୁଂ ବ୍ରତିଲ ଧର୍ମେଣ । ୭୯ ।
ଗଲଥା ଦେଇ ମୋତେ ପକାଇଲେ ଭୂମିରେ
ଉଠ ଉଠ ବିରାଟ ବୋଲି ଠାରି ହେଲେକ ସେ କରେ । ୮୦ ।
ବଛ ମୁହ ଗୋଟିଥିଲି ଯୁଧିଷ୍ଠିର ଦେବଙ୍କ ଅଙ୍ଗୁଷ୍ଠି
ବିଜୁଳି ତେଜ ପ୍ରାୟେକ ହଶିଲି ମମ ଦୃଷ୍ଟି । ୮୧ ।
ଆବର ଦେଖିଲି ମୁହିଁ ବାମ ତଳପାରି କାନ୍ତି
ଇଦଂବାକ୍ୟେ ମୋହୋର ଫିଟିଲି ମନଭ୍ରାନ୍ତି । ୮୨ ।
ମୋହୋର ଘୁରି ପାମର ଚର୍ମ ନୟନ ବେନଆଖି
ଯୁଧିଷ୍ଠିରଦେବଙ୍କ ଶ୍ରୀ ଚରଣ କାହିଁ ପାରିବ ଆର ଦେଖି ।୮୩।
ପୂର୍ବଜନ୍ମେ ଯେବେ କରିଥାଆନ୍ତି ତୀର୍ଥକୋଟି
ତେବେ ସିନା ମୋହୋର ରାଜ୍ୟକୁ ଆସନ୍ତେ ଯୁଧିଷ୍ଠିର । ୮୪ ।

---

୭୬।୨ ଷୋଳହଜାର ପରସନ୍ତେ ନୁଆରିଲ ଦେଖି । ଚ,ଥ

ଯେହ୍ନେ ପରମ ଭାଗ୍ୟ କରିବ ମୋହୋର ରାଜ୍ୟ
ଯେହ୍ନେ ମୋହୋର ରାଜ୍ୟେ ପଡ଼ିବ କି ଯୁଧିଷ୍ଠିରଙ୍କ
ପାଦରଜ । ୮୫ ।
ମୋହୋର ରାଜ୍ୟକୁ କହ୍ନେ ଯେବେ ପାରିବ ତାଂକୁ ଆଣି
ଅଷ୍ଟରତ୍ନ ଭଣ୍ଡାର ବଧାଇ ଦେବ ଯେହ୍ନେକ୍ଷଣି । ୮୬ ।
କୋନ୍ତେ ବୋଇଲେ ନ ଭାଳ ରାଜ୍ୟେ ଦେଖାଇବା ତୋତେ
ଆମ୍ଭେ ଯେବେ ଥିଇଲୁ ସେ ଆସିବେ ହନାକେତେ ଅନ୍ତେ । ୮୭ ।
ତୁ ମହା ଧାମିକ ହୋ ଅଟ ବିବେକ ଗୁଣବନ୍ତ
ଅତି ଅପୁଣ୍ୟେତା ଆମ୍ଭେ ଯେ ତୋତେ ହୋଇଲୁ ପରାପତ । ୮୮ ।
ଯତିସତି ଦେବତା ବ୍ରାହ୍ମଣେ ଆରାଧନ୍ତା
ତୁହ୍ମଂ ସେ ପଣ୍ଡିତ ଗ୍ୟାନବନ୍ତ ଶିରୀବନ୍ତ ସୁଭାଗ୍ୟବନ୍ତା । ୮୯ ।
ବନ୍ଧୁମଙ୍ଗଳ ପ୍ରୀତିମଙ୍ଗଳ ଗୁଣମଙ୍ଗଳ ଧୃତିମଙ୍ଗଳ
ବାଗ୍ନମଙ୍ଗଳ ଦୟାମଙ୍ଗଳ ବୁଦ୍ଧିମଙ୍ଗଳ ବାଞ୍ଛାମଙ୍ଗଳ ଭଗତମଙ୍ଗଳ ।୯୦।
ତୁ ସେ ମହାପତି ଅଟୁ ମହାବଳା
ସରୂପ ବଣିଇ ତୋର ପ୍ରତକ୍ଷେ ବିଷ୍ଣୁକଳା । ୯୧ ।
ଶିବ ନିନ୍ଦାକଲେ ହୁଅଇ କୋଷ୍ଠବ୍ୟାଧି
ବିଷ୍ଣୁ ନିନ୍ଦାକଲେ ନର୍କେଣ ସମ୍ପାଦି । ୯୨ ।
ବ୍ରହ୍ମା ନିନ୍ଦାକଲେ ବଂଶ ହୋଯେ ହାନି
ଗୁରୁ ନିନ୍ଦାକଲେ ହୋଅଇ ମୂର୍ଖ, ପଣ୍ଡିତେ ଅବଗ୍ୟାନି । ୯୩ ।
ବ୍ରାହ୍ମଣ ନିନ୍ଦାକଲେ ଆୟୁ ହୋଯେ ହାନି
ଲକ୍ଷ୍ମୀକି ନିନ୍ଦାକଲେ ଦାରିଦ୍ର ହୋଯେ ପ୍ରାଣୀ । ୯୪ ।
ପୃଥୀ ନିନ୍ଦାକଲେ ହୋଯେ ଅନ୍ନଶାସ୍ତି
ପିତାମାତା ନିନ୍ଦାକଲେ ପଡ଼ଇ ଦୁରୁଗତି । ୯୫ ।
ଦେବ ନିନ୍ଦାକଲେ ହନ ନ ଯାଇ ଭଲେ
ଜନ୍ମକାଳ ହୁଅଇ ଶାସ୍ତ୍ର ନିନ୍ଦାକଲେ । ୯୬ ।

---

୮୯।୨ ଯନସତି ଦେବତା ବ୍ରାହ୍ମଣ ଅଭ୍ୟାଗତ, ସୁପଣ୍ଡିତ
ସୁଭାଗ୍ୟ ଗୁଣବନ୍ତ ।—ଘ,ଣ

ଆଦିତ୍ୟ ନିନ୍ଦାକଲେ ଛେଦନ ହୋଇଇ କନ୍ଧ
ଅକ୍ଷର ନିନ୍ଦାକଲେ ହୋଇଇ ଜାତି ଅନ୍ଧ । ୯୭ ।
ତୀର୍ଥ ନିନ୍ଦାକଲେ ଗୃହ୍ଣିକେ ଉତପତ୍ତି
ଜାତି ନିନ୍ଦାକଲେ ଅନେକ ହୋଇନ୍ତି ଶାସ୍ତି । ୯୮ ।
ଜଳ ନିନ୍ଦାକଲେ ହୋଇଇ ଗର୍ଭଭୋଗୀ
ଅଗ୍ନି ନିନ୍ଦାକଲେ ହୁଅଇ ଦୁଃଖଭୋଗୀ । ୯୯ ।
ସୁସ୍ତିରି ନିନ୍ଦାକଲେ ନଶିଲେ ଗୃହବାସ
ବହୁଜନ ନିନ୍ଦନ୍ତେ ଯେ ତୁଟଇ ଆୟୁଷ । ୧୦୦ ।
ମନ୍ତ୍ରୀକି ନିନ୍ଦାକଲେ ନାଶଯାଇ ହେତୁ
ଶବସ୍ତ୍ର ନିନ୍ଦାକଲେ ପଡଇ ଅପମୃତ୍ୟୁ । ୧୦୧ ।
ଭୋଜନ ନିନ୍ଦାକଲେ ଅନ୍ନ ଯେ ନ ମିଳଇ
ଗୃହ ନିନ୍ଦାକଲେ ହୋଇଇ ପଥଚର । ୧୦୨ ।
ଆତ୍ମା ନିନ୍ଦାକଲେ ହୋଇଇ ମହାଦୁଖୀ
ପରସ୍ତିରି ନିନ୍ଦାକଲେ ଜନ୍ମେ ଜନ୍ମେ ଦୁଖୀ । ୧୦୩ ।
ରାଜାସଭା ନିନ୍ଦାକଲେ ହୋଇଇ କ୍ଲେଶଭୋଗୀ
ବାଳୁତ ନିନ୍ଦାକଲେ ହୁଅଇ ବିଯୋଗୀ । ୧୦୪ ।
ରାଜା ନିନ୍ଦାକଲେ ହୋଇଇ ଶିରଛେଦ
ଜପତପ ନିନ୍ଦାକଲେ ହୋଇଇ ପାଦଛେଦ । ୧୦୫ ।
ଗ୍ରହ ନିନ୍ଦାକଲେ ନୋହଇ ସନ୍ତାନ
ଦେବୀ ନିନ୍ଦାକଲେ ଅବଶ୍ୟ ଶିର ହୋଇଇ ଛେଦନ । ୧୦୬ ।
ବୃଦ୍ଧ ନିନ୍ଦାକଲେ ଯେ ହୁଅଇ ଦୀର୍ଘ ରୋଗୀ
ବାତୁଳ ହୁଅଇ ଯେ ନିନ୍ଦିଲେ ପୁଣଯୋଗୀ । ୧୦୭ ।
ସୁଜନ ନିନ୍ଦାକଲେ ହୁଅଇ ଦେଶାନ୍ତରୀ
ବୁଭୁକ୍ଷିତେ ନିନ୍ଦାକଲେ ହୁଅଇ ଭିକାରୀ । ୧୦୮ ।
କୁବେରେ ନିନ୍ଦାକଲେ ନମିଳେ ରତନ
ପ୍ରତଗ୍ୟାଂ ନିନ୍ଦାକଲେ ବପୁ ହୁଅନ୍ତେ କ୍ଷୀଣ । ୧୦୯ ।

---

୧୦୮।୨ ସାଧୁକୁ ନିନ୍ଦାକଲେ ହୁଅଇ ଭିକାରୀ ।—ଛ,କ,ଘ,ଜ

ଗୋରୁ ନନ୍ଦାକଲେ ଶୂକର ହୋଇ ହୋଏ ଜାତ
ଯୋନି ନନ୍ଦାକଲେ ମୁଖେ କରନ୍ତି ରେତ । ୧୧୦ ।
ଭଲ ନନ୍ଦାକଲେ ସୁଖୀ ନୁହନ୍ତି କଦାଶ୍ଚିତେ
ରତ୍ନ ନନ୍ଦାକଲେ ଦୁଖ ପାଇ ଅଭ୍ରମିତେ । ୧୧୧ ।
ଗୁରୁଜନ ବାକ୍ୟ ନନ୍ଦାକଲେ ସୁକୃତ ହୋଏ ହତ
ପୁଣ୍ୟ ନନ୍ଦାକଲେ ଅମୋକ୍ଷ ହୋଏ ପ୍ରେତ । ୧୧୨ ।
ମୂରୁଖ ହୁଅଇ ସୁଜନବାକ୍ୟ ନନ୍ଦାକଲେ
ଶୂଦ୍ରମୁନି ସାରଳାଦାସ ପୁରାଣେ ବୋଇଲେ । ୧୧୩ ।
। ୧୧୯୬ ।

---

୧୧୧ । ସୁବର୍ଣ୍ଣ ନନ୍ଦାକଲେ ଦୁଃଖେ ହୁଅଇ ଅନୁବ୍ରତେ ।—ଛ,ଜ,ଝ

## ଯୁଧିଷ୍ଠିରଙ୍କର ଶାଢ଼ୀ ଗ୍ରହଣ

ଆହୋ ଚଇତନ୍ୟ ବଚନ ସାର୍ଥକ ଯହୁଂ ଶୁଣିଣ ବିରାଟ
ବୋଇଲେ କୋଣ୍ଟେ ତୁମ୍ଭେ ବଡ଼ାଇ ଧାର୍ମିକ ଅଟ । ୧ ।
କୋଣ୍ଟେ ତୁମ୍ଭେ କେବଣ ପୁରୁଷେ ଶକତ। କେବଣ ଗୁଣେ ବଳତା
ଧର୍ମ ବିଷୁରେ ଆମ୍ଭେ ବସୁଂ ଯେ ସର୍ବଥା । ୨ ।
ରାଜାର ସମାନେ ବସି ଆମ୍ଭେ ସନ୍ତୋଷେ ବିଷୁରୁଂ
ରାଜାର ଶରଧା ହୋଇଲେ ପଶାକ୍ରୀଡ଼ା କରୁଂ । ୩ ।
ବିରାଟ ବୋଇଲେ ତୁମ୍ଭେ ଆମ୍ଭ ମନ୍ତ୍ରପଣ୍ଡା
ତୁମର ଅନଗୃହ ହୋଇଲେ କରିବଇଂ ପଶାକ୍ରୀଡ଼ା । ୪ ।
କୋଣ୍ଟେ ବୋଇଲେ ବିରାଟ ତୁ ପଶାପେ ଯାହା ହାର
ତତକ୍ଷଣେ ଦେବୁଟି ଯାହା ପୀଡ଼କର । ୫ ।
ଶୁଣ ହୋ ରାଜନ ପ୍ରତଗ୍ୟାଂ ଯୁଧିଷ୍ଠିଂକର
ଆପଣେ ନ ହାରବେ ବୋଲ ବୋଲନ୍ତ ସଭର । ୬ ।
ସତ୍ୟ ସରୂପ କରି ସେ କହୁଛନ୍ତ ବାଣୀ
ତଦ୍ୟାପି ବିରାଟ ଯେ ନୁଆରଲ ହାଦେ ଜାଣି । ୭ ।
ଯାଚକେଶ୍ୱର ମନ୍ତ୍ରୀ ବୋଇଲେ ଶୁଣ ହୋ ମହାରାଜା
ଠାକୁର ସମାନେ ଲୋକଂକୁ ବହୁତ ନ ବଜା । ୮ ।
ଠାକୁର ସମାନେ ସେ ଅଟନ୍ତ ଆମ୍ଭର
ଯୁଧିଷ୍ଠି ସମାନେ ଆମ୍ଭେ ଆର୍ଥନା କରିବୁଂ ପଥୁର । ୯ ।
ମନ୍ତ୍ରୀବର ବଚନେ ସେ ସାନନ୍ଦ ଦଣ୍ଡଧାରୀ
ଆପଣାର ଶ୍ରୀ ହାଥରେ ବିରାଟ ଘେନଲାକ ଶାଢ଼ୀ । ୧୦ ।

---

୫।୨ ତତକ୍ଷଣେ ଦେବୁଟି ଯାହା ପରଜା କର ।—ଶ,ଦ,କ
୫।୨ ତତକ୍ଷଣେ ଦେବୁଟି ଯାହା ପଦ୍ମଜା କର ।—ପ,ଭ
୮।୨ ବଜା=ବହୁତ କର ତାଙ୍କୁ ଆଘାତ ଦିଅନା ।
୮।୨ ଠାକୁର ଜନଂକୁ ତୁ ବହୁତ ନ ଗଞ୍ଜା ।—ଭ,ପ,

ଯୁଧିଷ୍ଠିରଙ୍କର ରାଜ୍ୟରେ ତୁମ୍ଭେ ଯେମନ୍ତ ହୋଇଥିଲ
ସେହି ମୋହୋର ରାଜ୍ୟେ ତୁମ୍ଭେ ସର୍ବପଣ୍ଡା ହୋଇଲ । ୧୧ ।
ବଳାଟ ଯେ ଯାଚଇ ଶାଢୀ ଘେନ ହାଥେ
ମୋହୋର ରାଜ୍ୟେ ଅଧିକାରୀ ହୋଇଲ ଶାଢୀ ଘେନ କୋତେ ।୧୨।
ଧର୍ମର ନନ୍ଦନ ଯେ ବଳାଟ ଶାଢୀ ଦେଖି
ବୋଇଲେ ଶ୍ରେ ପରମାନନ୍ଦ ପୁରୁଷ ତୁ ସେଥକୁ ହୋଅ ସାକ୍ଷୀ ।୧୩।
ମୁହିଂ ଯେବେ ଶାଢୀ ଘେନିବି ତଳହାଥେ
କୋପ କରିବ ଶାଢୀ ନ ବାନ୍ଧିଲେ ମାଥେ । ୧୪ ।
ଅଥବା କୋପ ଯେବେ ମୋତେ କରିବ ବଳାଟ
ବଳାର ଜାଣିମ ତୁମ୍ଭେ ଯୁଧିଷ୍ଠିରଦେବ ନଟେ ଅଟ । ୧୫ ।
ମୁଂ ସେହିହାର ଶାଢୀ ତଳ ହାଥରେ ଘେନଲେ
ଭୃତ୍ୟପଣ ହୋଇବନା ଶାଢୀ ମଥାରେ ବାନ୍ଧିଲେ । ୧୬ ।
ଶାଢୀ ମଥାରେ ନ ବାନ୍ଧିଲେ ହୋଇବ ଜାଣନ୍ତା
ପ୍ରସନ୍ନେ ନାରାୟଣ ମୋତେ ସେ କଷଣ୍ଟ ପାର ଯେ କରନ୍ତା ।୧୭।
ଦୁସହ କଷଣ ଯହୁଂ କୋତେ କଲେ ଚିନ୍ତା
ନାରାୟଣ ବଳେକଲେ ବଳାଟ ହୃଦଗନ୍ତା । ୧୮ ।
ଧାଡିକାରେ ବଳାଟ ଯେ ହାଥ କାଟିଆଣି
କୋତେ ମୁଂ ତୁମ୍ଭଙ୍କୁ ଶାଢୀ ଯାଚିଲ ନ ଜାଣି । ୧୯ ।
ଯୁଧିଷ୍ଠିରଦେବ ସମାନେ ଯାହାକୁ କରିବ ପୂଜାସେବା
ଉପର ହାଥେ ଶାଢୀ କେମନ୍ତେ ଦେବ ଅବା । ୨୦ ।
ଠାକୁରଙ୍କ ଅଧିକାର ଯାହାର ମସ୍ତଦେଶେ
ତୁମ୍ଭର ଶାଢୀ ଦେବା ମୋତେ ବହୁତ ଯେ ଆସେ । ୨୧ ।
ମୁହିଂ ଗୁର ଯୁଧିଷ୍ଠିରଙ୍କ ଦେଖିବ ଆର କାହିଂ
ଯୁଧିଷ୍ଠିରଙ୍କ ସମାନେ ତୁମ୍ଭେ ଅଟ ହୋ ଗୋସାଇଂ । ୨୨ ।
ଗ୍ରୁମୁରେ ବଳାଟ ଥୋଇଲାକ ନେଇଂ ଶାଢୀ
ଆଜହୁଂ ଗୋସାଇଂ ତୁମ୍ଭେ ଆସ୍ତାନେ ଅଧିକାରୀ । ୨୩ ।
ନାରାୟଣ ସୁମରି କୋତେ ଆଭରଣ କଲେ ବସନ
ଶ୍ରୀହସ୍ତେ ନେଇ ଆପଣେ ଥୋଇଲେ ସନ୍ନିଧାନ । ୨୪ ।

ଜମ୍ବୁରୁ ନୀଳପୂର୍ଣ କେଶବ ମୂରତି
ଯୋଗୀଜନ ହୃଦମ୍ବ ନାଥ ତୁହି ସେ ଆଧାରତି । ୨୫ ।
ଶ୍ରୀମାତ ପ୍ରସନ୍ନେ ଶ୍ରୀ ପୁରୁଷୋତ୍ତମ ଚରଣେ
ଶୂଦ୍ରମୁନି ସାରଳା ଦାସ ଜଗତ ବସ୍ତୁ ପୁରାଣେ । ୨୬ ।
ବଦମ୍ବନ୍ତ ଅଗସ୍ତି ଶୁଣ ଯେ ମହୀଧର
ଅପୂର୍ବକଥା ଶୁଣ ହାଦେ ଯୁଧିଷ୍ଠିର ଦେବଙ୍କର । ୨୭ ।
ସଭାପଣ୍ଡାପଣେ ସେ ପଶାକ୍ରୀଡା ରସେ
ବସିଲେ ଧର୍ମନନ୍ଦନ ମଛାଧିପ ର ପାଶେ । ୨୮ ।
ଅନେକ ସାନନ୍ଦ ସେ ବାନମ୍ବ ଭଗତମାନେ
ପୂଜା ପାଇ ବସିଲେ ସେ ବିରାଟ ଆସ୍ଥାନେ । ୨୯ ।
କୋନ୍ତେ ବୋଇଲେ ଶୁଣିମା ମଛ ଦଣ୍ଡଧାରୀ
ଚତକ୍ଷଣେ ଦେଇଟି ପଶାପେ ଯାହା ହାର । ୩୦ ।
ବିରାଟ ବୋଇଲେ ମ୍ଭେ ଅଟଇ ଯୁଗତ
ମୋହୋର ଦେବାର ଅଟଇ ହାଦେ ତଥ୍ୟ । ୩୧ ।
ଶ୍ରୀ ବାସୁଦେବ ବାକ୍ୟ ଦେବାର ପ୍ରସାଦେ
ବିଜମ୍ବେ ଧର୍ମନନ୍ଦନ ପଶାର ବିନୋଦେ । ୩୨ ।
ଶ୍ରୀକରେ ଖଡ଼ ଘେନଣ ଧର୍ମରାଜ ଯେ ଯୁଧିଷ୍ଠିର
ଦକ୍ଷିଣକଇ ଶିରକର କାଟିଲେକ ପଶାକୋଷ୍ଠି । ୩୩ ।
ବେନି ଅକ୍ଷରେ ଯେ ଭେଦିଲେ ନାମଗୋଟି
ନିଯୁକ୍ତ କରଣ ଯେ ଦ୍ୱାଦଶ କୋଠି କାଟି । ୩୪ ।
ଯେତେକ ଘାନ୍ତକେ ଯେ ପଶ କୋଠା କାଟନ୍ତି
ଅଶ୍ୱମେଧ ଯଜ୍ଞର ଫଳ କପିଳା ଦାନ ଫଳ ଶ୍ରୁତି । ୩୫ ।
ଦେଖିଣ ସାନନ୍ଦ ଯେ ହୋଇଲେ ରାଜେ ମନ୍ତ୍ରେ
ବିରାଟ ନୃପତି କୋନ୍ତ ପଣ୍ଡାମ୍ବେ ବସିଲେ ପ୍ରତିକଛେ । ୩୬ ।
ଯେତେକ ଆସ୍ଥାନେ ବିଜମ୍ବେ କଲେ ରାଜେ ବେନି
ଅମର ତେଜ କ ବିଜମ୍ବେ ସମ୍ଭ ଯୋନି । ୩୭ । । ୧୨୩୩ ।

———

୩୩।୨ ଶ୍ରୀକରେ ଖଡ଼ ଘେନଣ ଭୀମସେନର ଜ୍ୟେଷ୍ଠ ।—ଚ,ଛ,ଜ,ଦ

## ଭୀମଙ୍କର ବିରାଟ ସଭାରେ ପ୍ରବେଶ

ଆହୋ ଚଇତନ ଯେମନ୍ତ ସମୟେ ଯେ ପାଞ୍ଚଧଡ ହନକର
ବିରାଟ ଭୁବନକୁ ଆସଇ ବୃକୋଦର । ୧ ।
ଖାଂକର କେଶ ଊର୍ଦ୍ଧ୍ୱ ଲମ୍ବିତ ଜୁଡାଗୋଟି
ଶ୍ରୀବତ୍ସ ଲାଞ୍ଛନ ହୃଦେ ଶରୀରେ ଛଟା ଦ୍ୱାଦଶ ଫୁଟି । ୨ ।
ବାମକକ୍ଷେ ଯଗ୍ୟଂ ପବନ୍ତ ଉତ୍ତରୀ ବେଦ ଯେ କରନ୍ତି
ହି କଚ୍ଛ ବସନ ଯେ ଅଙ୍ଗାରେ କୁଶବନ୍ତ । ୩ ।
ଶବ୍ଦମସିଂଘ ଯେହ୍ନେ ସୁସଞ୍ଚ ସବଦେହା
ହିରଣ୍ୟ ପର୍ବତେ ଯେହ୍ନେ ଜଳଧର ମେହା । ୪ ।
କନ୍ଧେଣ ଉପୁରାଣ ବସ୍ତ୍ରଗୋଟି କଳା
ଗରବର ଗମଇ କ ତେଜେଣ ଅନର୍ଗଳା । ୫ ।
ବଜେକର୍ଣ୍ଣିକଟାକ୍ଷ କରେଣ ରାନ୍ଧଣା ଯୋଗାଡଧାରୀ
ଗଜକଇଂ ଆକର୍ଷଣ ଯେହ୍ନେ ବନମ କେଶରୀ । ୬ ।
ମହା ସନ୍ତବେଣ ଆସ୍ଥାନେ ଯେ ବଜପ୍ୟେ ବିରାଟ
ଭୀମସେନ ପ୍ରବେଶ ହୋଇଲେ ନିକଟ । ୭ ।
ଦେଖିଣ ଚକିତ ଯେ ବିରାଟ ସଭାଜନେ
ଦେଶାଉରେ ବାରତା ଜଣାଇଲେ ବିରାଟ ଆସ୍ଥାନେ । ୮ ।
ଅବଧାନ ମହାରାଯେଂ କେବଣ ହିଗପାଳେ
ଆକାଶ ତେଜଣ କ ବଜପ୍ୟେ ଯେ ମଞ୍ଚ ମଣ୍ଡଳେ । ୯ ।
ଆସ୍ଥାନେ ଥାଇଣ ବିରାଟ ଗୃହିଂଲ ଲେଉଟି
ମହାତେଜ ଦେଖି ସର୍ବେ ବୁଜିଲେ ବେନି ଚକ୍ଷୁଗୋଟି । ୧୦ ।

---

୪।୨ ମେହା — ମେଘ
୯।୨ ଆକାଶୁ ଉତପତ ଯେ ମଞ୍ଚ ମଣ୍ଡଳେ ।—ଝ,ଘ
୧୦।୨ ମହାତେଜ ଦେଖି ସର୍ବେ ବୁଜିଲେ ବେନିଦୃଷ୍ଟି ।—ଛ,ଣ,ଠ

କି ଅବା ଅନଳ ଦେବତା ଆଇଲେ ବ୍ରାହ୍ମଣ ସ୍ୱରୂପେ
ମମ ଧର୍ମ୍ମ ବନ୍ତେ ସ୍ୱରୂପ ହୋଇ ଗୋପ୍ୟ । ୧୧ ।
ବିରାଟ ବୋଇଲା ହୋ ଦେଖ ଦେଖ କୋନ୍ତଭଟେ
ଯେସନକ ରୂପ ପୁରୁଷ ଦେଖିଛ କି ଯେ ମଧ୍ୟଜଗତେ । ୧୨ ।
ଦେଖିଣ ସଇନ ଯେ ହୋଇଲେ ବେନଭାଗ
ପାଣ୍ଡବ ସୋହୋଡ଼ ଯାଇଁ ଆସ୍ଥାନେ ବିଜେ ବେଗ । ୧୩ ।
ଦୂର ଦୂର ହୋଇଣ ଅମନାତ୍ୟ ଗଣେ ଗଲେ ଘୁଞ୍ଚି
ସାସେଣ ଧମାସ୍ୟା ଯେ ନ ହଅନ୍ତି କେହ୍ନି କଛୁ । ୧୪ ।
ଯୁଧିଷ୍ଠିଦେବ କଞ୍ଚୁତ ଅବଲୋକନ ଆଗି
ଭୀମସେନ ପ୍ରଣପତ୍ୟ କୋନ୍ତଂକ ମୁଖ ଦେଖି । ୧୫ ।
ମାରୁତି ପ୍ରଣପତ୍ୟ ବିରାଟର ଆସ୍ଥାନର ତଳେ
ଯୁଧିଷ୍ଠିଦେବେ ତାହା ଦେଖିଲେ ବେନଡୋଳେ । ୧୬ ।
ଅନେକ କ୍ରୋଧ ଭୟେ ଭୀମସେନର ପ୍ରଳମ୍ବ ଦେଖି
ଜ୍ୱଳତ କମ୍ବା ନ ଗଲରେ ଯେ ମୋହୋର ବେନଆଖି । ୧୭ ।
ଛତ୍ରୀବର ସୋହୋଡ଼ରେ ସାଂଗ୍ରାମେ ଜଗୃଜିତା
ଯାହାର ଭୟେ ନାଶଗଲେ ବକ ହିଡମ୍ବକ କୁମ୍ଭୀର
କଲଣ ଯେ ଗୃରଦାଇତା । ୧୮ ।
ବାବୁ ଲକ୍ଷେକ ନୃପତି ଯାହାର ଚରଣେ ବନ୍ଦେ
ଈଶ୍ୱରେ କପିଳାସ ଭୋଗ ଯାହାର ପରସାଦେ । ୧୯ ।
ବାବୁରେ ଦ୍ୱାରକା ରକ୍ଷାପାଳକ କଉରବ ଦର୍ପଗଞ୍ଜା
ବିଷଳଜ୍ଞ ପାର କରନ୍ତା ନାଗୁଣୀଂକ ମନରଞ୍ଜା । ୨୦ ।
କାହ୍ନୁ ଫର୍ନିଷେଣ ଯାହାର ପ୍ରାଣବନ୍ଧୁ
ଯେ ଭୁବ ଭୁବନ ମଧ୍ୟେ ମହିମାଂ ତୋର ସାଧୁ । ୨୧ ।
ବାବୁ କେଉଂଣ ପୁଣ୍ୟ ମହାବିଜା କରିଥିଲୁ ପୂର୍ବେ
ତାହାର ଆସ୍ଥାନ ତଳେ ମିଳିଲୁ ଆସିଯେବେ । ୨୨ ।

---

୨୦।୨ ବିଷଲଜ୍ଞ ପାର କରନ୍ତା ନାଗୁଣୀ ଦର୍ପଭଞ୍ଜା ।—ଠ,ଝ,ଜ,ଝ,ଘ
୨୧।୨ ଯେ ତ୍ରିଭୁବନ ମଧ୍ୟେ ମହିମାଂ ତୋର ସାଧୁ ।—ଠ,ଝ,ଝ,ଡ

ଯେନ୍ତେ ମୋହୋର ଶରୀର ହୋଅଇ ଜନା ଦହନ
ଯେନ୍ତେ ତୋହୋର କଷ୍ଟ ବାବୁରେ ଦେଖିଲଇଂ ମୁହିଂ ନଲଜ୍ଜ । ୨୩ ।
ହାଥର ସୁଖରେ ବାବୁ ମୁଂ ଯେ ଖେଳିଲଇ ଘଣା
ପଞ୍ଚ କଣ୍ଟକ ହାର ଯେବେ ଭ୍ରାତୃପଣକୁ କଲି ଆଶା । ୨୪ ।
ସଇନ୍ଲେକ୍ୟ ଜିଣିତେ ସାମରଥ ମୋର ଭାଇ
କାହ୍ନଂର ନିମନ୍ତେ ବାବୁରେ ଯେତେ କଷ୍ଟ ପାଇ । ୨୫ ।
ବଚନେ ତରିକ୍ତ ହୋଇ ମୁଂ କାର୍ଯ୍ୟନାଶ କଲି
କଉରବେନ୍ଦ୍ର ମାର ବୋଲି କିଂପେ ନ ବୋଇଲି । ୨୬ ।
ଦ୍ରୋପଦୀ କେଶ ଆକର୍ଷଣ କରିବାର ବେଳେ
ମୋତେ ଆଗ୍ୟାଂ ମାଗିଲୁ ତୁ ଭାଇ ଦୁସହ କଟାଳେ । ୨୭ ।
କଣ୍ଟିତ କରି ଯେତେ ଅଗ୍ୟାଂ ମୁହିଂ ଦ୍ୟନ୍ତି
ଭୀଷ୍ମ ଦ୍ରୋଣ ଆଦିକରି ମାରନ୍ତୁ ସବୁନ୍ତି । ୨୮ ।
ଫୁଟି କହି ନଆରନ୍ତି ହୃଦୟ ବିକଳେ
ବୃକୋଦର ପ୍ରଣିପତ୍ୟ ଆସ୍ଥାନର ତଳେ । ୨୯ ।
ବଶିଷ୍ଠ ବୋଇଲେ ଆହୋ ଶୁଣ ଦ୍ଵିଜବର
ଉଠିଣ କହ କେବଣ ଆଧାନ ତୋହୋର । ୩୦ ।
ବଶିଷ୍ଠ ବଚନେଣ ଭୀମସେନ ନ ଉଠି
ମନେ ବିଚାରନ୍ତି ଯେ ଧର୍ମଭାଇ ଯୁଧିଷ୍ଠି । ୩୧ ।
ଆମ୍ଭର ତହିଂ ମେ ଯେ ଆଗ୍ୟାଂ ନ ପାଇଲେ
କିଂପେ ଉଠିବ ଯେତେହୁ ବଶିଷ୍ଠର ବୋଲେ । ୩୨ ।
କୋନ୍ତେ ବୋଇଲେ ଉଠ ଉଠ ହୋ ଦ୍ଵିଜବର
ଠାକୁରଂକର ଆଗ୍ୟାଂ ହୋଇଲା କାର୍ଯ୍ୟ କହସି ତୋହୋର । ୩୩ ।
ବଶିଷ୍ଠର ବଚନରେ ଭୀମ ପ୍ରଣିପତ୍ୟେ ଥିଲା
କୋନ୍ତଂକର ବଚନ ଶୁଣି ଧାଡିକାରେ ଉଠିଲା । ୩୪ ।
ବଶିଷ୍ଠର କଡିକି ଅଂଗସାର ଦେଇ
ମସ୍ତକେ ହାଥେ ଦେଲା କୋନ୍ତଂକର ମୁଖ ଚାହିଂ । ୩୫ ।
ବଶିଷ୍ଠ ବୋଇଲେ ତୁ ଶୁଣିମା ବ୍ରାହ୍ମଣ
ଆଜ ଶାସନ ତୋହୋର କେବଣ ଗ୍ରାମ୍ୟେଣ । ୩୬ ।

କେବଣ ବେଦବିଦ୍ୟା କେବଣ କୁଳଶୀଳ
ମୁହିଂ ତୋତେ ମଣେଇ ପ୍ରତକ୍ଷେ ଦିଗପାଳ । ୩୭ ।
ଅନେକ ବଚୋପ୍ତ ତୁ ମୋତେ କଥା କହୁ
ମୁହିଂ ତୋତେ ବିଚାରଇ ତୁ ମାନବଜନ୍ମ ନୋହୁ । ୩୮ ।
କୋନ୍ତେ ବୋଇଲେ ତୁ ଶୁଣ ହୋ ଦ୍ୱିଜବର
ତୋହୋର କଥାମାନ କହସି ଠାକୁରେଂକ ଛାମୁର । ୩୯ ।
ଶୁଣ ହୋ ମଛପତି ବଦଯୁନ୍ତ ବଲ୍ଲଭ
ପଚ୍ଛିମ ସଉରାଷ୍ଟ୍ର ଜାଣୁଳ ମଚ୍ଛଦେବ । ୪୦ ।
ଗଙ୍ଗା ଯମୁନା ଯେ ବେନି ନଦୀଂକର ମଧ୍ୟେ
କୁଞ୍ଜଗଳ ଦେଶ ବୋଲି କ୍ଷେତ୍ର ଅଛଇ ସାଧ୍ୟେ । ୪୧ ।
ଇନ୍ଦ୍ରପ୍ରଶସ୍ତ ଯମପ୍ରଶସ୍ତ ଜଇନ୍ତା ହସ୍ତିନା ବାରୁଣା
ସେ ରାଜ୍ୟରେ ଯୁଧିଷ୍ଠିଦେବଂକ ସାନୁଜ ପାଣ୍ଡବ ଭୀମସେନା ।୪୨।
ତିନିଷାଠି ପଉଟି ଅନ୍ନ ଭୁଞ୍ଜିଲେ ଅତି ଗୃତ
ମୁହିଂ ତାଂକର ଅଛଇ ବଲ୍ଲବ ବଶ୍ୟାବୃତ୍ତି । ୪୩ ।
ବିରାଟ ପୁଚ୍ଛାକଲ ବଲ୍ଲବବୃତ୍ତିଟି କେମନ୍ତ
କୋନ୍ତେ ବୋଇଲେ ହୋ ବିରାଟ ଶୁଣ ସୂପକାରବୃତ୍ତ । ୪୪ ।
ଶୁଣ ହୋ ମଚ୍ଛାଧିପତି ବଦଯୁନ୍ତ ବୀର ଭୀମ
ରନ୍ଧଣା ବିଧାନ ଜାଣଇ ସୂପକାର ବଲ୍ଲବ ମୋର ନାମ । ୪୫ ।
କାର୍ଯ୍ୟ ପଡଲେ ମୁଂ ମାଲଯୁଦ୍ଧ ଜାଣଇ
ସରୂପ କଥା ମୁହିଂ କହଇ ତୁମ୍ଭକଇଂ । ୪୬ ।
ହାତର ସୁଖେ ଯୁଧିଷ୍ଠି ପଶା ଯେ ଖେଳଲେ
ରାଜ୍ୟଭାର ସିଂହାସନ ହାରଣ ସେ ବନବାସ କଲେ । ୪୭ ।

---

୩୯।୨ ତୋହୋର କଥାମାନ କହସି ରାଜାଂକ ଛାମୁର ।—ତ,ଥ,ଝ
୪୧।୨ କୁଞ୍ଜଗଳ ଦେଶ ବୋଲି କ୍ଷେତ୍ର ବୋଲି ହାଦେ ।—ଗ,ଣ
୪୩।୨ ମୁହିଂ ତାଂକର ଅଛଇ ବଲ୍ଲଭ ପଣ୍ଡାବୃତ୍ତି ।—ଛ,ଜ,ନ

ଯୁଧେଷ୍ଠି ଠାକୁରେ ତୋହୋର ରାଜ୍ୟକୁ ଅଇଲେ ବୋଲି
ବାରତା ପାଇ ମୁଂ ଶବଦକୁ ଗୋଡ଼ାଇ ଅଇଲି । ୪୮ ।
ବିରାଟ ବୋଇଲା ହୋ ବାତୁଲ ହୋଇଲୁ ଦ୍ୱିଜବର
ଯୁଧେଷ୍ଠି ଦେବ ନାମ ଧରିଲୁ ତୁ ଯେ ତ୍ରଇଲୋକ୍ୟ ଈଶ୍ୱର । ୪୯ ।
ପାଞ୍ଚ ଉଭର ଶତେ ରଥ ମୁଂ ସୁବର୍ଣ୍ଣ ଘେନଗଲି
ଷୋଳହ ଦିନ ପରିଯନ୍ତେ ଦ୍ରଶନ ନ ପାଇଲି । ୫୦ ।
ଧାଇ ତାଂକର ବୃକୋଦର ମୋ କନ୍ଧରେ ହାଥ ଦେଇ
ଯେ ସ୍ୱାମୀ ଚରଣତଳେ ପକାଇଲେ ନେଇ । ୫୧ ।
ଅଶ୍ୱମେଧ ଯାଗ କରିଥିଲେ ପୂର୍ବେ
ଯୁଧେଷ୍ଠି ଦେବଂକ ଶ୍ରୀଚରଣ ଦେଖିବଇଂ ଯେବେ । ୫୨ ।
ବିରାଟ ବୋଇଲେ କୋନ୍ତ ମୁଂ ପଚୁରଇ ତୁମ୍ଭଂକୁ
ତୁମ୍ଭେ ଚହ୍ନିକି ଯେ ବଲ୍ଲବ ସୂପକାରକୁ । ୫୩ ।
କୋନ୍ତେ ବୋଇଲେ ତୁମ୍ଭେ ଶୁଣ ରାୟେ ମଞ୍ଚେ
ଯେ ସେ ବଲ୍ଲବ ସେ ଭୀମସେନ ପ୍ରତଛେ । ୫୪ ।
ଯେହେର୍ତ୍ତୁକ କରି ଯେହାକୁ ସଦୟେ କରଇ ଯେ ଭୀମା
ଯେ ଦ୍ୱିଜ ଅଟଇ ହୋ ଭୀମସେନର ପଞ୍ଚ ଆତମା । ୫୫ ।
ବିରାଟ ବୋଇଲା ଯେ ଯେବେ ଭୀମସେନ ଠାକୁରଂକର ସୂପକାର
ମୋହୋବେଳେ ଆଦ୍ୟୋଳିକ ମୃତ୍ୟୁଂ ପାରିବ କି ଯେହାର । ୫୬ ।
ରୁହ ବୋଲି ବୋଇଲେ ଭଗତ ହୋଇ ପାରିବକ ତୋତେ
ଯାଅ ବୋଲି ବୋଇଲେ କୋପ କରିବାକ ମୋତେ । ୫୭ ।
କୋନ୍ତେ ବୋଇଲେ ରାଜା ତୁ ଭୟ ନ କର କିଛି
ସରୂପ ବୁଝିବା ହୋ ଥାଉ ଅନ୍ନ ବାଚ । ୫୮ ।

---

୫୦।୧ ପାଞ୍ଚ ଉଭର ଶତେଖର ମୁଂ ସୁବର୍ଣ୍ଣ ଘେନଗଲି ।—ଚ,କ,ଠ
୫୪।୨ ପ୍ରତଛ—ପ୍ରତ୍ୟକ୍ଷ
୫୭।୧ ରୁହ ବୋଲି ବୋଇଲେ ଭଗଧ ହୋଇ ନୁଆରିବ ତୋତେ ।—କ, ଟ, ଦ, ଟ
୫୮।୨ ପକ୍ଷାଖ ବୁଝିବା ହୋ ଥାଉ ଅନ୍ନ ପାଚ । – ଘ, ଙ
୫୮।୨ ସରୂପ ବୁଝିବା ହୋ ଥାଉ ଅନ୍ନ ସଞ୍ଚ ।—ଖ, ଚ

ବଲ୍ଲବ ବୋଇଲା ଶୁଣହୋ ଶୁଣସି ମଚ୍ଛାଧିପ
ଯେତେକେଣେ ସୂପକାରଙ୍କେ ରନ୍ଧଣା ମୁଂ ସମସ୍ତ କରିବି ସିଦ୍ଧି । ୫୯।
ସାତ ଷଉଣୀ ବଳ ଯେତେ ଭୁଞ୍ଜି ବସିବୁ ତୋହର କୁଳେ
ଛତିରଶ ଯୋଗାଡ଼ କରି ତୃପ୍ତି କରି ପାରଇ ମୋହୋର
ବୋଲେ । ୬୦ ।
ଏସନେକ କଥା ଯହୁଂ କହିଲାକ ଦ୍ଵିଜେ
ଶୁଣିଣ ସମସ୍ତ ସଭା ଯେ ହୋଇଲେ ଆଶ୍ଚର୍ଯେ । ୬୧ ।
ଲକ୍ଷେକ ସୂପକାର ରନ୍ଧଣା ତୋହୋର ଯେ ପୁରେ
ଯୋଦ୍ଧା ଅମାତ୍ୟମାନେ ବସନ୍ତି ମୋହୋର ସଙ୍ଗତରେ । ୬୨ ।
ଏତେ ସଇନଂକ ଅନ୍ନ କେ ପାରିବ ଅଣ୍ଟୋଇ
ଦୁସହ ପ୍ରତିଜ୍ଞା ଦ୍ଵିଜ ହାଦେ କହିଲୁ ଯେ ତୁହି । ୬୩ ।
ଭୀମସେନ ବୋଇଲା ଶୁଣସି ରାଯେ ମଚ୍ଛ
ସରୂପ ନୃପତି ତୁ ଦେଖ ହୋ ପ୍ରତକ୍ଷ । ୬୪ ।
ପୁରୁଂ ବାହାର କର ତୋ ଲକ୍ଷେ ସୂପକାରଂକୁ
ତାହାଂକର ପଦମାନ ଦେବୁସି ରାଯେମୁକୁ । ୬୫ ।
ସୁବର୍ଣ୍ଣର କୁଣ୍ଡହିଂ ମାନ ଥିବ ବୋଷଇ ଘର ପାଶେ
ତହିଂ ଭିତରେ ଢାଳିବଇଂ ଭାତରସେ । ୬୬ ।
ଆବର ମହିମାଂ ଏକ ଶୁଣସି ମୋହୋର
ରାଜ୍ୟଯାକ ଯଙ୍ଗେ ଯେତେ ଭୁଞ୍ଜିବୁ ତୋହୋର । ୬୭ ।
ଆହୁର କଥାଏ ମୋର ଶୁଣସି ହୋ ନୃପବର
କଛୁ କଛୁ ଜାଣଇ ମୁଂ ମାଲ ଯେ ବନ୍ଧାଣ । ୬୮ ।
ଶୁଣିଣ ସାନନ୍ଦ ଯେ ମତ୍ସ୍ୟ ଅଧିକାରୀ
ଶ୍ରୀକରେ ବିରାଟ ଯେ ଯେନଲା ଆପଣେ ଶାଢ଼ୀ । ୬୯ ।
ଯେନ ହୋ ବସ୍ତ୍ର ବୋଲି ରଜା ଯାଚଇ ଆସ୍ଥାନେ
ତାହା ଦେଖି ଶରୀର କମ୍ପଇ ଭୀମସେନେ । ୭୦ ।
ଭୀମସେନର ମନ ଯେ ଜାଣିଲେ ଯୁଧିଷ୍ଠିରି
ହୃଦଗତେ ଚିନ୍ତିଲେ ଯେ କେଶବ ନାମଗୋଟି । ୭୧ ।
ବିରାଟର ଶାଢ଼ୀ ଏତ ନ ଯେନମ ତଳହାଥେ
ପ୍ରଣମ୍ୟ ନୋହିବ ଏ ନ ବାନ୍ଧିବ ଶାଢ଼ୀ ମାଥେ । ୭୨ ।

ଭାରେଣ ଶରୀର ଯେ କମ୍ପଇ ମାରୁତ
ନପୂର୍ଣ ବିରାଟକୁ ଗୃପୋଡେ ମାରଇ ଧାତ ।୭୩।
ମୁଂ ଯେହ୍ନାର ରାଜ୍ୟକୁ ଅଇଲା ଦୁର୍ଗତ ବଞ୍ଚିବ ବୋଲି
ଅନ୍ୟେ ବିରାଟକୁ ମୁଂ ସପୋଡେ ନାଶକଲି । ୭୪ ।
ଦୁସହ କଷଣୁଂ ହର ମୋତେ କରିବାକ ପାର
ବିଗୃତଣ ହାଥ ଯେ କାଟିଲ୍ଲ ମହେଶ୍ୱର ।୭୫ ।
ସେ ଶଠୀ ଥୋଇଲ୍ଲ ନେଇ କୋନ୍ତଂକ ଅଗ୍ରତେ
ପଣ୍ଡାଏ୍ୱ ତୁମ୍ଭର ଶାଢୀ ସେ ଦେବାର ଯୋଗାଇ ବିହ୍ନତେ ।୭୬।
ଯୁଝେଷ୍ଠିଂକ ସମାନେ ତୁମ୍ଭଂକୁ ମୁଂ କରଇ ସେବା
ଯେ୍ୱ ବଲ୍ଲବ ସୂପକାରକୁ ତୁମ୍ଭେ ଶାଢୀ ଦେବା । ୭୭ ।
ଶ୍ରୀ ଜଗନ୍ନଥଂକୁ ସୁମରଣା କରି ହୃଦଗତେ
ତୋହୋରେ ପ୍ରତିକାର ଅଛଇ ସେ ଦେବ ମୋତେ । ୭୮ ।
ବିରାଟର ବଚନେ ଆପଣେ ଶାଢୀ ଘେନଣ ହଲେ ଧର୍ମନାନେ
ଦେଖିଣ ସାନନ୍ଦେ ଯେ ହୋଇଲେ ଭୀମସେନେ ।୭୯।
ମାଥେଣ ଶାଢୀ ବାନ୍ଧି ହୋଇଲେ ପ୍ରଣପତ୍ୟ
ଉଠ ଉଠ ଦିଜବର ବୋଲ ବୋଇଲେ ଧର୍ମସୁତ ।୮୦।
ଧର୍ମ ଧର୍ମ ସୁମରି ଯେ ପାଣ୍ଡବର ବାଳ
ପାଣ୍ଡବ ସୁନ୍ଦର ଯେ ପ୍ରବେଶ ରୋଷୁଅର ଶାଳ । ୮୧ ।
ଦେଖିଣ ବିସ୍ମିତ ଯେ ସକଳ ସୂପକାର
ରୋଷଶାଳ ଛାଡି ସମସ୍ତେ ହୋଇଲେ ବାହାର ।୮୨।
ଆପଣେ ବୃକୋଦର ପଶିଲ୍ଲ ରୋଷୁଅ ଘରେ
ଚୁଲ୍ଲୀଏ୍ୱ ପାଡଲ୍ଲ ଭୀମ ମହା ସମ୍ଭ୍ରମରେ । ୮୩ ।
ଶତେପଖା କରଣ ଚୁଲ୍ଲୀଏ୍ୱ ପାଡଲ୍ଲ
ସହସେ ବିଖରା ଯେ ସେହ୍ୱିମତ ସମ୍ପାଦିଲ୍ଲ । ୮୪ ।
ଯେ୍ୱସନେକ ଉପଯୁ କରଣ ସେ ମହାଧିପର ରାଜ୍ୟେ
ରାନ୍ଧଣା ବିଧାନ ସେ କରଇ ବୀର ସଜେ । ୮୫ ।
କଞ୍ଚା ବାରୁନ୍ଦ ନେଇଣ ସେ ପକାବଇ ଚୁଲ୍ଲୀ
ଦୋହରା ପ୍ରମନ୍ୟେ ଜଳ ଜଳ ହାଦେ ବୋଲି । ୮୬ ।

ଅକଟା ଅବଟା ଯୋଗାଡ଼ଇ ପ୍ୟେକପାଗେ
ଲବଣ ବେସର ଯେ ଭରଇ ପ୍ୟେକଯୋଗେ । ୮୭ ।
ଦୋହଗ୍ଧ ପ୍ରସନ୍ନେ ଅମୃତ ପାକ ସଞ୍ଚା
ଯେତେକ ଜାଳ ଦିଅଇ ସମସ୍ତ କାଠ କଞ୍ଚା । ୮୮ ।
ଦେଖିଣ ଆଶ୍ଚିଜ ଯେ ହୋଇଲେ ସର୍ବଜନେ
ଦେଶାନ୍ତରେ ବାରତା କହିଲେ ରାଜାର ଆସ୍ଥାନେ । ୮୯ ।
ଶୁଣ ଦେବ ରାଜାଧି ରାଜେଶ୍ୱର ମତ୍ସ୍ୟ ଆଧିପତି
ବଡ଼ାଇ ଆଶ୍ଚିର୍ଯ୍ୟ ଦେବ ବ୍ରାହ୍ମଣର ଗତି । ୯୦ ।
ପଚିବା ଅକଟା ଦେବ ସୋରିଷ ଅବଟା
ଚୁଲ୍ଲୀରେ ଭରଇ ନେଇ କଞ୍ଚା ଦାରୁଗୋଟା । ୯୧ ।
ଯୋଗାଡ଼ ବସାଇଣ ଓହ୍ଲାଇ ଅତି ବେଗେ
ବିଚିତ୍ର ବୁଝିବା ସେ କେମନ୍ତ ହୋଇପେ ପାଗେ । ୯୨ ।
ବିରାଟ ଶୁଣିଲେ ଯେ କୋଚକଙ୍କ ବଦନ
କେମନ୍ତେ ବିଚିତ୍ର କଲ ପଣ୍ଡାପେ ରନ୍ଧଣା ବିଧାନ । ୯୩ ।
ମୋହୋର ବିଚିତ୍ରକୁ ତ ନ ଯୋଗାଇ ପ୍ୟେସନ
ଅକଟା ଅବଟା କାହିଂ କରନ୍ତି ଭୋଜନ । ୯୪ ।
କୋଚେ ବୋଇଲେ ତୁ ଅଟୁ ମହାଭାଗ୍ୟଂ
ଗୁଣବନ୍ତ ଧାର୍ମିକ ଲକ୍ଷଣବନ୍ତ ସର୍ବଗ୍ୟଂ । ୯୫ ।
ଆଜହୁଂ ପ୍ୟେହା ଆମ୍ଭେ ବିଚିତ୍ରଅଛୁ ରାଯେ
ସେ ବ୍ରାହ୍ମଣ ନ ହିଶଇ ସୁପକାର ପ୍ରାୟେ । ୯୬ ।
ତୁମ୍ଭ ମହାରାଜା ହୋ ଗୁଣବନ୍ତ ମହାପ୍ରଭୁ
ତୋହୋର ଅବଧାନ କଥା ଭାଙ୍ଗିବୁ ଆମ୍ଭେ କାହୁଁ । ୯୭ ।
କୋଚଙ୍କର ବଚନେ ଯେ ବୋଇଲେ ରାଯେ ମତ୍ସ୍ୟ
ପ୍ୟେହିକ୍ଷଣି ମୁଣୋହିର କାଲେ କଥା ବୁଝିବା ପ୍ରତିଚ୍ଛ । ୯୮ ।
ତୁମ୍ଭେ ଯେ ମୁଣୋହି କରିବ ଆମ୍ଭର ତୁଲେ
ଆମ୍ଭେ ଯେ ସୁପକାର କରଛୁଂ ତୁମ୍ଭରହିଂ ବୋଲେ । ୯୯ ।
ପ୍ୟେମନ୍ତର ସମପ୍ୟେ କ୍ଷେତ୍ରଅ ଘରୁ ଅଇଲେ ଚିତ୍ରଗଣ
ଦେବ ସୁପକାର ବୋଇଲେ ପାକ ହୋଇଲା ସମ୍ପୂର୍ଣ୍ଣ । ୧୦୦ ।

ମଧ୍ୟାହ୍ନ ଆଦିତ୍ୟ ଆସି ହୋଇଲା ସୂର୍ଯ୍ୟବେଳା
ଆହ୍ନିକ ସାରନ୍ତୁ ରାୟେ ନ କରଣ ହେଳା । ୧୦୧ ।
ବେଗ ବେଗ ବଜେକର ମୁଣେନ୍ଦ୍ର ମଣ୍ଡୋପକୁ
ସୂର୍ଯ୍ୟବେଳେ ମୁଣୋନ୍ଦ୍ର କଲେ ଆହାର ହୋୟେ ଯଂକୁ । ୧୦୨ ।
ଅନ୍ନ ଜୀର୍ଣ୍ଣ ନୋହଇ ଯେ ସୋମର ବେଳ ପଡଲେ
ମନ୍ଦାଗ୍ନି ହୋଅଇ ଦେବ ବେଳ ବାର ନ ଆରଲେ । ୧୦୩ ।
ସୂର୍ଯ୍ୟବେଳେ ଭୋଜନ ଯେ ଚନ୍ଦ୍ରବେଳେ ରତି
ଯେସନେକ ବେଭାର ଦେବ ଅଛଇ ଶାସ୍ତ୍ର ସଗତି । ୧୦୪ ।
ସୂପକାର ବଚନ ଦେବ ସାବଧାନେ ଶୁଣି
ହୃଦୟେ ବଢସିଲ ବିରାଟ ବଲ୍ଲବ ବାକ୍ୟ ଶୁଣି । ୧୦୫ ।
ବିରାଟ ବୋଇଲା କୋନ୍ତେ ପଣ୍ଡିତ ଅଟଇ ସେ ବ୍ରାହ୍ମଣ
କୋନ୍ତେ ବୋଇଲେ ହୋ ମହୀଧିପ ବ୍ରାହ୍ମଣ ଖାମର ପ୍ରାଙ୍ଗମ ।୧୦୬।
ସୂପକାର ବାରତା ପାଇଣ ମତ୍ସ୍ୟରାୟେ
ମାଜଣା ସାରଣ ରାୟେ ସ୍ନାନକଲଇଂ ବଜୟେ । ୧୦୭ ।
ଆହ୍ନିକ ସାରଣ କୋନ୍ତ ଯେ ପଣ୍ଡିତେ
ବଜୟେ ବିରାଟେଶ୍ୱର ମୁଣୋନ୍ଦ୍ରର ନମନ୍ତେ । ୧୦୮ ।
ଭୁଲେଣ ଅଛନ୍ତ ଯୋଦ୍ଧାଗଣ ଅମାନାତ୍ୟ
ଅନେକ ଅଛନ୍ତ ସନ୍ୟ ପଇଦଲ୍ଲ ଭୃତ୍ୟ । ୧୦୯ ।
ଅଶ୍ୱସେନା ରାଉତ ମାହୁନ୍ତ ପାବାନ୍ତ
ଯେ ଯାହାର ସଙ୍ଗତେ ଅଛନ୍ତ ପନ୍ତ ପନ୍ତ । ୧୧୦ ।
ଚଉବଂଶ ଲକ୍ଷ ଯେ ମୁକୁଟବନ୍ଧା ଯୋଦ୍ଧାମାନେ
ସମ୍ମୁଖେ ବସିଲେ ରାୟେ ମୁଣୋନ୍ଦ୍ର ଆସ୍ଥାନେ ।୧୧୧।
ଶୁଣ ହୋ ମହେଶ୍ୱର ବଦୟନ୍ତ ବଲ୍ଲବ
ରାଜ୍ୟଭାର ସମ୍ପଦ ତୋର ଯେ ବଡାଇ ଦୁର୍ଲଭ । ୧୧୨ ।
ମୁହିଂ ଜାଣିଲ ରାୟେ ତୁ ବଡାଇ ବିଦ୍ୟାପୀ
ପରବସ୍ତୁ ମଣ୍ଡ ତୁ ହୋଇଲୁ ବଡ ଦ୍ୱନ୍ଦୀ । ୧୧୩ ।

---

୧୦୯।୨ ପଇଦଲ୍ଲ—ପଦଗୃହୀ ବା ପଦାତିକ ।

ଅମନାତ୍ୟ ପ୍ରୋକ୍ତେ ଯୋଦ୍ଧା ଯେ ସନ୍ଧ୍ୟାତେ
ସମାନ ଗ୍ରାହ କଲେ କାରଣ ହୋଇବ ତୋତେ ।୧୧୪ ।
ସମସ୍ତ ସଇନ ତୋହୋର ହୋ ବସନ୍ତି ଛଦ୍ମବେଶରେ
ଯେତ୍ଥିର ଚରିତ ତୁ ଶୁଣ ମହାଶୟରେ । ୧୧୫ ।
ସଙ୍ଗତେ ଭୁଞ୍ଜି ବସିଲେ ବଡ଼ମା ପାଇ ଥାଠ
ସଂଗ୍ରାମକାଳେ କାରଣ କରେଟି ବିରାଟ । ୧୧୬ ।
ସାନନ୍ଦ ମହାରାଜା ବଲ୍ଲଭର ବଚନେ
ଦଣ୍ଡ ଘେନ ମୁଣ୍ଡୋଦ୍ଧରେ ବଜାପୂ ରାଜନେ । ୧୧୭ ।
ବିପୁଲ ଭୁବନେ ଯେ ବିଜୟେ ବିରାଟ
ତହିଂର ନିକଟେ ଯାଇ ବସିଲେ କୋନ୍ତଭଟ୍ଟ । ୧୧୮ ।
ସାତକ୍ଷଉଣୀ ବଳ ଘେନ ଯେ ବିରାଟେଶ୍ୱର ବସି
ପାଞ୍ଚଲକ୍ଷ ସୂପକାର ଘେନ ଭୀମ ଯେ ପରଶି । ୧୧୯ ।
ଗଉଣି ସଉଣି ନଳ ବିଧି ଯେ ରନ୍ଧଣା
ନିତ ପ୍ରତି ନେଞ୍ଜାନ ପରଶଇ ଭୀମସେନା । ୧୨୦ ।
ଦେବ ରନ୍ଧଣା ପର ପାଇବେ ସେ କାହିଂ
ବିରାଟ ପ୍ରଶଂସଇ ବଲ୍ଲବ କରଂ ଗ୍ରହିଂ । ୧୨୧ ।
ଅଦଭୁତେ ପୁରୁଷ ତୁ ବିଜେକଲୁ କାହୁଂ
କେଉଂଣ ଦିଗପାଳ ତୁ ମନୁଷ୍ୟଜନ୍ମ ନୋହୁଂ । ୧୨୨ ।
କୋନ୍ତଭଟ୍ଟେ ବୋଇଲେ ତୁହୋ ଶୁଣସି ମହାପତି
ଅନ୍ତେ ଜାଣୁ ସିନା ଯେହାଂକର ଗୁଣ ଯେ ପ୍ରକୃତି । ୧୨୩ ।
ଅମୃତ ରସ ଯେ ଗାଢ଼ ଭୁଞ୍ଜିଣ ସଇନ
ସମସ୍ତେ ପ୍ରଶଂସନ୍ତି ବ୍ରାହ୍ମଣ ତୋର ଧନ ଧନ । ୧୨୪ ।
ଆଂଗ୍ଲେବନ ସାରଣ ଯେ ରାଜ ବିଜୟେ ଆସ୍ଥାନେ
ରନ୍ଧଣା ବିଧାନକୁ ପ୍ରଶଂସନ୍ତି ସର୍ବଜନେ । ୧୨୫ ।

---

୧୨୧। ସମସ୍ତେ ପ୍ରଶଂସନ୍ତି ବଲ୍ଲବ ମୁଖ ଗ୍ରହିଂ ।—ଚ, ଘ, ଜ

୧୨୨ { ଅଦଭୁତେ ବ୍ରାହ୍ମଣ ତୁ କଲୁ କାହୁଂ,
କେଉଂଣ ଦିଗପାଳ ତୁ ସୂପକାର ନୋହୁଂ ।—ଣ,ଚ,ଠ

କଉତୁକେ ବିପ୍ରଜନେ ମାଗନ୍ତି ମେଞ୍ଚନ
ଜନରଞ୍ଜନ ନିମନ୍ତେ ଦିଅଇ ପବନ ନନ୍ଦନ । ୧୨୬ ।
ଅନେକ ସ୍ତ୍ରିଶ୍ରିମାନେ ଦିଅନ୍ତି ପଚରିବା
ତୁମ୍ଭେ ପଣ୍ଡାପ୍ଯେ ରନ୍ଧନ କରି କଣକଲପେ ଅମ୍ଭନ୍ତ ଦେବା । ୧୨୭ ।
ରାଜାହୁଂ ଭକ୍ଷାଶୀ ପରିପନ୍ତେ ପ୍ୟେକଦୃଷ୍ଟି
ଅବିଚ୍ଛିନ୍ନେ ଦିଅଇ ଯାହାକୁ ଯେତେ ଅଣ୍ଟି । ୧୨୮ ।
ସମସ୍ତେ ବୋଲନ୍ତି ବିରାଟ ରାଜ୍ୟ ତୋର ହୋଇଲା ସିଦ୍ଧି
ଦେବରନ୍ଧଣା ପାକ ଗଉରି ସଉରି ନଳବିଧି । ୧୨୯ ।
ଭକ୍ଷୀବୃତ୍ତି ଗୁଡ ଉପୁଜାଇଲା ଧଉର୍ଯ୍ୟ ପଣଇ
ଗୁଣ ଉପୁଜାଇଲେ ଉପୁଜଇ ବହୁତ କାରଣେଇ । ୧୩୦ ।
ଶୁଣ ହେ ମନୁବଂଶ୍ୟେ ତୁ ମହାତମା ପୁରୁଷ
ଭୀମସେନ ଗୋପ୍ୟାନ କଥା କହନ୍ତେଣ ନ ଯାଇ ଶେଷ । ୧୩୧ ।
। ୧୩୨୭ ।

---

୧୩୧।୨ ଭୀମସେନ ଗୋପ୍ୟାନ କଥା କହନ୍ତେ ମହାରସ ।—ଜ, ଘ, ଗ

## ଅର୍ଜ୍ଜୁନଙ୍କର ବିରାଟ ସଭାରେ ପ୍ରବେଶ

ଏଥୁ ଅନନ୍ତରେ ଗମଇ ସବ୍ୟସାଚୀ
କବେରୀ ଘର ବେଲଉଳ ଶୋଭାଏକ ସଞ୍ଚି । ୧ ।
ଶିରରେ ସୀମନ୍ତମ ମୁକୁତାର ଜାଲ
ଲଲାଟରେ ମଥାମଣି କର୍ଣ୍ଣେ କାପ ଯେ ବେଣ୍ଟୁଲି । ୨ ।
ଆକାଶର ମଣି କି ସେ ବେନିକରେ ସୁବର୍ଣ୍ଣର ଚଡ଼
ଗଳାରେ ରତ୍ନମାଳୀ ଦଶ ଅବତାର ଗୁପସର । ୩ ।
ପାଦରେ ନେପୁର ସ୍ତିରିବେଶ ଅଞ୍ଚଳ
ହୃଦୟରେ କାଞ୍ଚୁଲି ମୁକୁତା ରତ୍ନମାଳ । ୪ ।
ସ୍ତିରିବେଶ ଅଞ୍ଚଳ ଗୁଳନ୍ତେ ଶୋହୋଇ
ମଧୁରିପୁ ବଲ୍ଲଭ ରୂପେ ତ୍ରଇଲୋକ ମୋହଇ । ୫ ।
କଞ୍ଚିତ ବଙ୍କ ନୟନେ ଚଳଇ ହେଳୁ ହେଳୁ
ଚଳଇ ଯୋଗେଶ୍ୱରୀ କି ବେଣୀଭଦ୍ରା ନଦୀ କୂଳୁଂ । ୬ ।
ସଂସାର ଜନ ମୋହିଲି ସେ ପୁରୁଷ ସ୍ତିରୀ ବେଶ
ମଛରାଜ୍ୟେ ଧନୁର୍ଜୟେ ହୋଇଲ ପ୍ରବେଶ । ୭ ।
ଦେଖିଣ ମୋହଗଲେ ଯେ ସମସ୍ତ ଜନମାନେ
କହେ ରମ୍ଭା ତେଜିଲି କି ଆକାଶ ଭୁବନେ । ୮ ।
କହେ ତେଜି ଅଇଲି କି ସାବିତ୍ରୀ ମେନକା
ଭଲେଣ କେହି ନାହିଂ ଗବନ କାଂକେ ଏକା । ୯ ।

---

୨।୨ ଲଲାଟରେ ମଥାମଣି କର୍ଣ୍ଣେ କର୍ଣ୍ଣାଞ୍ଚଳ ବଧୂଲି ।—ଜ,ଦ
୨।୨ ଲଲାଟରେ ମଥାମଣି କର୍ଣ୍ଣେ କର୍ଣ୍ଣାଞ୍ଚଳ ଦୋଲୀ ।—କ,ଣ
୩ ଆଜାନୁ ଭୁଜଦଣ୍ଡେ ସୁବର୍ଣ୍ଣର ଚୂଡ଼
ଗଳାରେ ଲମ୍ବିତ ମୁକୁତାମାଳୀ ଗୁପସର ।—ଡ,ଜ,ଥ
୬।୨ ଚଳଇ ଯୋଗେଶ୍ୱରୀ କି ମଣିଭଦ୍ରା ନଦୀକୂଳୁଂ ।—ତ,ଚ

ବରାଟ ଆସ୍ଥାନ ସନ୍ନିଧେଣ ଯାଇଂ ଧନୁର୍ଜସ୍ତେ ଭେଟି
ଦେଖନ୍ତେ ନ ଅଣ୍ଟଇ ସେ ସବୁର ସ୍ନେହ ଦୃଷ୍ଟି । ୧୦ ।
ସମ୍ପୂର୍ଣ୍ଣ ଆସ୍ଥାନେ ବଜସ୍ତେ ମହୀପାଳେ
ବାସବର ନନ୍ଦନ ଯାଇ ବଜସ୍ତେ ଆସ୍ଥାନର ତଳେ । ୧୧ ।
ହଇଲେକ ମୋହମ୍ମୀ ତାର ରୂପ ଗୁଣ ଦେଖି
ଭସ୍ପେଣ ବେନଭାଗଜନେ ଆସ୍ଥାନ ଉପେଖି । ୧୨ ।
ବରାଟେ ପଚ୍ଛରଇ କୋନ୍ତେ ସେହୁତ ବଡ଼ାଇ ଅପୂର୍ବ
ଆକାଶ ବାହ୍ମଣୀ କ ସେହୁହାର ସରୂପ ଦେଖିବ । ୧୩ ।
ଯୁଦ୍ଧେଷ୍ଟି ବଚ୍ଛରନ୍ତ ଅର୍ଜୁନ ମୁଖ ଚୃହ୍ନିଂ
ଆରେ ହଲ୍ଲଜ ଆମ୍ଭା ମୋର କଂପେ ଅଛୁ ରହ୍ନି । ୧୪ ।
ବାବୁ ଦୁଇବାହେ ମହାଭାର ପୃଥ୍ୱୀ ଧଇଲୁ ଧନୁହୁଳେ
ସୁଭଦ୍ରା ଛଳେ ଦ୍ୱାରକାପୁରେ ଜଣିଲୁ କୃଷ୍ଣ କାମପାଳେ । ୧୫ ।
ପାଞ୍ଚାଳ ଦେଶରେ ବାବୁ ରାଧାଚକ୍ର ବନ୍ଧ
ପାଞ୍ଚାଳୀ ହରଣେ ତୁ ଜଣିଲୁ ସର୍ବ ଯୋଧୀ । ୧୬ ।
ଶରେ ସାଗର ବନ୍ଧିଲୁ ହନୁମନ୍ତ ବବାଦେ
ଗୋସିଂହ ଭସ୍ପେ ଦ୍ୱାରକା ରକ୍ଷାଗଲ ତୋହୋର ପରସାଦେ ।୧୭।
ବାବୁରେ ଅରଣ୍ୟେ ଗମନ୍ତେ ଜଣିଲୁ ତୁ ଅଙ୍ଗାରପର୍ଣ୍ଣଙ୍ଗ
ଶହସ୍ର ବର୍ଷାତେ ବକୋଡ଼ଲୁ ତାହାର ଯେ ଅଙ୍ଗ । ୧୮ ।
ବାବୁ ଅଗ୍ନି ଦେବତାର ଖଣ୍ଡିଲୁ ତୁ ଲୁଦୁବୁଦୁ ବ୍ୟାଧି
ବାସବକଇଂ ଜଣି ଖାଣ୍ଡବ ବନ୍ଦୁଂ ଦେଲୁ ମଉଷଧି । ୧୯ ।
କରାତ ରୂପେଣ ତୁ ଅରଣ୍ୟେ ହର ଜଣି
ଭସ୍ପେଣ ପ୍ରସନ୍ନ ତୋତେ ହୋଇଲେ ଶୂଳପାଣି । ୨୦ ।
ପଶୁପତ ଅକ୍ଷସ୍ତ୍ର ହୋଣ କର ତୋତେ ଦଲେ
ହର ପାର୍ବତୀ ତୋତେ ଯେ ପ୍ରସନ୍ନ ହୋଇଲେ । ୨୧ ।
ସ୍ୱର୍ଗମର୍ତ୍ତ୍ୟ ପାତାଳ ତନ ଲୋକରେ ବଳବନ୍ତା
ସେହୁଥିଲୁ ଭର୍ଜନ ତୋତେ କଲ୍ପକ ବଧାତା । ୨୨ ।

---

୧୦।୨ ଦେଖିଣ ସଭାଜନେ ହୃଦସ୍ତେ କାମଦୃଷ୍ଟି ।—ଛ,ଜ

ମୂର୍ହ୍ନଂ ଭୂମ୍ୟକୁ ନାଶକଲା ହାଥର କୁତୁହାଳେ
ତୋରପରା ଭାଇ ଆସି ଉଭାରିଲୁ ବିରାଟର ସଭାତଳେ । ୨୩ ।
ଯେହୁ ତୋହୋର ପ୍ରାକର୍ମ ହୀନକାର୍ଯ୍ୟ ଦେଖି
ଫୁଟି କମ୍ପା ନ ଗଲାରେ ମୋହୋର ବେନିଆଖି । ୨୪ ।
ଫୁଟିଣ ନ କହନ୍ତି କୋନ୍ତେ ବିଚୁରନ୍ତି ମନେ ମନେ ଗୁଣି
ଶରୀର ବିସର୍ଜନ ହୋଉକନା ଯେହ୍ନକ୍ଷଣି । ୨୫ ।
ସଭାତଳେ ଯାଇଂ ଅର୍ଜୁନ ହୋଇଲାକ ଉଭା
ଅମର ଭୁବନ ଜିଣି ଦିଶିଲାକ ଅତି ଶୋଭା । ୨୬ ।
ବାମଅଙ୍ଗ ସାର ଦେଇ ବିରାଟ କଟକ
ପ୍ରଣପତ୍ୟ ଫାଲଗୁନୀ କୋନ୍ତିଂକ ମୁଖ ଦେଖି । ୨୭ ।
ବିରାଟ ବୋଇଲା ତହୁଂ ଜିତ ମହାପ୍ରସାଦେ
ଅପନାତେ୍ୟ ବୋଇଲେ ଉଠ ଆଗ୍ୟାଂ ହୋଇଲାକ ହାଦେ ।୨୮।
ସ୍ୱଛନ୍ଦାସ୍ତେ ଗୋପ୍ୟ ସେ କାର୍ଯ୍ୟର ନିମନ୍ତେ
ସ୍ତ୍ରୀବେଶ ଅଲଂକାର ବେନବାହା ହାଥେ । ୨୯ ।
ସାଷ୍ଟାଙ୍ଗେ ପଡି ଯେ ଅଛନ୍ତି ସେହୁ ଭୁମିଗତେ
ବିରାଟର ବଚନେ ସେ ଉଠିବ କେମନ୍ତେ । ୩୦ ।
ହୃଦଗତେ ବିଚୁରନ୍ତି ଦେବ ଯେ ଯୁଦ୍ଧେଷ୍ଟି
ଆମ୍ଭର ଆଗ୍ୟାଂ ନ ପାଇଲେ ଯେ ନ ଉଠଇ କିରୀଟୀ । ୩୧ ।
କୋନ୍ତେ ବୋଇଲେ ତୁ ଗୋ ଶୁଣସି ମହାମୂର୍ଣୀ
ଠାକୁରଂକ ଆଗ୍ୟାଂ ହେଲା ଉଠ ଯେହ୍ନକ୍ଷଣି । ୩୨ ।
ବିରାଟର ବଚନେ ଯେ ସେ ତୁନୀ ହୋଇଥିଲା
ଯୁଦ୍ଧେଷ୍ଟିଂକ ବଚନେ ସେ ଧାଡିକାରେ ଉଠିଲା । ୩୩ ।
ବିରାଟ ବୋଇଲା ତୁ ଶୁଣସି ଗୋ ସୁଦେଶା
କେବଣ ଭୁବନେ ଥାନ ଗୋ ତୋହୋର । ୩୪ ।
କେ ତୋହୋର ମାତାପିତା କେ ତୋହୋର ପ୍ରଭୁ
କାହୁଂ ଅଇଲୁ ତୁ ଗୋ କାହାର କୁଳବୋହୂ । ୩୫ ।

---

୨୩।୧ ମୁର୍ଦ୍ଧଂ ଭୂମ୍ୟଂକୁ ନାଶକଲା ପଣାର କୁତୂହୋଳେ ।—ଦ, ଛ,ଗ,ଘ,ଜ

ମୋହିନୀ ରୂପ ଧରି ପଶିଲୁ ମୋର ରାଜ୍ୟେ
କହିବୁ ତୋର ସମ୍ପଦ କହ କିସ ତୋର କାର୍ଯ୍ୟେ । ୩୬ ।
ଶୁଣିଲଇ ବାଣୀ ଯେ କହଇ ସବ୍ୟସାଚୀ
ଅପାର କାର୍ଯ୍ୟ ମୋହୋର ବିଶ୍ବରେ ନାହିଁ କିଛି । ୩୭ ।
ପଶ୍ଚିମ ସଉରାଷ୍ଟ୍ରେ ହସ୍ତିନା ନଗ୍ରପୁରୀ
ଯୁଧିଷ୍ଠିର ଦେବ ଠାକୁର କାହିଁର ଅଧିକାରୀ । ୩୮ ।
ଭୀମସେନ ଠାକୁରେ ତାହାଂକ ସାନୁଜ
ତାହାଂକର କନିଷ୍ଠ ଯେ ବାସବ ତନୁଜ । ୩୯ ।
ସେ ଅର୍ଜୁନକୁ ଦେବ ତୁହ୍ମି ଚହ୍ନ ପାରୁ କି ବିରାଟଇ
ମୁହିଂ ତାଂକର ବେଶ କାରେଣୀ ଅଟଇ । ୪୦ ।
ପଶାରେ ରାଜ୍ୟଭାର ହାରିଲେ ଯୁଧିଷ୍ଠିର ଦେବେ ଯହୁଂ
ହସ୍ତିନା ନଗ୍ରକୁ ଆଉର ଯିବୁ ଆମ୍ଭେ କାହୁଂ । ୪୧ ।
ଯୁଧିଷ୍ଠିର ଦେବ ଠାକୁର ତୁମ୍ଭ ରାଜ୍ୟକୁ ଅଇଲେ ବୋଲି
ସେ ଶବଦକଇଂ ମୁଂ ଯେ ଗୋଡାଇ ଅଇଲି । ୪୨ ।
ମୋହୋର ନାମ ସଂକେତ ଅଟଇ ବୃହନ୍ନାରୀ
କନ୍ୟାଂକର ଅନ୍ତପୁରେ ମୁଂ ଥାଇ ନୃତ୍ୟଗୀତ କରି । ୪୩ ।
ବିରାଟ ବୋଇଲା ତୋର ସ୍ତ୍ରୀ ବେଶ ଶୁଦ୍ଧକାଯ୍ୟେ
ମମହୃଦେ ବିଚାରଇ ତୁ ଗୋ ଦିଶୁ ପୁରୁଷ ଲକ୍ଷଣ ପ୍ରାୟେ । ୪୪ ।
ବୋଲଇ ବୃହନ୍ନାରୀ ଶୁଣସି ମହେଶ୍ବର
ସ୍ତ୍ରୀ ପୁରୁଷ ଲକ୍ଷଣୁ ମୁଂ ଅଟଇ ବାହାର । ୪୫ ।
ବିରାଟ ବୋଇଲେ କୋନ୍ତେ ସ୍ତ୍ରୀ ଅଟଇ କିସ ରୂପ
ବତାଇ ଦ୍ରୁପଦ ସ୍ତ୍ରୀ କହିଲା ମହାଗୋପ୍ୟ । ୪୬ ।
ଯାହା ସେ ଲେଖନ କଲା ପ୍ରଜାପତି
ଚନ୍ଦ୍ରେକ ସୂର୍ଯ୍ୟେକ ଯେ ସ୍ତ୍ରୀଜନ ଦିବାରାତି । ୪୭ ।

---

୩୬।୨ ଆପଣାର କାର୍ଯ୍ୟେ ମୁଂ ବ୍ରହ୍ମାଣ୍ଡ ଭ୍ରମୁଅଛି ।—ଚ, ଜ, ଥ

୪୪।୨ ମମ ହୃଦେ ହେଜଇ ତୁ ପୁରୁଷ ଲକ୍ଷଣ ପ୍ରାୟେ ।—ଙ, ଟ

ସ୍ତ୍ରିୟେକ ପୁରୁଷ ଯେକ ପାପେକ ପୁଣ୍ୟେକ
ଯେଥିଂ ବାହାର ସେ ବୃହନ୍ନଳା ଧରୁପେକ । ୪୮ ।
କୌନ୍ତେ ବୋଇଲେ ସେ ଥିବ ଅନ୍ତପୁରେ
ଅହନିଶି ମେଳହୋଇ ଯେ ସ୍ତ୍ରୀଙ୍କ ସଙ୍ଗତରେ । ୪୯ ।
ଯେବେ ମହାଆଜ୍ଞା କଲୁ ମନେ ବାଧା
ବିଶ୍ୱାସଗଲ ଲୋକ ଯେନ କରୀଅ ବେଗେ ଶୋଧା । ୫୦ ।
ଏ ଚକେଶ୍ୱର ମନ୍ତ୍ରୀ ବୋଇଲା ଅନ୍ତବାଡ ପଞ୍ଜୂ
ଉତ୍ତରକୁମର ଯାଇ ଆପଣେ ଶୋଧା କରୁ । ୫୧ ।
ସରୂପ ବୁଝିବାନା ପରୀକ୍ଷୁଂ ଉତ୍ତରିଲେ
ତେବେ ସେ ଅନ୍ତପୁରେ ଥିବ ନପୁଂସକ ହୋଇଲେ । ୫୨ ।
ଅନ୍ତବାଡ ଭିତରେ ପଶିଲା ବୃହନ୍ନଳା
ବିରାଟ ନନ୍ଦନ ଉତ୍ତରକୁମାର ପରୀକ୍ଷ ସେ କରି । ୫୩ ।
ବିଧାତାର ନବାର ଉର୍ବଶୀର ଶାପ୍ୟ
ତେଣୁ ସେ ପାର୍ଥର ଉପସ୍ଥ ଗଲା ଗୋପ୍ୟ । ୫୪ ।
ବିବସ୍ତ୍ର କରିଣ ଦେଖନ୍ତି ବର୍ଣ୍ଣିଚନ୍ଦ୍ର
ସରୂପ ଦେଖିଲା ନାହିଂ ସ୍ତ୍ରିରୀ ପୁରୁଷ ଲକ୍ଷଣ । ୫୫ ।
ଆସ୍ଥାନେ ଉତ୍ତରକୁମର କହଇ ସରୂପ
ସ୍ତ୍ରିରୀ ଲକ୍ଷଣ ନାହିଂ ପୁରୁଷ ଲକ୍ଷଣ ଗଲା ଗୋପ୍ୟ । ୫୬ ।
ବିରାଟ ବୋଇଲେ କୌନ୍ତେ ସାଧୁ ମୋ ଜୀବନ
ମହନ୍ତଂକ ପ୍ରସନ୍ନେ ଜନେ ଲଭନ୍ତି ପୁଣ୍ୟମାନ । ୫୭ ।

---

୫୩।୧ ଅନ୍ତବାଡ—ଅନ୍ତାପାଠ ।

୫୬।୨ ସ୍ତ୍ରିରୀ ବେଶ ନାହିଂ ପୁରୁଷ ବେଶ ଗଲା ଗୋପ୍ୟ ।—ଘ, ଙ, ଛ, ଗ, ଟ

୫୬।୨ ସ୍ତ୍ରିରୀ ଲିଙ୍ଗ ନାହିଂ ପୁରୁଷ ଲକ୍ଷଣ ଗୋପ୍ୟ ।—ଚ, କ,

୫୭।୨ ମହନ୍ତଂକ ବାକ୍ୟେ ଜନେ ଲଭନ୍ତି ପୁଣ୍ୟମାନ ।—ଜ, ପ, ଙ, ଟ

ପ୍ରଥମେ ଯେ ବୋଇଲ ଯୁଧିଷ୍ଠିର ଅଇଲେ ବୋଲି
ସେ ଶବଦଗୋଟି ଶୁଭିଲା ମୁଂ ତେଣୁ କାନ୍ଦିଲି ।୫୮।
କୋଟିଏ ବୋଇଲେ ସ୍ୱପ୍ନେ ନ କହୁ ଆମ୍ଭେ ମିଥ୍ୟା
ପୁଣି ଅବଶ୍ୟେ ପରଯନ୍ତେ ଦେଖିବୁ ତୁ ଯଥା ।୫୯।
ମହନ୍ତଂକ ବାକ୍ୟ ଯେବେ ହୋଇବାକ ଆନ
ଆବର ଚନ୍ଦ୍ର ସୂର୍ଯ୍ୟ କାଂପେ ଶୂନ୍ୟେ କରିବେ ଗବନ ।୬୦।
ବଚନେ ବୋଧିଗଲା ମଞ୍ଚ ଅଧିକାରୀ
ତୁ ମୋହୋର ଉତ୍ତରା ବାଳୀକି ନୃତ୍ୟ କରାଅ ବୃହନାରୀ ।୬୧।
ଅର୍ଜୁନ ଠାକୁରଂକୁ ଦେଖିବ ମୁଂ ଆଳ କାହ୍ନଂ
ସମ୍ଭାର ଅନ୍ଧପଟଳ ଫିଟଇ ତାହାଂକ ମୁଖ ଗୃହ୍ନଂ ।୬୨।
ଯାଚକେଶ୍ୱର ମନ୍ତ୍ରୀ ବୋଇଲ ତୁ ଶୁଣିମା ମହାରାଜା
ଧାର୍ମିକ ଲୋକନ୍ତ ବନ୍ଧୁତ ନ କଜା ।୬୩।
ମନ୍ତ୍ରୀର ବଚନ ଶୁଣିଣ ସେ ଧାର୍ମିକ ଦଣ୍ଡଧାରୀ
ଆପଣାର ଶ୍ରୀକରେ ବିରାଟ ଦେନଲକ ଦିବ୍ୟଶାଢୀ ।୬୪।
ଯେନସି ବୃହନାରୀ ବୋଲି ଶ୍ରୀକରେ ସ୍ୱପ୍ନେ ତୋଳି
ହେଠ ବଦନେ ଅର୍ଜୁନ ସୁମରଇ ବନମାଳୀ ।୬୫।
ସ୍ନେହାର ଶାଢୀ ଯେ ମୁଂ ଯେନଲେ ଚଳହାଥେ
ଭୃତ୍ୟପଣ ହୋଇବ ସିନା ଶାଢୀ ବାନ୍ଧିଲେ ମାଥେ ।୬୬।
ଛନହୁଂ ଗୃର ମୋତେ ଦିଅନ୍ତା ନାହିଂ ଶାଢୀ
ଇନ୍ଦ୍ର ଗୋବିନ୍ଦ ଆବର ଯୁଧିଷ୍ଠିର ଦଣ୍ଡଧାରୀ ।୬୭।
କହୁଂ କହୁଂ ଅରଜୁନ ଅଧର ପୁଷ୍ଟ କଲା
ଆଜ ତୋହୋର ଶିରୀ ସମ୍ପଦ ସରଇ ବିରାଟେ ବୋଇଲା ।୬୮।
ଅର୍ଜୁନର କୋପ ଦେଖି ଜାଣିଲେ ଯୁଧିଷ୍ଠିର
ହୃଦେ ସୁମରଣା କଲେ ନାରାୟଣ ନାମଗୋଟି ।୬୯।
ହରି ସେ ତୋହୋର ବୋଲେ ଅଇଲ ବିରାଟ ରାଜ୍ୟକୁ
ସ୍ନେ ଧର୍ମ କଷ୍ଟଂ ହରି ହେ ପାରି କରିବା ମୁକୁ ।୭୦।

---

୫୯।୨ ଅବଶ୍ୟ ସମ୍ଭବେ ଦେଖିବୁ ସ୍ୱପ୍ନେ ଯଥା ।—ଡ, ଜ

ହଗର ମାସ୍ତାରେ ଯେ ରେଖଲା ମସ୍ତପଣ୍ଡ
ଶାଢୀଦେବା ହାଥ କାଡି ଆଣିଲା ଚତକ୍ଷଣାନ୍ତ । ୭୧ ।
ବିରାଟ ବୋଇଲା କୋନ୍ତେ ମୁଂ ନଜାଣି କଲି ଅମାଣ୍ଡ
ମସ୍ତରାଜ୍ୟପାଟ ମୁଂ ସମର୍ପିଲଇଂ ତୁମନ୍ତ । ୭୨ ।
ତୁମ୍ଭେ ଶାଢୀଦେବା ହୋଉ ସ୍ୱେ ବୃହନ୍ନାଲା କ
କନ୍ୟାପୁରେ ଯାଉ ସ୍ୱେ ଉତ୍ତରା ଚହ୍ନଂକ । ୭୩ ।
କୋନ୍ତେ ଶାଢୀଦିଲେ ଅର୍ଜୁନକୁ ସାନନ୍ଦେ
ଶ୍ରୀହସ୍ତେ ଶାଢୀ ଅର୍ଜୁନ ମଥାରେ ବାନ୍ଧିଲା ହାଦେ । ୭୪ ।
ଆସ୍ଥାନର ମଧ୍ୟେ ଶାଢୀ ବୀର ଘେନ
ନାଟପା ମନ୍ଦିରକୁ ଚଳଇ ଫାଲଗୁନ । ୭୫ ।
ଉତ୍ତରାର ମୂଳେ ଯେ କନ୍ୟାଗୋଟି ଗୃଣ
ନୃତ୍ୟ ଆରମ୍ଭ ନେଇ ସେ ପାଣ୍ଡଲେ ଅନ୍ତପୁରୀ । ୭୬ ।
ନ୍ଧ୍ରିଷ୍ଟି ସଭାପଣ୍ଡା ବିରାଟକୁ ଘେନ ଖେଳାବନ୍ତ ପଶା
ଭୀମସେନ ସୂପକାର ଅର୍ଜୁନ ଅମାନୁଷା । ୭୭ ।
ଅର୍ଜୁନ ବେଶକାର ବୃହନ୍ନାଳା ରୂପେ
ଜାଣନ୍ତା ନୋହିଲେ ସ୍ୱେ ତିନହେଂ ରହିଲେ ଯେ ଗୋପ୍ୟେ । ୭୮ ।
। ୧୪୦୫ ।

---

## ଦ୍ରୌପଦୀଙ୍କର ବିରାଟ ଭବନରେ ପ୍ରବେଶ

ଯେତେ ଅନନ୍ତରେ ଶୁଣିମା ବାକ୍ୟରସ
ପାଞ୍ଚାଳୀ କହଇ ସେ ସହଦେବର ପାଶ । ୧ ।
ଶୁଣସି ସହଦେବ କ ବୁଦ୍ଧି କରିବା
କେଉଂଣ ଉପାୟେ ଆମ୍ଭେ ମତ୍ସ୍ୟଦେଶେ ଯିବା । ୨ ।
ସହଦେବ ବୋଇଲେ ଶୁଣ ଗୋ କୃଷ୍ଣସେନା
ଦଧିବାମନ ଅନକୂଳ ଶୁଭଲଗ୍ନ ଘେନ । ୩ ।
ଆସ୍ଥାନର ମଧ୍ୟେ ଯେ ରହିଲେ ଦେବଧର୍ମେ
ଗୋଷ୍ଠଶାଳ ଆବୋରି ରହିଲେ ଖ୍ରମସେନେ । ୪ ।
ଅନ୍ତପୁର ଭିତରେ ରହିଲେ ସବ୍ୟସାଚୀ
ଚଳ ତୁ ଅନ୍ତପୁରେ ଗୋ ସୁଦେଷ୍ଣା ଯହିଂ ଅଛି । ୫ ।
ସର୍ବମଙ୍ଗଳ ଯୋଗ ଅମୃତ ବିଧାନ
ବିଜେ ଅନ୍ନପୂର୍ଣ୍ଣା ମାହେଶ୍ୱରୀ ଯେ ସୁମର ଭଗବାନ । ୬ ।
କର୍ଷ'ବସନ ପରିହରଣ ଅଲଂକାର ବିହୁନା
ଶ୍ରୀକରେ ବେନବାହ୍ନି ଦେବୀ ମୁକୁଳ କେଶ ସିନା । ୭ ।
ଗମନ୍ତେ ହଇଲେକ ମୋହଇ ପାଞ୍ଚାଳୀ
ନଗର ପଶ୍ଚିମ ଦ୍ୱାରେଣ ଯାଇଂ ମିଳି । । ।
ମଉନ ବିକାରେ ଯେ କାହାକୁ ବଚନ ନ ବୋଲଇ ସତୀ
ଧାଇ ମୁଦୁସୁଲୀମାନେ ଆସି ମିଳିଲେ ତଡତ । ୯ ।
ନାଗରୀ ଚତୁସ୍ତ୍ରୟେ ପ୍ରକାଶନ୍ତ୍ର ଗୃହ୍ଣବାଣୀ
କାହୁଂ ସେ ଆସିଅଛୁ କହ ଗୋ ମହାମାନୀ । ୧୦ ।

---

୫।୨ ସୁଦେଷ୍ଣା—ଶ୍ରୀକୃଷ୍ଣା ।

ଶ୍ରୀକୃଷ୍ଣ ମହାଦେବଙ୍କ କହନ୍ତି ସହାସେ
ସତ୍ୟ ବଚନ ଆମ୍ଭର ଶୁଣସି ଗୋ ମାଯେ ଯେବେ । ୧୧ ।
ଶୁଣସି ଗୋ ମହାଦେଈ ପବନ ଅପର୍ଣ୍ଣା
କନ୍ୟାମାନେ ହ୍ୱାରେ ଉଭା ରୂପେ ବରାଙ୍ଗନା । ୧୨ ।
କଥା ନ କହଇ ଗୋ ମଉନବ୍ରତ ଜାଣି
ଭବାନୀ କଲ୍ୟାଣୀ ଗୋ ଅଟଇ ସୁଲକ୍ଷଣୀ । ୧୩ ।
କପିଳାସ ତେଜିଣ କି ବିଜେ କଲେ ଦେବୀ ଉମା
କି ସେ ଶଚୀଦେବୀ ଅଟଇ ଇନ୍ଦ୍ରଙ୍କର ବାମା । ୧୪ ।
କି ଅବା ପଦ୍ମବନ ତେଜି ଆଇଲେ କମଳା
କି ଅବା ରତିଦେବୀ କାମର ଘରଣୀ । ୧୫ ।
ସ୍ତ୍ରୀଙ୍କର ମଧ୍ୟେଣ ଗୋ ସୁନ୍ଦରୀ ଅଟଇ ରମ୍ଭା
ଗଉତମଙ୍କର ପତ୍ନୀ ଅହଲ୍ୟା ଅଟେ ଅବା । ୧୬ ।
ଫଗୋଡ଼ି କଷଣ ଗୋ ପଡ଼ିଲା ଆସି ତୋତେ
ଦେଖିଲେ ବସନ୍ତ ଗୋ ମୁଞ୍ଚିବ କେମନ୍ତେ । ୧୭ ।
ଜଗୁଜନ ମୋହିନୀ ସେ ଗୋ ସ୍ତ୍ରୀ ରତ୍ନକାନ୍ତି
ଜାତି ପଦ୍ମିନୀ ସେ ରୂପେ ରୂପବନ୍ତୀ ଗୁଣବନ୍ତୀ । ୧୮ ।
ବସ୍ତ୍ର ଠାକୁରାଣୀ ଗୋ ବୁଝିବା ପରମାଣି
ନଚେତ୍ ତୋହୋର ଗୋ ସେ ହୋଇବ ସପତ୍ନୀ । ୧୯ ।
କେ ବୋଲଇ ତାହାକୁ ନେମା କେଶ ଧରି
କଟକ ବାହାରେ ତାକୁ ଗୁଡ଼ିବା ଡେଙ୍ଗୁରି । ୨୦ ।

---

୧୩ { ମନ ଅବକାରେ କାହାରୁହିଁ ନାହିଁ ସମ୍ଭାଷି
ମୁଦ୍ଗ ସ୍ତ୍ରୀମାନେ ବେଢ଼ିଲେକ ଆସି ।—ଘ, ଙ, ଥ, ଡ

୧୧।୨ କାହିଁ ଆସି ସେଥେ ବଳେ ମହାରାଣୀ ।—ଝ, ଟ

୨୦।୨ ଡେଙ୍ଗୁରି—ଅପମାନ କରି ।

କେ ବୋଲଇ କୁରୁଳ କରି ପିଟିବା ମୁଖେ ଦେଇ ବଣ୍ଡା
କେ ବୋଲଇ ହାଣିମା କ କରେ ଧରି ଖଣ୍ଡା । ୨୧ ।
ଶ୍ରୀକୃଷ୍ଣାପ୍ରେ ବୋଇଲେ ସୈରନ୍ଧ୍ରୀ କର୍ମେ ବୋଲ
ମହତ ଲୋକ ହୋଇଥିବ ନ କର ଘଞ୍ଚାଳ । ୨୨ ।
କଷଣ ନିମନ୍ତେ ମର୍ତ୍ତ୍ୟେ ଆସିଥାନ୍ତି ଦେବସ୍ତ୍ରିଗ୍ଧ
ଘଞ୍ଚାଳ କଲେ ଗୋ ଅବଶ୍ୟ ହାଦେ ମରି । ୨୩ ।
ତାହାର ତହିଂକ ଗୋ ଯାଅ ସ୍ନେହକ୍ଷଣି
ମୋ'ହାର ଗ୍ରୁମୁକୁ ଗୋ ଘେନଆସ ବେଗେ ପୁଣି । ୨୪ ।
ମହାଦେଈର ବଚନେ ମୁଦୁସୁଲ୍ଲି ଗଲେ ଝଟ
ଯାଇଣ ଗ୍ରୁମୁରେ ଯେ ବନୋସ୍ଥି କହନ୍ତ । ୨୫ ।
ଭୁକୁହିଂ ଆଗ୍ୟାଂ ଗୋ ଦଲେକ ଠାକୁରାଣୀ
ଗ୍ରୁମୁକୁ ବହନ ହୋଇ ଆସିବା ମହାମ୍ନାଣୀ । ୨୬ ।
ଶ୍ରୀହରି ସୁମରି ଚଳଇ ପାଞ୍ଚାଳୀ ଯେ ବିରାଟ ଅନ୍ତପୁରେ
ଦେଖିଣ ଶ୍ରୀକୃଷ୍ଣା ଆସନ ତେଜିଲେ ଧାଡକାରେ । ୨୭ ।
ପାଞ୍ଚାଳୀ ପଣନ୍ତେ ପୁର ହଶିଲାକ ଶୋଭ
ଶ୍ରୀକୃଷ୍ଣା ବିଚିରନ୍ତ ସ୍ୱେତ ପ୍ରତକ୍ଷେ ଅଟଇ ରମ୍ଭା । ୨୮ ।
ଅମରାଧି ନାଥ କେହ୍ନେ ତେଜିଲା ଆଖଣ୍ଡଳୀ
କେ ଅବା କେବଣ ଦ୍ରୋହେ ପତିତ ଭୂଅତଳ । ୨୯ ।
ସୈରନ୍ଧ୍ରୀ ବିଚିର ଯେ କରନ୍ତି ମହାଦେଈ
କଅବା ସାବିତ୍ରୀ ସତ୍ୟବନ୍ତେ ତେଜ ଅଇଲେକ ସ୍ନେହ । ୩୦ ।
କଅବା ମେନକା ଦୋହିତା ସ୍ନେହୁ ଶକୁନ୍ତଳା
ସର୍ବ ଲକ୍ଷଣ ବେଶ କିଂପେ କେଶ ଯେ ମୁକୁଳା । ୩୧ ।

---

୨୧।୨ କୁରୁଳ—ପାଟିକରି, ଚିତ୍କାର କରି ।

୨୨।୨ ଘଞ୍ଚାଳ—କଟାଳ ।

୨୩।୧ କଷଣ ନିମନ୍ତେ ଅବା ଆସିଛ ଦେବସ୍ତ୍ରିଗ୍ଧ ।—ଫ, ଗ

ଶ୍ରିଯ୍ଣା ନାମେଣ ଶ୍ରୀକୃଷ୍ଣାଂକ ବଶ୍ୟାସୀ ମୃଦୁସୁନ୍ଦ୍ରୀ
ଆଲେ ବଦନ ସମସ୍ୟା କର ବଚନ କାସ ବୋଲି । ୩୨ ।
ମୃଦୁସୁନ୍ଦ୍ରୀ ବୋଇଲ ଗୋ ମତ୍ସ୍ୟଦେଶର ଠାକୁରାଣୀ
ସମସ୍ୟା ପଚ୍ଛରେ ପ୍ରତିଉତ୍ତର ପଡଇ ଦୃଢବାଣୀ । ୩୩ ।
ଧୂର୍ତ୍ତି ବାତୁଳୀ ଆମ୍ଭେ ଚତୁର ମୃଦୁସୁନ୍ଦ୍ରୀ
ଅଶୁଦ୍ଧ ବାକ୍ୟ ଆମ୍ଭେ ସର୍ବଦାସ୍ୱେ ବୋଲି । ୩୪ ।
ମାସ୍ୱେ ସମାନ ସାଦୃଶେ୍ୟ ହାଦେ ବଚନ କହିବା
ପ୍ରସ୍ତାପ ସାଦୃଶେ୍ୟଣ ପ୍ରତିସମସ୍ୟାନ୍ତଂ ଦେବା । ୩୫ ।
ସେବା ଅନରୂପେ କରବା ମନବାଞ୍ଛା
କ୍ଷୁଧା ଅନରୂପେ ଭୂକତ କରଇ ଇଚ୍ଛା । ୩୬ ।
ଶକତି ସାଦୃଶେ୍ୟନ କରବା କର୍ମେଣ
ଧନ ଅନରୂପେ ଧର୍ମ କରିବା ଘଟଣ । ୩୭ ।
ପରାକ୍ରମ ଅନରୂପେ ହୋଇବାକ ହନ୍ଦୀ
ସମାନ ଅନରୂପେ ହୋଇବାକ ବାଦୀ । ୩୮ ।
ମନ୍ତ୍ର ଅନରୂପେ ବପ୍ରେ ଘେନବାକ ଦାନ
ଦେବତା ଅନରୂପେ ପ୍ରାସାଦ ବଦ୍ୟମାନ । ୩୯ ।
ସମାନ ସାଦୃଶେ୍ୟଣ କରବାକ ଦେବା କୋପ
ସ୍ୱେମାନ ହେଜ ନୁଆରଲେ ଖଣ୍ଡଣ ହୋସ୍ୱେ ତପ । ୪୦ ।
ବାବୁ ଅନରୂପେ ଯେ କରବା ଗଉରବେ
ସ୍ୱେତେ ଠାବକୁ ଚରଚ୍ଚ କରନ୍ତ ପଣ୍ଡିତ ଯେ ଭାବ । ୪୧ ।
ତୁ ଯେ ଧାର୍ମିକ ବବେକ ପଣ୍ଡିତ କୁଳଶୀଳ
ତୋ ତହୁଂ ଗରୁହଂସୀ ତାହାର ହଣଇ ବାକ୍ୟବଳ । ୪୨ ।
ଶ୍ରିଯ୍ଣାର ବୋଧ ବଚନେ ଯେ ବଦସ୍ୱନ୍ତ ଶ୍ରୀକୃଷ୍ଣା
କେବଣ ଦେଶୁଂ ଗବନ କଲୁ କହ ଗୋ ସତ୍ତୃଷ୍ଣା । ୪୩ ।

---

୩୯।୨  ଦେବତା ଅନରୂପେ ପ୍ରସାଦ ଭୋଗ୍ୟମାନ ।—ଙ୍କ, ଧ, ପ

୪୫।୨  ବଚନ ପ୍ରକାଶନ୍ତେ ଶୁଭଇ ଅଣ୍ଡିର କୋକିଳବାଣୀ ।—ଙ୍କ, ଭ

କେ ତୋହୋର ବଲ୍ଲଭ କେ ତୋହୋର ପିଅର ମାଏ
ଗୃହବାସ କାହିଂ ଗୋ କେବଣ କୁଳେ ଜାତହୋଏ । ୪୪ ।
ଶୁଣ ଗୋ ବଇରାଟ୍ଟ ପୁର ଭୁବନ ମଣ୍ଡଣି
ବଚନ ପ୍ରକାଶନ୍ତେ ଶୁଭଇ ମଧୁର ରସବାଣୀ । ୪୫ ।
ଜନନ୍ତ ଭଗଦେଣ ହୋଇ ସେ କୃତାଞ୍ଜଳି
ରୁଚିର ବଚନ ଦେଵୀ କହଇ ପାଞ୍ଚାଳୀ । ୪୬ ।
ମାଗୋ ପଶ୍ଚିମ ସଙ୍ଗରାଷ୍ଟ୍ରେ ଯେ ନଦୀ ବହଇ ଯମୁନା
ସେ ନଦୀତଟେ ଯମପ୍ରଶସ୍ତ ଇନ୍ଦ୍ରପ୍ରଶସ୍ତ ଜଇନ୍ତ ବାରୁଣା
ହସ୍ତିନା । ୪୭ ।

ବଡାଳ ପ୍ରମୋଦ ସ୍ଥାନ ଯେ କୁଞ୍ଜଗଳ ବାରସ୍ତ୍ରୀ
ଯୁଧିଷ୍ଠି ମହାରାଜା ତହିଂର ଚକ୍ରବର୍ତ୍ତୀ । ୪୮ ।
ଭୀମ ଅର୍ଜୁନ ଯେ ନକୁଳ ସହଦେବ
ସୋମବଂଶକଇଂ ଉଦ୍ଧାରଣ ପଞ୍ଚ ଯେ ପାଣ୍ଡବ । ୪୯ ।
ତାହାଂକର ମନୋହାରୀ ଅଟନ୍ତି ଦ୍ରୋପଦୀ
ଦ୍ରୋପଦ ରଜାର ସେ ଅଟଇ ଦେ ହିସ୍ତୀ । ୫୦ ।
ନୋହଇ ଦ୍ରୋପଦୀ ମୁଂ ଅଟଇ ତାଂକ ଦାସୀ
ଏ ସତ୍ୟବାକ୍ୟ ଗୋ କହିଲୁ ପରକାଶି । ୫୧ ।
ଶ୍ରୀକୃଷ୍ଣା ବୋଇଲେ ଗୋ କହିଲୁ ସିନା ଭଲବାକ୍ୟ
ବଡ଼ଇ ଦୁଲଭ କଥା ଏ ଶୁଭିତ ହଇଲୋକ୍ୟ । ୫୨ ।
ଆଜଦନର କଥା ସୁଫଳ ଗୋ ପୁଣ୍ୟ ଅପ୍ରମିତା
ପରମାନନ୍ଦ ପୁରୁଷଂକର ପଡିଲା ଆଜ ଚିନ୍ତା । ୫୩ ।
ଆଗୋ ଦ୍ରୁପଦ ରଜାଂକର ଦୋହିତା ଦ୍ରୋପଦୀ
ଏକେସ୍ତିରିଂକ ଗୋ ଅଟନ୍ତି ପଞ୍ଚପତି । ୫୪ ।
କମ୍ଭୁତ ମାୟା ଏ ଗୋ ଶୁଣୁଅଛୁ ବାଣୀ
ସରୂପେ ସତ୍ୟ କ ଏହା କହିବା ଦୂତବାଣୀ । ୫୫ ।
ଶ୍ରୀକୃଷ୍ଣା ଦେବୀ ଯେ ସର୍ବଗମ୍ୟଂ ସର୍ବଜାଣ
କଥା ଅନରୂପେ ବାକ୍ୟ କରନ୍ତି ପ୍ରକାଶ ପୁଣ । ୫୬ ।

ଅନେକ ରାଜ୍ୟେ ଯେ ପଡଇ ଯେହ୍ନୁ କଥା
ଆମ୍ଭେ ବିଶ୍ବରୁ ସତ ସ୍ତେ ନୋହଇ ସର୍ବଥା । ୫୭ ।
ଶ୍ରୀକୃଷ୍ଣା ବୋଇଲେ ଗୋ ବସ ବସ ମାସ୍ଥେ
ବଡାଇ ଦୁରପଦ ଲାଗିଲା ସନ୍ଦେହ କଥାସ୍ତେ । ୫୮ ।
ଶ୍ରୀକୃଷ୍ଣାର ବଚନେ ବସିଲେ ଦ୍ରୋପଡର ବାଳୀ
କହନ୍ତି କୋକିଳ ବଚନ ଶୁଦ୍ଧଶାଳୀ । ୫୯ ।
ତୁ ଯେ ପୁଚ୍ଛାକଲୁ ରାଣୀ ଗୋ ପାଣ୍ଡବ ପାଞ୍ଚଂକର କଥା
ପାଞ୍ଚ ପତିଂକର ଭାରିଜା ଦ୍ରୋପଦ ଦୁହିତା । ୬୦ ।
ପଞ୍ଚ ପାଣ୍ଡବଂକର ଯେତକଇ ଭାରିଜା ଦ୍ରୌପଦୀ
ପାଞ୍ଚେହେଂ ରମଣ କରନ୍ତି ତାହାନ୍ତ ହିତ । ୬୧ ।
ଶ୍ରୀକୃଷ୍ଣା ବୋଇଲେ ଗୋ ସ୍ତ୍ରିରି ମାତ୍ର ଭଳ
ଯେତକାଇଂ କେମନ୍ତେ ସହଇ ପାଞ୍ଚଂକ ଆନ୍ଦୋଳ । ୬୨ ।
ସଇରନ୍ଧ୍ରୀ ବୋଇଲେ ଗୋ ସେହୁ ପ୍ରତକ୍ଷେ ଜଣ୍ଣସେନୀ
ନଚ୍ଛେୟହେଂ ପରୀକ୍ଷ ସେ କରଇ ବହନ । ୬୩ ।
ଧନ୍ୟ ସେ ସ୍ତ୍ରିରି ଅଟଇ ସତୀ ବଳାସୁଣୀ । ୬୪ ।
ମୁହିଂ ସେ ଦ୍ରୌପଦୀଂକର ଅଟଇ ନିଜ ଦାସୀ
ତାହାଂକର ସମାନ ମୋତେ ଅଭିନ୍ନ ନ କରନ୍ତି ଶୁଭ୍ରକେଶୀ ।୬୫।
ସକଳ ସନ୍ଦେଶମାନ ସେ କହନ୍ତି ମୋହୋର ଆଗେ ପୁଣ
ତାହା ତୋତେ କହିବା ତୁ ଯେତକମନେ ଶୁଣ । ୬୬ ।
ଯୁଧିଷ୍ଠିରଂକର ତହିଂକ ସେ ଗମଇ ଯେତ୍ତଂଣ ଦିନ
କୀଡାରଙ୍ଗ ସାରି ସେ ପଶଇ ହୁତାଶନ । ୬୭ ।
ସେ କାୟା ଦହନ ଯାଇ ପୁଣ ହୋଅଇ ଆନ କାସ୍ଥେ
ଆରେକ ଦିନ ଭୀମସେନଙ୍କୁ ଦ୍ୟନ୍ତି କାସ୍ଥେ । ୬୮ ।

---

୫୭।୨ ଆମ୍ଭେ ବୋଇଲୁଂ ସତ୍ୟ କି ହୋଇବ ସର୍ବଥା ।—ଝ,ଝ
୬୩।୧ ନଚ୍ଛେୟହେଂ ପରୀକ୍ଷ ସେ କରଇ ଦୋହରାଗ୍ନି ।
୬୮।୨ ଆରେକ ବୃକୋଦର ଭୁଲେ କୀଡାରସ ହୋସ୍ତେ ।—ଙ୍କ,ଛ

ବ୍ରିକୋଦର ଭୁଲେ ସହୁଂ ସରଇ ପୀରତି
ଦୋହବା ଅନଳେ ପୁଣି ପଶଇ ମହାସତୀ । ୬୯ ।
ସେ ଅନଳେ ଦହନ କରଇ ସେହୁ କାସ୍ୱେ
ନବଛନ ଶରୀର ଯେନ ପୁଣ ସମର୍ପଇ ପାର୍ଥିବ ଧନୁର୍ଜସ୍ୱେ । ୭୦ ।
ନକୁଳ ସହଦେବଂକୁ ସ୍ୱେହ୍ନ ପ୍ରତି ପ୍ରତି
ପଞ୍ଚ ଧନେ ଅନଳେ ଦହନ ହୁଅଇ ପଞ୍ଚୁଘାନ୍ତ । ୭୧ ।
ଅନ୍ୟ ସ୍ତ୍ରିମାନଂକୁ ଜଳ ଯେହ୍ନେ ସ୍ୱାହାନ
ଅଗ୍ନି ସଯୋଗେଣ ସେ ବଞ୍ଚୁଥାଇ ଧନ । ୭୨ ।
ସ୍ୱେକର ଉଚ୍ଛିଷ୍ଟ ସେ ଆରେକକୁ ନ ଦିଅଇ
ପଞ୍ଚଇ ପୁରୁଷ ହାଦେ ସେ ସ୍ୱେକଇ ଆତ୍ମା ତାହାଂକର ଦେହି ।୭୩।
କହନ୍ତେ ଶ୍ରୀକୃଷ୍ଣ ଯେ ବୁଝିଲେ ମହାଗରୁ
ଅସତକ୍ଷେପ ବଚନ ତୋହୋର କେହୁ ପ୍ରତେକରୁ । ୭୪ ।
ସଇରନ୍ଧ୍ରୀ ବୋଇଲେ ଗୋ ସନ୍ନିଧେ ତାହାକଇଂ ଖଟି ସେବା
ପଞ୍ଚଭୂତ ଆତ୍ମା ମୁଂ ତାହାଂକ ପ୍ରିୟଭାବା । ୭୫ ।
ସ୍ୱେସନେକ ଅଭିନ୍ନ କରି ସେ ଦେଖଇ ମୁକୁଇଂ
ସେ ଯେହ୍ନେ ଦ୍ରୋପଦୀ ପ୍ରତକ୍ଷେ ଅଟେ ମୁହିଂ । ୭୬ ।
ସନ୍ନିଧେ ଖଟଣି ସେବା ନାମ ମୋର ସଇରନ୍ଧ୍ରୀ
ଅଲେଖ ଉଲେଖ କରଇ ତତ୍ତ୍ୱସମ ଲାଗି । ୭୭ ।
ସ୍ୱାମୀର ଅଧମ ପଣେ ପଶାକ୍ରୀଡ଼ା ହୋନ୍ତେ
ରାଜ୍ୟଭାର ସମ୍ପଦ ସେ ହାରିଲେ ସପୋନ୍ତେ । ୭୮ ।
ବଚନ ଅଲଂଘିତେ ହୋଇଲେ ବନଗାମୀ
ଶବଦେକ ଶୁଭିଲା ଭୁମ୍ଭ ରାଜ୍ୟକଇଂ ଅଇଲେ
ଯୁଧିଷ୍ଠିର ଦେବସ୍ୱାମୀ । ୭୯ ।

---

୭୦।୨ ପଞ୍ଚୁଧନେ ଅନଳେ କାସ୍ୱା ଦହଇ ବକୋଧ ।—ଷ,ଧ
୭୯।୧ ସତ୍ୟ ପ୍ରତପାଳ ହୋଇଲେ ବନଗାମୀ ।—ଚ,ଛ,ଗ
୭୯ { ବର୍ଗୃରଲ ରାଜ୍ୟେ ତୋର ଅଇଲେ ଦ୍ରୋପଦୀ
ଗେଡ଼ାଇ ଅଇଲ ମାଗୋ ବଚନ ସଗଢ ।—ଝ,ଟ }

ମୁହିଂ ବସୁଥିଲି ଦ୍ରୌପଦୀ ସିଂହେନାହିଂ କ ବିରାଟ ରାଜ୍ୟକୁ
ଗୋଡ଼ାଇ ଅଇଲ ମାଗୋ ଅନିବାରଣ ଶବଦକୁ । ୮୦ ।
ମାଗୋ ଦେଖିଲି ବିବେକ ଧାର୍ମିକ ତୋହୋରକ ଇଚ୍ଛା
ସେ ନିମନ୍ତେ ତୋର ରାଜ୍ୟେ ରହିତେ କଲି ଇଚ୍ଛା । ୮୧ ।

ମାଗୋ ତୁହି ଶ୍ରୀକୃଷ୍ଣା ଗ୍ୟାନବନ୍ତ ଦେହୀ
ଶୁଣି ଅଛୁନା ତୋହୋର କଥା ସଙ୍ଗତହିଂ । ୮୨ ।

ଶ୍ରୀକୃଷ୍ଣା ବୋଇଲେ ଯେବେ ମୋହୋର ଭାଗ୍ୟ ଥିବ
ତୁମ୍ଭେ ମୋହୋର ଭୁବନେ ସମସ୍ତେକେ ରହିବ । ୮୩ ।
ମୋହୋର ସ୍ତୁର ପାମଶ ଦ୍ରୌପଦୀଂକ ଦେଖିବଇ କାହିଂ
ଝଣ୍ଡ୍ରଇ କନା ଦୁରପଦ ମୁଂ ତୁମ୍ଭର ମୁଖ ଚାହିଂ । ୮୪ ।

ମାଗୋ କଥା ପୁଚ୍ଛିବି ତୋତେ ମୁଂ ହୋଇବି କଟାଳ
ସର୍ବଗୁଣେ ସାଧବୀ ମାଗୋ ମୁକୁଳ କଂପେ ବାଳ । ୮୫ ।
ସଇରନ୍ଧ୍ରୀ ବୋଇଲେ ମୋହୋର ଦାଅରେ କଲି କଳି
ଭୁଛନା ବୋଲି ମୁହିଂ ତାହାରେ ବହୁତ ଦଲି ଗାଳି । ୮୬ ।

ସହି ନୁଆରିଲା ସେହି ମୁରୁଖ ଚଣ୍ଡାଳ
ଆନ୍ଦେଷିଣ ବାମଭୁଜେ ଧଇଲା ମୋର ବାଳ । ୮୭ ।
ତେଣୁକରି କେଶ ମୋର ହୋଇଲା ମୁକୁଳ
ରାଗେଣ ନ ବାନ୍ଧିଲି ମୋହୋର କଇଚ୍ଛା ଅଙ୍ଗୁଳି । ୮୮ ।

ଶ୍ରୀକୃଷ୍ଣା ବୋଇଲେ ତୋର କେଶ ଯେ ମୁକୁଳିତ
ବନ୍ଧନ ନ କଲେ ପୁଣ ହୋଇବ କେମନ୍ତ । ୮୯ ।
ସଦ୍ଭାବ ହୋଇ ଶୁଣ କହଇ ମୁଂ ତାହା
ମୋହୋର ସ୍ୱାମୀ ହାଥେ ଉପୁଡାଇବ ଜେନ ତାର ବାହା । ୯୦ ।
ତାହାର ଭୁଜ ଶୋଣିତେ ପଖାଳିବ ମୋହୋର କେଶ
ତେବେ ସେ ବନ୍ଧନ କରିବି ମୋହୋର ସତ୍ୟ ବଚନ ପ୍ରକାଶ ।୯୧।

ଶୁଣିଣ ଶ୍ରୀକୃଷ୍ଣାର ଯେ କର୍ଣ୍ଣିଲା ଲଲାଟ ପାଟି
ବୋଇଲା ସୁଶିଖମାନ ହୋଇ ସ୍ନେହେ କଇଛା ଜଗଜ୍ଜେଠୀ । ୯୨ ।

ଶ୍ରୀକୃଷ୍ଣ ବୋଇଲେ ସ୍ୱେ ମୋହୋର ସଖ୍ୟ ସମସ୍ତେକ ରହିଲେ
ତୋତେ ପୁଣ ଭଗତି କରି ନୋହଇ ମୋହୋର ହେଲେ । ୯୩ ।
ସୋଦର ଝିଅରଂକ ଯାହାର ସ୍ନେହେକ କଇଛା
ନପୁଣ ଭାଇନ୍ତ ମୋହୋର କରି ନୁଆରଇ ରକ୍ଷା । ୯୪ ।
ସଇନ୍ଧ୍ରୀ ବୋଇଲେ ଗୋ ଯେ ସେ ଠାକୁରାଣୀ
ଦ୍ରୌପଦୀ ଶ୍ରୀକୃଷ୍ଣ ତୁମ୍ଭେ ହୋ ସ୍ନେକଆମ୍ଭ ଜାଣି । ୯୫ ।
ଯେ ସେ ସେବକ ଗୋ ସେ ସଭ୍ୟଂକରି ଅଟଇ ଭୃତ୍ୟ
ଠାକୁରାଣୀ ପଦ ମାଗୋ ବଡାଇ ମହତ । ୯୬ ।
ଅଲେଖ ତଲେଖ ବେଶ ଭୂଷଣ ଗୋ କରଉଥିବ ନିତି
ଚରଣ ଲାଗି ତୁମ୍ଭଂକୁ କରିବା ଯଥାପ୍ରୀତି । ୯୭ ।
ସ୍ୱେକାମାନ କଥା ତୋତେ ମାଗଇ ମାସ୍ୱେଶ୍ୱରୀ
କଣ୍ଠିତ କଥା ସ୍ୱେ ସେ ଅଭ୍ୟର୍ଥନା ମୋହୋର । ୯୮ ।
ପ ଦ ପାଲଟା ଢଡିଷ୍ଟ ଗୋ ନ ଛୁଆଂଇବୁ ମାସ୍ୱେ
ଭୁଛନା ବୋଲ ନ ବୋଲିବୁ ଅଳପ କଥାସ୍ୱେ । ୯୯ ।
ସାମାନ୍ୟେଣ ନ ପେଷିବୁ ଅଦୋଷେ ନ କରିବୁ ତେଜ୍ୟା
ପୁରୁଷେ ନ ପେଷିବୁ ନ ଛୁଆଂଇବୁ ମୋତେ ଶେଯ୍ୟା । ୧୦୦ ।
ସ୍ୱେ ଛଡଗୋଟି କଥା ମାଗୋ କରିଥିବ ଦୃଢ
ଅନେକ ଧର୍ମ ଉପୁଜିବ ବଚନ ମୋର ଗାଢ । ୧୦୧ ।
ଶ୍ରୀକୃଷ୍ଣ ବୋଇଲେ ଗୋ ମୋହୋର ବଚନ ପୂରେ ଥିବା
ତୁମ୍ଭର ଭ୍ରଥା ଅଛନ୍ତ କାହ୍ନଂ ଗୋ ମୋତେ ତା କହିବା । ୧୦୨ ।

---

୯୩।୨ ତୋତେ କ ଭଗତ ହୋଇ ନ ପାରି ମୋହୋର ହେଲେ ।– ଧ,ଣ
୯୬।୨ ସମସ୍ତ ଗନ୍ଧଚନ୍ଦନ ମୁଂ କରିପାରି ସ୍ନେକପ୍ରତ ।—ଛ,ଘ,ଣ
୯୭।୨ ଯଥାପ୍ରୀତ—ଯଥାପ୍ରତ ।
୯୯।୨ ଭୃସ୍ୱନା ନ ବୋଲିବୁ ମୋତେ ଦୃଢ ଯେ କଥାସ୍ୱେ ।—ଜ,ଖ
୧୦୧।୨ ବହୁତ ଧର୍ମ ଉପୁଜିବ ବାକ୍ୟ ହୋଇବ ତୋର ଦୃଢ ।—ଜ,ଖ
୧୦୧।୨ ବହୁତ ଧର୍ମ ଉପୁଜିବ ବାକ୍ୟ ହୋଇବ ତୋର ଗାଢ ।—ଗ,ଛ
୧୦୨।୨ ପତିବ୍ରତା ତୁମ୍ଭର ଗୋ ଯାଇଛା କରିବା ।—ଖ,ଣ,ଥ,ଠ

ସଇରନ୍ଧ୍ରୀ ବୋଇଲେ ମାଗୋ ମୁହିଂ ସେଥି ଥିଲେ
ଦେଖୁ ସିନା ସ୍ୱାମୀଙ୍କ ମୋହୋର ତୋହୋର ଇଚ୍ଛା କଲେ ।୧୦୩।
ଶ୍ରୀକୃଷ୍ଣା ବସୁରନ୍ତ ହୃଦଗତେ ପୂର୍ବର କଥା
ପୂର୍ବେ ମୋତେ ଯାହା କହିଛନ୍ତ ମୋର ମାତା ।୧୦୪।
ପାଣ୍ଡବେ ଗୋପ୍ୟରୂପେ ମିଳିବେ ସେହୁ ପୁଣି
ନଚେତ୍ ଦେଖିବୁ ତୁ ଦ୍ରୌପଦ କୁମାରୀ ।୧୦୫।
ଅଥବା ସେ ହୋଇବ ବୋଲି ହୃଦଗତେ ବସୁଣି
ନପୁଣ ହୁଅଇ ନିଜ ସେ ଦ୍ରୌପଦ କୁମାରୀ ।୧୦୬।
ଶ୍ରୀକୃଷ୍ଣା ବୋଇଲି ଗୋ ଥାଅ ନିତ୍ୟକର୍ମେ
ଯେତେକାଳେ ଉଦିତ ହୋଅଇ ତୋର ଧର୍ମେ ।୧୦୭।
ଶ୍ରୀକରେ ଶ୍ରୀକୃଷ୍ଣା ଯେ ଘେନିଲେ ଦିବ୍ୟଶାଢୀ
ଘେନସି ମାତା ଗୋ ବୋଲି ଊର୍ଦ୍ଧ୍ୱ ଭୁଜ କରି ଧରି ।୧୦୮।
ଶ୍ରୀକୃଷ୍ଣା ଶାଢୀ ଯେ ଯାଚନ୍ତ ଉପର ହାତେ
ହେଠମାତେ ଦ୍ରୌପଦୀ ଯେ ସୁମରଇ ଜଗନ୍ନାଥେ ।୧୦୯।
ସେ ଦେବ ଉପର ହାତେ ମୁଂ ଘେନମି ତଳ ହାତେ
ନ ପୁଣ କୋପ କରିବ ଶାଢୀ ନ ବାନ୍ଧିଲେ ମାଥେ ।୧୧୦।
ତଳ ହାତେ ଶାଢୀ ଯେବେ ବାନ୍ଧିଲେ ଶିରେଣ
ନଚେତ୍ ସେହୁର ମୁଂ ହୋଇବ ଭୃତ୍ୟପଣ ।୧୧୧।
ହେ ହରି ! ଶାଢୀ ଯେବେ ପୁଣ ଶିରେ ନ ବାନ୍ଧିଲେ
ନ ପୁଣ ଜାଣଇ ସେ ବନୋସ୍ଥି ନୋହିଲେ ।୧୧୨।

---

୧୦୪।୨ ପୂର୍ବେ ମୋତେ ଯାହା କହିଛନ୍ତ ବିଧାତା ।—ଛ, ଘ, ଭ

୧୦୫।୧ ଅଥବା ସେ ହୋଇବ କି ନ ହୋଇବ ହୃଦଗତେ ବସଇ ।—ଚ, ଣ

୧୦୯।୨ ସେ ପୁଣ କୋପ କରିବ ଶାଢୀ ନ ବାନ୍ଧିଲେ ମାଥେ ।—ଗ, ଣ

ହରି ଭକ୍ତ ସେ ଜାଣୁନା ହୋ ସ୍ୱେଥିର ଚରିତ
ମୁହିଂ ଆଶ୍ରିତ ତୋହୋର ପାଣ୍ଡବେ ସିନା ତୋର ଭୃତ୍ୟ ।୧୧୩।
ତୋହୋର ବଚନେ ସିନା ଅଇଲ ବୈରାଟ ରାଜ୍ୟକୁ
ଭକ୍ତ ସ୍ୱେ ଧର୍ମ କଷଣୁଂ ପାରି କରସି ଦେବ ମୁକୁ । ୧୧୪ ।
ପୁରୁଷ ଉତ୍ତମ ତୁ ଲେଖ ଚକ୍ରପତି
ଶ୍ରୀକୃଷ୍ଣାର ହ୍ରଦ ବିକାଶୁ ଧର୍ମବାଟ ଗୋଟି । ୧୧୫ ।
ଭୃଗୁପାଦ ବକ୍ଷଭ ଚରଣେ ଅନୁବ୍ରତେ
ଶୂଦ୍ରମୁନି ସାରଳା ଦାସ ନମନ୍ତି ଶତେ ଶତେ । ୧୧୬ ।
ହରିନାମ ଯହୁଂ ହ୍ରଦଗତେ କଲେ ଲୟେ
ଶ୍ରୀକୃଷ୍ଣା ହ୍ରଦଗତେ ଯେ ନାରାୟଣ ବିଜୟେ । ୧୧୭ ।
ବିଶ୍ୱରେ ଶ୍ରୀକୃଷ୍ଣା ସ୍ୱେତ ଦ୍ରୋପଦୀ ସମାନ
ମୋର ଶାଢୀ ଦେବା ସ୍ୱାକୁ ନୋହଇ ବିଧାନ । ୧୧୮ ।
ଶାଢୀ କରେ ତୋଳଥିଲା ବିରାଟର ରାଣୀ
କରସ୍ଥକୁଂ ବେଗେ କାଢି ଥୋଇଲା ଅବନୀ । ୧୧୯ ।
ଆଗୋ ସଇରନ୍ଧ୍ରୀ ଅଟୁ ତୁମ୍ଭେ ମୋହୋର ରାଜ୍ୟେ ରାଜରେଖା
ମୁହିଂ କେମନ୍ତେ ତୁମ୍ଭଂକୁ ଶାଢୀ ଉପର ହାଥେ ଦେବ । ୧୨୦ ।
ଭୂମିରେ ଶାଢୀ ନେଇ ଥୋଇଲାକ ମହା ରାଜରାଣୀ
ନାରାୟଣ ସୁମରଣ ଘେନସି ମହାମାନୀ । ୧୨୧ ।
ଶ୍ରୀହରିଂକ ଲୟେକରି ଶାଢୀ ସେ ଘେନଲେ
ବିରାଟର ଅନ୍ତେଶ୍ୱରେ ସଇରନ୍ଧ୍ରୀ ହୋଇଣ ରହିଲେ । ୧୨୨ ।
ଲେକତ କର୍ମେଣ ଯେ ଶ୍ରୀକୃଷ୍ଣା ମହାଦେଈ
ବାରୁ ବନ୍ଧନ କରି ଭୃତ୍ୟପଣ କରିବନ୍ତି ସେହି । ୧୨୩ ।
ଯାଅ ଯା ବୋଲ ବୋଇଲେ ମୋତେ କରିବ ତ କୋପ
ମୋର ଭାଥେ ବୃତିବେ କ ଦେଖି ସ୍ୱେହାର ସରୂପ । ୧୨୪ ।
ସ୍ୱେହେନ୍ତେକ ଯୋଗ ଅଚ୍ଛୁ ମୋର ହାଦେ ପୂର୍ବେ
ଅବଶ୍ୟ ଭୁଞ୍ଜିବ ଯାହା ଅଜଅଚ୍ଛୁ କର୍ମେ ସ୍ୱେବେ । ୧୨୫ ।

କଥା ଗୋପ୍ୟାନ କଲେ ଆପଣା କୁଳ ଭୁଟଇ
ଉଦିତ କଲେ ମୂର୍ଦ୍ଧନା ଫାଟି ପ୍ରାଣଯାଇ । ୧୨୬ ।
କର୍ମ ଆଦରଣେ କର ରହିଲେ ଶ୍ରୀକୃଷ୍ଣା ମହାଦେବୀ
ରହିଲେ ସଇରନ୍ଧ୍ରୀ ଯେ ଶ୍ରୀକୃଷ୍ଣାଂକୁ ସେବି । ୧୨୭ ।
ଅଲେଖ ଡିଲେକ ଯେ କରନ୍ତ ଚତୁସମ
ଗୋପ୍ୟେଣ ଥାଆନ୍ତ ଅନ୍ତେଶ୍ୱରେ ନୋହନ୍ତ ଉତକର୍ମ । ୧୨୮ ।
। ୧୪୩୩ ।

———

## ନକୁଳଙ୍କର ବିରାଟ ସଭାକୁ ଗମନ

ବଇପୃଷ୍ଠ ଅଗସ୍ତି ଶୁଣ ବଇବସୁତ ମନୁ
ବିରାଟ ରାଜ୍ୟକୁ ଗମଇ ମାଦ୍ରୀଦେବୀ ତନୁ । ୧ ।

ଶିରେଣ ତଲାର ବାହେଣ ବାହୁଟି
ଦକ୍ଷିଣ ଭୁଜେ ପିଛ ବାମକରେ କାଠିଗୋଟି । ୨ ।

ବିନେକର୍ଣ୍ଣକଟାରଧେନ ତାଳୁରେ ବନ୍ଧବେଣୀ
ଉଙ୍ଗପାଟ ପରିହରଣ କଟିରେ ଚିରକୁଟି ଖଞ୍ଜଣି । ୩ ।

ବିଭୂତି ବିଲେପନ କର୍ଣ୍ଣେଣ ମନ୍ଦାର ଫୁଲ
ଅଖାଇଜ ଆପ୍ୟାନେ ଯେହ୍ନେ ମତ୍ତଭୋଳେ ଗୃଲ । ୪ ।

ଆକୁଞ୍ଚିତ କେଶ ମକରନ୍ଦ ତେଜ ପୁଞ୍ଜା
ତିହ୍ନଂକ ପ୍ରବନ୍ଧ ଯେ ଉଚିତ ସଞ୍ଜନୂଞ୍ଜା । ୫ ।

ତଉପମ ସଞ୍ଚିତ ଲଲାଟ ଶୁଦ୍ଧପାଟି
ଉପାଣ ପଦ ପ୍ରାପ୍ୟେକ ସୁପଞ୍ଚେଣ ଦିଟି । ୬ ।

ଆରକତ କୁମୁଦ ଜାଣି ଅବଲୋକନ ବେନିଆଖି
ଖଗବର ନାସିକା ସାରକ୍ଷେଣ ଉପଲେଖି । ୭ ।

---

୨।୧ ତଲାର – ମସ୍ତକ ଆଭରଣ, ଟୋପି ।
୨।୨ ବାମକରେ କମାଣ୍ଡେଣ ଗୋଟି ।—ଝ,ଟ
୩।୨ ଲଲାଟ ପାଟି ପାଟ ହରଣ ଖଣ୍ଡଣି ।—ପ,ଧ,ଣ,ଢ
୫।୨ ତିହ୍ନଂକ ପଟାନ୍ତର ଯେ ମର୍କତ ପାଖୁଡ଼ା ।—ପ,ଡ
୭।୨ ଖଗବର ନାସିକାସରୂପେଣ ରେଖି (ଦେଖି) ।—ଡ,ଜ,ଢ,ଝ,କ
{ ବିଭୂତି ଭୂଷଣ କର୍ଣ୍ଣେ ମନ୍ଦାର ପୁଷ୍ପ ଶୋହଇ ।
{ ମଦ୍ୟପ ଲୋକେ ଯେହ୍ନେ ମତ୍ତଭୋଳେ ଗୃଲଇ ।—ଦ,ଛ

ଅଧର ବର୍ଣ୍ଣ ଜାଣି ଶୋହଇ ପଂକ୍ତି ବିମ୍ବଫଳ
ଝଟକନ୍ତ ଦଶନପନ୍ତ ମଞ୍ଜୁଳ ଡାଳିମ୍ବ ବୀଜ ତୁଲ୍ୟ । ୮ ।
କଣ୍ଠସ୍ଥ ବର୍ଣ୍ଣ ଜାଣି ଗଣ୍ଡସ୍ଥଳ ବେନିପାଟି
ହରଣ ରେହ ଜାଣି ତଳଇ ଓଷ୍ଠଗୋଟି । ୯ ।
ଆଲୁଳିତ ଶ୍ରବଣ ଝଲକନ୍ତ ବେନିକନ୍ଧେ
ଗଜର ଥୋରହସ୍ତ ଜାଣି ଶୋଭିତ କରିବନ୍ଧେ । ୧୦ ।
ଭ୍ରମନ୍ତି ଭ୍ରମରେ ଯେ ମକରନ୍ଦ ବାସ ଲୁବ୍ଧେ
ଗଜ ଅଙ୍କୁଶ ମଝା ଜାଣି ଦିଶଇ ପ୍ରସିଦ୍ଧେ । ୧୧ ।
ମୃଣାଳ କୋମଳ ଜାଣି ପ୍ରଲମ୍ବ ବେନିବାହା
କଣ୍ଠସ୍ଥ ପଦ ଜାଣି ଘଟଣ ତାର ଦେହା । ୧୨ ।
ବିସ୍ତୀର୍ଣ୍ଣ ହୃଦସ୍ଥ ଯେ କଣକଲ୍ପ ଘଟଣ କୁଚ୍ଛି
କଇଥ ଥୋପ ପ୍ରାୟେକ ନାଭି ଶୋଭା ଦିଶୁଅଛି । ୧୩ ।
ବତିଶ ଲକ୍ଷଣ ତାର କମଳା କନ୍ଧେ ଅଛି
ହୁତାଶନ ନୁହଇ ଯେ ବିଶ୍ୱରୂପ ଦିଶୁଅଛି । ୧୪ ।
ବିହମକେଶରୀ ଜାଣି ଗଗନର ଠାଣି
କଞ୍ଚିତ ସରୁ ମଝା ତାହାର ହରଡମ୍ବରୁ ଚିହ୍ନ ଜାଣି । ୧୫ ।
ଉଲଟ ରମ କଦଳୀ ଜାଣିଣ ଦିଶଇ ବେନିଜାନୁ
ବାଳଅର୍କ ପ୍ରାୟେକ ଦିଶଇ ଯେ ତନୁ । ୧୬ ।
ରକତ କୁମୁଦ ଜାଣି ଦିଶଇ ବେନି କରସ୍ଥଳୀ
କଞ୍ଚିତ ବିଦଂସିତ ଚମ୍ପକ କଢ଼ ଜାଣି ଦିଶଇ ଆଙ୍ଗୁଳି । ୧୭ ।
ଶୁଦ୍ଧ ସଫ୍ଟିକ ଜାଣି ଦିଶଇ ନଖରେଖ
ବିଜୁଳି ଦ୍ୟୋତିକନା ଜାଣି ଦିଶଇ ଅତିଖ୍ୟାତ । ୧୮ ।

---

୧୦।୧ ଆଲୋଳିତ ଶ୍ରବଣ ଲଳିତ ବେନି କନ୍ଧେ ।—ପ,ଥ

୧୦।୧ ଆଲୁଳିତ ଶ୍ରବଣ ତଳଇ ବେନିକନ୍ଧେ ।—ଚ,କ

୧୨।୨ କଣ୍ଠସ୍ଥ ପ୍ରତିମା ଜାଣି ଘଟଣ ଦିଶେ ହୁଆ ।—କ,ଚ,ଙ,ଥ

ଅଶୋକ ପୁଷ୍ପ ଜାଣି ଦିଶଇ ପାଦତଳ କାନ୍ତି
ପୋପେଇଲା ଝଲ ଜାଣି ଦିଶଇ ଦିବ୍ୟଜ୍ୟୋତି । ୧୯ ।
ଚନ୍ଦ୍ରସମ ସେବନ୍ତି ଜାଣି ଦିଶଇ ନଖପନ୍ତି
ପୃଥ୍ୱୀକି ଅଳଂକାର ପ୍ରାୟେକ ଦିଶଇ ନକୁଳର ମୂର୍ତ୍ତି । ୨୦ ।
ହସ୍ତିରୁ ଜଙ୍ଘତ ପାଗ କାଖେଣ ଶାଳପତ୍ର
କଣପୁ ଜଙ୍ଘତ ଲଂକଆ ଶୋଭିତ ବାମହାଥ । ୨୧ ।
ପାଟବନ୍ଧ ବାଖର ଯେ ସୁବର୍ଣ୍ଣର ବଳୟା
ହର ଅଇର ଜାଣି ସୁନ୍ଦର ହାର କ ଯୁ । ୨୨ ।
ଶୁକଳପାଟ ଚନ୍ଦ୍ରସମ ଲଲାଟ ଶୋଭିତଗୋଟି
ଗଳାରେ ମନ୍ଦାର ପୁଷ୍ପ ସୁସଞ୍ଜ ପ୍ରକଟି । ୨୩ ।
ଯେସନେକ ସୁନ୍ଦର ଯେ ମାଦ୍ରୀ ଦେଖାଇ ବଳା
କେଶସି ସାଉକ୍ଷେ ତାହାର ତେଜ ଅନର୍ଗଳା । ୨୪ ।
ଯେତିକା ପୁରୁଷେକ ସେ ସଂସାର ଜନ ମୋହି
ବିରାଟ ରାଜ୍ୟରେ ଖାଇ ଗୃଲନ୍ତେଣ ସୋହଇଂ । ୨୫ ।
ଆସ୍ଥାନେ ଥାଇଂଣ ବିରାଟ ଗୃହଂଇ ନିରେଖି
ବୋଇଲ କୋନ୍ତେ ଅନଙ୍ଗ ବଳଯେ କ ରଣିକ ଉପେଖି । ୨୬ ।
ବଇକୁଣ୍ଠ ତେଜିଣ କି ଅଇଲେ ଚକ୍ରପାଣି
ସୁସଞ୍ଜ ସୁନ୍ଦର ସେ ଗୃଲନ୍ତେ ସିଂହଠାଣି । ୨୭ ।
ବିରାଟେ ବଚନେ କୋନ୍ତେ ଅବଲୋକନେ ଦୃଷ୍ଟି
ଆସ୍ଥାନେ ଥାଇଂଣ ତାହା ଦେଖିଲେ ଯୁଧିଷ୍ଠି । ୨୮ ।
ହୃଦଗତେ ଚିନ୍ତିଲେ ସେ ଦେବ ଜଗନ୍ନାଥେ
ବିରାଟ ରାଜ୍ୟ ନକୁଳ ତ ହୋଇ ନୁଆରିବ ଗୁପତେ । ୨୯ ।

---

୧୯।୨ ବାଳଅର୍କ ତେଜ ପ୍ରାୟେକ କୁରୁଶାନ୍ତି ।—ଙ,ଛ,ଣ,ତ
୨୦।୨ ଯାଇ ପାଖୁଡ଼ା ପ୍ରାୟେ ଦିଶଇ ଲିଖପନ୍ତି ।—ଗ,ଘ,ଥ
୨୩।୨ କର୍ଣ୍ଣରେ ମନ୍ଦାର ପୁଷ୍ପ ସୁସଞ୍ଜ ଦେନଗୋଟି ।—ଣ,ଫ,ଛ
୨୪।୨ କେଶସି ଗମନ ଜାଣି ଗୃଲଇ ଅବନୀଳା ।—ଘ,ଛ,ଜ,ଦ
୨୪।୨ କେଶସି ମସ୍ତଙ୍କ ଶିରେ କରେ ଯେହ୍ନେ ଲୀଳା ।—ଧ,ପ
୨୬।୧ ତହୁଂ ଅନ୍ତର ଯେ ନୋହଇ ଦୁତୀ ବାଣୀ ।—ଝ,ଣ,ଥ

ଲକ୍ଷଣ ଆକାର ଯେହ୍ନେ ଦ୍ୱାର ଥାନପାଳ ରୂପ
ପ୍ରତକ୍ଷେ ଦିଶୁଅଛ୍ଛି ଅନଙ୍ଗ ସରୂପ । ୩୦ ।
ବାବୁରେ ଭ୍ରମୁର ଆପାଦ ଘେନ ମୂର୍ଦ୍ଧା ଯାଇଂ
ହାଥର ମୁଠେ ପଶା ଖେଳିଲ ଭ୍ରମନ୍ତ ଅବସ୍ଥା ଦେଇ । ୩୧ ।
କୁମାର ମୁଖେ ପାଟଅଛ୍ଛି ଯାହାକୁ ଆକାଶ ମଣ୍ଡଳେ
ସେ ସୋହୋଦ୍ର ଭଣ୍ଡ ଆସି ବିରାଟ ସଭାତଳେ । ୩୨ ।
ଧିକ ଧିକ ହୋଉ କଳା ମୋତ୍ର ଯେହ୍ନେ ଧାର୍ମିକପଣ
ଯେହ୍ନେତେବଡ ସମ୍ପଦ ମୁଂ ହରାଇଲି ଅକାରଣ । ୩୩ ।
ହେ ଦଇବ ପୁରୁଷ ତୁ କଲୁ ସିନା ଯେହ୍ନେତେ ଗତି
କୁନ୍ତମୁନେ ହସାଇଣ ଧରିପାରଇ ଯେ ପୃଥୀ । ୩୪ ।
ସୁକୁମାର ସୁନ୍ଦର ଶରୀର ସୋହୋଦ୍ର ବଳବନ୍ତା
କେବଣ ଦୋଷେ ଶାସ୍ତିରେ ବହିଲ ବିଧାତା । ୩୫ ।
ଗୁପତ ନାମନ୍ତେଣ ଶାଉସ୍ତ ତୋର କାଯେହ୍ନେ
ହୀନଶାଯେଂ ଦିଶୁଛୁ ତୁ ପୃଥୀକି ଅଳଂକାର ପ୍ରାଯେହ୍ନେ । ୩୬ ।
ଆରେ ଆରେ ଅତଅନ୍ତ ସୁସଞ୍ଜ ଦିଶଇ ସୁଲକ୍ଷଣ ସୁନ୍ଦର ତୋର ତନୁ
ହେ ଭଗବାନ ଘଇକ ମୋର ବିରାଟ ନ ଚିହ୍ନୁ । ୩୭ ।
ଗମନେ ଲୀଳାଗତି ଗୃଳନ୍ତେଣ ଅତିବେଗେ
ଭଯେହ୍ନେଣ ସଇନ ଯେ ହୋଇଲେ ବେକଭାଗେ । ୩୮ ।
ଯୁଧେଷ୍ଠି ଦେଖିବେ ନାହାସ୍ଥଣେ ଚିନ୍ତଲେ ଯେତେବେଳେ
ନକୁଳ ପ୍ରବେଶ ବିରାଟ ଆସ୍ଥାନର ତଳେ । ୩୯ ।
ବିରାଟ କଟକ ସେ ବାମଅଙ୍ଗ ସାର ଦେଇ
କୋନ୍ତଂକର ମୁଖ ଗୃହ୍ନିଂ ପ୍ରଣପତ୍ୟ ହୋଇ । ୪୦ ।

---

୩୬।୨ ଯେହ୍ନେମନ୍ତେଣ ଦିଶୁଅଛୁ ଅମରାଧି ନାଥ ପ୍ରାଯେହ୍ନେ ।—ଦ, ଛ, ଜ

୪୦ { ବିରାଟ କଟକ ଆଗୋଇ ବାମଅଙ୍ଗ
କୋନ୍ତଂକ ମୁଖ ଗୃହ୍ନିଂ ପ୍ରଣପତ୍ୟ ଅତି ବେଗ ।— ତ,ପ,ଥ,କ,ଦ

ଜଡ ମହାପ୍ରସାଦ ବୋଲଣ ବୋଇଲ ବରାଟେ
ପ୍ରଣପତ୍ୟ ହୋଇଛୁ ବରାଟ ବୋଲେ ସେ ନ ଉଠେ । ୪୧ ।
ଯୁଧେଷ୍ଟି ବୋଇଲେ ମମ ଆଜ୍ଞାଂ ନ ପାଇଲେ
କଂପାଇଂ ଉଠିବ ସେ ବରାଟର ବୋଲେ । ୪୨ ।
କୋନ୍ତେ ବୋଇଲେ ଠାକୁରଂକ ଆଜ୍ଞାଂ ହେଲ ତୋତେ
ଉଠ ମହାତମା ହୋ ପ୍ରଣପତ୍ୟ ହୋଉ କେତେ । ୪୩ ।
ବରାଟ ବଚନେ ମଉନେ ପ୍ରଣପତ୍ୟ ହୋଇଥିଲ
କୋନ୍ତଂକର ଆଜ୍ଞାଂ ପାଇ ଧାଡକାରେ ଉଠେଲ । ୪୪ ।
ଦୂର ହୋଇ ନକୁଳ ରହିଲ୍ ପୁର ମେଣ୍ଡି
ବରାଟକୁ ନ ଗୃହ୍ନଂ ପ୍ରତଉତ୍ତର ଦଅଇ ଯୁଧେଷ୍ଟି । ୪୫ ।
ବରାଟ ବୋଇଲ ହୋ ଶୁଣସି ସୁନ୍ଦର
କାହୁଂ ଅଇଲୁ ତୁ କେବଣ ଦେଶେ ତୋର ଘର । ୪୬ ।
ଆମ୍ଭେ ଯାହା ପ୍ରକାଶିଲୁ ସରୂପେ ତୋତେ କହୁ
ସ୍ୱେ ମଧ୍ୟଭୁବନ ମଣ୍ଡଳର ତୁ ଯେ ନୋହୁ । ୪୭ ।
କଅବା ଅନଙ୍ଗ କଅବା ଗନ୍ଧର୍ବ ଚିତ୍ରସେନ
କ ଅବା କୁବେର ତୁ ବଶ୍ରବା ନନ୍ଦନ । ୪୮ ।
ବଡାଇ ଦୁଲଭ ଦେଖିଲୁ ତେହୋର ବଳବୀର୍ଯ୍ୟ
ତୋହୋର ରୂପ ଦେଖି ଆମ୍ଭେ ସମସ୍ତେ ହୀନତେଜ । ୪୯ ।
ନକୁଳ ବୋଇଲ୍ ମୁଂ ନୋହୋଇ ଦେବପୁତ୍ର
ପଚ୍ଛିମ ସଉରାଷ୍ଟ୍ର ହସ୍ତିନା ଜାଣୁ କ ହୋ ମହାନାଥ । ୫୦ ।
ତହିଂର ଠାକୁର ଯେ ଯୁଧେଷ୍ଟି ମହାରାଜ
ଭୀମସେନ ବୋଲଣ ତାହାଂକ ସାନୁଜ । ୫୧ ।
ଭୀମସେନ ଠାକୁରଂକର ଅର୍ଜୁନ ସାନଭ୍ରାଥ
ବାସବର ନନ୍ଦନ ସେ ହରିଂକର ପଞ୍ଚଭୂତ । ୫୨ ।
ଅର୍ଜୁନଙ୍କୁଂ ସାନୁଜ ଯେ ନକୁଳ କୁମର
ମାଦ୍ରୀଦେବୀର ନନ୍ଦନ ଯେ ବଡାଇ ସୁନ୍ଦର । ୫୩ ।

---

୪୫।୨ ବରାଟେ ନ ଗୃହ୍ନଂ ଯୁଧେଷ୍ଟିଂକ ପାଦେ ଦୃଷ୍ଟି ।—ଙ୍ଗ,ଘ

ନକୁଳର ସଖା ମୁଂ ଗ୍ରନ୍ଥିକାର ମୋର ନାମ
ତାହାଂକର ବନବାସେ ମୋହୋର ବନଭ୍ରମ । ୫୪ ।
ଶବରଦେବ ଶୁଭିଲା ତବ ରାଜ୍ୟକୁ ଅଇଲେ ଯୁଧିଷ୍ଠିର ଦେବସ୍ୱାମୀ
ସେହି ନିମନ୍ତେ ଶବଦକୁ ଗୋଡାଇ ଅଇଲୁ ଆମି । ୫୫ ।
ଦେଖିଲି ଧାର୍ମିକ ବିବେକ ଗୁଣବନ୍ତ
ମହୀଧର ଯୋଗେଶ୍ୱର ତୁ ଲକ୍ଷଣ ଭାଗ୍ୟବନ୍ତ । ୫୬ ।
ରାଜ୍ୟ ପରିମଳ ବଡ ସୁସ୍ତ ଭୂମି
ତେଣୁକରି ରହିବାକୁ ଇଚ୍ଛାକଲୁ ଆମି । ୫୭ ।
ବିରାଟ ବୋଇଲା ହୋ କସ ତୋର ସେବା
ଗ୍ରନ୍ଥିକାର ସ୍ଥାନପାଳ ମୁଂ ଶୁଣ ହୋ ରାଜଦେବା । ୫୮ ।
ବିରାଟ ବୋଇଲା ହୋ ଥାନପାଳ କେମନ୍ତ
ବାଜୀପାଳ ବୋଲି କହିଲା ସମସ୍ତ । ୫୯ ।
ଶୁଣିଣ ବିରାଟ ପୁଚ୍ଛେ କେମନ୍ତ ବାଜୀପାଳ
କୋନ୍ତେ ବୋଇଲେ ଯେ ସରୂପ ବାରୁଆଳ । ୬୦ ।
ଆହୋ ମହୀାଧିପ ଅଶ୍ୱକୁ ଯେ ବୋଲି ବାଜୀ
ଅଶ୍ୱ ପାଳନ୍ତା ଜନ ବାଜୀପାଳ ନାମ ସାଜ । ୬୧ ।
ବିରାଟ ବୋଇଲା ତୁ ଯେବେ ଅଟୁ ବାଜୀଧର
କି କି ଲକ୍ଷଣ ବାଜୀଂକର ଅଛୁ ଜାଣୁଛି କି ହୋ ମହାବୀର । ୬୨ ।
ନକୁଳ ବୋଇଲା ତୁ ଶୁଣସି ମହୀଇନ୍ଦ୍ର
ଅଶ୍ୱଂକର ଲକ୍ଷଣ ମୁଂ ଜାଣଇ ସର୍ବପଦ । ୬୩ ।
ବିକଟ ବିକରାଳ ବିକଟାଳ ବିଲୋପା ଧୋକଡା
ବାଭୁଆ କରିକଟା ବାଧକା କାମୋଡା ବିହଡା । ୬୪ ।

---

୫୫ { ଶବଦେକ ଶୁଭିଲା ଯୁଧିଷ୍ଠିର ଦେବେ ଅଇଲେ ବୋଲି
ସେ ନିମନ୍ତେ ଶବଦକୁ ଗୋଡାଇ ଅଇଲି ।—ଧ, ଟ, ଠ
ଙ, ଘ, କ

୫୬।୨ ମହୀଧର ଯୋଗେଶ୍ୱର ତୁ ଲକ୍ଷଣେ ଭାଗ୍ୟଂବନ୍ତ ।

ଅବକାର ମୁଖ ଗଣ୍ଡକ ପାଙ୍ଗୁଖ ଶିରଷ୍ଟ।
ବକଞ୍ଚ ରଣଭଙ୍ଗା ଯେ ମେହୁଆ ନନ୍ଦପୁଷ୍ଟା । ୬୫ ।
[redacted] ବାହିଲି ଯେ ତରକା ଅଣ୍ଡାଭଞ୍ଜା ଶଶୀକଳା
ତାଳୁକା କଂକାଳଭଞ୍ଜା ବରଳା ଜଳକା ପାଗଳା । ୬୬
ବଷ୍ଟ ପାଳୁଆ ଘୁଞ୍ଚା କାଉଂଶଆ ଆଂକୁଷ
ବାଡ଼ିହା ବରେହା କୁରୁପା ଆରୁହା କାଂକେଷ ଗଣ୍ଡଷ । ୬୭ ।
ଫାଲୁଆ ଷ୍ୱନ୍ଦୁଝିଷ ଚନ୍ଦକ ହକଞ୍ଚା କୁରଷ୍ଟା
ବରଂକା ଯୁଗଚନ୍ଦକା ପାଳୁଙ୍ଗା ବପଷ୍ଟା ହିପଷ୍ଟା । ୬୮ ।
ଯେତେ ଲକ୍ଷଣ ଯେ ଅଶ୍ୱଂକର ବ୍ୟାଧି
ମୋହୋର ଦ୍ରୁଶନେ ସମସ୍ତ ହୋଯେ ସିଦ୍ଧି । ୬୯ ।
ଯୋଦ୍ଧାଯେ ସମରେ ତେଜନ୍ତି ଯେବଣ ବାଜୀ
ମୋହୋର ସାଜଲେ ସେ ହୋଅଇ ମହାତେଜ । ୭୦ ।
ପ୍ରତଗ୍ୟାଂ ଗାଡ଼କର ସେ କହିଲା ବହୁତ କଥା,
ଶୁଣିଣ ଆଶ୍ଚର୍ଯ ହୋଇଲା ବଷ୍ଟ ମହାରଥୀ । ୭୧ ।
ମହୀଧିପ ବୋଇଲା ତୁ ଅଶ୍ୱିନୀ କୁମାର ଅଟୁ
ଅଶ୍ୱଲକ୍ଷଣ ବଦ୍ୟା ଜାଣି କମ୍ପେ ମାନବଣେ ଖଟୁ । ୭୨ ।
ନକୁଳ ବୋଇଲା ତୁ ଧାର୍ମିକ ବଳବନ୍ତ
ନାନା କର୍ମକୁ ସେ ମୋତେ ବର୍ଜିତ କଲାକ ବଧାତା । ୭୩ ।
ଆହୋ ବଷ୍ଟ କର୍ମର ବପାକେ ତବ ରାଜ୍ୟକୁ ଆସି
ବଅ ମୋତେ ପରମାଣ ନ ପାରୁ ଯେବେ ପୋଷି । ୭୪ ।
ବଷ୍ଟ ବୋଇଲା ତୁ ଯେ ନକୁଳ ବାରୁଆଳ
ମୁହିଂ ତୋତେ ଭେଟିଲି ମୋହୋର ଜୀବନ ସୁଫଳ । ୭୫ ।
ଦକ୍ଷିଣ ବଗବଜେ କର ରାଜାନ୍ତ କାଲା ସାଧି
ମହାବଳବନ୍ତ ବାନା ତାର ଜଗତେ ପ୍ରସିଦ୍ଧି । ୭୬ ।

---

୬୯।୨ ମୋହର ଦ୍ରଶନେ ସମସ୍ତେ ହୋଯେ ସାଧି ।—ଙ, ଛ, ଅ
୭୫।୧ ବଷ୍ଟ ବୋଇଲା ତୁ ଯେ ନକୁଳ ସ୍ଥାନପାଳ—ଘ, ଟ, ଜ, ଗ
୭୫।୨ ମୁହିଂ ତୋତେ ଭେଟିଲି ମୋରେ କର୍ମର ସୁଫଳ ।—ବ, ଘ, ଟ

ବାବୁ ତୁ ଯେ ବୋଇଲୁ ସକଳ ବାଜୀ ସାଧ୍ୟ କରଇ ମୁହିଁ
ବାବୁ ମହାଦ୍ଭୁଭାର ଅଶ୍ୱ ମୋହୋର ଗୋଷ୍ଠାଧ୍ୟେ ଅଛଇ । ୭୭ ।
ତାହାଲ ଦେଶର ରାଜା ଆଣି ଦରଶନ ଦେଲ ମୋରେ
ଦ୍ରୈଖାର ରାହୁତମାନେ କେତେକ ତାର ଯାଇ ନୁଆରନ୍ତ ତରେ । ୭୮ ।
ମୁଖେ ପାଞ୍ଚ ବଗଡ଼ି ଗୃହପାଦ ଛନ୍ଦ
ଠାବରେ ଘାସପାଣି ଦଅଇ ରାଜ ଦବସେ ଥାଇ ବାନ୍ଧ । ୭୯ ।
ବଶ ଦେବାକୁ କେହି ନ ଯାଇପାରନ୍ତି ତାର କତ
ହାମ୍ଭୋଡ଼ିଣ ତାହାର ଶରୀର ବଢ଼ାଇ ଧାନ୍ତ । ୮୦ ।
ପାଦର ଖୁରା ତାର ପ୍ରଶୁ କୁଠାର ସିନା
ଦନ୍ତ ତାର ଶାବେଳୀ ପ୍ରାୟେକ ଖଣ୍ଡମୁନା । ୮୧ ।
କଟାକ୍ଷ ନୟନେ ଗୃହ୍ବିଂଲେ କରନ୍ତି ସର୍ବେ ମହାଖିଞ୍ଚ
ଗଜତମଧ୍ୟେ ମତ୍ତ ନ ଯାନ୍ତି ତାର କତ । ୮୨ ।
ଧନ ଲୁବୁଧେ ଯେ ତାର କେତେକ ଗଲ
ପାଦର ପ୍ରହାରନ୍ତେ କେତେଜଣ ମଲ । ୮୩ ।
ପେଲିଲେ ନ ଚଳଇ ଫେଇଲେ ଯାଇ ଉଡ଼ି
ପର୍ବତ ଡିଙ୍ଗର ନ ଜାଣଇ ଅଗାଦ ଜଳେ ପଡ଼ଇ ବୁଡ଼ି । ୮୪ ।
ସେ ଅଶ୍ୱଗୋଟି ଯେବେ ଦେଇପାରୁ ସାଧି
ଜାଣିମା ନା ପରୀକ୍ଷେ ତୋର ସର୍ବକାର୍ଯ୍ୟ ସିଦ୍ଧି । ୮୫ ।
ବୋଲଇ ଗ୍ରନ୍ଥିକାର ଆଣନ ଦେଖିବା ତୋର ହସ୍ତେ
କେବଣ ଅବଗୁଣ ଦେଖିବା ହୋ ମହାରାଜ୍ୟେ । ୮୬ ।
ବିରାଟ ବୋଇଲା ସ୍ୱେଠାକୁ ପାରିବୁ ଯେବେ ଆଣି
ତୋହୋର ବୋଲେ ସାଧ ହୋଇବ ସ୍ୱେଚ୍ଛାଷଣି । ୮୭ ।
ନକୁଳ ବୋଇଲା ମୋତେ ତୋର ଦେଖାଅ କନା ବାରାସ
ନେଇଣ ଦୂତମାନେ ଭେଟାଇଲେ ଅଶ୍ୱ । ୮୮ ।

---

୮୨।୨ ବଡ଼ ବଡ଼ ଯୋଦ୍ଧାମାନେ ନ ଯାନ୍ତି ତାର କଥ ।—ଦ, ଖ, ଠ

୮୭ { ବିରାଟ ବୋଇଲା ସ୍ୱେଠାବକୁ ତାକୁ କେହୁ ପାରେ ଆଣି
ଆଣି ପାରିଲେ ସାଧ ନୋହିଲା କଂପେ ପୁଣି ।—ଖ, ଣ }

ନକୁଳ ମୂର୍ତ୍ତି ଦେଖି ହସିଲ୍ଲକ ହସ୍ତେ
ନକୁଳ ସନ୍ନିଧେ ଯାଇଂ ଆଶ୍ୱାସନା କସ୍ତେ । ୮୯ ।
ବନ୍ଧନ ଦଉଡ଼ିମାନ ସମସ୍ତ ହୁଗାଳ
ମୁଖରେ କଳୀଆର ଯେ ଲଭଇ ଗାର ଚୋଳ । ୯୦ ।
ଆସ ଆସ ବୋଲନ୍ତେ ନକୁଳ ଯାଇ ଆଗେ
ପଛେଣ ବାଗସ ଯେ ଗୋଡାଇ ଅନ୍ତବେଗେ । ୯୧ ।
ନକୁଳ ପ୍ରବେଶ ଯେ ଅସ୍ଥାନର ଛଳେ
ଦେଖିଣ ଚମତ୍କାର ହୋଇଲେ ସକାଳେ । ୯୨ ।
ଗ୍ରନ୍ଥିକାର ବୋଇଲ୍ଲ ସ୍ଥାନପାଳ ଭୃତ୍ୟର ନାଂହ୍ବ
ଅଶ୍ୱ ଲକ୍ଷଣ ବଦ୍ୟାମାନେ ହାଦେ ନ ଜାଣନ୍ତି କେହ୍ବ । ୯୩ ।
ଗୃଣଖୁର୍ ଧବଳ ମୁଖରେ ଗୃଳଫୁଟି
ଶ୍ୱେତବର୍ଣ୍ଣ ଚୂଳ ବଦନେ ଯାସ୍ତେ ଲୋଟି । ୯୪ ।
କର୍କଶ ନୟନ ଯେ ବଦାରଣ ମୁଖ
କୃଷ୍ଣବର୍ଣ୍ଣ ରୋମାବଳୀ ଉର୍ଦ୍ଧ୍ୱର୍ଗ ଭ୍ରମର ସାରକ୍ଷ । ୯୫ ।
ଚାଟ ବାଟ ଅଙ୍ଗୁଳି ପାଦଛନ୍ଦା ଡାକେ
ଲଗିଲ୍ଲ କାଣୀରସ ନକୁଳର ହାକେ । ୯୬ ।
ନାଳ ପାଳ ଚାଳ ଛନ୍ଦନ୍ତିଂ ସ୍ବେକଛନ୍ଦେ
ବରାଟକୁ ବୋଇଲ୍ଲ ଅଶ୍ୱ ଲଗି ହୁଅ ହ୍ୱେବେ । ୯୭ ।
ବରାଟ ବୋଇଲ୍ଲ କୋନ୍ତେ ସାଧୁ ସାଧୁ ବାଜୀପାଳ
ହୃଦଗତେ ଆଭରଣ କଲ୍ଲ ଆପଣା ରତ୍ନମାଳ । ୯୮ ।
ଶ୍ରୀଭୁଜେ ଆଲିଙ୍ଗନ କରିଣ ମତ୍ସ୍ୟନାଥେ
କଣସ୍ଥ ବରଷଲ୍ଲ ନେଇ ଗ୍ରନ୍ଥିକାର ମାଥେ । ୯୯ ।

---

୮୯।୨ ନକୁଳ ସନ୍ନିଧେ ଯାଇ ଆଶ୍ୱାସଇ ତାର କାସ୍ତେ ।—ଘ, ଙ, ଦ, ଠ
୯୦।୨ ମୁଖରେ କଳଆସ୍ତ ଦେଇଂ ଆଣିଲ୍ଲା ଗାର ଚୋଲି ।—ଟ, କ, ଗ
୯୫।୨ କୃଷ୍ଣବର୍ଣ୍ଣ ରୋମାବଳୀ ଉର୍ଦ୍ଧ୍ୱର୍ଗ ସାରକ୍ଷ ।—ତ, ଖ, ଡ, ଧ, କ, ଘ
୯୬।୧ ଚାଟ ବାଟ ଅଗଳତ ପାଦପଦ ବାକ୍ୟେ ।—ଗ, ଞ୍ଜ

ଅଶ୍ୱ ପିଠିରେ ଯେବେ ଆରୋହ ବାଜୀପାଳ
ବୋଇଲା ଦେଖିବାନା ତୁରଙ୍ଗମ ଶେଖାର ଯତ୍‌ନଳ । ୧୦୦ ।
ଗ୍ରନ୍ଥିକାର ବୋଇଲା ବିରାଟ ବଡ ସୁସଜ୍ଜ ସ୍ୱା ଜାନୁ
ମୋହୋର ଲାଗି ହୁଅନ୍ତେ ନାଶଯିବ ଯେହାର ତନୁ । ୧୦୧ ।
ବିରାଟ ବୋଇଲା ତୁ ଯେ ଗଲୁ ଯେହାର ପାଶ
ମୋହୋର ରାଜ୍ୟ ଲୋକଂକର ତ ନୋହିଲା ଭରସା ସାହସ । ୧୦୨ ।
ତୋହୋର ମନରେ ବାବୁ ନକର କଛୁ ବାଧା
ଯେହାର ଧାପକୁ ମୋର ରାଜ୍ୟ ଲୋକଂକ ଶରଧା । ୧୦୩ ।
ଗ୍ରନ୍ଥିକାର ବୋଇଲା ରାଜା ମୋହୋର ନାହିଂ କଛୁ ଦ୍ରୋହ
ବିରାଟ ବୋଇଲା ବାବୁ ଅଶ୍ୱ ବହନ ଆରୋହ । ୧୦୪ ।
ପିଠି ହାମ୍ଫୋଳଣ ବାଜୀପାଳ ସାଇଂ ଲାଗି
ଚଢିବା ମାତ୍ରକେ ପବନହୁଂ ଅଶ୍ୱ କ୍ଷେପଇ ଅତି ବେଗି । ୧୦୫ ।
ଚକ୍ଷୁ ପିଛୁଡନ୍ତେ କ୍ଷେପଇ ଯେତେକ ଜନୁ ଣ
ଧାଡକାରେ ଅଶ୍ୱ ଆଣି ଟେକିଲା ତତକ୍ଷଣ । ୧୦୬ ।
ପୁଣି ଦେଖାଇଲା ଦକ୍ଷିଣ ଭାଗ ଭୂମି
କେତେକହିଂ ଯୋଜନେକ ଗମିଲା ହାଦେ ଭ୍ରମି । ୧୦୭ ।
ଯେକ ଘଡିକେଣ ବେଳ ଯୋଜନ ଧାପ
ପୃଥୀରେ ପାଦ ନ ପଡଇ କ୍ଷଣକେ ହୋଯେ ଗୋପ୍ୟ । ୧୦୮ ।
ସାଧୁ ସାଧୁ ବୋଲ ପ୍ରଶଂସନ୍ତି ବିରାଟ ଆଦ ସର୍ବ କ୍ଷତ୍ରୀ
ସାଧୁ ସାଧୁ ଗ୍ରନ୍ଥିକାର ଧନ୍ୟ ତୋ ଜୀବନ୍ତ । ୧୦୯ ।
ଆଗ୍ୟାଂ ପ୍ରମାଣେ ଯେ ଅଶ୍ୱପିଠି ଖାର ତେଜ
ପଡିଣ ପ୍ରାଣତ୍ୟାଜ ହୋଇଲା ସେହୁ ବାଜୀ । ୧୧୦ ।
ନକୁଳ ଦେଖନ୍ତେ ସେ ହୋଇଲା ସ୍ୱର୍ଗଗାମୀ
ଅଳକା ଭୁବନେ ଯାଇଣ ବିଶ୍ରାମି । ୧୧୧ ।
ଚଇତନ ପୁଚ୍ଛାକଲା ଶୁଣ ହୋ ମନୁଦେବା
ସେ ବାରୁସ ଚରିତ ଯେ ଅଟଇ ଅସମ୍ଭବା । ୧୧୨ ।

---

୧୦୨।୨ ମୋହୋର ରାଜ୍ୟ ଲୋକଂକ ତ ଗଲା ମନୁ ତ୍ରାସ ।—ଙ୍କ, ଗ, ଅ

ସନ୍ଦେହ ଲାଗିଲା ମୋତେ ଯେ ବାଇତା ଗୋଟି
ପୂର୍ବେଣ ସେ ମହାତ୍ମା କେ ହାଦେ ହୋଇଛି । ୧୧୩ ।
ଶୁଣ ହେ। ଚଇତନ ତୁ ଯାହା କଲୁ ପୁଚ୍ଛା
ପ୍ରସ୍ତାପ ବାକ୍ୟେ ଯାହା ଶୁଣିତେ କଲୁ ଇଚ୍ଛା । ୧୧୪ ।
ବୃନ୍ଦାଅର୍କ ନାମେଣ ସେ ଯେକଇ ସତ୍ୟଯୁଗେ
ମନଭେଘା ନାମେ ଇନ୍ଦ୍ର ବସଇ ସେ ହାଦେ ସ୍ୱର୍ଗେ । ୧୧୫ ।
ପାବଂଶର ନନ୍ଦନ ସେ କାମଦେବ କ୍ଷେତ୍ରପାଳ
ଆକାଶ ଦେବତୀ ତୁ କଲେ ରକ୍ଷାପାଳ । ୧୧୬ ।
ଅମର ଭୁବନେଣ ଇନ୍ଦ୍ର ତାଂକୁ ହେଲେ ଶାନ୍ତୀ
ଯେକାଦଶ ମଧ୍ୟେ କୋଟିଏ ବ୍ରହ୍ମାଣ୍ଡ ଯିବୁ ବେଢି । ୧୧୭ ।
ଆସ୍ଥାନର ଚଳେ କ୍ଷେତ୍ରପାଳ ପଡଇ ଗଡପାଲ ପ୍ରାୟେ
ବୋଇଲା ଆଦିତ୍ୟ ତନ୍ତୁଂ ମୋତେ ଦେବା ଅଶ୍ୱ ଯେ ଗୋଟାଏ । ୧୧୮ ।
ଅତଅନ୍ତ ବେଗି ଅଶ୍ୱ ମୁଂ ତାହାନ୍ତ ଦେଖିଲି
ସେହି ସେ ଦଣ୍ଡକେ କୋଟିଏ ବ୍ରହ୍ମାଣ୍ଡ ପାରଇ ବୁଲି । ୧୧୯ ।
ଇନ୍ଦ୍ର ବୋଇଲେକ ହେ। ଯାଅସି ତୁ ଅତିବେଗ
ଆମ୍ଭ ବୋଇଲେ ବୋଲି ଅଶ୍ୱ ଗୋଟିଏକ ମାଗ । ୧୨୦ ।
ଚଳଇ କ୍ଷେତ୍ରପାଳ ଦେବତାଂକ ବଚନେ
ପ୍ରବେଶ ହୋଇଲା ଯାଇ ହନଙ୍କର ଆସ୍ଥାନେ । ୧୨୧ ।
ମସ୍ତକେ ଶାନ୍ତୀ ଦେଖି ବୋଇଲେ ଅଂଶୁମାଳୀ
ଆକାଶ ଭୁବନେ ତୁ କ ହୋଇଲୁ ରକ୍ଷାପାଳୀ । ୧୨୨ ।
କ୍ଷେତ୍ରପାଳ ବୋଇଲା ହେ ସ୍ୱାମୀ ମୋତେ ଆଜ୍ଞାଂ ହେଲେକ ମଘବା
ଯେକା ଦଣ୍ଡକେ କେମନ୍ତେ ବୁଲିବ ସ୍ୱର୍ଗ ଅବା । ୧୨୩ ।
ସ୍ୱାମୀ ପ୍ରଥମ ଅନକୂଳ ମୋର ଆଜନ୍ମଂ ବଜେସ୍ତୁ
ତୋହୋର ତନ୍ତୁଂ ଦେବା ମୋତେ ଅଶ୍ୱ ଯେ ଗୋଟିଏ । ୧୨୪ ।
ଗଗନେ ଭ୍ରମି ଅଶ୍ୱ ଛୁଡିବ ଯେତେବେଳେ
ତତକ୍ଷଣେ ଅଶ୍ୱ ଲଭିବେ ଗଗନ ମଣ୍ଡଳେ । ୧୨୫ ।

ରାତ୍ରେକେ ଭ୍ରମିଣ ମୋତେ ଦିବସେ ଦେବୁ ଆଣି
ତେବେ ସେ ମୁଂ ପୁଆଇଂ ପାରଇଟି ରଯ୍ନଣୀ । ୧୨୬ ।
ଅଶ୍ୱ ଅଶ୍ୱନ୍ତଂ ମୋର ଆନ ନାହିଂ ହୟେ
ଅତୁଳଇ ହୋଇଲେ ରଥ ତୁଲେଣ ନ ଯାୟେ । ୧୨୭ ।
ପାଣ୍ଡୁର ନନ୍ଦନ ପ୍ରତେ ଜପୁଜାଇ ଦିଗପାଳ
ତାହାଙ୍କୁଂ ଅଶ୍ୱେକ ଯେ ଫେଇଲା କ୍ଷେତ୍ରପାଳ । ୧୨୮ ।
ତାହାଣେ ଭୂରିଶ୍ରବା, ବୃଦ୍ଧଶ୍ରବା, ଉଚ୍ଚୈଶ୍ରବା, ସୁରଶ୍ରବା
ବାମେଣ କାଳମେଘା, ବଜ୍ରବାଣ, ମେଘନାଦ, ଅଶ୍ୱଶ୍ରବା । ୧୨୯ ।
ଯେ ଅଷ୍ଟଅଶ୍ୱ ମଧ୍ୟେ ମହାଅଶ୍ୱ ଭୂର
ଲକ୍ଷେକଣ ମାଡ଼ି ପଡ଼ଇ ତାହାର ଟାପୁ ଖୁର । ୧୩୦ ।
ସେ ଭୂରିଶ୍ରବାକୁ କ୍ଷେତ୍ରପାଳ ଘେନଗଲା
ଯାଆନ୍ତେଣ ଅରୁଣ ସାରଥି ବିରଞ୍ଚି ନାରାୟଣେ ବୋଇଲା । ୧୩୧ ।
ଅରୁଣ ବୋଇଲା ସ୍ୱାମୀ ତୁମ୍ଭେ ମନ୍ଦକୃତ୍ୟ କଲ
କ୍ଷେତ୍ରପାଳକଇଂ କାଂପେ ତୁମ୍ଭେ ଭୂରିଶବା ଅଶ୍ୱ ଦେଲ । ୧୩୨ ।
ଆଦିତ୍ୟ ବୋଇଲେ ସେ ଆକାଶ ଦଣ୍ଡୁ ଆସି
ଆଜ ରାତ୍ରେକ ଭ୍ରମି କାଲି ପ୍ରଭାତେ ବାନ୍ଧୁଡ଼ାଇ ଦେବସି । ୧୩୩ ।
ଅରୁଣ ବୋଇଲେ ଦେବ ନୋହଇ ଯେମନ୍ତ
ଜଣେକ ଆମ୍ଭର ତହିଂ ପେଶିବାକ ଦୂତ । ୧୩୪ ।
ତାହାର ଗୁଡ଼ିଲେ ସେ ଆଣୁ ଅଶ୍ୱଗୋଟି
ବଡ଼ାଇ ଦୁଲଭ ସେ ପାଇବା ଲେଞ୍ଚଟି । ୧୩୫ ।
ଦିନକର ନାଥ ଯେ ବୋଇଲେ ଅରୁଣକୁ
ବାମ ଭୂଜୁଂ ଜାତକଲେ ଯେକଇ ପୁରୁଷକୁ । ୧୩୬ ।
ସେ ପୁରୁଷକୁ ଦେଖି ବୋଇଲେ ଗଗନ ମଣ୍ଡଳେ
ଆରେ ନାମ ହୋଇ ତୋହୋର ଗୋରେହା କ୍ଷେତ୍ରପାଳେ । ୧୩୭ ।

---

୧୨୭ । ୨ ଅତୁଳ ହୋଇଲେ ଦନ ଅତୁଳେଣ ଯାୟେ ।—ଙ, ଥ
୧୨୮ । ୨ ତେବେ ତାଂକୁ ଆକଣରେ କଲେ କଟୁଆଳ ।—ଛ
୧୩୪ । ୨ ଜଣେକ ଆମ୍ଭର କଣ ପେଶିବାକ ଦୂତ ।—କ, ପ, ଚ, ଜ

ଆକାଶ ବୁଲି ଯେ ବେଳେ ଗୁଣ୍ଟିବ ବାସର
ଧାଡିକାରେ ଯାଇଣ ତୁ ଅଶ୍ୱକୁ ଘେନଆସ । ୧୩୮ ।
ବିରଞ୍ଚି ନାରାୟଣ ବୋଲେ ଗୋରେଦ୍ରା କ୍ଷେତ୍ରପାଳ ଚଳିଗଲା
କାମଦେବ କ୍ଷେତ୍ରପାଳ ସନ୍ନିଧେ ଯାଇଣ ମିଳିଲା । ୧୩୯ ।
ଗୋରେଦ୍ରା ବୋଇଲେ ମୋତେ ତୋହୋର ତତ୍ୱଂକ ପେଷିଲେ
କମଳକର
ରାତ୍ରକ ବୁଲି ତୁ ଅଶ୍ୱଗୋଟି ଦେବୁ ଯେ ଆମ୍ଭର । ୧୪୦ ।
କ୍ଷେତ୍ରପାଳ ବୋଇଲା ତୁ. ଥାଆସି ଆମ୍ଭର ପଛକତ
ଗୁଡିଲେ ଅଶ୍ୱକୁ ଘେନଯିମୁଂ ତୁ ତତକ୍ଷଣାନ୍ତ । ୧୪୧ ।
ଭ୍ରମଇ କ୍ଷେତ୍ରପାଳ ନଶୀ କଣ୍ଟୁଆଳ
ଭୁଲେଣ ତାହାର ଗୋଡାଇଅଛୁ ଗୋରେଦ୍ରା କ୍ଷେତ୍ରପାଳ । ୧୪୨ ।
ସ୍ୱେକା ରାତ୍ରକେ ବୁଲିଲା ସେ ତେତିଶ କୋଟି ପୁର
ଗୋରେଦ୍ରା କ୍ଷେତ୍ରପାଳ ଅଛଇ ତାହାର ସଙ୍ଗତର । ୧୪୩ ।
ରଜନୀ ପ୍ରଭାତ ହୋଇଲା ଅଶ୍ୱ ଚଡିଅଛୁ
ଆଦିତ୍ୟ ଉଦୟ ହୋଇଲେ ସାତ ଅଶ୍ୱ ଯୋଚ । ୧୪୪ ।
ଗୋରେଦ୍ରା ବୋଇଲା ମୋତେ ଦେଇକନା ହୟେ
ରାତ୍ର ପାହିଲା ଆଦିତ୍ୟ ହୋଇବେ ଉଦୟେ । ୧୪୫ ।
ସେ କ୍ଷେତ୍ରପାଳ ବୋଇଲା ମୁଂ ଆଦିତ୍ୟ ଦେବତାଂକୁ କହିଅଛୁ
ଗୁଡିଲେ ଅଶ୍ୱକୁ ନେମୁଂ ମୋ ଭୁଲେ ଥାଆସି । ୧୪୬ ।
ସତ୍ୟଯୁଗ ସତରିଲକ୍ଷ ଅଠାଇଶ ସହସ୍ର ବର୍ଷ ଗଲା
ଭୋଜନେ ଶୟନେ ଅଶ୍ୱ ହଦାରାଜେ ନ ଗୁଡିଲା । ୧୪୭ ।
ହନେକ ଅଶ୍ୱ ବାଗ ଧଇଲା ଗୋରେଦ୍ରା
ଆଦିତ୍ୟ ଦେବତାଂକୁ ରେ ତୁ ଭଣ୍ଡିଲୁ ଦୋରେଦ୍ରା । ୧୪୮ ।
କୋପେଣ କାମପାଳ ଅସିପତ୍ର ଧରି ହାଣି
ସେ ଗୋରଦ୍ରା କ୍ଷେତ୍ରପାଳର ଛୁଡିଲା ଦକ୍ଷିଣ ପାଣି । ୧୪୯ ।

---

୧୩୮।୨ ତାହାର ଗୁଡନ୍ତେ ସେ ଆସୁ ଅଶ୍ୱଘୋଟି । ଗ, ଙ୍କ, ଡ଼

କାମଦେବ କ୍ଷେତ୍ରପାଳ କୋପ ବିଘାତେଣ
ଗୋରେହା କ୍ଷେତ୍ରପାଳକର ହୋଇଲା ଖଣ୍ଡଣ । ୧୫୦ ।
ବିରଞ୍ଚି ନାରାୟଣଂକ ସନ୍ନିଧେ ପ୍ରବେଶ
ଅରୁଣ ବୋଇଲା ଦେବ ଦେଖ ଯେ ଭବିଷ୍ୟ । ୧୫୧ ।
କହଇ ଗୋରେହା ଯେ କର ଖଣ୍ଡଣ ହୋଇ
ମାଗନ୍ତେ ବାରାସ ଦେବ ନ ଦେଲା ଆମ୍ଭଂକୁହି । ୧୫୨ ।
ଛୋଡ଼ୋର ଆନ ପାଞ୍ଜି ଅଶ୍ଵବାଗ ଧଇଲ ଆଗିଆଣି
ଆକ୍ଷେପି ଅସିପତ୍ର ମୋଡ଼ୋର କର ହାଣି । ୧୫୩ ।
ତଣ୍ଡେହେଂ ନ ଗୁଡଇ ଦେବ ରାତ୍ର ଯେ ଦିବସେ
ଭୋଜନହିଂ କରଇ ବାରାସ ଉପରେ ସେ । ୧୫୪ ।
ଯେମନ୍ତେ ଅଶ୍ଵ ନ ଗୁଡଇ ନଚଳେ ସେ ଥାଇ
ଗୋରେହା ବଚନ ଶୁଣି ଅଶ୍ଵକଇଂ ମୁକ୍ତିଲେ ହାଦେ
ହିନକରସାଇଂ । ୧୫୫ ।
ବାମେଣ ଗୃହହସ୍ତେ ଡାହାଣେ ଭିନହସ୍ତେ
ଗମନ୍ତେଣ ଭୁଲ ଯେ ନ ପଡଇ ପାସ୍ତେ ଯେକଠାସ୍ତେ । ୧୫୬ ।
ଶରଦ ହେମନ୍ତ ଶିଶିର ବସନ୍ତ ଗ୍ରୀଷମ ବରଷା
ଯେ ଷଡଋତୁ ହେନଣ ଗମନ୍ତି ହାଦସ ମାସ । ୧୫୭ ।
ତିନଋତୁ ଗମନ୍ତେଣ ପୁଣ ହୁସ୍ତେ ଛଡମାସ
ଉତ୍ତରାୟଣ ଦକ୍ଷିଣାୟଣ ଯେ ବିଶେଷେ । ୧୫୮ ।
ଉତ୍ତରାୟଣ ଦକ୍ଷିଣାୟଣ ଯେକଭୁଲେ ଅବଧ
ବାହୁ ବୁହୁ କରଣ ହିଲେ ସେ ବାରାସ ମେଘନାଦ । ୧୫୯ ।
ବାହୁଣ ବିରଞ୍ଚି ଅଶ୍ଵ ହିଲେ କ୍ଷେତ୍ରପାଳ
ଯେତେକାଳ ଯାସ୍ତେଂ ଅଶ୍ଵ ନ ହିଲା ଗୃଣ୍ଡାଳ । ୧୬୦ ।
କେତେହନେ ଦେଖିଣ ଆହିତ୍ୟ ମହାରାଗେ
ମୋଡ଼ୋର ଅଶ୍ଵ ଭୁରେ ନ ଦେଇ କେଉଂ ବାଗେ । ୧୬୧ ।

---

୧୫୯।୨ ବାହୁଣ ବିରଞ୍ଚି ହିଲେ ଯେ ବାରାସ ମେଘନାଦ ।—ଅ, ଧ, ଜ୍ଞ

ଜଗତେ ମୀତେ ଖନା ହରିବା କେଉଁ ବାଗେ । ୧୬୨ ।
ଆରେ କାମଦେବ କ୍ଷେତ୍ରପାଳ ତୁ ସ୍ୱେଚ୍ଛେ କଂପେ ମନ୍ଦ
ମୋତେ ତୁ ଭଣ୍ଡିଣ ରେ ପାତଲୁ ହାଦେ କୂଟଛନ୍ଦ । ୧୬୩ ।
ମୋ:ହୋର ଅଶ୍ୱ ଯେ ନେଇ ନ ଦଲୁ ଅବିଶ୍ୱାସୀ
ସାଅରେ କ୍ଷେତ୍ରପାଳ ତୁ ଅଶ୍ୱେକ ହୋଇ ଜାତ ତୁଅସି । ୧୬୪ ।
ବିରଞ୍ଚିର ଶାପ୍ୟେ ସେ କାମଦେବ କ୍ଷେତ୍ରପାଳ
ଅଶ୍ୱେକ ହୋଇଣ ଜାତ ସ୍ୱେ ମର୍ତ୍ତ୍ୟମଣ୍ଡଳ । ୧୬୫ ।
ବଚନ ସମାର୍ଜଇ ମୃତ୍ୟୁମଣ୍ଡଳେ ଜାତହୋଇ
କେସନେକେ ପ୍ରତିକାର କରିବା ବିରଞ୍ଚି ଦେବସାଇଁ । ୧୬୬ ।
ଶୁଣିଣ ଦୟା କରିଲ୍ଲ କମଳ ଲୋଚନ
ଅଶ୍ୱ ହରଣ ଦୋଷେ ତୁ ହୋଇଲୁ ଦୂଷଣ । ୧୬୭ ।
ଅଶ୍ୱହୋଇ ରହିଥିବୁଟି ତୁ ପଞ୍ଚବଟୀ ବନେ
ତାଡାଳ ଦେଶର ରାଜା ଯିବାକ ବପୂନେ । ୧୬୮ ।
ତୋତେ ସେ ବନରୁ ବନ୍ଧନ କରିନେବ
ମହାରାଜା ବିରାଟକୁ ନେଇଣ ସମପବ । ୧୬୯ ।
ତୁ ପୁଣି ବିରାଟକୁ ହୋଇବୁ ଆସାଧ୍ୟ
ଅନେକ ଯତନେ ତୋତେ ନୁଆରିବେ ସାଧି । ୧୭୦ ।
ଆମ୍ଭର ନନ୍ଦନ ଯେ ଅଶ୍ୱିନୀ କୁମାର
ତାହାର ଅଂଶେ ଜାତ ହୋଇବ ନକୁଳ କୁମାର । ୧୭୧ ।
ଯେତେବେଳେ ପାଣ୍ଡବେ ଗୋପ୍ୟାନ ହୋଇବେ ବିରାଟେ
ନକୁଳ ପରୀକ୍ଷ ତୋତେ କରିବ ବଇରାଷ୍ଟ୍ରେ । ୧୭୨ ।
ପରୀକ୍ଷ କରିବ ତୋତେ ନେଇଣ ସଭାତଳେ
ମୁକ୍ତି ପାଇବୁ ତୁ କୁମାର କୁତୂହଳେ । ୧୭୩ ।
ଶୁଣ ହୋ ଚଇତନ ଅଶ୍ୱର ସ୍ୱେହେନେକ କଥା
ପୂର୍ବେ ଶାପ୍ୟ ବହିଲେ ସେ ଆଦିତ୍ୟ ଦେବତା । ୧୭୪ ।
ନବଯୁଗ ପରିଯନ୍ତେ ଅଶ୍ୱ ହୋଇଥିଲା
ନକୁଳ ଦରଶନେ ସେ ମୁକତ ଲଭିଲା । ୧୭୫ ।

ଗୋରେଖ କ୍ଷେତ୍ରପାଳ ଯେ ଖଣ୍ଡଣ ହୋଇଥିଲା
ହାଥ କଅଂଳ ହିରଣ୍ୟର ହୃଦରେ ସମ୍ଭାଇଲା । ୧୭୬ ।
ଜପୁ ତୁ କେଶୀ ବିଦାରଣ ଶ୍ରୀ ପୁରୁଷୋତ୍ତମ
କେଶୀ ନିପାତଣ କେଶବ ତୋର ନାମ । ୧୭୭ ।
ମଧୁ କଇଟଭ ମାରି ନାମ ମଧୁରିପୁ
ନାରକା ବିଦାରଣ ତୁ ନାରାୟଣ ସ୍ୱରୂପ । ୧୭୮ ।
କଂସ ନିଶୋଧନେ ତୁ ଶ୍ରୀକୃଷ୍ଣ ନାମଗୋଟି
ରାବଣ ନିଶୋଧନେ ରାମନାମ ପ୍ରକଟି । ୧୭୯ ।
ପୁଷ୍ପେକ ଦିମାନେ ଯେ ବିଜୟେ ଜନାର୍ଦ୍ଦନ
ତେଣୁକରି ନାମଗୋଟି ତୋର ପଦ୍ମ ଯେ ଲୋଚନ । ୧୮୦ ।
ରିଷିଂକର ରଖଲେ ନାମ ରିଷୀକେଶୀ
ବଳିକ ଛପିଣ ବାମନ ରୂପ ପରକାଶି । ୧୮୧ ।
ସ୍ୱାମୀ ଦୁରନ୍ତେକ ଦାନବ ଯେ ହିରଣ୍ୟ କଶିପୁ
ନୃସିଂହ ରୂପେ ତାର ବିଦାରିଲ ବପୁ । ୧୮୨ ।
ଜଗତ ଉଦ୍ଧାରଣେ ଜଗନ୍ନାଥ ନାମଗୋଟି
ତବ ପାଦପଦ୍ମ ତଳେ ମୋହୋର ଶିର କମଳ ଲୋଟି । ୧୮୩ ।
ମୁହିଂ ତେ ହୋଇ ନାମ ହୃଦଗତେ କରଇ ଅଭ୍ୟାସ
ବଦପୁଣ୍ଡ ଶୂଦ୍ରମୁନି ସାରଳ ଚଣ୍ଡୀ ଦାସ । ୧୮୪ ।

। ୧୭୧୭ ।

———

୧୭୯।୧ କଂସ ନିଶେଧନେ ରୁ କହ୍ନାଇ ନାମ ପ୍ରକଟି ।— କ, ଗ, ଣ, ଢ଼, ଟ, ଡ

୧୭୯।୨ ତବ ପାଦପଦ୍ମ ସୁରଭି ହୃଦରେ ମୋର ଫୁଟି ।— ଣ, ଡ, ଝ

୧୭୯।୨ ତବ ପାଦପଦ୍ମ ହୃଦେ ମୋର ଘୋଟି ।— ଝ, ଛ

୧୮୧।୧ ରିଷୀକେଶୀ— ହୃଷୀକେଶ !

## ସହଦେବଙ୍କର ବିରାଟ ସଭାକୁ ଗମନ

ଅନ୍ତଅନ୍ତ ସାନନ୍ଦେ ସେ ମତ୍ସ ଅଧିକାରୀ
ବିରାଟ ବୋଇଲେ ବାଜୀପାଳକୁ କୋନ୍ତେ ଦିଅ ଶାଢ଼ୀ । ୧ ।
କୋନ୍ତେ ତୁମ୍ଭେ ଯେ ମୋହୋର ଆସ୍ଥାନେ ଅଧିକାରୀ
ତୁମ୍ଭ ହାଥେ ଶାଢ଼ୀ ଦେବା ଯଥାର୍ଥ ବିଚାରି । ୨ ।
ଶ୍ରୀନାରାୟଣ ସ୍ମରଣ ପ୍ରସନ୍ନେ ଧର୍ମରାଜାର ତନୟେ
ଆପଣେ ଯୁଧିଷ୍ଠି ବାଜୀପାଳପଣେ ନକୁଳକୁ ଶାଢ଼ୀଦିଅୟେ । ୩ ।
କେଶବର ନାମ ଧରନ୍ତେ ହୃଦଗତେ
ମଥାରେ ଶାଢ଼ୀ ବାନ୍ଧି ନକୁଳେ ପ୍ରଣପତେ । ୪ ।
ଅଶ୍ୱଶାଳେ ବିଜେକଲେ ମାଦ୍ରୀଦେବୀର ସୁତ
ଅଶ୍ୱମାନେ ଦେଖିଣ ଘୁଞ୍ଚିଲେ ଦୁଷ୍ଟକୃତ । ୫ ।
ଯେବଣ ଅଶ୍ୱେ ବୃଦ୍ଧ କ୍ଲେଶୀ ହୋଇଥିଲେ
ନକୁଳ ଦ୍ରଶନେ ସେ ଉଚ୍ଚୈଶ୍ରବାର ତୁରଙ୍ଗମ ହୋଇଲେ । ୬ ।
ଯେବଣ ଅଶ୍ୱ କ୍ଷେଣୀ ତେଜ୍ୟାକରି ରଣେ
ନକୁଳ ସାଜନ୍ତେଣ ଗମି ଲୋଡ଼ନ୍ତି ସେ ଗଗନେ । ୭ ।
ଅନେକ ବ୍ୟାଧି ପୀଡ଼ା ଯେ ଘୁଞ୍ଚିଲା ଅଶ୍ୱଂକୁ
ଅନେକ ପ୍ରଶଂସା ସେ କରନ୍ତି ତନ୍ତ୍ରିକା'ର ନକୁଳଂକୁ । ୮ ।
ଏଥୁ ଅନନ୍ତରେ ଶୁଣିମା ମନୁ ନୃପତି
ସହଦେବର ଆଗତ କଥା ପୁଣ ବିବ୍ୟଶ୍ରୀତ୍ତ । ୯ ।
ମଦନାର ନନ୍ଦନ ଯେ ସୁଭାଗ୍ୟ ବଳବନ୍ତ
କରସ୍ଥଳ ବ୍ରହ୍ମାନ୍ତେ ଜାଣଇ ଚତୁର୍ଦ୍ଦଶର ବାରତା । ୧୦ ।
ଭୂତ ଭବିଷ୍ୟ ସେ ଯେ ବର୍ତ୍ତମାନ ତିନ
ଯୁଗାନ୍ତକ ବାରତା ସେ କହଇ ତତ୍ତ୍ୱୁ ଘେନ । ୧୧ ।

---

୬।୨ ନକୁଳର ସାଜନ୍ତେଣ ମହାତେଜ ହୋଇଲେ ।—ଦ, କ

ପୃଥୀ ଆପ ତେଜ ଯେ ବାୟୁବ ଆକାଶ
ପଞ୍ଚଧାତୁ ଯାହାର ହୃଦରେ ପ୍ରକାଶ । ୧୨ ।
ଅନନ୍ତ କୋଟି ବ୍ରହ୍ମାଣ୍ଡ ଯାହାକୁ ହୋଅଇ ଦୃଶ୍ୟ
ତାହାର ମହିମାଂ ମୁହିଂ କହିବଇଂ କସ । ୧୩ ।
କାଳର ଅଭ୍ରବେଣ ସେ ଗୋପାଳ ରୂପ ଧରି
ପୃଥୀ ଭରଭର ନିବାରଣ ନିମନ୍ତେଣ କରି । ୧୪ ।
ଧାତାର ନିର୍ବାଣ ସେ ପଣ୍ଡୁର ପଞ୍ଚ ପୋଏ୍ୟ
ଅଗ୍ୟାଂତବାସେ ବିରାଟ ରାଜ୍ୟେ ଗୋପ୍ୟାନ ସେ ହୋଏ୍ୟ । ୧୫ ।
ଜୁଡ଼ା କେଶ କବରି ଚୂଡ଼ ବନ୍ଧବେଣୀ
ଲଲାଟେ ଗୁଞ୍ଜାର ମାଳ ପୁଞ୍ଜି ପୁଞ୍ଜି ସୁଖଞ୍ଜଣି । ୧୬ ।
ପଘା କାଆଂରି ଯେ ସପତ ବନ୍ଧ ଶିକା
ଛନ୍ଦଣୀ ବନ୍ଧଣୀ ଯେ ନବନଶି ରେଖା । ୧୭ ।
କାନ୍ଧେଣ କାଉଂରି ଭାର ହାଥରେ ବିରହ ବଇଂଶୀ
କେନ୍ଦୁଶର ଲଉଡ଼ି କରେ ଗୋପାଳ ବେଶୀ । ୧୮ ।
ପାଦେଣ କଠାଉ ପୁଣି ଶିର ପରେ ଖୋଲରୀ
କଟିରେ କଟିସୂତା କାଛଟିଏ୍ୟ ଭିଡ଼ି । ୧୯ ।
ସୁସଞ୍ଜ ବସନ ମଦନଗୋପାଳ ମଇବ କ ଓଳ
ବିରାଟର ଆସ୍ଥାନ ସନ୍ନିଧିକୁ ସହଦେବ ଯାଏ୍ୟ ଚଳ । ୨୦ ।
ସେ ଜାଣନ୍ତି ଯେ ସ୍ତମ୍ଭନ ମୋହୋନ ବଶ ଉଚାଟନ
ଗୁଟିକା ଅଞ୍ଜନ ଧାତୁବାଦ ବିଦ୍ୟା ଜାଣଇ ରସ ରସାୟଣ । ୨୧ ।
ଆସ୍ଥାନେଣ ଯାଇଂ ଜଣାଇଲେ ଚରଗଣ
ସ୍ୱାମୀ ପରଦେଶୀ ଗୋପାଳେକ ଉଭା ହୋଇଅଛି ଦୁଆରେଣ । ୨୨ ।

---

୧୪।୧ କାଳର ଅଭ୍ୟାସେ ଗୋପାଳ ରୂପ ଧରି ।—ଚ, ଣ
୧୪।୧ କାଳର ଅଭ୍ରବେ ଯେ ଗୋପ୍ୟାନ ରୂପ ଧରି ।—ଝ, କ
୧୪।୨ ପୃଥୀ ଭରଭର ନିମନ୍ତେ ସେ ଅଛନ୍ତି ମର୍ତ୍ତେଣ ଅବତରି ।—
ଧ, ଞ, ଗ, ଜ, ପ, ଛ
୧୯।୧ ପାଦେଣ କଠଉ ଶିର ପରେ ତଲରି ।—ଢ, ତ, ଡ, ଜ

ବହୁତ ଗୋ ଲକ୍ଷଣ ଜାଣଇ ଅନେକ ବଦ୍ୟା
ବଢ଼ାଇ ସୁସଞ୍ଚ ଗୋପାଳ ସ୍ୱୟେଂ ସିଦ୍ଧଦେବା । ୨୩ ।
ଅପର୍ବ କଥା ଶୁଣି ବୋଲଇ ମହାରଣ
ଦେଖିବା ଗୋପାଳ ଆଣ କେମନ୍ତ ଲକ୍ଷଣ । ୨୪ ।
ସ୍ୱାମୀର ଆଗ୍ୟାଂୟେ ଦ୍ୱାର ଗୁଡିଲେ ଦ୍ୱାରପାଳ
ଭିତରେ ପ୍ରବେଶ ଆସି ହୋଇଲା:ତନ୍ତ୍ରୀପାଳ ଗୋପାଳ । ୨୫ ।
ଦେଖିଲେକ ଆସ୍ଥାନେ ଯେ ସମସ୍ତ ଜନପୁସ୍ତ
ଗୋପାଳ ରୁପ ଦେଖି ବହୁତ ପ୍ରଶଂସା ତସ୍ୱଂ କଲ୍ । ୨୬ ।
ବଗ୍ରଟେ ବୋଇଲେ ହୋ କୋନ୍ତେ ଗୁଡ ପଣାକାଠି
ନଂଗ୍ରେପି ଦେଖ ଯେବେ ଯେ ଗୋପାଳ ରୁପଗୋଟି । ୨୭ ।
ଗୁଣବନ୍ତ ଲକ୍ଷଣ ସୋହ୍ୱଣ୍ଡପଣ ଯେତେ
ଗୋପାଳ ବୋଲ ଯେହାକଇଂ ବୋଲିବା କେମନ୍ତେ । ୨୮ ।
କହେଣ ଭାର ଗବନେଣ ଅବମାଳ
ଅମର ତେଜଣ କ ବଜେ ଆଖଣ୍ଡଳ ଦିଗପାଳ । ୨୯ ।
ଯେ କ ପ୍ରତକ୍ଷେ ବ୍ରହ୍ମାନ୍ୟ ରୁପ ଅଟଇ
କେବଣ କଷଣେ ଆସି ଯେ ମୋହୋର ଭୁବନେ ଭେଟଇ । ୩୦ ।
ପ୍ରତକ୍ଷେ ଅଟନ୍ତି କ ସ୍ୱୟେଂ ବାସୁଦେବ
ଦ୍ୱାରକା ତେଜଣ ବଜେକଲେକ ମାଧବ । ୩୧ ।
କପିଳାସ ତେଜ କ ଅଇଲେ ଶୂଳପତି
ଦେଖିଣ ଚମତ୍କାର ହୋଇଲା ନୃପତି । ୩୨ ।
କୋଳ୍ପଉଛେ ବୋଇଲେ ଶୁଣ ହୋ ମହୀପାଳ
ଯୁଗତେ ସୁକୁମାର ଅଟଇ ଯେ ଗୋପାଳ । ୩୩ ।
ଥାଆନ୍ତି ଅବସାନେ ଯେ ନ ଜାଣନ୍ତି କଚ୍ଛୁ
ଗୋରସ ଭୁଞ୍ଜନ୍ତି ସେ ଖାଆନ୍ତି ସର ବାଛୁ । ୩୪ ।

---

୨୯।୧ ଅବମାଳ—ଅବମାଳ, ଅବମାଳା ।

୩୪।୧ ଅବସାନେ—ଅବସ୍ଥାନେ ।

୩୪।୧ ଥାଆନ୍ତି ଶମସ୍ଥାନେ ଯେ ନ ଜାଣନ୍ତି କଚ୍ଛୁ ।—ଙ, କ, ଜ, ଛ

ସରଲବଣୀ ଅଧାମ ଶାକର ଗୁଞ୍ଜିକା ଛେନା
ଯେଉଁମାନଙ୍କର ଉଚ୍ଛିଷ୍ଟ ଆଉମାନେ ଖାଆନ୍ତି ସିନା । ୩୫ ।
ବୃନ୍ଦାବନେ ଲଉଡ଼ି ମଣ୍ଡଳ ରସ ଖେଳେ
ନାଚନ୍ତି ଖେମଣ୍ଟା ବଜାଉନ୍ତି ସଂକୋଡ଼େ । ୩୬ ।
ବନେଣ ଅଗ୍ନିଗଳ ଯେ ଅଟନ୍ତି ବଡ଼ସୁଖୀ
ରାତ୍ର ଦିବସ ସେ ବଞ୍ଚନ୍ତି ଗୋଧନ ପଲ ଥାନ୍ତି ରଖି । ୩୭ ।
ଖରା ବରଷା ଶୀତକାଳ ଛଡ଼ାଉଛୁ
ଅମୃତ ରସ ଖେଳ ଯେଉଁମାନଙ୍କର ହାଦେ ବ୍ରତ ହେଉଛୁ । ୩୮ ।
ଆହୋ ବିରାଟ ବିଚାର କର ଗୋପାଳଙ୍କର କାଯେ
ଭୋଗ କଉଛୁକେ ଯେଉଁଥେ କେଶବ ହୋଯେ ଜାଯେ । ୩୯ ।
ହୀନଜନ ହୋଇଥିଲେ ସେ ଗୋପାଳେ
ନାରାୟଣ ବଡ଼ଲେ ଯନ୍ତୁଂ ଗୋପାଳଙ୍କ ମେଳେ । ୪୦ ।
ହଇଲୋକ ବ୍ରହ୍ମାଣ୍ଡ ଘୋଟିଥିଲା ଯେଉଂଣ ରାଜା କଂସ
ପ୍ରେକ୍ଷ ଲଉଡ଼ି ଧରି ସେ ଗୋପାଳେ କଲେ ନାଶ । ୪୧ ।
ଗୁଣ ସରୁପମାନ ନ ବିଚାର ଯେଉଁମାନଙ୍କର
ହାଦେ କେବଣ ବିଧାନମାନ ବୁଝି ବାକ ନୃପବର । ୪୨ ।
ଅବଧାନେ ଆସ୍ଥାନେ ଲବ୍‌ଧ ହୋଇଛନ୍ତି ସକଳେ
ସହଦେବ ଭାର ଥୋଇଲେ ବିରାଟ ଆସ୍ଥାନ ତଳେ । ୪୩ ।
ବିରାଟ କଉକ ଅଙ୍ଗ ଅପସର ଦେଇ
ପ୍ରଣପତ୍ୟ ସହଦେବ କୋଲଭଛଂକ ମୁଖ ଚାହିଂ । ୪୪ ।

---

୩୫।୨ ହଚ୍ଛିର—ଉଚ୍ଛିଷ୍ଟ ।

୩୬।୨ ସଂକୋଡ଼େ—ସଂପୋଡ଼େ ।

୩୬ { ପଲ୍ଲବ ବୋଲନ୍ତି ଯଷ୍ଟ ମହୟା ଖେଳେ
ନାଟ ଖେମଣ୍ଡା ତହୁଂ ବିହଡ଼ି ରସବୀଡ଼େ ।—ଧ, ପ

୩୯।୨ ଭୋଗ କଉରୁକେ ଭଗବାନ ପ୍ରୀତକାଯେ ।—ଧ, ପ

ଶ୍ରୀଭୁଜେ ସ୍ୱାମୀ ଯେ ଘେନଣ ପଣାକାଠି
ଭୂମିରେ ପାଡନ୍ତ ସହଦେବକଇଂ ଦେଇ ଦୃଷ୍ଟି । ୪୫ ।
ଯୁଦ୍ଧିଷ୍ଠି ବଗୃରନ୍ତ ତୁ ସବଗ୍ୟଂ ନାଥ ମୋର ବାବୁ
ଗତ ଆଗତ ଭୂତ ଭବିଷ୍ୟ ତୁହି ଜାଣୁ ସବୁ । ୪୬ ।
ଯାହାକଇଂ ବୁଦ୍ଧି ମାଗନ୍ତ ହୃଷୀକେଶୀ
ସମସ୍ତ ବୁଡାଇଲୁ ବାବୁ ମୋହୋର କର୍ମେ ପଶୀ । ୪୭ ।
ବିରାଟ ବୋଇଲ୍ ହୋ ଜୟ ଜୟ ଗୋପାଳ
କେବଣ ଦେଶର ତୁ କାହିଂ ତୋହୋର ଗୋକୁଳ । ୪୮ ।
କ୍ଷଣେ କ୍ଷଣେ ଜୟ ବୋଲ ବୋଇଲ୍ ରାଜନେ
କମ୍ପାଇ ଉଠିବ ସେ ବିରାଟ ବଚନେ । ୪୯ ।
କୋନ୍ତେ ବୋଇଲେ ହୋ ଠାକୁରଂକ ଆଗ୍ୟାଂ ହୋଇଲ୍କ ତୋତେ
ଜୟ ଜୟ ଗୋପାଳ ପ୍ରଣମ୍ୟ ହୋଇଛୁ କେତେ । ୫୦ ।
କୋନ୍ତଭଞ୍ଜଂକ ବଚନେ ସହଦେବ ଉଠି
ମସ୍ତକେ ଧଲ୍ ନେଇ ବେନହାଥ ଗୋଟି । ୫୧ ।
ବିରାଟ ବୋଇଲ୍ ଗୋପାଳ ହୋ ତୁ ଅଟୁ କେଉଂଣ ଦେଶୀ
କିସ ଅର୍ଥେ ତୁ ମୋହୋର ରାଜ୍ୟକୁହିଂ ଅଚ୍ଛୁ ଆସି । ୫୨ ।
କେବଣ ଗୋପାଳ ନାମ ସଂକେତ ତୋହୋର କହ କିସ
ସହଦେବ ବୋଇଲ୍ ରାଜା ତୋତେ ସକଳେ ହୋଉ ଯଶ । ୫୩ ।
ଉତ୍ତର ବାହିନୀ ଗଙ୍ଗା ସରସ୍ୱତୀ ଯେ ଯମୁନା
ମଧ୍ୟରେ ଇନ୍ଦ୍ର ପ୍ରଶସ୍ତ ହସ୍ତିନା ଜଇନ୍ତା ବାରୁଣା । ୫୪ ।
ପଣ୍ଡୁର ନନ୍ଦନେ ସେ ଅଭୟେ ସୋମବଂଶୀ
ଯୁଦ୍ଧିଷ୍ଠ ମହାରାଜା ଯେ ଧର୍ମଂକର ଶିଷି । ୫୫ ।
ସେ ଯୁଦ୍ଧିଷ୍ଠିଂକ ଅନୁଜ ଅଟଇ ଭୀମସେନ
ଭୀମସେନଂକ ସ.ନୁଜ ଯେ ଅଟନ୍ତି ଅରଜୁନ । ୫୬ ।
ଅର୍ଜୁନର ଅନୁଜ ଯେ ନକୁଳ ମହାଛନ୍ଦୀ
ତାହାକଂର ଅନୁଜ ଯେ ସହଦେବ ମନ୍ତ୍ରୀ । ୫୭ ।

---

୪୭।୨ ସକଳ ବୁଡାଇଲୁ ବାବୁ ମୁହିଂ ଲଗାଇ କାଳଫାଶି ।—ଦ, ଙ, ଛ

ସେ ସହଦେବକଇଁ ଆଜ୍ଞାଂହିଲେ ଯେ ଅଚ୍ୟୁତ
ଗୋଧନ ପଲେକ ସ୍ନେହେ ହିଲେ ଗୋପୀନାଥ । ୫୮ ।
ଗୋଧନ ପଲେକ ସଧେ ହିଲେ ଗୋପୀନାଥ
ସହଦେବଂକର ଗୋପାଳ ମୁଂ ପାଳଇ ଗୋରୁନ୍ତ । ୫୯ ।
ସେ ସହଦେବ ମୋତେ ଅଭିନ୍ନେ ଦେଖଇ
ଯେ ସେ ସହଦେବ ପ୍ରତକ୍ଷେ ଅଟଇ ମୁହିଂ । ୬୦ ।
ଅସଂଖ୍ୟ ଗୋଧନ ପଲ ତାହା କେ ପରିକଳ୍ପନା କରଇ
ମୁଂ ତାହା ପାଳନ୍ତା ଅଟଇ ବିଚକ୍ଷଣ ଗୁଆଳଇ । ୬୧ ।
ତନ୍ତ୍ରୀପାଳ ଗୋପାଳ ନାମ ମୋ ନିଜ ବାକ୍ୟେ
ଗୋଧନ ରକ୍ଷନ୍ତା ମୁହିଂ ସିନା ସାଯୁକେ । ୬୨ ।
ସତ୍ଯଂ ସେ ଯୁଧିଷ୍ଠି ପଶାଯେ ହାରିଲେ ରାଜ୍ୟଭାର
ପଞ୍ଚୁଭାଇ ସହିତେଣ ବୁଲିଲେ ବନନ୍ତର । ୬୩ ।
ଅରଣ୍ୟେ ଶବଦେକ ଶୁଭିଲା ମସ୍ତଦେଶେ ଅଇଲେ ଯୁଧିଷ୍ଠି
ଶବଦେକୁ ଗୋଡାଇ ଅଇଲି ମୁଂ ପାରଇ ଅବା ଭେଟି । ୬୪ ।
ବହୁତ ଗୋଧନ ପଲ ଅଛଇ ତୋହୋର ପୁରେ
ଗୋରୁନ୍ତ ପାଳିବାକୁ ମୁଂ ବିଚକ୍ଷଣ ଗହନ୍ତେ । ୬୫ ।

---

୬୨ { ତନ୍ତ୍ରୀପାଳ ଗୋପାଳ ନାମ ମୋ ନିଜ ବାକ୍ୟ
ଗୋଧନ ରକ୍ଷାନ୍ତ ମୁହିଂ ସିନା ନାୟକ ।—ଧ, ପ

୬୨।୨ ସାୟିକେ—ସାଧ୍ୟ କରିବା ।

୬୫।୨ ଗୋରୁ ପାଳିବାକୁ ବୁଦ୍ଧି ମୋର ଅଛୁ ଅନେକ ପ୍ରକାରେ ।—ଓ,ଠ

୭୦।୨ ପୋଥିମାନଙ୍କରେ ନିମ୍ନଲିଖିତ ବ୍ୟାଧିମାନଙ୍କର ନାମ ଦେଖାଯାଏ :—
ଅନ୍ତଗ୍ରଧି, ଛଦ୍ରକା, ଗ୍ରେଟିକ, ଜମ୍ବୁକାଣ୍ଡ, ଙ୍କାରିଆ, ଉରଣା, ବନୁକା, ବୁରବୁରି, ପାଦୁରି, ପାନୁଆ, ପଶାଧରି, ପାମଡା, କୁହୁକା, ଉଲଟ, ବଗଡା, ଉଲୁକା, ଅଣ୍ଟାବସନ୍ତ, ଆଙ୍ଗୋଲା, ଅରକଣ୍ଟା, ଅଲୁଟା, କାଂକପଡା, କଲୁରି, କଟିସିଂଘା, ଟୁରୁକ, ଶିତାଶୁମୁଳ, ଗୋଖୁଣ୍ଟିଆ, ଗାଁରଅଶୋଥ, ଘୋଘେଡା, ଘୁରୁଘୁରିଆ, ଚଉଂରି ପ୍ରଭୃତ ।

ଯେବଣ ଗୋଷ୍ଠେ ମୁଁ ହିଁ ଗୋରୁଙ୍କ କରଇ ରକ୍ଷା
ଅଭୁଟ ଅପମୃତ୍ୟୁ ଯେ ନ ପାଵନ୍ତ ତହିଁର ବଶ୍ରା । ୬୬ ।
ଗୋରୁଙ୍କ ଉପରେ ଯେତେକ ରୋଗ ଥାଇ
ମୁଁ ଝାଡ଼ନ୍ତେ ସକଳ ବ୍ୟାଧି କ୍ଷୟେଯାଇ । ୬୭ ।
ଓଁକାର ଅକ୍ଷରଟି ମୂଳମନ୍ତ୍ର ଜାଣ
ସବୁ ବ୍ୟାଧିକ ଅଟଇ ମୁଁ ବିଶଲ୍ୟକରଣ । ୬୮ ।
ବିରାଟ ବୋଇଲା ଗୋପାଳ ଗୋରୁଙ୍କର କେତେ ବ୍ୟାଧି
ତେ'ହୋଇ ରଖିଲେ ହୋଇବ ଯେବେ ସାଧି । ୬୯ ।
ସହଦେବ ବୋଇଲା ତୁ ଶୁଣ ହୋ ମହୀଧି
ଗୋରୁଙ୍କର ଶତେ ଅଷ୍ଟଉତ୍ତର ସିନା ବ୍ୟାଧି । ୭୦ ।
ଖୁରବେଗ ଖିର ଶିମୂଳଆ ହାବୋଡ଼ା ମାଣ୍ଡୁକୀ
ମଜନା ଗଳକନ୍ଦା ଧୋକଡ଼ା ଫାଟୁଆ ଚାଟକୀ । ୭୧ ।
ଜୁଇକାଣ୍ଡ ଧଇଧର ସହାଣା ଭରଥିଆ
ଘୋଷର ହାଂପର ପେଟଫୁଲ ଦୃଷ୍ଟିପଡ଼ା ମହୁରସ୍ଥା । ୭୨ ।
ଗଣ୍ଠିଆ ବସନ୍ତ ଲହସା କାଉଂଶଆ ମୁଭୁର
ଗରବେଙ୍ଗା ମାଛୁଣିବେଙ୍ଗା ପାଣିବେଙ୍ଗା ଥରହର । ୭୩ ।
ଖଲଆ ହେମଗିରି ମହାଗିରି ପିଠି ଲେଟର
ସୁକୁଟା ଶିଂଗବାତ ଆଣୁଆ ବାତ ରୋମଟାଂକୁର । ୭୪ ।
ଅନ୍ତଭଂଜା ଅଜାଣୁଆ ଅପଷା ଗଣ୍ଡୁକୀ କରକର
ଅନ୍ତଶୂଳା ଆଡୁର କରକଣା କୁଆହଣା ଗୋଖୁର । ୭୫ ।
ଖୁରଖି ଗଳଗ୍ରହା ଗଳକାଶ ଛୁଂକ ଗାଲୁଆ
ଗଳଶୋଥ ଗର୍ଭରେହା ଜାନୁରଙ୍ଗା ଜୋକଆ । ୭୬ ।
ଟିଣା ଚାଲୁକା ବଣ୍ଡଧର ପାଟୁଳ ଥରଥରଆ
ପେଟ କାମୁଡ଼ା ପେଟପୋଡ଼ା ଦାରୁଣା ଭଜଂଗଆ । ୭୭ ।
ମଳବନ୍ଧ ଜାଦୁର ଲୁହବୋହା କାମଳ ରଣା
ଶିରବେଗ ଶାଲୁକା ଆବୁଆ ଅରୁକଣା । ୭୮ ।
ଅଧାମଡ଼ା ଈରକଟିଆ କଇକଣା ଟିଂକର
ଗରଜନା ଜଟଜଟା ଚାଲୁଶୁଖା ବାରୁଣା ଗମ୍ଭୀର । ୭୯ ।

ଛାକୁକାଟୁଛି ଦାନ୍ତଭଙ୍ଗା ଚଳପକା ଜଗ
ଅଳ୍ପବଥା ଛୁନାଳୀ ବଇଧକ୍କା ଆରକ୍ତ ଛେର । ୮୦ ।
କରକଟି ଗଧିଆ ବାଇଆ କଂଗୃଶିଂଗା ପାଙ୍ଗର
ଗଳକଣ୍ଠା ଆଣୁକର୍ପଟୀ ଅଳ୍ପବଥା ମଣ୍ଡା । ୮୧ ।
କାଲବାଡ ଅଳ୍ପକୋଷ ଆଉଂଶଆ ପିଙ୍ଗଳ ଛେର
ଉଦୁରଆ ଆଖିଫୁଲ ଟୋଲକମରା ଗିଳା । ୮୨ ।
ଯେମନ୍ତେ ଗୋଧନଂକର ଅଷ୍ଟଜଉର ଶତେ ବ୍ୟାଧି
ମୋହୋର ଆଗ୍ୟାଂଯେ ସେମାନେ ନୁଆରନ୍ତି ଭେଦ । ୮୩ ।
ଅଦୁହାଂ ଗାଈ କରକନ୍ତି ହୁଅନ୍ତି ଯେ ଗୋଷ୍ଠେ
ଅଛନ୍ଦା ଅବନ୍ଧା ଯେ ଦୁହାବନ୍ତି ଦୁଷ୍ଟେ । ୮୪ ।
କାମୋଡ଼ା ବିନ୍ଧଣା ଯେ ଯେମାନେ ହୁଅନ୍ତି ସର୍ବସାଧି
ବାଂଝି ମଡଛୁ ନୋହୋନ୍ତି ମେ ହୋର ବାକ୍ୟେ ମଉଷୋଧି । ୮୫ ।
ଯେବଣ ଗାଈ ବିହଡନ୍ତି ଦୁଷ୍ଟପଣେ ବନେ
ସେ ଆଗ୍ନି ସାଧ ହୁଅନ୍ତି ଯେ ଆପଣେ ଆପଣେ । ୮୬ ।
ବିରାଟ ବୋଇଲେ କଥାଯେ କହ୍ଵ ବାବୁ ରହ ରହ
ପାଇଲ ପରୀକ୍ଷ ତୁ ଆଉର ବଚନ ନ କହ । ୮୭ ।
ତୁ ଯେ ବୋଇଲୁ ମୁଂ ଅସାଧ ସାଧ କରଇ
ଯେହ୍ୱକ୍ଷଣି ପରୀକ୍ଷ ଜାଣିମାନା ତୋହୋର ତହ୍ଵଂ । ୮୮ ।
ବିରାଟ ବୋଇଲା କୋନ୍ତେ ମୋରେ ପୃଥୁନା ନାମେ ଯେବଣ ଗାଈ
ଅଣ୍ଡିର ଲକ୍ଷେକ ବତ୍ସା ଦୁଇଲକ୍ଷ ମାଈ । ୮୯ ।
ଯେତେକ ଯେନଣ ସେ ବିହରଇ ମୋର ଗୋଷ୍ଠେ
ଯାଇଂଣ ରହିଲ ସେ ବିନ୍ଧ୍ୟମାଳ ପର୍ବତ ନିକଟେ । ୯୦ ।

---

୮୫।୨ ବାଂଝ ମଡଛୁ ମୋହୋର ପ୍ରସାଦେ ପ୍ରସିଦ୍ଧି ।—ଜ, ଠ, ଦ
୮୬।୧ ଯେବଣ ଗାଈମାନେ ବନ୍ଧନ୍ତି ଦୁଷ୍ଟପଣେ ।—ଗ, ଚ, ଠ, ଞ
୮୮।୨ ଯେହ୍ୱକ୍ଷଣି ଯାଣିମା ପ୍ରତଗ୍ୟାଂ ତୋର ତହ୍ଵଂ ।—ଦ, ଜ
୯୦।୨ ଯାଇଂଣ ରହିଲ ସେ ହେମକୂଟ ପର୍ବତ କନ୍ଦରଟେ ।—ଦ, ଜ

ସାତ କ୍ଷଉଣୀ ବଳ ଯେତେଣ ମୂର୍ଚ୍ଛା ଗଲ
ଆଠ ସେନ ବେଢି ଗାଈ ଆଣି ନୁଆରଲ । ୯୧ ।
ବହୁତ ଗୋଧନ ଯେ ସମର ମୋହୋର ଭୁଲେ କଲେ
ଉଦ୍ଦେଶ ସଇନ ମୋହୋର ଭାଜ ପଳାଇ ଅଇଲେ । ୯୨ ।
ଗୋଡାଇଣ ବହୁତ ପଦ୍ୟେଡ଼ କଲେ ମୋତେ
ପଦ୍ୟେଡ଼ ପଡ଼ିଲ୍ଲ ମୋତେ ନବ ଯୋଜନ ପରିଯନ୍ତେ । ୯୩ ।
ସାତ କ୍ଷଉଣୀ ବଳ ଯେତେଣ ଯାଇଥିଲ୍ଲ
ଦୁଇ କ୍ଷଉଣୀ ପଡ଼ିଲେ ପାଞ୍ଚକ୍ଷଉଣୀ ଯେତେଣ ପଳାଇ ଅଇଲ । ୯୪ ।
ପୁଣି ସମସ୍ତେକେ ମୁ ଯେ ମୂର୍ଚ୍ଛୁ ନୁଆରଲ
ବିନ୍ଧ୍ୟମାଳ ପର୍ବତକୁ ଆଠ ସେନଗଲ । ୯୫ ।
ଅସଂଖ୍ୟ ଅପ୍ରମିତ ଥାଟ ନାଶଗଲ୍ଲ
ସେ ପୃଥୁନା ଗାଈ ମୋତେ ସାଧ୍ୟ ଯେ ନୋହିଲ୍ଲ । ୯୬ ।
ତୁ ସାଧ୍ୟ ମୋତେ କରିଦେବୁ ଯେବେ ପୃଥୁନା
ସ୍ୱେ ମହାଦେବେଶେ ମଘଦେଶେ ଠାକୁର ତୁହି ସିନା । ୯୭ ।
ହେ କୋନ୍ତେ ସେ ଗାଈ ଯେତେବେଳେ ଗୋଷ୍ଠରୁ ମୋର ଗଲ୍ଲ
ଶୀଘ୍ର ତୁଟିଲ୍ଲ ରାଜ୍ୟ ମୋହୋର ନାରଖାର ହୋଇଲ୍ଲ । ୯୮ ।
ବାବୁ ତୋହୋର ବଚନେ ଯେବେ ଗୋଧନ ଉରନ୍ତ
ଚନ୍ଦ୍ରୀପାଳ ନାମ ଗୋଟିକ ମୁଂ ହୋଇଥିବ ଭଗତ । ୯୯ ।
ଚନ୍ଦ୍ରୀପାଳ ବୋଇଲ୍ଲ ରାଜା ପାଇବୁ କାରଣ
ପଲ ସେନ ପୃଥୁନା ତୋହୋର ଆସିବ ସ୍ୱେଚ୍ଛକ୍ଷଣ । ୧୦୦ ।
ଦୁସହ ପ୍ରତଗ୍ୟାଂ ଶୁଣି ବହୁରନ୍ତ କୋନ୍ତେ
ଅସଂଖ୍ୟ ପ୍ରତଗ୍ୟାଂ ସ୍ୱେତ କଳକ ଅପ୍ରମିତେ । ୧୦୧ ।
ବେଦଲକ୍ଷ ବଚ୍ଛା ସେନ ବାହୁଡ଼ିଲ୍ଲ ଯେବଣ ଗାବ
ସ୍ୱେହାର ବଚନେ ସେ କଂପେ ଯେ ଆସିବ । ୧୦୨ ।

---

୯୩।୨ ଆଠଭଗ୍ନ ପଡ଼ିଲ୍ଲ ମୋତେ ନବକ୍ରୋଶ ପରିଯନ୍ତେ ।—ଘ, ଙ, ଧ
୯୯।୧ ବାବୁ ତୋହୋର ବଚନେ ଯେବେ ଗୋଧନ ଉରନ୍ତ । ଙ, କ

ନ ପୁଣ ନ ଆସଇ ନକୁ ଗାଈ ଯେଉଁଠାରୁ ବୋଲେ
ସହଦେବ ନାଶଗଲୁ ତ ବିରାଟ କୋପିଲେ । ୧୦୩ ।
ସୁମରନ୍ତି କୋଳେ ଦେବ ଯେ ଦାମୋଦର
ଯେ ଦୁସହ ସଙ୍କଟୁ ଦେବ ସହଦେବଙ୍କୁ ପାରକର । ୧୦୪ ।
ବିରାଟ ବୋଇଲୁ ହୋ ଶୁଣ ତନ୍ତ୍ରୀପାଳ ଗୋପାଳ
ଯିବା ଯେବେ ବଂଧ୍ୟମାଳ ସାଜବା ସନ୍ୟବଳ । ୧୦୫ ।
ସହଦେବ ବୋଇଲୁ ରଜା ସେ ପ୍ରମାଦ ଅଟଇ ଭୂମି
ତାହାର ତହୁଂକ ତୋର କଦାଚିତେ ଯିବାର ନ ଯୋଗାଇ ସ୍ୱାମୀ ।୧୦୬।
ଯେଉଁ ସମ୍ମୁଖେ ଯେନ ରଜା ବସିଥିବୁ ଯେଉଁ ଠାବେ
ଫଳ ଯେନ ପୃଥୁନା ଆସି ହୋଇବ ତୋର ଆଗେ । ୧୦୭ ।
ଦୁସହ ପ୍ରତଗ୍ୟାଂ ଶୁଣିଣ ସେ ହସଇ ମହାପତି
ଦେଖିବା ଆଜ ଶୁଣିଲୁ ନାହିତ ମୋହୋର ଯେସନ
କଥା ଅପ୍ରମିତ । ୧୦୮ ।
ଦେଖ ଦେଖ କୋଳେ ଗୋପାଳର ମହିମାଂ
ମୁହିଂ ଜାଣିଲ ଯେ ପ୍ରତକ୍ଷେ ଅଟଇ ଯେ ବ୍ରହ୍ମା । ୧୦୯ ।
ଶୁଣିଣ ସହଦେବ ଯେ ଉତ୍ତରକଇଂ କଲୁ ମୁଣ୍ଡି
ବାମ ଚରଣ ଉପରେ ଦକ୍ଷିଣ ପାଦଗତି । ୧୧୦ ।
ହୃଦଗତେ ସୁମରଇ ଦେବ ହୃଷୀକେଶୀ
ପୃଥନା ନାମ ଧରିଣ ଚୁମ୍ବିଲୁ ବଇଂଶୀ । ୧୧୧ ।
ମହାଦେଶକୁ ବଂଧ୍ୟବନ ବାଷଠି ଶତେ ଜୁଣ
ବଇଂଶୀ ସ୍ୱନ ଶୁଭିଲୁ ପୃଥୁନା ଶ୍ରବଣ । ୧୧୨ ।
ଧ୍ୟାନେଣ ଜାଣିଲୁ ସେ ନନ୍ଦମାର ନାତ୍ତୁଣୀ
ବୋଇଲୁ ମୋତେ ସୁମରଲେ ସହଦେବ ମନ୍ତ୍ରୀ ଚୂଡାମଣି । ୧୧୩ ।

---

୧୦୭।୨ ଫଳ ଯେନ ପୃଥୁନା ଆସିବା ସହଭାବେ ।—ଧ, ପ, ଚ
୧୦୮।୨ ଶୁଣିଲୁ ନାହିଂ ମୋହୋର ଯେସନେକ ଖିତ ।—ଙ, ଛ, ଚ
୧୧୧।୨ ପୃଥୁନା ନାମ ଧରିଣ ବାଇଲୁ ବରହ ବଇଂଶୀ ।—
ଚ, ଅ, ଦ, ପ, କ, ଣ, ଜ

ପୃଥନା ବୋଇଲା ସାଧୁ ସାଧୁ ହୋ ବିରାଟ
ବଂଶଇ ତୋର ସାଧୁ ସାଧୁ ସାଧୁ ତୋର ରାଷ୍ଟ୍ର । ୧୧୪ ।
ବଡ ମହିମାଂ ବିରାଟ ରେ ତପ ଅର୍ଜିଲୁ ପୂର୍ବଜନ୍ମେ
ତୋହୋର ରାଜ୍ୟେ ଆସି ବିଜେକଲେ ଦେବଧର୍ମେ । ୧୧୫ ।
ଲକ୍ଷେକ ବତ୍ସା ହକାରଣ ପୃଥୁନା ଯେ ମାୟେ
ବୋଇଲେ ଆସ ଯିବାରେ ମତ୍ସଦେଶ ଯାୟେ । ୧୧୬ ।
ବିରାଟ ରାଜ୍ୟରୁ ଯେ ଦୁଷ୍ଟ କୁରୁ ଫିଟିଲେ
ଗୋପାଳ ରୂପ ଧରି ସହଦେବ ବିଜେକଲେ । ୧୧୭ ।
ଯେତେକ ବଚନେଣ ସେ ସମସ୍ତ ବତ୍ସାମାନେ
ହେମାରବ ଶବଦ କରଣ ସେ ଧାମନ୍ତି ଗହନେ । ୧୧୮ ।
ଉହ୍ଲାଇଣ ମାହେଶ୍ୱରୀ ବନ୍ଧ୍ୟମାଳ ପର୍ବତୁଂ
ଉଡ଼ିଲା ଗଗନେ ଧୂଳି ଗାଈଂକର ପାଦଘାତୁଂ । ୧୧୯ ।
କୁହୁଡ଼ି ପ୍ରାୟେକ ଯେ ଉଠଇ ଚରଣର ଧୂଳି
ଆକାଶେଣ ଅଦୃଶ୍ୟ ଯେ ହୋଇଲେ ଅଂଶୁମାଳୀ । ୧୨୦ ।
ମୁଖରବ ଶବଦେଣ ଯେ କମ୍ପଇ ତିନପୁର
ମଧ୍ୟପୁର ପୃଥ୍ୱୀ ଯେ କଂପଇ ଥରହର । ୧୨୧ ।
ବିରାଟ ପଚାରଇ ପୃଥ୍ୱୀ ଉଲ୍କାପାତ ଦେଖି
ନର୍ଘାତ ପଡ଼ିଲା କି ଗଗନ ଉପେକ୍ଷି । ୧୨୨ ।
ଉତ୍ତର ଦଗ ବେଶାଢରେ କହିଲେ ଆସ୍ଥାନେ
ସ୍ୱାମୀ ଗୋଧନ ପଲ ଗୋଟିଏ ଆସନ୍ତି ଘୋଷବନେ । ୧୨୩ ।
ଅଦଭୂତେ ଗୋଧନ ପଲ ଯେ କାହୁଂ ସେ ରକନା
ଚନ୍ଦ୍ରୀପାଳ ବୋଇଲା ଦେବ ଆସୁଛୁ ପୃଥୁନା । ୧୨୪ ।
ଯେମନ୍ତ ମହକଳ ଅଛଇ ମୋହୋର
ଗୋଲକ୍ଷଣ ବିଦ୍ୟା ସହଦେବକୁ କହିଲେ ଚକ୍ରଧର । ୧୨୫ ।
ଯେବଣ କାଳେ କାଳଦମନ ଜରାସନ୍ଧ ହେଲେ ଧାଡ଼ି
ଅସଂଖ୍ୟ ସନ୍ୟ ଘେନ ମଥୁରା ଆସି ବେଢ଼ି । ୧୨୬ ।
ସବୁ ଗୋଧନ ପଲ ଯେ ହରି ସମର୍ପଲେ ସହଦେବଂକୁ
ସମସ୍ତ ନଷ୍ଟ କାବୁ ତୋ ହସ୍ତ ନା ରାଜ୍ୟକୁ । ୧୨୭ ।

ବଇତଂକ ଭୟେ ଗୋମତ ଗିରେରେ ଲୁଚଲେ ହୃଷୀକେଶ
ଗୋଲକ୍ଷଣ ବିଦ୍ୟା ସହଦେବଂକୁ କହିଲେ ପୀତବାସ । ୧୨୮ ।
ସେ ସହଦେବଂକର ମୁଂ ଅଟଇ ତନ୍ତୀପାଳ ଗୋପାଳ
ସେ ମନ୍ତ୍ର ଅଛି ମୋର ହୃଦୟେ କମଳ । ୧୨୯ ।
ଯେ ସେ ସହଦେବ ସେହି ସେ ଅଟଇ ମୁହିଂ
ସତ ସରୁପ ତୋର ଅଗ୍ରତେ କହିଲଇଂ । ୧୩୦ ।
ଶୁଣିଣ ଆଶ୍ରିଜ ଯେ ମଚ୍ଛେଶ୍ୱର ନରନାଥ
ଅସଂଖ୍ୟ ଚରିତ କ ସେ ହୋଇବ ଯେମନ୍ତ । ୧୩୧ ।
ଦୁଇ ଖଞ୍ଜଣୀ ବଳ ମୋର ନାଶଗଲ ଯେଣେ
ସେ କଂପେ ଆସିବ ଯେଥେ କମ୍ପୃତ କାରଣେ । ୧୩୨ ।
ଆଶ୍ରିଜ ପ୍ରାୟେକ ହୋଇ ଗ୍ୟେ ଗୃହାନ୍ତ ସ୍ୱେକଦୃଷ୍ଟି
କଟକ ଭିତରେ ଯାଇଂ ଗୋଧନ ପଲ ଭେଟି । ୧୩୩ ।
ସରୁପ ଦେଖିଲେ ସେହୁ ଉଚାବଚ ଗାଈ
ଭୟେଣ ବସନ୍ତ ସଇନ ଯେନ ଗଲେକ ପଳାଇ । ୧୩୪ ।
ପୃଥୁନା ସମର ମୁରତି ଦେଖିଲେ ଗ୍ୟେ ଦୁରେ
ଭୟେଣ ଉଠିଲେ ଯାଇଂ ଜଗତି ଉପରେ । ୧୩୫ ।
ମେଢ ମଣ୍ଡୋପ ଯେ ଜଗତି ଅଟାଳୀ
ଘରେ ବୃକ୍ଷେ ଉଠିଣ ଦେଖନ୍ତି ଯେ ସମସ୍ତ ବକଳ । ୧୩୬ ।
ଗୋଧନ ପଲଟି ଯନ୍ତୁଂ ବଜୟେ ନକଟେ
ଯେକାମାଝ ଆସ୍ତାନେ ରହିଲେ କୋଲ୍ଲଭଟେ । ୧୩୭ ।
ବସନ୍ତ ବୋଇଲ କୋନ୍ତେ ପଳାଅ କଂପେ ନାହିଂ
ବଡାଇ ପ୍ରମାଦ ଯେ ଅଟଇ ଦୁଷ୍ଟଗାଈ । ୧୩୮ ।
ଯେହିମନ୍ତ ପର୍ବଂକୁ ଯେ ଉଦ୍ଧାଇ ଅଇଲ
ଦୁଇ ଖଞ୍ଜଣୀ ବଳ ମୋର ଗୋଡାଇ ମାଇଲ । ୧୩୯ ।

---

୧୩୪।୧ ଉଚାବଚ—ଉଚବାଡ ।

ସମସ୍ତେ ବୃତ୍ତାନ୍ତ ଯେ ଏକଦୃଷ୍ଟି ହୋଇ
ସହଦେବକଇଂ ଲକ୍ଷେପୁର କରି ବେଢିଲେକ ସର୍ବଗାଈ । ୧୪୦ ।
ଦେଖିଣ ଚକିତ ହୋଇଲା ମହା ନୃପମଣି
ସମରାଜ୍ୟେ ଶୁଭିଲକ ହା ହା କାର ବାଣୀ । ୧୪୧ ।
ଆହୋ ତନ୍ତ୍ରୀପାଳ ବୋଲି ବିରାଟ କ୍ରୋଧକଲା
ଏ ମୋହୋର କାର୍ଯ୍ୟେ ତନ୍ତ୍ରୀପାଳ ଗୋପାଳ ନାଶଗଲା । ୧୪୨ ।
ସହଦେବ ପ୍ରଣପତ୍ୟ ପୃଥୁନା ଦେବୀ ପଦ୍ମପାଦେ
ବଞ୍ଚିବ ଦୁରାପଦ ମାଗୋ ତୋହୋର ପରସାଦେ । ୧୪୩ ।
ମାଗୋ ଶୁଦ୍ଧେଣ ଗୋପ୍ୟାନ ହୋଇଲେ ବୃଦ୍ଧ ଯେ ଠାକୁର
ମୋତେ କଷଣ କଲା ଏ ମହାନ୍ଧ ରାଜେଶ୍ୱରେ । ୧୪୪ ।
ମୁହିଂ ତ ଆନ ସେବା କରି ନୁଆରିବି
ତୋହୋର ଚରଣ ତଳେ ସେବା କରିଥିବି । ୧୪୫
ଏଡେ କୋପ କରିଣ ଯେ ଅଇଲୁ ଏ ରାଜ୍ୟକୁ
ବିରାଟ ନୃପତି ଦେଖି ଭୟୁକଲା ତୁମ୍ଭଂକୁ । ୧୪୬ ।
ପୃଥୁନା ବୋଇଲା ବିରାଟ ଦୁରହୋଇ ନ ଗଲେ
ମୁହିଂ କଥା ହୋଇ ପାରନ୍ତି କି ତୋହୋର ତୁଲେ । ୧୪୭
ଶୁଣିଣ ସହଦେବ ପୁଣ ପ୍ରଣପତ୍ୟ କଲାକ ପୃଥୁନା
ଅନାଦି ସିଦ୍ଧଦେବୀ ଗୋ ପ୍ରଳୟୁ ଅନ୍ତ ସିନା । ୧୪୮ ।
ମାଗୋ ଆଦ୍ୟ କପିଳା ଯେ ତାହାର ଉଦରୁ ସଚରାଚର ଜାଏ
ତାହାର କ୍ଷୀର ପାନେ ସଚରାଚର ରକ୍ଷା କରନ୍ତି ଜାଏ । ୧୪୯ ।
କପିଳାର ନନ୍ଦନୀ ବହୁଳା ନାମେ ଗାଈ
ବିମଳା ନାମେଣ ତାହାର ବତ୍ସା ଜପୁଜାଇ । ୧୫୦ ।
ବିମଳାର ତହୁଂ ଜାତ ହୋଇଲା ଧବଳୀ
ଧବଳୀର ନନ୍ଦନୀ ଯେ ନାମ ତଇଭଳୀ । ୧୫୧ ।

---

୧୪୦।୨ ସହଦେବଙ୍କଇଂ ଶତେକପୁର କରି ବେଢିଲେକ ସର୍ବଗାଈ ।—ଚ, ଠ
୧୫୧।୧ ବିମଳାର ନନ୍ଦନୀ ଅଟଇ ସେହୁ ।—ଖ ଠ

ତଇତଳୀର ନନ୍ଦନୀ ଯେ ଅଟଇ ସୁରଷା
ତାହାତନ୍ତୁଂ ଜାତ ଯେ ନନ୍ଦନୀ ବସ୍ରା ମହାଦେବୀ । ୧୫୨ ।
ବସ୍ରା ନନ୍ଦନୀର ତନ୍ତୁଂ ଜାତ ରମ୍ଭାନାମେ ଗାଈ
ସେ ରମ୍ଭାର ତନ୍ତୁ ଜାତ ହୋଇଲେ ଶତେମାଈ । ୧୫୩ ।
ଶତେମାଈର ନନ୍ଦନୀ ଯେ ଅଟଇ ତ୍ରିଲୋଚନା
ତାହାର ନନ୍ଦନୀ ତୁ ଅଟୁ ଯେ ପୃଥୁନା । ୧୫୪ ।
ପୃଥୁନା ତୋତନ୍ତୁଂ ଜାତ ପଞ୍ଚ ସହସ୍ର ମାଈ
ପୁଣି ପଞ୍ଚସହସ୍ର ଅଣ୍ଡିର ଉପୁଜାଇ । ୧୫୫ ।
ଯେମନ୍ତେଣ ବେଦଲକ୍ଷ ବସ୍ରା ଉପୁଜାଇ
ତୁହି ସେ ସର୍ବ ତାରଣୀ ଅଟୁ ମହାମାଈ । ୧୫୬ ।
ଯେକା ତରନ୍ତୁ କ୍ଷୀର ତେଜ ଆଗୋ ମାୟେ
ଉତ୍ପତ୍ତି ପ୍ରଳୟ କରୁ ଦେବୀ ତୁ ଗୋ ସ୍ୱୟେଂ । ୧୫୭ ।
ଜାତ ଅନ୍ତକାରଣୀ ଗୋ ତୁ ଜଗତମହନ୍ତା
ତୋହ୍ନ ତୁ କସବ ଗୋ ପାଟଳୀ ବର୍ଣ୍ଣ କଳା । ୧୫୮ ।
ଅଭୟେ ଅପୂର୍ଣ୍ଣା ଗୋ ପ୍ରସନ୍ନେ ନବକାଶ
ଯେକ ବର୍ଣ୍ଣେଣ ତୁ ନାନା ରୁପ ଧର । ୧୫୯ ।
ଜୟ ଜୟ ଅନାଦ୍ୟ ଗୋ ବଜୟା ମାତଙ୍ଗୀ
ଲୟେ ରୁପ ଧର କାତ୍ୟାୟିନୀ ଗାୟତ୍ରୀ ନାମ ମହାଦେବୀ । ୧୬୦ ।
ଦୁର୍ଗା ଅପର୍ଣ୍ଣା ଗୋ ନିରଞ୍ଜନ ଗୋବୀ
ଜଗତର ଜନନୀ ଗୋ ଅଭୟେ ବରଦାବୀ । ୧୬୧ ।
ପ୍ରଳୟ ତାରଣୀ ମାଗୋ ଅଗତକ ଗତିଦ୍ୟନ୍ତା
ମମ କଷ୍ଟ ଉଦ୍ଧର ଗୋ କରସି ସର୍ବଚିନ୍ତା । ୧୬୨ ।
ବୁଡନ୍ତେ ଅବନୀ ଗୋ ତୁହି ସେ ଉଦ୍ଧରନ୍ତା
ତୋତେ ଆଶ୍ରେକରି ମାଗୋ ଲାଗନ୍ତି ବଡଚିନ୍ତା । ୧୬୩ ।

---

୧୬୦।୨ ଲକ୍ଷେରୂପ ବର୍ଣ୍ଣିନୀ କତ୍ୟାୟିନୀ ଗାୟତ୍ରୀ ନାମ ମହାଦେବୀ ।—କ, ଚ
୧୬୨।୧ ପ୍ରଳୟକାଳରେ ମାଗୋ ତୋହୋର ନାମ ଚନ୍ତା ।—କ, ଣ

ଆଦ୍ୟ ଅବତାରେ ଗୋ ଅଦଭୁତ ଶବଦୁଂ
ପଞ୍ଚମୂର୍ତ୍ତି ଗଙ୍ଗା ଗୋ ବହଇ ତୋର ପାଦୁଂ । ୧୬୪ ।
ଭୂର୍ଭୁବ ପାତାଳ ଗୋ ତିନଖଣ୍ଡ ମଧ୍ୟ
ତୋହୋର କ୍ଷୀର ଆପ୍ୟାନେ ଗୋ ସମସ୍ତ ଧାତୁଦେହ୍ୟ । ୧୬୫ ।
ବନ୍ଧଣ ଛନ୍ଦଣୀ ଗୋ ବିଶାଶତେ ମୂଦୁର
ତୁମ୍ଭ ସେ ନିବଞ୍ଚାଇଲୁ ଗୋ କାଳକାମ ନଦ୍ରା । ୧୬୬ ।
ଅକ୍ଷୟେ ଅବ୍ୟୟେ ଅଜୟେ ଅନୁଭବୀ
ଅଥବା ବାଞ୍ଛାସିଦ୍ଧକୁ ତୁମ୍ଭ ସେ ଆଦ୍ୟଦେବୀ । ୧୬୭ ।
ତାମସ ତନୁ ତୋର ଗୋ ଦୁଖ ସୁଖ ନ ମଣେ
ପଞ୍ଚଧାତୁ ବୁଡାଇଲୁ ସ୍ୱେକଯୋଗ ମିଳନେ । ୧୬୮ ।
ସାକାର ସାମ ଧର୍ଗ ଅଚନ୍ତ କାନ୍ତାମୀ
ଶରଣ ଜନ ପାଳେମୀ ତୋ ଚରଣେ ଦପ୍ତିମା । ୧୬୯ ।
ସେ ପୃଥୁନାର ସ୍ତୋତ୍ର ମୋର ସ୍ତବୁଂ ନତେ୍ୟ
ଶୂଦ୍ରମୁନି ସାରେଳା ଦାସ ବନ୍ଦେ ସଂସାର ଜନନ୍ତେ । ୧୭ ।
ଇଦଂ ବଚନଂ ପ୍ରଣପତ୍ୟ କରଇ ସହଦେବ ପୃଥୁନାର ପାଦତଳେ
ମାଗୋ ମହାଦେଶେ ବୋଲାଇଲି ମୋର ନାମ ତଳ୍ପୀପାଳେ ।୧୭୧।
ପୃଥୁନା ବୋଇଲା ବାବୁ ହୋଇଲି ପ୍ରସନ୍ନ
ତୋହୋର ମୋହୋର ସ୍ୱେକଯୋଗେ ବନ୍ଧୁବାକ ଧନ । ୧୭୨ ।
ଅତ୍ୟନ୍ତ ମହିମାଂ ସ୍ୱେ ବରିଷ୍ଠ ପୁଣ୍ୟକୋଟି
ତୋହୋର ପ୍ରସାଦେ ପାଇବ ସେ କଳ୍ପକ୍ଷୀର ପୁଷ୍ଟି । ୧୭୩ ।
ସହଦେବ ପ୍ରକାଶିଲା ବଇଂଶୀର ବାଣୀ
ମହାଦେଶ ଜନେ ସାନନ୍ଦ ହୋଇଲେ ତାହା ଶୁଣି । ୧୭୪ ।
ବରିଷ୍ଠ ବୋଇଲା ସ୍ୱେତ ନୋହୋଇ ଗୋପାଳ
ଗୋପାଳ ରୂପେ ଅଇଲା କେବଣ ଦିଗପାଳ । ୧୭୫ ।

---

୧୬୫।୧ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଗୋ ତିନିଖଣ୍ଡ ମଧ୍ୟ ।—କ, ଣ

୧୭୩।୧ ଅତ୍ୟନ୍ତ ମହିମାଂ ସ୍ୱେ ବରିଷ୍ଠ ତପକୋଟି ।—ଦ, ଜ, ଛ

ସହଦେବ ବୋଇଲେ ଯେ ଶୁଣସି ରାଜ୍ୟେ ମନ୍ତ୍ର
ପୃଥୁନା ପ୍ରାପତ ଯେବେ ହୋଇଲ୍ ପ୍ରଚଣ୍ଡ । ୧୭୬ ।
ବିରାଟ ରାଜ ହୁଅଇ ଜୀବନ ତୋର ସାଧୁ
ମୁହିଂ ମୋକ୍ଷଗତ ପାଇଲ ତୁମ୍ଭ ମୋହୋର ପରାଣ ବନ୍ଧୁ । ୧୭୭ ।
ଯେବେ ତୋହୋର ପ୍ରସନ୍ନେ ମୁଂ ପାଇଲ ପୃଥୁନା ଗାଈଗୋଟି
ମୁକତ ହୋଇବ ମୋତେ ଦେବା କ୍ଷୀରପୁଟି । ୧୭୮ ।
ସାତ ଷଣ୍ଡଣୀ ବଳ ମୋର ସବୁରହିଂ ବଡ ଆଶ
ତୁ ସର୍ବଗ୍ୟଂ ବିଚକ୍ଷଣ ତୋତେ କହିବଇଂ କସ । ୧୭୯ ।
ସହଦେବ ବୋଇଲ୍ ଶୁଣସି ଗୋ ମହାମାୟେ
ବିରାଟ ରାଜାକୁ ଦେବା କ୍ଷୀର ଯେ ପୁଟିଏ । ୧୮୦ ।
ସନ୍ୟବଳ ମାର ତାକୁ କରନ୍ତୁ ବିମୁଖ
ତୋହୋର କ୍ଷୀରପାନ କରି ପାସୋରିବ ସର୍ବଦୁଖ । ୧୮୧ ।
ପୃଥୁନା ବୋଇଲ୍ ତୋରେ କ୍ଷୀର ଦେବି ବାବୁ
ଟିରେକ ମୋହୋର ବାବୁ ଆକାଶକୁ ଗୁଡିବୁ । ୧୮୨ ।
ଆରେକ ଟର ଦେବୁ ନାଗ ଯେ ଲୋକକୁ
ଯେକ ଟର ସମର୍ପିବୁ ମୋର ଲକ୍ଷେ ଯେ ବଛାକୁ । ୧୮୩ ।
ଯେକ ଟରକର ତୁ ପାଇବୁ ଯେତେ କ୍ଷୀର
ଦୁହିଂଣ ଦେବୁ ହିପ୍ରତ ଯେ ହୋଇବ ମହେଶ୍ୱର । ୧୮୪ ।
ତିନଟର ଗୁଡ ଯେ ଯେକା ଟରକର
ଦୁହିଂକର ସହଇ ପୂରେଇ ଭାଣ୍ଡର । ୧୮୫ ।
ଚକ୍ରୀମାନେ ନେଇଣ ହୁଅନ୍ତି କୁମ୍ଭମାନ
ସହଦେବ ମନ୍ତ୍ରୀକରି କରୁଛଇ ଗାବ ଯେ ଦୋହନ । ୧୮୬ ।
ଦୁହିଂଣ ସହଦେବ ପୂରେଇ କଳସୀରି
ନେଇଣ ଥୋଇଲ୍ ସେ ବିରାଟ ସଭାର । ୧୮୭ ।

---

୧୮୫।୨ ଦୁହିଂଣ ସହଦେବ ପୂରେଇ ଷୀର ଷୀର ।— କ, ଉ, ଚ

ଦେଖିଣ ଆଶ୍ଚର୍ଯ୍ୟ ହୋଇଲ୍ଲ ମହେଶ୍ୱର
ଏମନ୍ତ ଶରଦକରୁ ସହଦେବ ଦୁହିଙ୍କ ଲକ୍ଷେଶ୍ୱର । ୧୮୮ ।
ଦେଖିଣ ଆଶ୍ଚର୍ଯ୍ୟ ଯେ ହୋଇଲେ ମହାଦେବେଶେ
ସାତ ଷଣ୍ଢଣୀ ବଳ ଯେହ ବଶିଷ୍ଠ କ୍ଷୀରପାନ କରଇ ହରଷେ । ୧୮୯ ।
ପୃଥୁନା ପ୍ରାପ୍ତେକ ଗାଈ ଏମନ୍ତ ମୋହୋର ଗୋଷ୍ଠେ ଥାଉ
ଚନ୍ଦ୍ରୀପାଳ ଗୋପାଳ ମୋତେ ଜନ୍ମେ ଜନ୍ମେ ହୋଉ । ୧୯୦ ।
ବହୁତ ପ୍ରଶଂସଇ ରାଜାମାନେ ହୋଇ ଶାନ୍ତି
ଆମ୍ଭଙ୍କୁ ସେ ମୋକ୍ଷ ମୋର ହୋଇଲ୍ଲ ଜୀବନ୍ତ । ୧୯୧ ।
ଯେବଣ କ୍ଷୀରକୁଇଁ ସଦା ଆଶ କରଇ ବେଦବ୍ରହ୍ମା
ସେ କ୍ଷୀର ଆସ୍ୱାଦନ କରିବାକୁ ହୋଇଲ ମୁହିଂ କ୍ଷମା । ୧୯୨ ।
ଶ୍ରୀଭୁଜେ ଶାଢୀ ଯେ ଯେହଣ ରାଜ୍ୟେ ମହା
ଏମନ୍ତ ମୋହୋର ଗୋଷ୍ଠେ ତୁ ଗୋପାଳ ପରୀକ୍ଷ । ୧୯୩ ।
ଏମନ୍ତ ଅନେକେ ସହଦେବେ ଜଗନ୍ନାଥଙ୍କୁ ସ୍ତୁମନ୍ତ
ଏମନ୍ତ ମହା ସଙ୍କଟୁ ମୋତେ ଉଦ୍ଧର ଚକ୍ରଧାରୀ । ୧୯୪ ।
ହେ ବୋଲନ୍ତେ ଗୋପାଳକୁ ଶାଢୀ ଦିଅସି ଶ୍ରୀହସ୍ତେ
ମହାପାତ୍ର ମହାଖୁଣ୍ଟ ପଣେ ଥିବ ଏମନ୍ତ ମୋହୋର ରାଜ୍ୟେ
ଥିବା ପର୍ଯ୍ୟନ୍ତେ । ୧୯୫
ବଶିଷ୍ଠର ବଚନେ ଶାନ୍ତି ଭଜ ଦେବ ବୋଲନ୍ତେ
ଆପଣେ ବାନ୍ଧିଲେ ଶାଢୀ ଚନ୍ଦ୍ରୀପାଳର ମାଥେ । ୧୯୬ ।
ଶାଢୀ ପାଇଣ ସେ କୁମାର ପଞ୍ଚାଣ
କରେ ଲଉଡ ଧରିଣ ସେ ଛଡାଲେ ଗାଈମାନ ।୧୯୭ ।
ଏମନ୍ତ ଅନେକ ଅସଙ୍କ୍ଷେପ ଚରିତ ଶୁଣି ବଇବସ୍ୱତ ମନୁ
ପାଦାର୍ଘ୍ୟ ଦିଲ୍ଲ ନେଇ କୁମ୍ଭଭବର ତନୁ । ୧୯୮ ।

---

୧୯୭।୧ ପଞ୍ଚାଣ—ସିଂହ ।

୧୯୮ { ଅସମ୍ଭବ ଚରିତ ଶୁଣିଣ ବଇବସ୍ୱତ ମନୁ
ପାଦାର୍ଘ୍ୟ ଦିଲ୍ଲ ନେଇ ପିତାମହର ତନୁ ।—

ଘ, ଛ, ଟ, କ, ଦ, ଖ, ଜ, ଙ

ବଡ଼ାଇ ଦ୍ରୁପଦ କଥା କହିଲ ଅଗସ୍ତି ହେ
ଯେତୁ କଥା ଲଗିଲା ମୋତେ ବଡ଼ାଇ ସନ୍ଦେହେ । ୧୯୯ ।
ପୃଥୁନା ଗାଈ ତନ୍ତୁଂ ସହଦେବ କଲାକ ସାଧ
ଯେତୁକ ଶରକରୁ ଦୁହିଁଲେ ସେ ଲକ୍ଷେଶ୍ୱର ଦୁଧ । ୨୦୦ ।
ଶୁଣିବାକୁ ଅସଖ୍ୟ କହିଲ ଭଗବନ୍ତେ
ବଡ଼ାଇ ଅଗୋଚର କଥା ହୋଇଲାକ ମୋତେ । ୨୦୧ ।
ଗୋମାତାକୁ ନିନ୍ଦାକଲେ ହୋଇବ ମନ୍ଦରୋଗୀ
ହୃଦୟକୁ ସମ୍ପ୍ରତେ ମୋର ନ ଯାଇ ଶାସ୍ତ୍ରଯୋଗୀ । ୨୦୨ ।
ଗାଈ କେତେ ହୋଇଲା ତାର ପଦ୍ମା କେତେ ହୋଇଲା
ଯେତୁକା ଶରକରୁ କେସନେକେ ଲକ୍ଷେଶ୍ୱର ଦୁଧ ଦୁହାଁଇଲା ।୨୦୩।
ମହା ପଣ୍ଡିତ ତୁ ଯେ ଭଗ୍ୟଂ ବ୍ରହ୍ମବେତ୍ତା
ଯେତୁ ଶାହାସ୍ତ୍ର କହିବାକୁ ତୁମ୍ଭେ ସେ ଶକତା ବକତା । ୨୦୪ ।
ଯେତୁହା ସଞ୍ଚି ମୋତେ କହିବା ତପୋଧନ
ଶୁଣିଣ ନିଭ୍ରାନ୍ତ ହୋଇବ ମୁଂ ମହାଜ୍ଞାନ । ୨୦୫ ।
ବଦୟନ୍ତ ଅଗସ୍ତି ଯେ ଅନାଦ୍ୟ ବ୍ରହ୍ମବେତ୍ତା
ଶୁଣସି ହୋ ମହାଗୟେ ଯେତୁ ଗାଈର ଆଦ୍ୟଜନ୍ମ କଥା । ୨୦୬ ।
ମୀର ଭେଦରୁ ଯେତୁ ହୋଇଲା ସମ୍ଭୂତା
ଶିର ନିରଞ୍ଜନ ଯେତୁ ଅଟଇ ଆଦ୍ୟମାତା । ୨୦୭ ।
ସେ ନିରଞ୍ଜନ ଗୋଷ୍ଠୀ ଅଟଇ କପିଳା
ଯେତୁହାରଂ ନନ୍ଦନ ଯେ ଅଟଇ ବଉଳା । ୨୦୮ ।
ବଉଳାର ବଂଶେ ଜାତ ଅଟଇ ତ୍ରିଲୋଚନା
ତ୍ରିଲୋଚନର ଅଂଶେ ଉପୁଜିଲା ପୃଥୁନା । ୨୦୯ ।
ପୃଥୁନାର ଆଙ୍ଗିପେ ସୁରଭି ନାମେ ଗାଈ
ଅମୃତ ସମୋଦ୍ଭ ଜଣି ସେ ନିତ୍ୟେ ଚରଯାଇ । ୨୧୦ ।

---

୨୦୭।୨ ମୀର ନିରଞ୍ଜନ ଯେତୁ ଅଟନ୍ତି ଆଦ୍ୟମାତା ।—କ, ଣ

ରତ୍ନଦ୍ୱୀପେ ଚରଇ ସେ ଅମିସ୍ତୁ ଜାତ କ୍ଷୀର
ଚରନ୍ତେ ଦିନେକଟି ହୋଇଲା ଉଚ୍ଛୁର । ୨୧୧ ।
ଅନ୍ୟଦିନେ ଆସନ୍ତେ ତାକୁ ସମୋଦ୍ର ହୋତ୍ରପୁ ଝାଣ୍ଟ ଆଣି
ସେ ଦିନ ବତ୍ସାର ଗ୍ରାସେ ଆସନ୍ତେ ପେଟେ ଲଗିଲ୍ଲକ ପାଣି । ୨୧୨ ।
ତାର ସଙ୍ଗତେ ଲୁଣିପାଣି ଲଗିଥିଲା
ବତ୍ସା ପିବନ୍ତେଣ କ୍ଷୀର ସୁସ୍ୱାଦ ଲାଗିଲା । ୨୧୩ ।
କ୍ଷୀର ପିବନ୍ତେଣ ପେଟର ପାଣି ଭକ୍ଷ
ହୋଇଲା ମାତା ଗୋ ଯେମନ୍ତ ଜଳ କାହିଁ ଅଛୁ । ୨୧୪ ।
ସୁରଭି ବୋଇଲା ମାଗୋ କ୍ଷାର କ୍ଷୀରମାର ଶ୍ୱେତ ଯେ ଲବଣ
ଯେ ପାଞ୍ଚ ସମୁଦ୍ର ଶତେ ନବଲକ୍ଷ ଯୋଜନ । ୨୧୫ ।
ତହିଁର ଅନ୍ତରେ ଅଛି ଅମ୍ବୁ ସମୋଦ୍ର ଜଳ
ଆଣୁ ନ୍ରପୁ ପାଣି ମୋତେ ହୋଅଇ ସକଳ । ୨୧୬ ।
ମାଗୋ ଆଜ ତୋହୋର ବିକଳେ ଧାଇଁ ମୁଁ ଅଇଲଇଁ ଖଟେଙ୍କ
ତେଣୁକର ପାଣି ଲାଗିଲା ମୋହୋର ପେଟରେ । ୨୧୭ ।
ଆରଦିନ ସୁରଭି ଯେ ବେଗେ ଚଳିଗଲା
ଶରଧାପେ ନନ୍ଦନୀ ତାହାର ପଛେ ଗୋଡ଼ାଇଲା । ୨୧୮ ।
ଅମ୍ବୁ ସମୋଦ୍ର ତୃଷାରେ ଆପ୍ୟାନ ସେ କଲା
ଦେଖିଣ ଆଶ୍ଚର୍ଜ ଯେ ସୁରଭି ହୋଇଲା । ୨୧୯ ।
ଶୁଣ ହୋ ଚଇତନ ବଦପୁନ୍ତ ଅଗସ୍ତି ମହାମୁନି
ଯେମନ୍ତ ମହିମାଂ ସୁରଭିର ରାଜା ଶୁଣ ତତ୍ତ୍ୱ ଘେନ । ୨୨୦ ।
ସେ ଅମ୍ବୁ ସମୋଦ୍ର ଯେ ତିନକୋଟି ଯୋଜନଟି
ବିସ୍ତାର ଆୟେତନ ବିଶାଶତେ ଯୋଜନ ଘଟି । ୨୨୧ ।

---

୨୧୧।୧ ରତ୍ନଦ୍ୱୀପେ ଚରଇ ସେ ଅମିସ୍ଥ ରସ କ୍ଷୀର ।—ଜ, ଣ

୨୧୧।୧ ରତ୍ନଦ୍ୱୀପେ ଚରଇ ସେ ଅମିସ୍ଥ ଶିଖର ।—ଧ, ଠ

୨୧୨।୧ ଅନ୍ୟଦିନେ ଆସନ୍ତେ ତାକୁ ସମୋଦ୍ର ହୋପ୍ତେ ଝାଣ୍ଟୁ ଆଣି ।— ଗ, ଦ, ତ, ଧ, ଣ, ଝ

ଯେତେକ ସମୋଦ୍ର ଜଳ ହାଦେ ପିଇଲା କହ୍ଲଗୋଟି
ଶୁଣି ଆଚମ୍ଭିତ ହୋଇଲା ରାଜଶ୍ରେଷ୍ଠି । ୨୨୨ ।
ତୁ ଯେ ପୁଚ୍ଛାକଲୁ ବଇବସ୍ବତ ମନୁ
ସମୋଦ୍ର ଗଣ୍ଡୂଷ ହୋଇଲାଟି ଯେତ୍ବାର କୃଶାଣୁ । ୨୨୩ ।
ଅମୃତ ସମୋଦ୍ର ନାଶ ଦେଖିଣ ସମସ୍ତ ବୃନ୍ଦାରକେ
ସୁରରକ୍ଷକ ଅନେକ ସ୍ତୁତି ଯେ କଲେ ଦେବଲୋକ । ୨୨୪ ।
ବୋଇଲେ ମାଗୋ ତୋହୋର ନନ୍ଦନା ଯେ କଲାକ ଅମାନ୍ତ
ଯେ ଅମ୍ବୁ ସମୋଦ୍ର ନ ଥିଲେ ସଚରାଚର କେମନ୍ତେ ବ୍ରତ । ୨୨୫ ।
ପୃଥୀ ଫଳ ନ ଧଅଇ ନୋହୋଇ ଶସ୍ୟ ଜାତ
ଯେଥିକ ଆଶ୍ରେକର ଯେ ବ୍ରତନ୍ତ ଭୂବ ସାତ । ୨୨୬ ।
ଦେବତାଂକ ବଚନେ ସେ ଅନାଦ୍ଧ ମାହେଶ୍ବରୀ
ସମୋଦ୍ର ଭିତରେ ନେଇ ମେଲିଲା ଛିରଗ୍ରହ । ୨୨୭ ।
ମୂଷଳ ଧାରରେ ଦୁଗ୍ଧ ଝରିଲା ଧିକାରତ
ସହସ୍ର ବରଷେ ସମୋଦ୍ର ପୂରିଲା ଯୁଗତ । ୧୨୮ ।
ତୁ ଯେ ପୁଚ୍ଛାକଲୁ ରଯେ ଜୀବନ ତୋର ସାଧୁ
ପ୍ରସରିତ କାଯେ ହୋଇଲା କ୍ଷୀରସିନ୍ଧୁ । ୨୨୯ ।
ଦେନ ନୟନୁ ଜାତ ମାର ମାଳ ସମୋଦ୍ର ବେନ
ଶ୍ବେତ ସମୋଦ୍ର ଝରିଲାଟି ରୋମାବଳୀ ଯେଣ । ୨୩୦ ।
କ୍ଷୀର ସମୋଦ୍ର ଘୃତ ସ୍ତନରୁ ହେଲା ଜାତ
କର୍ଣ୍ଣରୁ ଅମୃତ ଯେ ଝରିଲା ଗୋ ମାତ । ୨୩୧ ।

---

୨୨୩।୨ କୃଶାଣୁ—କ୍ଷୀଣତ୍ବ ଅର୍ଥରେ ବ୍ୟବହୃତ ।
୨୩୦।୨ ଶ୍ବେତ ସମୋଦ୍ର—ଦଧି ସମୁଦ୍ର ।

୨୨୩।୨ ସମୋଦ୍ର ଗଣ୍ଡୂଷ ହୋଇଲାଟି ଯେତ୍ବାର ଆପ୍ୟାନୁ ।—ଣ, ଙ
୨୨୫।୨ ଅମୃତ ସମୋଦ୍ର ନ ଥିଲେ ସଚରାଚର ନ ବ୍ରଢ ।—ଚ,ଦ,ଜ,ଜ,ଛ
୨୨୫।୨ କ୍ଷୀର ସମୋଦ୍ର ନ ଥିଲେ ସଚରାଚର ନ ବୃଢ ।—ଘ,ଝ

ମାସ୍ତେ ଜାତ କରନ୍ତି ପିବନ୍ତି ସେହିମାର ବତ୍ସା
ସଂହରନ୍ତି ଉଦ୍ଧାରନ୍ତି ସେହିମାଂକର ସ୍ୱଇଚ୍ଛା । ୨୩୨ ।
କପିଳା ବୋଲକର ସେହିମାଂକର ଆଶ୍ର
ସେହିକା ଶରୀରୁ ସାତ ସମୋଦ୍ର ଉପୁଜାଇ । ୨୩୩ ।
ତୁ ଯେ ପୁଚ୍ଛାକଲୁ ମୋତେ ମନୁ ଦଣ୍ଡଧର
ଲକ୍ଷେଶ୍ୱର କ୍ଷୀର ତାକୁ କେତେକ ମାତର । ୨୩୪ ।
ମନରେ ଯେତେ କଳ୍ପିବ ତେତେ କ୍ଷୀର ଦ୍ୟନ୍ତି
ତେଣୁ କାମଧେନୁ ନାମ ଜଗତେ ବୋଲନ୍ତି । ୨୩୫ ।
ସେହି ଶରୀରୁ ସମୋଦ୍ର ଯେ ହେଲେ ଉପୁଜାଇ
ଲକ୍ଷେଶ୍ୱର ଦୁଧ ଯେ ସହଦେବ ଦୁହିଁଂଲାଇଂ । ୨୩୬ ।
ଅନେକ ପୂଜାକଲେ ମନୁ ମହାଗ୍ୟାଂତା
ତବ ମୁଖୁଂ ଶୁଣି ମନଭ୍ରାନ୍ତି ଫିଟିଲା ବ୍ରହ୍ମବେତ୍ତା । ୨୩୭ ।
ମହତ ଭାଗ୍ୟ କଲାକ ମହୀଧିପେଶ୍ୱର
ମାନବେ ପ୍ରାପତ ଆସି ହୋଇଲା ଦେବମାତାକ୍ଷୀର । ୨୩୮ ।
ଗୋଧନ ଫଳ ଘେନ ସହଦେବ ଚଳଇ ଗୋଗୋସ୍ତେ
କୁଣ୍ଡଳୀ ପାତଲା ନେଇ ମଣିଭଦ୍ରା ନଦୀତଟେ । ୨୩୯ ।

---

୨୩୮।୧ "ମାନବେ ପ୍ରାପତ ଆସି ହୋଇଲା ଦେବମାତା କ୍ଷୀର"
ପରେ 'ଚ' ପୋଥିର ଅଧିକା ପାଠ:—
ଶୁଣିଣ ସାନନ୍ଦ ହୋଇଲେ ମନୁ ମହାଯତି
ସେଥୁ ଅନନ୍ତରେ ସହଦେବ କଲା କସ ସ୍ତୁତି ।
ସେହି ବସ୍ତୁ ମୋତେ କହିବା ମୁନିବର
କେବଣ କୃତ କଲା ପ ଣ୍ଡବ ସୁନ୍ଦର ।
ବୋଲନ୍ତି ଅଗସ୍ତି ଶୁଣ ମନୁ ନୃପତି
କୋନ୍ତଂକର ଶାନ୍ତୀ ଯେ ଘେନନ୍ତି ସହଦେବ ଶାନ୍ତମୂର୍ତ୍ତି ।

୨୩୯।୨ କୁଟୁଣୀ ପାତଲା ନେଇ ମଣିଭଦ୍ରା ନଦୀତଟେ ।—ଦ,ଜ,ଛ,ଝ,ଟ,ପ

୨୩୯।୨ କୁଣ୍ଡଳୀ— ପାତ୍ରବିଶେଷ ।
କୁଟୁଣୀ—ପାତ୍ରବିଶେଷ ।

ମନ୍ତ୍ରୀ ଚୂଡ଼ାମଣି ସେ ସହଦେବର ପ୍ରସାଦେ
ଆରୋଗ୍ୟ ଗୋଧନ କ୍ଷୀର ବର୍ଦ୍ଧମାନ ହୋଇଲାକ ହାଟେ । ୨୪୦ ।
ପତ୍ୟେକ ଘର କ୍ଷୀର ଚାର ଉପୁଜଣ ଥିଲା
ଶତେପଦ୍ମ ଘର ଦୁଧ ସହଦେବ ଦୁହିଂଲା । ୨୪୧ ।
ବିରାଟ ରାଜ୍ୟ ସବୁ ହେଲା ଗୋଧନମୟେ
ରୋଗ ପୀଡ଼ା ନାହିଂ ସବୁ ଧବଳ କମଳ ପ୍ରାୟେ । ୨୪୨ ।
ସହସ୍ରେକ ଗାଈରେ ଗୋ ଗୋଷ୍ଠେକ ବୋଲି
ଶତେଗୋଷ୍ଠ ହୋଇଲେ ଯେ ହୋଅଇ ଯେକ ପଲ୍ଲୀ । ୨୪୩ ।
ଶତେକ ପଲ୍ଲୀରେ ଯେ ଲଜ୍ଜଡ଼ପ୍ୟେ ଅଟଇ
ଶତେ ଲଜ୍ଜଡ଼ପ୍ୟେ ମହାଖୁଣ୍ଡକେ ଟଟଇ । ୨୪୪ ।
ଶତେକ ମହାଖୁଣ୍ଡେ ଅଟଇ ଯେତେ ଗାଈ
ଯେତେକ ଉପରେ ଯେ ଯେକ ମହାଭେଇ । ୨୪୫ ।
ଶତେକ ମହାଭେଇ ମୂଳେ ଗୋରୁ ହୋଅଇ ଯେତେ
ଲେଖ ହୋ ପଣ୍ଡିତେ ଗୋଧନ ହୋଇଲାକ କେତେ । ୨୪୬ ।
ଦୁହାଂଲ ପାଞ୍ଚପଦ୍ମ ବରଷିଆ ତିନପଦ୍ମ ଗାଈ
ଅଣ୍ଡିର ମଣ୍ଡଳେକ ବଛା ପଞ୍ଚ ପଦ୍ମଯୁଧ ମାଇ । ୨୪୭ ।
କପିଳା ବଉଳା କଷରା ଶୁକଳା କୃଷ୍ଣବର୍ଣ୍ଣ
କପୋଳ ସିଂହ କାହାର ଉଚୁରେ ଘନ ଘନ । ୨୪୮ ।
ପିଙ୍ଗଳ ନୟନ କନ୍ଧ ଯେ କାହାର କଳା ପିଠି
ପାଦ ଖୁରୁ ଶ୍ୱେତ କାହାର ମସ୍ତକେ ବୃନ୍ଦ ଫୁଟି । ୨୪୯ ।
ଯେହେନେକ ପାଞ୍ଚଲକ୍ଷ ଷଣ୍ଢ ଅଛି
ଲକ୍ଷେକ ଲକ୍ଷେକ ତହିଂ କପିଳା ଗାଈ ଗଛି । ୨୫୦ ।
ଯେତେକ ଶତ ଯୋଜନ ମହାରାଜ୍ୟ ସୀମା
କୃଷି କର୍ମ ନାହିଂ ତହିଂ ଗୋଧନ ସେ ବ୍ରହ୍ମା । ୨୫୧ ।
ସୁଖେଣ ଚରନ୍ତି ଯେ ଓଗାଳନ୍ତା ନାହିଂ କେହି
କଣୟୁଭଦ୍ରା ନଦୀରୁ ସେ ସୁଖେଣ ପାଣି ଖାଇ । ୨୫୨ ।
ଗୋଧନ କାଳେ ଚରେ ଚରେ ଭୂମିରେ ପକାନ୍ତି ଯହି
କଟକ ବେଢିଣ ଅଡାଇ ପହର ପରଯନ୍ତେ ବହଇ କ୍ଷୀର ନଦୀ ।୨୫୩।

ସକଳ ଜୀବଜନ୍ତୁ କରନ୍ତି କ୍ଷୀରପାନ
ସୁବର୍ଣ୍ଣରେ ଝଳନ୍ତି ପ୍ରାୟେ ଦିଶନ୍ତି ଦେହବର୍ଣ୍ଣ । ୨୫୪ ।
ମଦ୍ରଦେଶ କଟକରେ ସକଳ ନରନାରୀ
ବିଦ୍ୟାଧର ପରାୟେ ଦିଶନ୍ତି ସ୍ତ୍ରୀମାନେ ଅପଛରୀ । ୨୫୫ ।
କଇବସୁତ ମନୁ ପୁଚ୍ଛାକଲେ ଅଗସ୍ତି ମହାମୁନେ୍ୟ
ଶସ୍ୟ ଜାତ ନାହିଁ କେମନ୍ତେ ବୃତନ୍ତି ପ୍ରଜାଜନେ । ୨୫୬ ।
ଅଗସ୍ତି ବୋଇଲେ ସେ ମଘଦେଶ ମଦ୍ରଦେଶ ଭୂମି
ତାହା ଭୋଗ କରଇ ସେ ବିରାଟ ଦେବସ୍ୱାମୀ । ୨୫୭ ।
ସେ ମଦ୍ରଦେଶ ରାଜା ଅଟେ ମହୀଦାସ
କୀଚକର ଭୟେ ସେଠି ନ ରହେ ଲକ୍ଷପାଶ । ୨୫୮ ।
କାମ୍ୟକ ନାମେ ପର୍ବତ ଯେ ମଘଦେଶେ ବସଇ
କାମ୍ୟକ ନାମୁଂ ତହିଁ ପ୍ରତିଦିନ ବରଷଇ । ୨୫୯ ।
ଗ୍ରହଣ ଦିବସରେ ଯେ ପାତଇ ତହିଁ ଧାନ
ତହିଁ ସେ ଉତପତି ହୁଅଇ ସର୍ବ ଶସ୍ୟମାନ । ୨୬୦ ।
ଜଣକେ ଶତେମାତ୍ର ବର୍ତ୍ତନ ଦେଇ ଭୂମି
ସ୍ନେହ ଆୟେ ତ କରନ୍ତି ବିରାଟ ଦେବସ୍ୱାମୀ । ୨୬୧ ।
ସ୍ନେ ବିଧିରେ ବେଢ଼ା ରାଜ୍ୟ ମାଡବସଇ ବିରାଟ
ଆପଣା ସୁଷମାୟେ ଥାଇ, ନାହିଁ ତାର ପରରାଷ୍ଟ୍ର । ୨୬୨ ।
ଆପଣେ ହେ ନରେନ୍ଦ୍ର ପରେ ନୋହଇ ଦ୍ୱନ୍ଦୀ
ତାହାର ସଙ୍ଗରେ କେହୁ ନୋହଇ ବିବାଦୀ । ୨୬୩ ।
ହେମନ୍ତ ମଦ୍ରଦେଶ ସୀମା ଯୋଜନ ପଞ୍ଚାଶ
ଧବଳ ଗୃହେଶୀ ଘରେ ବସଇ ସୁବର୍ଣ୍ଣ କଳସ । ୨୬୪ ।
ଧନେଣ ଗୁରୁହଂଶୀ କୁବେର ସମାନେ ପରଜା
ଜଣେ ଜଣେକ ଖଟନ୍ତି ରାଜାଂକୁ ନ ଦିଅନ୍ତି ସଜ୍ଞା । ୨୬୫ ।

---

୨୫୯।୧ ତହୁଂ ସେ ଉତପତ୍ତି ହୁଅଇ କୃଷ୍ଣ କର୍ମମାନ ।—ଙ୍ଗ, ଛ, ଡ, ଲ
୨୬୫।୨ ଜଣେ ଜଣେକ ଖଟନ୍ତି ରଜାଙ୍କୁ ନାହିଁ ସଜ୍ଞା ।—ଟ, ଚ

ଗୋରସ ବିକନ୍ତି ଉପୁଜେ ଯେତେକ ଧନ
ରାଜାର ଭଣ୍ଡାରକୁ ଚଳଇ ବିଦ୍ୟମାନ । ୨୬୬ ।
ଅମନାତ୍ୟ ପାତ୍ର ଯୋଦ୍ଧା ଅନେକ ପାଦାନ୍ତି
ସମସ୍ତ ପାତ୍ରମାନେ କୃଷି କର୍ମଣ ବୃତ୍ତନ୍ତି । ୨୬୭ ।
ମହାପାତ୍ରଙ୍କେ ବୃତ୍ତିଶତ ମାତ୍ର ଭୂମି ପାତ୍ରଙ୍କେ ଶତେ ତିନ
ପାଦାନ୍ତଙ୍କେ ଶତେକମାତ୍ର ଯୋଦ୍ଧାଙ୍କେ ଶତ ବେନ । ୨୬୮ ।
ମହାପାତ୍ରଙ୍କେ ଲକ୍ଷେଗାବ ପାତ୍ର ପଞ୍ଚାଶ ସହସ୍ର
ଯୋଦ୍ଧାଙ୍କେ ତିନସହସ୍ର ପାଦାନ୍ତଙ୍କେ ସହସ୍ରେକ ନିର୍ମିତ । ୨୬୯ ।
ସେହିନେକ ସଂପଦ ମଘଦେଶ ସତ୍ସ୍ୟଦେଶ ପୁରୀ
ଦେବତା ସମାନେ ତହିଁ ବୃତ୍ତନ୍ତି ନରନାରୀ । ୨୭୦ ।
ମହୀତଳେ ଉଦିତେ ସେ ମତ୍ସ୍ୟଦେଶ ନାହା
ଅଶୀଲକ୍ଷ ରଥ ଅଟଇ ତାହାଙ୍କର ହାଦେ ସାହା । ୨୭୧ ।
ତିନଖର୍ବ ରେଖାର ତୁରଙ୍ଗମ ବାଜୀ
ଧବଳ ଶୁଦ୍ଧ ବାରଣ ସେ ନିର୍ବାଣ ମହାତେଜ । ୨୭୨ ।
ସୋହୋଡ଼ ବନ ତହିଁଙ୍କ ନିକଟଇ
ସେମନ୍ତେ ଉତ୍ତମ ଅଶ୍ୱ ଯେ ତାହାକୁ ଖଟଇ । ୨୭୩ ।
ସେହାର କୁଳେ ଯେତେକ ରାଜା ହୋଅଇ ଅପ୍ରୀତି
ଗୋରସ ଦେଇ ଅରଜଇ ବହୁତେ ସେ ପ୍ରୀତି । ୨୭୪ ।
ଧାର୍ମିକ ବିବେକ ପଣ୍ଡିତ ସେ ଅଟଇ ମହାରାଜା
ସୁଦେଷ୍ଣା ବୋଲିଙ୍କରି ତାହାର ଭାରିଜା । ୨୭୫ ।
ଶଙ୍ଖ ଶ୍ୱେତ ଉତ୍ତର ତାହାର ତିନି ସେ ତନୟେ
ଉତ୍ତରା ନାମେଣ ତାର ସେକ ଦୁହିତାୟେ । ୨୭୬ ।
ପାଞ୍ଚମଣ୍ଡଳ ମାଡ଼ି ତାହାର ରାଜ୍ୟଖଣ୍ଡ
ସାତ ଅକ୍ଷଉଣୀ ବଳ ତାହାର ତିନଶତ ପାରିଦଣ୍ଡ । ୨୭୭ ।
ସେସନେକ ସଂପଦେ ବିରାଟ ରାଜ ବସଇ
ଆନ ରାଜ୍ୟ ଖଳ ତାହାର ରାଜ୍ୟ ନ ପଶଇ । ୨୭୮ ।

---

୨୬୬।୨ ସେହି ସେ ଭଣ୍ଡାର ହୁଅଇ ରାଜାର ବିଧାନ ।—ଙ, ଣ, ଜ
୨୭୧।୧ ମହୀତଳେ ବିଦିତ ସେ ମତ୍ସ୍ୟଦେଶ ନାହା ।—କ, ଙ, ଘ, ଛ, ଝ, ଖ

ଶୁଣ ହୋ ନରନାଥ ମତ୍ସ୍ୟ ଦେଶର ମହିମା
ଯେଉଁ ଦେଶେ ପାଣ୍ଡବେ ଜନ୍ମ ଭାରତ ମହାନାମ ମହାତମା । ୨୭୯ ।
ଆହୋ ନରନାଥ ବିରାଟ ମହିମା କୁ ଶୁଣ
ଘରେ ଘରେ ବଖାଣ ହେଉଥାଇ ବିଷ୍ଣୁ ନାମ ପୁରାଣ । ୨୮୦ ।
ଯେଉଁ ଦେଶେ ମହିମା ସେ ବିରାଟ ଭୁବନ
ହରିବାସର ଦିନେ କେହି ନ ଭୁଞ୍ଜନ୍ତି ଅନ୍ନ । ୨୮୧ ।
ଅଥବା ଅନ୍ନ ଯେବଣ ଦିନ ଭୁଞ୍ଜନ୍ତି ନୃପତେ
ରାଜ୍ୟ ବାହାର କରିଦିଅନ୍ତି ତାହାକୁ ପାଞ୍ଚବରଷ ପରିଯନ୍ତେ । ୨୮୨ ।
ପାଣ୍ଡୁର ନନ୍ଦନ ଯେ ନିଜ ରାଜ୍ୟ ଉପେଖି
ରହିଲେ ନିଶ୍ଚିନ୍ତେ ରାଜାର ଧାର୍ମିକ ପଣ ଦେଖି । ୨୮୩ ।
ସଭାପଣ୍ଡା ପଣେ ରହି ପଣାଶୀଡ଼ା ବିଧାନେ
କୋଳିଭକ୍ତ ନାମ ଯୁଧିଷ୍ଠିର ବହିଲେ ଗୋପ୍ୟାନେ । ୨୮୪ ।
ଧର୍ମିଷ୍ଟଂ ଅମାତ୍ୟ ନ କହନ୍ତି ସଭାସ୍ଥେଣ ବସି
ଯେଉଁଣକର ବେନରାଜ୍ୟେ ଜନେ ଅନେକ ଭଗତ ହୁଅନ୍ତି ଆସି ।୨୮୫।
କୋଳେ ବୋଇଲେ ରାଜା ଶୁଣିମା ବିରାଟ
ଯଦ୍ୟପି ଦୂତେ ଆସିବେ ପରରାଷ୍ଟ୍ର । ୨୮୬ ।
ନଗ୍ର ଭିତରେ ରାଯ୍ୟେ ତାକୁ ନ ଦେବୁ ହାଦେ ପଶି
ଅମନାତ୍ୟ ପର ମୁଖେ କରିବୁ ସମ୍ଭାଷି । ୨୮୭ ।
ଆସ୍ତାନେ କୋଳ ତାଂକୁ କହିଲେ ଯେବଣ ବୁଦ୍ଧି
ପରରାଷ୍ଟ୍ର ଲୋକଙ୍କ ସେହି ଦିନୁଂ ଦୁଆର ବିରୋଧୀ । ୨୮୮ ।
ବଲ୍ଲଭ ନାମେଣ ସୁଆମ ପକାର ମୂର୍ତ୍ତି
ବୃକୋଦର ପାକ ପଚନ କରଇ ସେ ନିତପ୍ରତି । ୨୮୯ ।
ଗଜଶା ସଜଶା ନଳ ସେ ତନବଧି ଗନ୍ଧଣା
ସମସ୍ତ ସଂପାଦଇ ସେ କୋଇନ୍ତାଂକର ଦୂଲଣା । ୨୯୦ ।
ଯେଉଁକାଳ ସୂଦକୋଇକେ ସେ କରଇ ରନ୍ଧନ
ସୁଖେଣ ଭୋଗ କରନ୍ତି ସେ ସମସ୍ତ ରାଜ୍ୟମାନ । ୨୯୧ ।

୨୯୧ { କଉରୁବେ ପ୍ରିଗ୍ରାମାନେ ରନ୍ଧନେ ପରବାନ୍ତ ।ଦେଇ . . .
ଭୋଜୁଅ ଘରେ ସେ ଯତନେ ନିଅନ୍ତ ରନ୍ଧାଇ ।— ଙ, ଛ, ଟ, ଙ, ଚ

କଉତୁକେ ନଗ୍ର ସ୍ତ୍ରୀମାନେ ଭୋଜନ କରନ୍ତି
ସୁସ୍ୱାଦ ପାଇଣ ରୋଷ୍ଟୁଆ ଘରେ ରାନ୍ଧଣା ସଞ୍ଚା ଦଅନ୍ତି । ୨୯୨ ।
ହରଷେ ରାନ୍ଧିଦିଅଇ ସେ କାହାକୁହିଁ ନଗଣ ନାହିଁ
ସମସ୍ତ ସୁହୃଦ ମଣେ ବଲ୍ଲବ ଗୋସାଇଁ । ୨୯୩ ।
ସ୍ୱାମୀଙ୍କୁ ସ୍ତ୍ରୀଷାବାସୀ ପରଯନ୍ତେ ସବୁଂକୁହିଂ ଯେକଦୃଷ୍ଟି
ଚେଣ୍ଡୁକର ସମରାଜ୍ୟ ସାଧ ସାଧୁ ଧୁନ ଭଠି । ୨୯୪ ।
କୋନ୍ତେ ସଙ୍କପଣ୍ଡା ଖ୍ରୀମ ରାନ୍ଧୁଣୀଆ ରୂପ ଧରି
ନକୁଳ ବାଜାପାଳ ଅର୍ଜୁନ ବୃହନ୍ନଳା । ୨୯୫ ।
ଦ୍ରୋପଦୀ ରହିଲେ ଯେ ସଇରନ୍ଧ୍ରୀ ରୂପ ହୋଇ
ସହଦେବ ମନ୍ତ୍ରୀ ଯେ ରଖିଲ୍ଲକ ଗାଈ । ୨୯୬ ।
ଯେସନେକେ ସମସ୍ତେ ଗୁପତେ ରହିଲେ
ବିରାଟ ରାଜ୍ୟ କେହି ଜାଣି ନୁଆରିଲେ । ୨୯୭ ।
ଯେମନ୍ତେଣ ଧନୁ ମକର କୁମ୍ଭ ମୀନ ମେଷ ବୃଷଭ ଗଲା
ଷଡମାସ ଗଲା କେହି ଜାଣନ୍ତା ନୋହିଲା । ୨୯୮ ।
। ୨୦୧୫ ।

## ଭୀମ-ବ୍ୟାଘ୍ର ଯୁଦ୍ଧ ଓ ନାନା ପ୍ରସଙ୍ଗ

ଏହା ଶୁଣି ବୋଇଲା ବଳଂକ ଅଧିପତି
ଅନ୍ନ ଭୁଞ୍ଜିଣ ପାବେନ ହୋଇଲା ହିପୁତ ।୧।
ଭୀମସେନ ମହିମାଂ ଯେ ତୁମ୍ଭେ ମୋତେ କହ
ସାଂଗ୍ରାମ ନ ପାଇଲେ ସେ ନ କରଇ ମୁଣୋହ ।୨।
ପୁଷ୍ଟ ଭୋଜନେ ଯେ ତାର ଶରୀର ବଢିଲା
ସେ ମହାତମା ଯେ ଶରୀରେ ସମର କଷ କଲା ।୩।
ବଦଯୂନ୍ତ ଅଗସ୍ତି ଯେ ଗ୍ୟାନବନ୍ତ ଶୁଦ୍ଧଚେତା
ଶୁଣ ହେ ମହାରାଜେ ପଣ୍ଡିତ ମହାଶ୍ରୋତା ।୪।
ଶୁଣ ହେ ମହାରାଜା ବଦଯୂନ୍ତ ମହାତମା
ଯେକଇ ମତ୍ତବ୍ୟାଘ୍ର ବଧକଲା ଭୀମା ।୫।
ଏହା ଶୁଣି ମନୁ ବୋଇଲେ ଶିରେ ଦେଇ କର
ହେ ଅଗସ୍ତି ମୁନି ମୋତେ କହିବା ସମାଚାର ।୬।
କି ଅବା ବ୍ୟାଘ୍ରକୁ ଭୀମ ମାଇଲା ବନେ ପଶି
କି ଅବା ବ୍ୟାଘ୍ର ନଗରେ ଉପଦ୍ରବ କଲା ଆସି ।୭।
ଏହା ସଙ୍ଖପି ମୋତେ କହିବା ମୁନିବର
କି ରୂପେ ବ୍ୟାଘ୍ରକୁ ସେ ମାଇଲା ବୃକୋଦର ।୮।
ଅଗସ୍ତି ବୋଇଲେ ହେ ଯେକଇ ବେଣ୍ଟକାର
ମନୋହର ବନରେ ଯେ ଅଛଇ ତାର ନିଜ ଘର ।୯।
ଦଣ୍ଡକାରଣ୍ୟକୁ ସେ ମୃଗୟା ବିନୋଦେ ଗଲା
ଗଜ ବ୍ୟାଘ୍ରଂକର ତହିଂ ସମର ଦେଖିଲା ।୧୦।

---

୩।୨ ସେ ମହାପୁରୁଷ ଯେ କେମନ୍ତେ ଦିନ ବଞ୍ଚାଇଲା ।—ଜ୍ଞ, ଅ

ପର୍ବତେ ଥାଇଣ ସେ ବନ୍ଧିଲା ଖାରଶର
ନାରଜ ଘାତ ପାଇଣ ସେ ପଳାଇଲା ବ୍ୟାଘ୍ରବର । ୧୧ ।
ମତ୍ତହାଥୀକି ବନ୍ଧନ କଲେକ କିରାତ ଜାତି
ବିରାଟେ ରାଜ୍ୟ ନେଇ କଲେକ ମହାପାପ । ୧୨ ।
ସେ କିରାତର ହାଥେ ହାଥୀକି କରାଇ ବନ୍ଧନ
ତୋଷେଣ ବିରାଟ ଦେଲା ଅନେକ ଧନବସ୍ତ୍ରମାନ । ୧୩ ।
ରାଜ ହବା ତାହାକୁ ଦୃଢକରି ବାନ୍ଧି
ଅବଦେକ ହୋଇଲାଣି ହାଥୀକି ଯେ ନୁଆରଲେ ସାଧି । ୧୪ ।

---

୧୧।୨ "ନାରଜ ଘାତ ପାଇଣ ସେ ପଳାଇଲା ବ୍ୟାଘ୍ରବର" ପରେ
'ଚ' ପୋଥିରେ ଅଧିକା ପାଠ:—

ନାରଜ ବାଜନ୍ତେ ବ୍ୟାଘ୍ର ପଳାଇଲା ଡରେ
ମତ୍ତହାଥୀକି ବନ୍ଦୀକଲା କିରାତ ଶବରେ ।
ସେ ମତ୍ତହାଥୀ ବନ୍ଦୀକଲା କିରାତ ରାଜନ
ବୋଇଲା ଦେଖାଦେଖି ବିରାଟ ଭୁବନ ।
ସ୍ୱେଅନେକ ବିସ୍ମିତ କରି ନାମେ ଶବର
ପାଦେ ଦଉଡ଼ ଲଗାଇ ସେ ବସିଲା କନ୍ଧର ।
ଦଣ୍ଡକାର ଅରଣ୍ୟରୁ ସେ ଗଜ ଘେନିଗଲା
ବିରାଟ ସ୍ୱାମୁରେ ସେ ଦେଖା ନେଇ ହେଲା ।
ଦେଖିଣ ସନ୍ତୋଷ ସେ ମତ୍ସ୍ୟଦେଶର ରାଜନ
ସେହି କିରାତ ଆପେ ହାଥୀ କଲାକ ବନ୍ଧନ ।
ତୋଷେଣ ବିରାଟ ଅନେକ ଧନ ଦେଇ
ପୁରସ୍କାର୍ଥ କଲା ତାକୁ ଦେଶରେ ରଖାଇ ।
ଧନ ପାଇ କିରାତ ଅଇଲା ତାର ଘର
ହାଥୀ ପାଇ ହରଷ ହୋଇଲା ନୃପବର
ଅନେକ ଯତନ କରି ଦଉଡ଼ିରେ ବାନ୍ଧି
କେହୁଣସି ମତେ ହାଥୀ ନୁଆରିଲା ତା ସାଧି ।
କୁଟଣୀ ଯନ୍ତ୍ର ପାତିଲା ଦଣ୍ଡକା ଅରଣ୍ୟେ
ପଡ଼ିଲା ବ୍ୟାଘ୍ର ତାକୁ ସେ କଲାକ ବନ୍ଧନେ ।
ସ୍ୱେହାର ପାଞ୍ଚ ଶିକଳ ଲଗାଇ ଦଉଡ଼
ଅତଅନ୍ତ ଯତନେ ସେ ଦୃଢକରି ବାନ୍ଧି ।

ପୁଣିହିଂ କରତ ସେ ଦଣ୍ଡକା ଅରଣ୍ୟକଇଂ ଗଲା
ସେ ମତ୍ତ ବ୍ୟାଘ୍ରକୁ ସେ ହେଲେଣ ବନ୍ଧନ କଲା । ୧୫ ।
ମନ୍ଦର ପର୍ବତ ଜାଣି ବ୍ୟାଘ୍ରର ନଜର କାପ୍ତେ
ମୁଣ୍ଡ ହଣଇ ଯେ ତାର ଉଦେଗିଲ୍ ପ୍ରାପ୍ତେ । ୧୬ ।
ଆକାଶ କଂପାଇଂ ସେ ବ୍ୟାଘ୍ରର ଘୋରରଡି
ଚଳନ୍ତେଣ ହେଲ ଯେନଇ ବସୁନ୍ଧରା । ୧୭ ।
ବଇବସ୍ୱତ ମନୁ ଅଗସ୍ତ୍ୟଂକ ପୁଚ୍ଛାକଲେ
ସେ ମତ୍ତବ୍ୟାଘ୍ରକୁ ଶ୍ରମସେନ କେମନ୍ତେ ମାଇଲେ । ୧୮ ।
ଶବର ସେ ବ୍ୟାଘ୍ରକୁ ବା ବାନ୍ଧିଲା କେମନ୍ତେ
ସାଧୁ ସାଧୁ ମହିମାଂ ସେ ଶବର ମହାବଳବନ୍ତେ । ୧୯ ।
ସେ ଶବରର ମହିମାଂ ମୋତେ କହିବା ମୁନି ସ୍ୱେବେ
ସେ ଜାଗ ଶବର ମୁନି ଅଛଇ କେତ୍ତୁ ପୂର୍ବେ । ୨୦ ।
ଅଗସ୍ତି ବୋଇଲେ ହୋ ଶୁଣ ବଳଂକାଧି
ପୂର୍ବେ ଯେ ଶବର ଯେ ଅଛଇ ମହାଯୋଧୀ । ୨୧ ।
ଶୁଣ ହୋ ମହାରଜା ତ୍ରେତୟା ଯୁଗର କଥା
ଶ୍ରୀରାମ ସୂର୍ଯ୍ୟ ବଂଶେ ଯେ ହୋଇଲେ ସମ୍ଭୂତା । ୨୨ ।
କଇକେୟୀର ବଚନେ ସେ ଶ୍ରୀରାମ ବନବାସୀ
ଲକ୍ଷଣ ସୀତୟା ଯେନ ଚଉଦ ବରଷ ବନେ ପଶି । ୨୩ ।
ଦଣ୍ଡକା ଅରଣ୍ୟେ ସେ ହୋଇଲେ ବନଗୃହସ୍ଥ
ସେ ଅରଣ୍ୟଂ ରାବଣ ସୀତୟା ନେଲା ହରି । ୨୪ ।
ପଥ ଉପନେସି ବନେ ବୁଲନ୍ତି ରଘୁନାଥେ
ବାଳୀକି ବଧିଲେ ଇସ୍ତ ଦ୍ୟା ନାମେ ବନେ । ୨୫ ।

---

୧୮।୧ "ବଇବସ୍ୱତ ମନୁ ଅଗସ୍ତ୍ୟଂକ ପୁଚ୍ଛାକଲେ" ପରେ 'କ, ଖ, ଜ'
ପୋଥିରେ ଅଧିକା ପାଠ—
ଅଗସ୍ତି ବୋଇଲେ ଶୁଣ ହୋ ମନୁ ନୃପତି
ସେ ମତ୍ତ ବ୍ୟାଘ୍ରକୁ ବଧ କଲାକ ମାରୁତି
ଶବର ସେ ବ୍ୟାଘ୍ରକୁ ବନ୍ଧନ କଲାକ ଯୁଗନ୍ତେ
ସାଧୁ ସାଧୁ ମହିମାଂ ବଲବନ୍ତେ ।—

ହରିବଳ ସଂପକ୍ଷ ସୁଗ୍ରୀବ ଅଙ୍ଗଦ ହନୁମନ୍ତେ
ଶୀତବାଳକ ଭେଟିଲେ ମାଲ୍ୟବନ୍ତ ପର୍ବତେ । ୨୬ ।
ମାଲ୍ୟବନ୍ତେ ରହିଣ ହନୁମନ୍ତଙ୍କୁ ଦୂତପଣେ ପେଷି
ଜାନକୀ ଠାବକଲା ସେ ଲଂକାଗଡ଼େ ପଶି । ୨୭ ।
ମଧୁବନ ଭାଙ୍ଗିଣ ସେ ଅନେକ ସଇନ ମାରି
କଉତୁକ ସମର ହନୁର କେ ସଂପି କହିପାରି । ୨୮ ।
ଇନ୍ଦ୍ରଜିତ ବନ୍ଧନେ ପୋଡ଼ିଲା ଯେ ଲଂକା
ଶ୍ରୀରାମଂକୁ ବାର୍ତ୍ତା ପୁଣି କହିଲା ଆସି ପ୍ରେକା । ୨୯ ।
ହନୁମନ୍ତ ପ୍ରତାପ୍ୟଂ ବଳବୀର୍ଯ୍ୟ ଦେଖି
ଶ୍ରୀରାମେ ବିଭୀଷଣ ଶରଣ ପଶିଲା ସହୋଦ୍ର ଉପେକ୍ଷି । ୩୦ ।
ମନ୍ତ୍ରୀ ଚୂଡ଼ାମଣି ସେ କହିଲା ବିର୍ଯ୍ୟବୁଦ୍ଧି
ସୁଗ୍ରୀବର ସେନାଏ ରାମ ବାନ୍ଧିଲେ ବାରାନିଧି । ୩୧ ।
ସେତୁବନ୍ଧ ଦେଖିଣ ରାବଣ ଭୟେ ପ୍ରେକଲା
ଚଉରାଶୀ କୁଣ୍ଡ ଲଂକାଦ୍ୱାର କପାଟ ପଡ଼ିଲା । ୩୨ ।
କପାଟ ପଡ଼ନ୍ତେ ସେ ଶ୍ରୀରାମ କୋପ କଲେ
କୋଦଣ୍ଡେ ଶ୍ରୀରାମ ରାବଣେ ନାରାଚ ପେଷିଲେ । ୩୩ ।
କରପଦ୍ମ ଯୋଡ଼ିଣ ରାମେ କହଇ ଲକ୍ଷଣ
ସ୍ୱାମୀ ଅପାର ବନ୍ଧୁବର୍ଗ ପେଷିଛୁ ରାବଣ । ୩୪ ।
ମହା ମଉଳୋଳେ ପ୍ରେ ଯେ ହରିଲା ଜାନକୀ
ପ୍ରେବେ ଭୟେ କରି କବାଟ ପଡ଼ିଲାକ ଆମ୍ଭର ବଳ ଦେଖି । ୩୫ ।
ଆମ୍ଭର କରି ଲଂକା କଇଂ ଶ୍ରୀମୁଖେକ ଦେବା
ସ୍ୱର୍ଣ୍ଣାଂକ ନ ସମର୍ପିଲେ ପଛେ ସମର କରିବା । ୩୬ ।
ଲକ୍ଷଣର ବଚନେ ରାମ ଚିନ୍ତିଂଲେ ଜମ୍ବେବର ମୁଖ
ରାବଣକୁ ନବାଣି ତୁମ୍ଭେ ଶ୍ରୀମୁଖେକ ଲେଖ । ୩୭ ।
ମହାମନ୍ତ୍ରୀ ଜାମ୍ବେବ ଯେ ଶ୍ରୀମୁଖ ନବାଣି
ବଂଶାବଳୀ ଆଦିକରି ଲହଇ ମନେ ଗୁଣି । ୩୮ ।
ଶ୍ରୀମୁଖରେ ମହାମୁଦ୍ର ସନ୍ତକ ଯେ ଦେଲେ ରାମଚନ୍ଦ୍ରେ
ଶ୍ରୀମୁଖ ହାତେ ସେନ ବିସ୍ତରନ୍ତି ହାତେ ରଘୁକୁଳ ଇନ୍ଦ୍ରେ । ୩୯ ।

ଶ୍ରୀମୁଖ ଘେନଣ କେ ଯିବ ଲଂକାପୁରେ
ଜନକଣୁଂ ଗୃହଜଣ ନାହାଂ ଆମ୍ଭ ସଙ୍ଗତରେ । ୪୦ ।
ହନୁମନ୍ତ ଯାଇଟେ ସେ ସାମରଥ ଲଂକା ପୁଣ
ରାବଣ ବୋଲବ ଯେତ୍ନ ବଳବନ୍ତା ଅଛଇ ଶ୍ରୀରାମ ଥାଠେଣ । ୪୧ ।
ଯେହାକୁ ନାଶକଲେ ସରବ ତାର ଦର୍ପ
ଦେଖିଣ ପ୍ରମାଦ ଯେ ଚନ୍ତ୍ରବ କଜଣୋପ । ୪୨ ।
ପୁଣିହ୍ନାଂ କେସନେକେ ପେଷିବ ହନୁମନ୍ତ
ସୁଗ୍ରୀବର ଯାଇ ପାରଇ ସେ ହାଦେ ଆମ୍ଭ ମଇଫ । ୪୩ ।
ସ୍ୱାମୀ ସରସମ ଦୁତଗଲେ କଳକନା ରପୁ
ଥାଠର ମଧ୍ୟରେ ଯେତ୍ନ ସିନା ଅଛଇ ଆଧିପୁ । ୪୪ ।
ଅଙ୍ଗଦ ବୀର ଯାଇ ତ ପାରଇ ଲଂକାପୁରୀ
ହରୁଣନ୍ତେ ଅଙ୍ଗଦର ତ ଆମ୍ଭେ ପିତୃ ବଇର । ୪୫ ।
ଯାଇଂଣ ନ ଆସିବ ଯେତ୍ନ ପଶିବ ଅବା ଶତ୍ରୁ ସଙ୍ଗେ
ରପୁ ଭେଦ ପାଇବନା ହାମରଥ ଅଛଇ ଅଙ୍ଗେ । ୪୬ ।
କାହାକଇଂ ପେଷିବ ବୋଲଣ ମନେ ଭାଳ
ଦୂରେ ଥାଇଂ ଅଙ୍ଗଦ କରଇ ନଜଚାଳ । ୪୭ ।
ହେ ସ୍ୱାମୀ ମୋହୋରେ ଶ୍ରୀମୁଖ ଦେବାକ ରଘୁପତ
ମୋହୋର ଗଲେ ସର୍ବ କର୍ମ ହୋଇବ ଯୁଗତ । ୪୮ ।
ଶ୍ରୀରାମ ବୋଇଲେ ଆମ୍ଭେ ତୋହୋର ଜାଣିଲୁଣି ହୃଆ
ପିତୃବଧ ଦେଖ ନମନ୍ତେ କଲୁ ତୁ ବଣ୍ରୋହା । ୪୯ ।
ଅଙ୍ଗଦ ବୋଇଲା ସ୍ୱାମୀ ନୋହୋଇ ଯେମନ୍ତ
ରାବଣକୁ ଉପୁଗାର ମୁଂ କରନ୍ତି ବହୁତ । ୫୦ ।
ପିତା ମୋହୋର ତାକୁ ଧର ଆଣିଥିଲା ପଟ୍ଟେ
ସିଂହଦ୍ୱାରେ ବନ୍ଦୀକର ପକାଇଲା ମର୍କଟେ । ୫୧ ।

---

୪୯।୨ ବଣ୍ରୋହା—ବଶ୍ବହା ।

୪୯।୨ ପିତୃବଧ ନମନ୍ତେ ତୁ ଆମ୍ଭନ୍ତ ନ କଲୁ ସେନେହା ।—ଙ, ଊ, ଧ, ଗ

ସ୍ୱାମୀ ତେର ବରଷ ଯେ ସତାଇଶ ଦିବସ
ଦାସୀମାନଂକ ଅଗ୍ରତେ କରଇ ତାଣ୍ଡବ ନୃତ୍ୟରସ । ୫୨ ।
ଧାଙ୍ଗି ଝିରୀମାନଂକର ସେ ଉଚ୍ଛିଷ୍ଟ ଅନ୍ନମାନ ଖାଇ
ଶରୀର ରକ୍ଷା କରିଥିଲା ଯେ ଲଂକା ସାଇଂ । ୫୩ ।
ସ୍ୱାମୀ ଦିନେକ ରାଇ ଆଜ୍ଞାଂ ଦିଲେକ ମୋତେ ପିତା
ମୁଣ୍ଡ କାଟିପକା ନେଇ ରାବଣ ଦଇତା । ୫୪ ।
ପିତାର ଆଜ୍ଞାଂଏ ମୁଂ କରେ ଧରି ଅସିପତ୍ର
ଦେଖିଲା ଦାସୀଂକ ତୁଲେ କରୁଛୁ ତାଣ୍ଡବ ନୃତ୍ୟ । ୫୫ ।
ମୁହିଂ ବୋଇଲି ଆହେ ରାବଣ ଦଇତା
ଶିର ଛେଦନ ହୋଇବୁ ରେ ସୁମର ତୋ ଇଷ୍ଟଦେବତା । ୫୬ ।
ନିଷତେ ବୋଇଲା ମୋ ଇଷ୍ଟ ଦେବତା ଯେ କଏ
ଅଙ୍ଗଦହିଂ ଇଷ୍ଟ ଦେବତା ମୋର ମୋତେ ଜୀବଦାନ ଦିଏ । ୫୭ ।
ସ୍ୱାମୀ ଶରଣ ପଶନ୍ତେ ଯେ ମୁହିଂ ଦୟା ତାକୁ କଲି
ଶିର ଚରଣରେ ରକ୍ତ ଲଗାଇ ଲଂକାକୁ ପିଙ୍ଗି ଦିଲି । ୫୮ ।
ଏଦିନେକ ଉପୁରାର ମୁଂ ରାବଣକୁ କରିଅଛୁ ପୂର୍ବେ
ମୋତେ ଦେଖିଲେ ଭୟ କରିବନା ଏବେ । ୫୯ ।
ନିକଳଂକ ଅଙ୍ଗଦ ବଚନେ ନିପୁଣ ରଘୁନାଥେ
ଶ୍ରୀମୁଖ ଦିଲେ ନେଇଣ ଯୁବରାଜ ହାଥେ । ୬୦ ।
ଶ୍ରୀମୁଖ ଘେନିଣ ସେ ଅଙ୍ଗଦ ଗଲା ଲଂକା
ସେତୁବନ୍ଧେ ବିଭୀଷଣକଇଂ ଭେଟିଲା ଯାଇଂ ଏକା । ୬୧ ।
ଲଂକାର ଛିଦ୍ର କଥା ଯେ କହିଲା ବିଭୀଷଣ
ଲଂକା ଶିରୀ ଅଛି ବାବୁ ପଞ୍ଜର ଠାବେଣ । ୬୨ ।
ସୁବର୍ଣ୍ଣର ସିଂହବେନ ଭାଙ୍ଗିବୁ ଉତ୍ତର ଦ୍ୱାରେ
କୁମ୍ଭକର୍ଣ୍ଣଙ୍କଇଂ ଶୁଆଇବୁ ଉତ୍ତରକୁ କରି ଶିରେ । ୬୩ ।

---

୫୮।୨ ଶିର କର ଚରଣୁଂ ରକ୍ତ ପିଠାଇ ଲଂକାକୁ ପିଙ୍ଗ ଦିଲି ।– ଙ, ଘ

ମନ୍ଦୋଦରୀ କେଶ ଧରି କରିବୁ ଅଭିମାନ
ବ୍ରହ୍ମାର ନଆସିଲ ଦେବତା ତୁ କରିବୁ ଭଗନ । ୬୪ ।
ରାବଣ ବସିବାର ଯେ ଜଗତୀର ସ୍ଥଳ
ତାହା ଘେନିଣ ଆସିବୁ ତୁ ବାଳୀର ଦୁଲାଳ । ୬୫ ।
ଲଂକାରେ ତୁ ଯେବେ ସ୍ୱେଚ୍ଛା କରି ପାରିବୁ ସୁବରାଜ
ତେବେ ଶ୍ରୀରାମର ତୁ ସେବକ ଆତ୍ମଜ । ୬୬ ।
କହିଣ ମନ୍ତ୍ରୀବର ବାହୁଡ଼ିଣ ଗଲା
ପ୍ରଥମ ଦ୍ୱାରେ ଯାଇଂ ଅଙ୍ଗଦ ସିଂହ ଦୁଇ ଭଗ୍ନ କଲା । ୬୭ ।
ଜଗତୀ ଦ୍ୱାର କପାଟ ସଙ୍ଗତରେ ଭାଂଜି
ଲଂକାଗଡ଼େ ଅଙ୍ଗଦ ପଶିଲା ଗଳଗାଂଜି । ୬୮ ।
କୁମ୍ଭକର୍ଣ୍ଣ ଦ୍ୱାରେ ଯାଇଂ ପଶିଲା ଧାଡ଼ିକାରେ
ଦକ୍ଷିଣୁଂ ଉଲୁଟାଇ ଶୁଆଇଲା ଶିରକୁ କରିଣ ଉତ୍ତରେ । ୬୯ ।
ଅଙ୍ଗଦର ରଡ଼ ଶୁଣି ଅସୁର ଅବଳା
ପୁରୁଂ ବାହାର ହୋଇ ସେ ରୁହାନ୍ତି ଭେଳା ହେଳା । ୭୦ ।
ଅନ୍ତପୁରୁଂ ବାହାର ହୋଇ ମନ୍ଦୋଦରୀ ରାଣୀ
ଧାଇଂଣ ଅଙ୍ଗଦ ଆକ୍ରୋଷି ଶିର ଚୂଣି । ୭୧ ।
ନାରଦେ ବୋଇଲେ ତୁ ଗୁଡ଼ ସେହା କେଶ
ସେ ତୋହୋର ମାତା ତୁ ସେହାର ଶିଷ । ୭୨ ।
ନାରଦ କହିଲେ ଯତ୍ନଂ ପୂର୍ବର କଥା
ମନ୍ଦୋଦରୀ ରାଣୀର ଯେବଣ ବ୍ୟବସ୍ଥା । ୭୨ ।
ଶୁଣିଣ ଅଙ୍ଗଦ ତାର ଗୁଡ଼ଲା କେଶକଇଂ
କ୍ଷେପିଣ ଅଙ୍ଗଦ ରାବଣ ଜଗତୀରେ ବସଇ । ୭୪ ।

---

୬୪।୧ ଅଭିମାନ—ଅପମାନ ।

୬୪।୨ ବ୍ରହ୍ମାର ଆସିଲା ଦେବତା କରିବୁ ଭଞ୍ଜନ ।—କ, ଘ, ଣ

୬୪।୨ ବ୍ରହ୍ମାର ଆସିଲା ଜଗତୀ ରୁ କରିବୁ ଭଗନ ।—ଙ, ଞ

ବନ୍ଧୁତ ଉତ୍ତର ହୋଇଲା ରାବଣ ଅଙ୍ଗଦେ
ବାମକରେ ଶ୍ରୀମୁଖ ଘେନଲା ରାବଣ ହାଦେ । ୭୫ ।
ଶ୍ରୀମୁଖ ଘେନଣ ରାବଣ କହିଲା ମନ୍ଦବୁଦ୍ଧି
ଅଙ୍ଗଦ ବୋଇଲା ତୋର ଶିର ଫକାନ୍ତ ଆଜ ଛେଦ । ୭୬ ।
ସ୍ୱାମୀର ନାହିଁ ମୋହୋରେ ସ୍ନେହସ୍ନେହକ ଆଗ୍ୟାଂ
ମୂର୍ଖ ହୀନଜନ ତାହା କଣପାରଇ କ ଅବଗ୍ୟାଂ । ୭୭ ।
କହୁଂ କହୁଂ ଉତକର୍ମ ବାଳୀରଜାର ରାଟ
ରାବଣର ଶିରୁ ଉଚ୍ଛୁଡି ଆଣିଲା ମଣିମୟେ ମୁକୁଟ । ୭୮ ।
ସୁବର୍ଣ୍ଣ ଜଗଣ୍ଡ ଗୃଳ ଭାଞ୍ଜିଲା ବାମହାଥେ
ବଂଦିମି ଅଇଲା ଦେବ ସ୍ୱେକ ପାଦଗତେ । ୭୯ ।
ବାଳୀର ନନ୍ଦନ ଯାଇଂ ସୁବଳସ୍ୱାରେ ବଜସ୍ୱେ
ଶିରଭୂଷା ମୁକୁଟ ଦେଇ ରାମୁରେ କରଇ ବନସ୍ୱେ । ୮୦ ।
ଦେଖିଣ ସାନନ୍ଦ ଯେ ପରମ ଯୋଗେଶ୍ୱର
ସତ ବଚନ ଶୁଣି ଭୁ ମାଗି ଘେନ ବର । ୮୧ ।
ସତ୍ୟ ବଚନ ଶୁଣି ଅଙ୍ଗଦ କରଯୋଡ
କ୍ଷମାସାଗର ନାଥ ପ୍ରସନ୍ନେ ଦେବଦ୍ଧର । ୮୨ ।
ମୁହିଂ ପାମର ତୋତେ କସ ବର ମାଗବଇ ମନ ଫୁଟି
ଜାଣି ଅନୁଗ୍ରହ ମୋତେ କରିବା ଶ୍ରୀରାମ ପ୍ରଭୁଗୋଟି । ୮୩ ।
ଶ୍ରୀରାମ ବୋଇଲେ ଆମ୍ଭେତ ଜାଣିଲୁ ତୋର ହୃଦ୍ୟା
ଉଦ୍ଦେଶ୍ୟ ଫେଡଣ କହ ଜାଣନ୍ତୁ ସମସ୍ତେ ତାହା । ୮୪ ।
ଅଙ୍ଗଦ ବୋଇଲା ସ୍ୱାମୀ ସର୍ବଭୂତେ ଯାହାର ବାସ
କ ବର ମାଗିବ ମନେ ଫୁଟି ଜନ ଉଦ୍ଦେଶ । ୮୫ ।
ମନଜାଣି ବର ମୋତେ ଦେବାକ ରଘୁନାଥେ
ମୁହିଂ ଘୁର ପାମର ଯେ ତୋହୋର ଭୃତ୍ୟର ଭୃତ୍ୟେ । ୮୬ ।

---

୭୫।୧ ବନ୍ଧୁ ଉଚ୍ଚବାଚ ହୋଇଲା ଅଙ୍ଗଦେ ।—ଠ, ଘ
୮୫।୨ ଜନ୍ମ କର୍ମ ଜାଣ କସ କରିବ ପ୍ରକାଶ ।—ଝ, ଢ
୮୫।୨ ଜନ ଉଦ୍ଦେଶ୍ୟ କେମନ୍ତେ କରିବ ପ୍ରକାଶ ।—ଚ, ଘ

ଅଙ୍ଗଦର ମନ ଯେ ଜାଣିଲେ ଶ୍ରୀହରି
ବୋଇଲେ ତୁ ଯାହା ବାଞ୍ଛାକଲୁ ଆମ୍ଭେ ତୋର ପିଅର କରିବୁ । ୮୭।
ତବ ହାଥେ ବଧ ଆମ୍ଭର ଅଛଇ ଯଥାବଧି
ଯାଆରେ ଅଙ୍ଗଦ ତୋ'ର ମନବାଞ୍ଛା ହୋଉ ସିଦ୍ଧି । ୮୮ ।
ସମସ୍ତେ ଅନ୍ତର୍ଭୂତ ହୋଇଲେ ତାହା ଶୁଣି
ହନୁମନ୍ତ ଉଠିଲା ରାଗେଣ ଶିରଝୁଣି । ୮୯ ।
ଆରେ ଆରେ ଅଙ୍ଗଦ ତୋହୋର ମୁଣ୍ଡ ପକାଇବ ମୋଡ଼ି
ଶ୍ରୀରାମେ ଧଇଲେ ହନୁମନ୍ତକୁ କୋଳକରି । ୯୦ ।
ତୁ କଂପାଇଂ ସ୍ନେହାକୁ କୋପକରୁ ହନୁ
ଉଚିତ ବର ମାଗିଲାଟି ବାଳୀ ରାଜାର ତନୁ । ୯୧ ।
ପୁତ୍ର ହୋଇ ଯେବେ ପିତାକୁ କାରଣ ନ କରିବ
ସ୍ୱେକାବନ ପୁରୁଷ ତାହାର କେବେହେଂ ନ ତରିବ । ୯୨ ।
ପିତାକୁ କାରଣ ନ କରଇଟି ଯେବଣ ପୁତ୍ର
ତାହାର ଜୀବନ ନିଷ୍ଫଳ ଜସ ଯେ ଜୀବନ୍ତ । ୯୩ ।

---

୮୮।୧ ତବ ହାଥେ ବଧ ଆମ୍ଭର ଅଛଇ ପୂର୍ବବଧି ।—ତ, ଣ, ଛ, ଙ

୮୯।୨ "ହନୁମନ୍ତ ଉଠିଲା ରାଗେଣ ଶିରଝୁଣି" ପରେ 'ଛ' ପୋଥିରେ ଅଧିକା ପାଠ:—

ଅଙ୍ଗଦର ଶିର ଆଜ ପକାଇବ ମୋଡ଼ି
ଶ୍ରୀରାମ ଛାମୁରେ ରୁ କହୁରେ ଦର୍ପ ବଢ଼ି ।
ଶୁଣିଣ ଶ୍ରୀରାମ ଯେ ବୋଲନ୍ତି ବଚନ
ରହ ରହ ବାବୁ କୋପ ନ କର ହନୁମାନ ।
ସ୍ୱେହାର ପିତାକୁ ମୁଂ ମାରିଅଛୁ ଯଥାର୍ଥେ
ନିତସ୍ୱେଂ ମୋତେ ମାରିବ ସ୍ୱେ ବାଳ ରାଜାର ସୁତେ ।
ପୁତ୍ର ହୋଇ ଯେବେ ପିତାର କାର୍ଯ୍ୟ ନ କରଇ
ସ୍ୱେକାବନ ପୁରୁଷ ତାର ସ୍ୱର୍ଗରେ ବସଇ ।
ପିତାର କାର୍ଯ୍ୟ ପୁତ୍ର ଯେବେ ନ କରଇ ଜାଣ
ତାହାର ବୃଥବାର ଅଟଇ ଅକାରଣ ।

ଆରେ ବାବୁ ଅଙ୍ଗଦ ମୁହିଂ ବୋଲଇ ସ୍ୱେକବାର
ସ୍ୱେ ଦେହ ଘେନ ଆମ୍ଭେ ସର୍ଗକୁ ଯିବୁଟି ନକର । ୯୪ ।
ଦ୍ୱାପର ଯୁଗେ ଆମ୍ଭେ କହ୍ନା ଅବତାରେ
ଜନମ ହୋଇବୁଂଟି ବାସୁଦେବ ଘରେ । ୯୫ ।
ଅଷ୍ଟମଲ୍ଲ ମୁଳେ କଂସାସୁରକୁ ନଶୋଧି
ଜାରା ନ ରଜା କାଳଦମନକୁ ବଧି । ୯୬ ।
ମହାଭାରତ ଯୁଦ୍ଧ ମୁଂ ସେ ପାଣ୍ଡବେ ପୀରତି
ପୃଥୀ ଭାରଭର ସମସ୍ତ କରାଇବୁଂ ନବୃତ୍ତି । ୯୭ ।
ବହୁତ ସ୍ତ୍ରି ଶ୍ରୀ ରମନ୍ତେଣ କୁଟୁମ୍ବ ବିସ୍ତାର
ଉପାଯ୍ୱେ ସେମାନଂକୁ କରିବ ସଂହାର । ୯୮ ।
ଦ୍ୱାପର ଅନ୍ତେ କଳିଯୁଗ ପ୍ରବେଶ ହୋଇଲେ
ସିଆଳୀ ଲତାରେ ଆମ୍ଭେ ଶୋଇଥିବୁ ଯମୁନାର କୂଳେ । ୯୯ ।
ସେ ଲତାର ଉପରେ ଥିବଇଂ ମୁହିଂ ଶୋଇ
ଦ୍ୱାପରେ ଜାତ ହୋଇବୁ ଜରା କରାତ ରୁପ ହୋଇ । ୧୦୦ ।
ଅଙ୍ଗର ନାମେଣ ସେ ସ୍ୱେକଇ ଶବର
ମନୋହର ବନରେ ଯେ ଆଶ୍ରମ ତାହାର । ୧୦୧ ।
ସେ ଅଙ୍ଗର ନନ୍ଦନ କରାତ ଅଜପତ୍ତି
ଜରାଜ ବୋଲିକରି ତାହାର ସନ୍ତତି । ୧୦୨ ।
ଜରାଜର ନନ୍ଦନ ହରାଜ ବନଚର
ତାହାର ନନ୍ଦନ ଯେ ମଧନାମେ ଶବର । ୧୦୩ ।
ମଧର ନନ୍ଦନ ଯେ କରାତ ହରିଦାସ
ଜରା ନାମେ ଶବର ଅଟଇ ତାର ଶିଶ । ୧୦୪ ।

---

୯୮ { ବହୁତ ସ୍ତ୍ରି ଶ୍ରୀ ରମନ୍ତେଣ କୁଟୁମ୍ବ ବିସ୍ତୀର୍ଣ୍ଣ
ଉପାଯ୍ୱେ ସେମାନନ୍ତ ପୁଷ୍ପ କରିବୁ ନାଶ ପାନ ।—ଣ, ଜ
୧୦୦ ସେ ଲତାର ଉପରେ ଥିବଇଂ ମୁହିଂ ଶୋଇ
ନାରିଜ ପାଇବୁ ରୁ ବେଣ୍ଣ ବନୋଦେଶ ଯାଇଂ ।—ଗ, ଧ
୧୦୦ ଦ୍ୱାପର ଯୁଗରେ ରୁ ଯେ ଉତପତ୍ତି ହୋଇ
ବଡ ବଳୀସ୍ତାର ହେବୁ ବୀର ମଧ୍ୟେ ରୁହି ।—ପ, ଧ

ଜଗ ନାମେ ଶବର ଚର୍ମ୍ମ ଭୁ ହୋଇଥିବୁ
ସେହ୍ଠାନେ ବନସ୍ତେ ଅମ୍ଭନ୍ତ ନାଗଜ ଘାତ କରିବୁ । ୧୦୫ ।
ମୁଣ୍ଡ ତୋର ପିତାଙ୍କୁ ଦୋଷେ କଲ ନାଶ
ଭୁଞ୍ଜ ମୋତେ ଶସ୍ତ୍ରଘାତ କରିବୁ ବାଳୀ ଶିଷ । ୧୦୬ ।
ଶୁଣ ହେ। ମନୁସୁତ କହନ୍ତି ଅଗସ୍ତି
କଗତ ରୂପେ ଅଙ୍ଗଦ ଦ୍ୱାପର ଯୁଗେ ଜନ୍ମେତି । ୧୦୭ ।
ମନୋହର ବନ ସେ ଯେ ତାହାର ବାସଇ
ଦଣ୍ଡକାରଣ୍ୟେ ଧଇଲା ମତ୍ତବ୍ୟାଘ୍ର ଯାଇଂ । ୧୦୮ ।
ବ୍ୟାଘ୍ରକୁ ଦେଖିଣ ଅଜପଶର ନାଶ
ମନ୍ତ୍ର ଦେଖିଣ ପ୍ରବେଶ ହୋଇଲାକ ଝାନ୍ତ । ୧୦୯ ।
ଲୁହାର ଲାଗିଅଛୁ ଯେ ପାଞ୍ଚଗୋଟି ଶିକୁଳି
ମହାମତ୍ତ ବ୍ୟାଘ୍ର ଯେ ତେଜେଣ ଅନର୍ଗଳି । ୧୧୦ ।
ଭୁଣ୍ଡ ବସ୍ତାରୀ ଯେ ବ୍ୟାଘ୍ର ଦେଉଅଛୁ ଘୋର ରଡ଼ି
ଡାକ ଘାତେଣ ମେରୁଗିରି ପଡ଼ଅଛୁ କ ଝଡ଼ି । ୧୧୧ ।
ଗହ ଗହ ଶବଦ ବ୍ୟାଘ୍ରର ଘୋର ଡାକେ
ଖାସେଣ ପଳାଇଲେ ମଛରାଜ୍ୟର ସର୍ବଲୋକେ । ୧୧୨ ।
ସେ ବ୍ୟାଘ୍ରକଇଂ ଆବୋରି ଧରିଅଛୁ ଖାର ବଳେ
କଗତ ଆସି ପ୍ରବେଶ ହୋଇଲା ବରାଟ ଆସ୍ଥାନର ତଳେ । ୧୧୩ ।
ବରାଟ ବୋଇଲା କଗତ ରେ ଜୀବନ ତୋର ଧନ ଧନ
କେମନ୍ତେ ଯେତେ ମତ୍ତ ବ୍ୟାଘ୍ରକୁ ଅଇଲୁ ଭୁଞ୍ଜ ଘେନ । ୧୧୪ ।
ଯେହାର ଖାର୍ଯେ ଜପୁଜନ୍ତା ଯେତେକ ସନ୍ତ
ଅପାର ଜୀବଜନ୍ତୁ ମାରଣ ଭକ୍ଷନ୍ତା ସବୁନ୍ତ । ୧୧୫ ।

---

୧୧୨।୨ ଦେଖିଣ ଖାସଲେ ମତ୍ସ୍ୟରାଜ୍ୟ ଲୋକେ ।—ଜ, ଣ

୧୧୪।୨ କେମନ୍ତେ ଯେତେ ମତ୍ତ ବ୍ୟାଘ୍ରକୁ ଧଇଲୁ କସ ଘେନ ।—ଦ, ଜ, ଣ, ଝ, ଖ

୧୧୫।୨ ଅପାର ଜୀବଜନ୍ତୁ ଯେତେ ମାରନ୍ତା ବହୋତ ।—ଚ, ପ

ତୁମ୍ଭ ରକ୍ଷାକଲୁ ବ୍ୟାଘ୍ର ମହାଭୟେ
ଲକ୍ଷେକ ମାତ୍ର ସୁବର୍ଣ୍ଣ ଦେଲା ମହାରାୟେ । ୧୧୬ ।
ଆହୋ କଙ୍କ ପ୍ରଥମେ ସେ ମତ୍ତଗଜେକ ଦେଲୁ ଆଣି ବାନ୍ଧି
ପଞ୍ଚଦଶ ମାସ ହୋଇଲା ମୁଂ ନୁଆରିଲି ସାଧି । ୧୧୭ ।
ବିରାଟର ବଚନ ଶୁଣି ବୋଇଲା ଖର ଜଙ୍ଘ
କୀଚକର ହାଥେ ତୁ ହୋ ମତ୍ତବ୍ୟାଘ୍ରକୁ ମର । ୧୧୮ ।
କେହୁଣସି ମତେ ବଧ ନୋହିଲେ ସେ ମହାବଳୀ
ସହସ୍ରେକ ଜଣ ସେବକାଙ୍କୁ ପାରଇ ସେ ଗିଳି । ୧୧୯ ।
ବିରାଟ ବୋଇଲା ମୋ ରାଜ୍ୟେ କୀଚକ ସେନାପତି
ତାହାର ବାହୁବଳେ ଯେ ମୋହୋର ସେ ସମ୍ପଦ ବିଭୂତି ।୧୨୦।
ଆହୋ ଶବର ନଖଦନ୍ତେ ବିଷ ଯାର ଅନୁରକ୍ତେ
ମୁହିଂ ତାର ତହିଂକ କୀଚକକୁ ପେଷିବି କେମନ୍ତେ । ୧୨୧ ।
ନିଅ ଯା ବ୍ୟାଘ୍ର ତୁମ୍ଭ ଆନ ଦେଶେ ନେଇ ମର
ରାଜ୍ୟକୁ ତୋର ଲଜ ହେଉଅଛନ୍ତି ବୋଇଲା କଙ୍କ ଜାର ।୧୨୨।
ଯଦ୍ୟପି ବ୍ୟାଘ୍ର ମୁଂ ଦେଖିଜିବି ସେହିଠୁଂ
ସେହି ନେଇ ସମର୍ପିବି ତୋର ବଇରି ନିଗଡକୁ । ୧୨୩ ।
ସେ ବ୍ୟାଘ୍ରକୁ ଯେଣଣ ଯେବେ ବାନ୍ଧିବ ନିଗଡ
ତେତେବେଳେ ବିରାଟ ତୁ କରିବୁ କେମନ୍ତ । ୧୨୪ ।
କୋନ୍ତେ ବୋଇଲେ ରାଜା ଯେବେ ଅଛୁ ତୋ ବଇରି
ଉପାୟେ କରଣ ରାଜା ପକାଅ ସେହାକଇଂ ମାରି । ୧୨୫ ।
ବିରାଟ ବୋଇଲା ଯାଚକେଶ୍ୱର ମନ୍ତ୍ରୀ ଆଗେ
ମେଲାଇ ଦେଖିଆସ ହୋ ମହାମତ୍ତ ନାଗେ । ୧୨୬ ।
ରାଜାର ବଚନେ ସେ ବୋଇଲେ କୋନ୍ତଭଟ୍ଟେ
ଦୁଷ୍ଟ ହାଥୀ ଗୋଟାୟେ ଥିଲେ ମେଲ ହୋ ତାର ଥାଟେ । ୧୨୭ ।

---

୧୧୯।୨ ସହସ୍ରେକ ଗଜ ସେବକା ଘାନ୍ତକେ ପାରଇ ଗିଳି ।—ଛ, ଦ, ଜ
୧୨୨।୨ ରାଜ୍ୟକୁ ତୋର କଳନା (ନିନ୍ଦା) ହେଉଛୁ ବୋଇଲା ଶବର ।—
କ, ଥ, ଘ, ଜ, ଦ

ବଶିଷ୍ଠ ବୋଇଲେ ମୋର କ୍ଷଣେକ ପ୍ରସାଦେ
ବେନରାଜ୍ୟ ଭୋଗ ମୁହିଂ କରଇ ଅପ୍ରମାଦେ । ୧୨୮ ।
ଆଣ ମତ୍ତହାଥୀ ବ୍ୟାଘ୍ର ଭୁଲେ ଯୁଦ୍ଧ ହୋଉ
ଗଜ ବ୍ୟାଘ୍ରକୁ ମାରୁ କି ବ୍ୟାଘ୍ର ଗଜକୁ ଖାଉ । ୧୨୯ ।
ମହାପଣ୍ଡ ବଚନ ସେ ନରାଧାର ବୋଲି
ସହସ୍ର ବେଣ୍ଟକାର ଆସି ହାଥୀକି ଧଇଲେ ମେଲି । ୧୩୦ ।
ଗଜ ଆସନ୍ତେଣ କମ୍ପଇ ମେଦିନୀ
ଆସ୍ଥାନର ତଳେ ଗଜକୁ କଲେ ଆଣି । ୧୩୧ ।
କଣ୍ଟକ ରାଜଦାଣ୍ଡେ ଯେ ମହତ ବୃକ୍ଷ ଥିଲା
ଦୁର୍ଦ୍ଧର ଗଜ ତାହା ଭାଙ୍ଗି ଚୂନାକଲା । ୧୩୨ ।
ବଶିଷ୍ଠ ବୋଇଲା ଶବର ହୋ ତୋର ବ୍ୟାଘ୍ର କରିଂ ମେଲ
କରୁ ସେ ସମର ଯେ ମତ୍ତହାଥୀର ଭୁଲ । ୧୩୩ ।
ଜାରା ଶବର ବୋଇଲା ରାଜା ନାହିଂ ମୋହୋର ଦୋଷ
ଯେବେ ଗଜ ଦେଇ ତୋହୋର ତହୁଂ ନେଲି ଅନେକ
ରତ୍ନକୋଷ । ୧୩୪ ।
ବଶିଷ୍ଠ ବୋଇଲା ତୁ ଯେମନ୍ତ ନ ବୋଲଣ୍ଟି ଜାରା
ଗଜ ଯୁଦ୍ଧକର ଯେବେ ବ୍ୟାଘ୍ର କରିଂ ବେଗେ ମରା । ୧୩୫ ।
ରାଜାର ବଚନେ ସେ କୋପେଣ ବେଣ୍ଟକାର
ଗଜକରିଂ ଦେଖାଇଣ ସେ ମେଲିଲାକ ବ୍ୟାଘ୍ରବର । ୧୩୬ ।
ଗଜ କଣ୍ଠ ଗର୍ଜନ ବ୍ୟାଘ୍ର ଘୋର ବୋବ
ପଳାଇଲେ ବନଜନ୍ତୁ କମ୍ପଇ ମହୀଦେବୀ । ୧୩୭ ।
ବେନି ପଡତାଳ ହୋଇଲେ ବହ୍ମାଣ୍ଡେ
ଆକାଶେ କଂପିଲେ ଯେ ଦିଗପାଳ ସମସ୍ତେ । ୧୩୮ ।
ସମରାଜ୍ୟ ଲୋକେ ଭୟେଣ ମହାତ୍ରାସି
ହାରନ୍ତି ପାଡଣ ବାଳୁତ ପ୍ରାୟେ ଭିତରେ ଯାଇ ପଶି । ୧୩୯ ।

---

୧୨୮।୨ ଦୁଇରାଜ୍ୟ ମାତ୍ର ଅଇଶୁର୍ଯ୍ୟ ମୋହୋର ସମ୍ପଦେ ।—ଘ, ଢ

ଗିରିବର ସମାନେ ଯେବଣ ମତ୍ତହାଥୀ
ମହାଭୟେ କଲା ଦେଖିଣ ବ୍ୟାଘ୍ର ମୂର୍ତ୍ତି । ୧୪୦ ।
ହାମ୍ଭୋଡ଼ ନାଦକରି ସେ ଧାଇଁଲା ମହାଦୁଷ୍ଟ
ଗଜ କୁମ୍ଭସ୍ଥଳେ ବସିଲା ମହାଆଣ୍ଟ । ୧୪୧ ।
ଭିନ କାଠି ଆଯୂତନ ଯେବଣ ଗଜର ମୁଣ୍ଡ
ଆକ୍ରୋଷିଣ ବ୍ୟାଘ୍ରବର ଘୋଟିଲା ତାହାର ତେଜେ ତୁଣ୍ଡ । ୧୪୨ ।
ତମ୍ବାଚକ୍ଷୁ ପ୍ରାୟେକ ବ୍ୟାଘ୍ରର ବେନି ଦୃଷ୍ଟି
ଘୋର ନାଦକରି ଗୃପିଲା ବେନିପାଟି । ୧୪୩ ।
ବ୍ୟାଘ୍ର ଆକ୍ରୋଷନ୍ତେ ଭାଙ୍ଗିଲା ଗଜର ମୂର୍ଦ୍ଧନା
ଅସ୍ଥି ଚର୍ମ ସହିତେ ହୋଇଲା ସର୍ବ ଚୂନା । ୧୪୪ ।
ପଡ଼ିଲା ମହାଗଜ ନଚେଷ୍ଟ ଉତ୍ଥନଶାପ୍ତୀ ହୋଇ
ପୁଣ ଉଦର ବିଦାରିଲା ଦଶନ ହଲାଇ । ୧୪୫ ।
ବେନିଫାଳ ହୋଇଣ ଯେ ପଡ଼ିଲା ମତ୍ତଗଜ
ରୁଧିର ଆପ୍ୟାନ ସେ କରଇ ମହାତେଜ । ୧୪୬ ।
ଗଜର ଗର୍ଭରେ ଯେ ପୁରୁଷେକ ଥିଲା
ଶ୍ରୀପୁରୁଷୋତ୍ତମଙ୍କ ଦର୍ଶନେ ସେ ସ୍ୱର୍ଗକଇଁ ଗଲା । ୧୪୭ ।
ମନୁ ପୁଚ୍ଛାକଲେ ଅଗସ୍ତି ମହାପ୍ରଭୁ
ସେ ବ୍ୟାଘ୍ର ଯେ ଗଜକୁ ବଧକଲା ସେ ଅଟଇ ପୂର୍ବେ କେହୁ ।୧୪୮।
ଅଗସ୍ତି ବୋଇଲେ ହୋ ଶୁଣିମା ଚଇତନ
ବିଶ୍ୱାବସୁ ବୋଲି ଗନ୍ଧର୍ବ ବିଦ୍ୟମାନ । ୧୪୯ ।
ସେ ଏକଦିନେ ବ୍ରହ୍ମା ଯେ ତର୍ପଣ କରୁଥିଲେ
ବିଶ୍ୱାବସୁ ଗନ୍ଧର୍ବ ଯାଇଣ ଦେଖିଲେ । ୧୫୦ ।
ମୂର୍ଖପଣ କରି ସେ ଜଳରେ ଉଭାହୋଇ
କୋପଭରେ ବ୍ରହ୍ମା ଯେ ଦେଖିଲେ ତାକୁ ଚହିଁ । ୧୫୧ ।
ବୋଇଲେ ପାମର ରେ ଆଗରେ ଉଭାହେଲୁ
ତର୍ପଣର ବେଳେ ମନ ବିଚଳିତ କଲୁ । ୧୫୨ ।

---

୧୪୧।୧ ହାମ୍ଭୋଡ଼ ଦେଇ ଧାଇଁଲା ସେହୁ ବନ ଦୁଷ୍ଟ ।—ଠ, ଘ

ଯାଅସି ଗନ୍ଧର୍ବ ରେ ମଞ୍ଚରେ ହୋଅ ଜାତ
ଗଜମୂର୍ଖ ବୋଲି ତୋତେ ବୋଲନ୍ତୁ ଜଗତ । ୧୫୩ ।
ତାହା ଶୁଣି ବିଶ୍ୱାବସୁ ଯେ ଚରଣେ ପଡ଼ିଲା
ଶାପକୁ ମୁକତ ମୋତେ କହସି ବୋଇଲା । ୧୫୪ ।
ଧାତା ବୋଇଲେ ତୁ ବିରାଟ ଘରେ ଥିବୁ
ଯୁଧିଷ୍ଠିରଙ୍କ ଦେଖିଣ ତୁ ମୁକତ ହୋଇଣ ଆସିବୁ । ୧୫୫ ।
ଯେତେବୋଲି ଧାତା ଯେ ଗଲେ ନିଜପୁର
ବିଶ୍ୱବସୁ ଗନ୍ଧର୍ବ ଜନ୍ମ ହୋଇଲା ପୃଥୀର । ୧୫୬ ।
ଗଜମୂର୍ଖ ହୋଇଣ ବନସ୍ତେ ବୁଲୁଥିଲା
ସେ ଗଜକୁ ଆଣି କୀଚକ ବିରାଟକୁ ଦିଲା । ୧୫୭ ।
ତାର ସଙ୍ଗେ ଯୁଦ୍ଧକଲା ମତ୍ତବ୍ୟାଘ୍ର
ଯୁଧିଷ୍ଠିର ଦେଖି ଗଜ ହୋଇଲା ପ୍ରାଣତ୍ୟାଗ । ୧୫୮ ।
ବଇବସୁତ ମନୁ ପଚାରିଲେ ତପୋବନ୍ତେ
ବ୍ୟାଘ୍ରକୁ ଯେବେ କୀଚକ କଲାଟି କେମନ୍ତେ । ୧୫୯ ।
ତଇତନ୍ୟ ପୁଚ୍ଛାକଲେ ଶୁଣିମାକ ପୁରୁଷ
ବ୍ୟାଘ୍ରର ମହିମାଂ ଯେ ଅଶ୍ଚପୂ ସାହସ । ୧୬୦ ।
ମନୁ ବୋଇଲେ ହୋ ଶୁଣ ତଇତନ
ଦେଖିଣ ବିରାଟ ତହୁଂ ହୋଇଲା ଭୟେ ମନ । ୧୬୧ ।
ଯେତେକବେଳ ମତ୍ତହାଥୀ ପ୍ରାଣତ୍ୟାଜ ହୋଇଲା
କାହାର ହାଥେ ବ୍ୟାଘ୍ରକୁ ମରାଇବ ବୋଇଲା । ୧୬୨ ।
ଯାଅ ଯାଅ ବ୍ୟାଘ୍ରକୁ ଘେନିଣ ବେଣ୍ଟକାର
କୀଚକ ବୋଇଲା କାଞ୍ଚକକଇଂ ଆଣ ନୃପବର । ୧୬୩ ।
ଶତେକସିଂଘ ବଳ ପ୍ରାକର୍ମ ଯାହାର
ବ୍ୟାଘ୍ର ମାତ୍ର ତାକୁ ଅଟେ କସ ଛାର । ୧୬୪ ।

---

୧୬୦ { ତଇତନ୍ୟ ପୁଚ୍ଛାକଲା ଶୁଣ ମନୁ ପ୍ରଭୁ
ସେ ବ୍ୟାଘ୍ରକୁ ବଧକଲା ପୁଣ ଆନ କେହୁ ।—ଣ, ଜ, ଦ, ଝ, ଖ

୧୬୪ { ଶତେକସିଂଘ ଯାହାର ବଳ ପରାକ୍ରମ
ବ୍ୟାଘ୍ରମାନଙ୍କ କି ତାହାର ତୁଲେ କରିବ ସଂଗ୍ରାମ ।—ଛ, ଜ, ଜ, ଝ, ଖ

କରାଇ ବୋଇଲା ଦଶ ପାଦାନ୍ତର ବଳ ସେକଇ ବହିଲ
ଦଶ ବଇଲର ବଳ ସେକା ଷଣ୍ଢ ମହାବଳ । ୧୬୫ ।
ଦଶଷଣ୍ଢର ବଳ ସେକା ବଳସ୍ଥା ଜୀବ ବୋଲି
ଦଶ ବଳସ୍ଥାର ସେକ ଗଣ୍ଡାବଲ ବୋଲି । ୧୬୬ ।
ଦଶଗଣ୍ଡାର ପରାକ୍ରମ ସେକଇ ଶଅମ୍ବର
ଦଶ ଶଅମ୍ବର ବଳ ସେକଇ ଗୟଳର । ୧୬୭ ।
ଦଶ ଗୟଳ ପ୍ରାକର୍ମ ସେକଇ ବାହୁଟିଆ
ଧାଜଡଆ ଜନ୍ତୁ ଯେ ନ ପାଇ ସ୍ଥାଂକ ହିଆ । ୧୬୮ ।
ଦଶ ବାହୁଟିଆ ପରାକ୍ରମ ସେକଇ ବ୍ୟାଘ୍ରର
କେଶରୀ ଅଂଶେ ଜାତ ଅଛଇ ସେହାର । ୧୬୯ ।
ଦଶ ବ୍ୟାଘର ପରାକ୍ରମ ସେକଇ ଭାଲୁକ
ଦଶ ଭାଲୁକର ପରାକ୍ରମ ସେକଇ ଯେ ଜୀବକୋକ । ୧୭୦ ।
ଦଶକୋକର ପରାକ୍ରମ ଶାର୍ଦ୍ଦୂଳ ଜୀବ ଜାତ
ସେହି କେଶରୀ ଅଂଶେ ଯେ ଅଛଇ ଯୁଗତ । ୧୭୧ ।
ଦଶଶାର୍ଦ୍ଦୂଳ ପରାକ୍ରମ ଅଛଇ ସେକ ହାଥୀ ।
ଦଶହାଥୀର ସିଂହ ପରାକ୍ରମ ଅଛଇ ମତ୍ତଗଜର ଯୁଗତି । ୧୭୨ ।
ଦଶ ମତ୍ତହାଥୀର ପ୍ରାକର୍ମ ସେକଇ ସିଂହ ବୋଲି
ସେମନ୍ତେ ଶତ ସିଂହର ପରାକ୍ରମ ତୋର କୀଚକର ଶୁଣିଲି । ୧୭୩ ।
ସେହେନେକ ପ୍ରାକର୍ମ ତୋର କୀଚକ
ବ୍ୟାଘ୍ର ଶ୍ବର ପ୍ରାକର୍ମ ଅଛଇ କେତେ ମାହକ । ୧୭୪ ।
ଯଦ୍ୟପି ନ ମରାଇବୁ କୀଚକର ହାଥେ
ସେହିଠାରେ ମେଲାବ କହିଲଇଂ ହାଦେ ତୋତେ । ୧୭୫ ।
ରାଜ୍ୟର ଲୋକେ ଯେ ହାସିଲେ ତାହା ଶୁଣି
ମେଲବା ମାହକେ ଜନ ଭକ୍ଷିବ ସେହିକ୍ଷଣି । ୧୭୬ ।

---

୧୬୭ { ଦଶଷଣ୍ଢର ପ୍ରାକର୍ମ ସେକଇ ଶୂକର
ଦଶ ଶୂକର ପ୍ରାକର୍ମ ସେକଇ ଗଣ୍ଡାର ।—ଦ, କ

୧୭୦।୨ କୋକ– ବଳୀୟା କୁକୁର ।

ରାଜ୍ୟର ବଇକୁଳ ଦେଖିଲେ ବିରାଟେ
ମଜନବ୍ରତ ହୋଇ କମ୍ପେ ବସିଲ ହୋ କୋନ୍ତଭଟ୍ଟେ । ୧୭୭ ।
ଚେଂନ୍ତେ ବୋଇଲେ ଭୁ ଶୁଣ ହୋ ବେଷ୍ଣକାର
କାଙ୍କେକର ହାଥେ ବ୍ୟାଘ୍ର କ ହୋଇବ ଅପହାର । ୧୭୮ ।
ଆନ ହାଥେ ମରାଇଲେ ହୋଇବଟିକ ସାଧ
କରାତ ବୋଇଲେ ଯେହ୍ନେ କରପାରୁ ବଧ । ୧୭୯ ।
ବନ କନ୍ଦର ଜୀବଜନ୍ତୁ ନ ଭ୍ରମିଲେ ସେହୁ ଭାର ଭୟେ
କାଙ୍କେକ ପରା କ୍ଷତ୍ରୀ ଥାଉଂ ରାଜ୍ୟକୁ କଂକେ କରୁ ଭୟେ ।୧୮୦।
ଋଷି ବିପ୍ର ତପୋଧନ ରହୁ ନୁଆରନ୍ତି ବନ
ତୁ ଯେ ଦଣ୍ଡଧାରୀ ନିବର୍ତ୍ତାଇବୁ ନା ଅରଷ୍ଟିମାନ । ୧୮୧ ।
ଯଦ୍ୟପି ସେହୁ ବ୍ୟାଘ୍ର ବନ୍ଧନେ ନ ମରିବ
ରାଜ୍ୟକଇଂ ବୋଲଣା ତୋର ପରରାଷ୍ଟ୍ରେ କଳଣା ପଡ଼ିବ । ୧୮୨ ।
କାଙ୍କେକ ପରାକ୍ରମ ସମ୍ବନ୍ଧେ ତୋର ପ୍ରାକର୍ମ ହୋଇ ଦୃଷ୍ଟି
ବିରାଟ ବୋଇଲେ କୋନ୍ତେ ଅଷ୍ଟ ଅବଧାନେ ସ୍ୱୟେଂ
ସେହୁ ହାକଇଂ ନାଶି । ୧୮୩ ।
କୋନ୍ତେ ବୋଇଲେ ହୋ ଶୁଣିମା ମହାପତି
କଥାୟେ କହିବ ବଟୁରକୁ ମିଳଇ ଯୁଗତି । ୧୮୪ ।
ଆହୋ ଯାଚକେଶ୍ୱର ମନ୍ତ୍ରୀ ସେ ବଲ୍ଲଭ ବ୍ରାହ୍ମଣ
ଆସ୍ଥାନର ତଳେ ବୋଇଲା ମୁଂ ଜାଣଇ ମାଲ ବିନ୍ଧାଣ । ୧୮୫ ।
ତାହାକଇଂ ହକରାଇ ଆଣିମାକ ମହାରାୟେ
ଯେମନ୍ତେ ବ୍ୟାଘ୍ରକୁ ମରାଇବା କଉତୁକ ପ୍ରାୟେ । ୧୮୬ ।
ବ୍ୟାଘ୍ର ମଲେହେଂ ଯୋଗାଇ ବ୍ରାହ୍ମଣ ମଲେହେଂ ଯୋଗାଇଲା
ପରଦେଶୀ ବ୍ରାହ୍ମଣ କଂପେ ପ୍ରତଗ୍ୟାହିଂ କଲା । ୧୮୭ ।
ଶୁଣିଣ ଅନ୍ତର୍ଭୂତ ହୋଇଲା ମହାଇନ୍ଦ୍ର ନରେନ୍ଦ୍ର
ବୋଇଲା କୋନ୍ତେ ଜାଣିଲି ତୁମ୍ଭେ ଅଟ ବଡମନ୍ଦ । ୧୮୮ ।

---

୧୮୩ { କାଙ୍କେକ ପ୍ରାକର୍ମ ହୋଇବ ନନ୍ଦା ଦୋଷେ
{ ବିରାଟ ବୋଇଲେ କୋନ୍ତେ ସେହୁ କଥା ବୁଝି ବିଶେଷେ ।—ଦ, ଜ

ବ୍ୟାଘ୍ରର ଭୁଲେ ଅବା କାହ୍ନିଂ ମନୁଷ୍ୟର ସମର
କସ ଦ୍ରୋହକଲ ଭୃତ୍ୟଂକୁ ସେ ବଲ୍ଲଭ ସୂପକାର । ୧୮୯ ।
ମନ୍ତ୍ରୀ ବୋଇଲା ଦେଖି ଅଣିମାକ ରାଇ
କସ ପ୍ରତ୍ତଉତ୍ତର ବୁଝିବାନା ଚାହ୍ନି । ୧୯୦ ।
ବିରାଟ ବୋଇଲା ହକରାଅ ଭୃରଗଣ
ବଲ୍ଲଭ ସୂପକାରକୁ ହକାରିଣ ବେଗେ ଆଣ । ୧୯୧ ।
ରାଜାର ଆଜ୍ଞାଂରେ ସେ ଚଳିଲେ ବେଗେଦୂତେ
ବୈଷ୍ଣ୍ଅ ଶାଳ ସନ୍ନିଧେ ମିଳିଲେକ ତ୍ୱରିତେ । ୧୯୨ ।
ବଜଯ୍ଯେ ବୃକୋଦର ରାନ୍ଧଣା ବିଧାନେ
ଦ୍ୱାରେ ଥାଇଂ ହାକ ଦ୍ୟନ୍ତି ରାଜା ଦୂତମାନେ । ୧୯୩ ।
ଗୋସାଇଂ ବଲ୍ଲଭ ବୋଲଣ ଉଚ୍ଚେଣ ଡାକଦେଇ
ରାନ୍ଧଣାର ଝଗଡେ କଚୁହ୍ନିଂ ନ ଶୁଣଇ । ୧୯୪ ।
ଗଜକଇଂ ମାଡ ଯେହ୍ନେ ସିଂହ ଆକ୍ରୋଷଇ
ଅଗ୍ନିକ ବୃକୋଦର ତେହେନେକ ପ୍ରାପ୍ୟେ ଦିଶଇ । ୧୯୫ ।
ଭୃରଗଣଂକର ବଚନ ଯେ ନ ଶୁଣଇ ଭୀମସେନ
ପୁଣ ପୁଣ ଭୃରଗଣେ ଡାକ ପାଅନ୍ତି ବଡଶ୍ରମ । ୧୯୬ ।
କାଳଚକ୍ର ପ୍ରାପ୍ୟେ ବୋଲାଇ ବେନତୋଳ
କଷ୍ଟେଟିରେ ବୋଲି ଭୃତ୍ୟଂଙ୍କ ମହାବଳ । ୧୯୭ ।
କମ୍ପମାନ ହୋଇଣ ଯେ କହନ୍ତି ଉଗରେ
ସ୍ୱାମୀ ଠାକୁରଂକ ଆଜ୍ଞାଂଯ୍ୟେ ଆସିବ ସୂପକାରେ । ୧୯୮ ।
ଆନ୍ଦେଷିଣ ନୟନରେ ଭୃତ୍ୟଂଙ୍କ କହାନ୍ତି
କାହାର ମୂଂ ବଶ୍ୟରେ ଠାକୁର ମୋ କେ ଅଛି । ୧୯୯ ।
ସ୍ୱାମୀ ବିରାଟ ଠାକୁରଂକର ତୋତେ ଯିବାକଇଂ ଆଜ୍ଞାଂ
ନ ଯାଇଂ, ନ ଯାଇଂ ବୋଲି କଲକ ଅବଜ୍ଞାଂ । ୨୦୦ ।

---

୧୯୯।୨ କାହାର ସେବକ ନୋହୋଇ କେ ମୋ ଠାକୁର ଅଛି ।—ଜ, ଦ

୧୯୯।୨ କେ ମୋହୋର ଠାକୁର ରେ କହସି ପ୍ରତକ୍ଷ ।—ଝ, ଡ

ବାହୁଡ଼ି ଆସ୍ତାନେ ଯେ କହିଲେ ତଗରେ
ବଲ୍ଲଭ ବୋଇଲା ମୋହୋ ଉପରେ କେ ଅଛୁରେ ଠାକୁରେ ।୨୦୧।
ଶୁଣିଣ ବିସରନ୍ତି ଦେବ ଧର୍ମସୁତେ
ମୁହିଂତ ଅଗ୍ୟାଂତେ ବଞ୍ଚ ନୁଆରିବି ନିଦାଶ୍ଚିତେ । ୨୦୨ ।
ଅନୁକ୍ରତେ ମୂର୍ଖପଣ ଯାହାର ଅଟେ ପ୍ରକୃତି
ବିଭୀଷଇ ସ୍ମରକର ବୋଇଲା ଅମାନ୍ତି । ୨୦୩ ।
ହେ ଜଗମୋହନ ପ୍ରତିକାର କର ମୋତେ
ତୁମ୍ଭି ସେ ସକଳ ଦୁର୍ଗତିରୁ ଉଦ୍ଧରନ୍ତା ଜଗନ୍ନାଥେ । ୨୦୪ ।
ବିରାଟ ବୋଇଲା କୋନ୍ତେ କି ପାଇଲା ଅଭିମାନ
ତୁମ୍ଭେତ ବିସରିଣ ହୋଇଲ ମଉନ । ୨୦୫ ।
କୋନ୍ତେ ବୋଇଲେ ହୋ ନ ଯୋଗାଇ ସ୍ୱେହେର୍ଣ୍ଣିକ କଥା
ଗୁରୁ ଜ୍ୟେଷ୍ଠ ସ୍ୱାମୀଆଦି ହେଲେ ଉପଗତା । ୨୦୬ ।
ଆମ୍ଭା ବଡ଼ମାପଣ ପ୍ରଶଂସା ଯେହୁ କହି
ଆମ୍ଭର ବେଳେ ହୋ ଯେ ନୁଆରୁ ସେହା ସହି । ୨୦୭ ।
ବିରାଟ ବୋଇଲା କୋନ୍ତେ ଅର୍ଥକୁ ଗଉରୋବେ କର ପୂଜା
ମୋହୋର ରାଜ୍ୟେ ତୁମ୍ଭେ ଠାକୁର ଅଟ ଦୁଜା । ୨୦୮ ।
ଗୃରଗଣେ ବୋଇଲେ ଦେବ ସେ ବଡ଼ାଇ ଅସଂଖ୍ୟ
ବ୍ରାହ୍ମଣ ଚରିତ ନାହିଂନା ଏଇଲୋକ । ୨୦୯ ।
ଘଣ୍ଟେକ ରାନ୍ଧଇ ସେ ଯୋଗାଡ଼େକ ଚୂଲୀରେଣ ଭରି
ଆରେକ ଯୋଗାଡ଼ ଦେବ ଯେ ସୂର୍ଯ୍ୟପାକ କରି । ୨୧୦ ।
ବିରାଟ ବୋଇଲା ସ୍ୱେ ବଡ଼ ଦୁଲଭ ଚରିତ
ସେକା ବ୍ରାହ୍ମଣକେ ମୋର ସମସ୍ତ ବଳ ସୁସ୍ଥ । ୨୧୧ ।
ଯେ ଯେତେ ଭୋଜନ କରନ୍ତି ମନଇଚ୍ଛା
ମନ ଜାଣି ବ୍ରାହ୍ମଣ ତାଂକର ପୂରେଇ ମନବାଞ୍ଛା । ୨୧୨ ।
ଗଉଷ୍ଠ ଶଉଷ୍ଠ ନଳବଧି ତନପ୍ରତି
ମଧ୍ୟସ୍ୱର୍ଗ ଭୁବନକୁ ସ୍ୱେ ଅଟଇ ଅସକ୍ୟ କୃତି । ୨୧୩ ।

---

୨୦୬।୨ ଗୁରୁଭ୍ରଥା ସ୍ୱାମୀପଣ ଯେ ଅଦର୍ଷ୍ଟି ବକତା—ଙ, ଥ

ନୋହୋଇ ନୋହୋଇ କୋନ୍ତେ ମୋହୋର ବେଳେ ତାକୁ ପେଷି
ଗୁଣବନ୍ତ ଲୋକକୁ କେହ୍ନେ ଅଦଭୂତେ ନାଶି । ୨୧୪ ।
ଅଶକତ ଲୋକ ସେ ସ୍ୱାମୀ ଆଗ୍ୟାଂପ୍ୟେ ବୃଷ୍ଣ
ଗୁଣବନ୍ତ ସମର୍ଥ ଲୋକଂକର କାହାକଇଂ ଖ୍ରନ୍ତ । ୨୧୫ ।
ମୋହୋର ମନରେ ତାକୁ ତ ଭରଷା କରୁ ନାହିଂ
ତୁମ୍ଭେ ଯେବେ ପାର ତାଙ୍କୁ ଆଣ ହକରାଇ । ୨୧୬ ।
କୋନ୍ତେ ବୋଇଲେ ରେ ବେଗେ ଯାଅ ଚୂରଗଣ
ଅମୃର ବୋଇଲା ବୋଲ ବଲ୍ଲଭଙ୍କୁ ହକରାଇ ଆଣ । ୨୧୭ ।
କୋନ୍ତଂକର ଆଗ୍ୟାଂପ୍ୟେ ଚଳିଲେ ଯେ ଦୂତେ
ହେଷଅଶାଳେ ଯାଇଂ ମିଳିଲେ ତୁରତେ । ୨୧୮ ।
ହେ ବଲ୍ଲଭ ବିରାଟଂକ ଆଗ୍ୟାଂ କଲୁ ତୁ ଅବଗ୍ୟାଂ
ପ୍ୟେହ୍ନକ୍ଷଣି ଯିବ ତୁମ୍ଭେ କୋନ୍ତ ଉଚ୍ଚଂକର ଆଗ୍ୟାଂ । ୨୧୯ ।
ରାଜଣା ବିଧାନମାନ ଶୁଣିଣ ମାରୁତି
ବୋଇଲା ଅଗ୍ୟାଂତବାମ କ ସରିଲା ହବାରନ୍ତି । ୨୨୦ ।
କି ଅବା ମାନଗୋବିନ୍ଦଥାଠ ପଲାଣିଲା
କି ଅବା ବିରାଟକୁ ପ୍ରମାଦ ପଡିଲା । ୨୨୧ ।
ହେଷଅଶାଳୁଂ ଶରୀରେ ଲାଗିଅଛୁ କଳା
କଣପୃ ପର୍ବତେ ଯେହ୍ନେ ଜଳଧର ମେଘମାଳା । ୨୨୨ ।
ଖାଂକର କେଶ ଯେ ଲମ୍ବିତ ଜୂଡାଗୋଟି
ଚନ୍ଦନର ଶଚା ଯେ ଦ୍ୱାଦଶ ସ୍ଥାନେ ଫୁଟି । ୨୨୩ ।
ହିକଚ୍ଛ ବସନ ଯେ କଳା ଶରୀରରେ ଜଡ
କାନ୍ଧେଣ ପରିହା ଯେ କୃଷ୍ଣାଜନ ଉତ୍ତରୀ । ୨୨୪ ।
ଖେଳନ୍ତା ସିଂଘ ଜାଣି ଚଳଇ ଅବନୀ ତଳ
ବୃକୋଦର ପ୍ରବେଶ ଯାଇ ବିରାଟ ଆସ୍ଥାନର ତଳ । ୨୨୫ ।
ଯୁଦ୍ଧେଷ୍ଟି ଅବଲୋକନ ଭୀମସେନ ସୂପକାରକଇଂ ଦେଖି
ମନେ ବିଦୁର ଧର୍ମସୁତେ ବୁଜିଲେ ବେନିଆଖି । ୨୨୬ ।

୨୨୪।୧ ହିକଚ୍ଛ     ହାଥେଣ କୁଣବଡ ।—ଛ, ଜ ଦ

ଆଧାର ପୃଷ୍ଟେ ଯେହ୍ନେ ନେଉଅଛୁ ହାନ
ବସ୍ତାର ଆନ୍ୱେଷଣ ନୋହିଲ ତନୁ ଖୀନ । ୨୨୭ ।
ଶ୍ରେ ଦଇବ ପୁରୁଷ ତୋହୋରେ ଯେତେ କୃତ୍ୟକଲା
ଯେବଣ ବଶଷ୍ଠ ଦେଖିତ କ୍ଷମ ନୋହିଲ । ୨୨୮ ।
ରଜୁସୀ ଯାଗରେ ଯେହାକଇଂ ନେଲୁ ଗଳଥି
ଆସ୍ଥାନର ତଳେ ଯେ ଦଲୁ ଯେହାକୁ ଶାସ୍ତି । ୨୨୯ ।
ଯେହେତେ୍ତଂକ କଣ ଆମ୍ଭଂକୁ ବହିଲ ଦଇବ
ବଶଷ୍ଠ ସଭାତଳେ ଉଭା ହୋଇଲୁ ଆସି ଯେବେ । ୨୩୦ ।
ମୋହୋର କଲକୃତ ମୁଂ କାହାକୁ ଦୋଷ ଦେବ
ମୁଂ କେମନ୍ତେ ଯେ ଅବସ୍ଥା ତୋହୋର ଦେଖିବ । ୨୩୧ ।
ବଶଷ୍ଠ ବୋଇଲା ଯେ ଗୁଣବନ୍ତ ବ୍ରାହ୍ମଣଗୋଟି
କେଉଂଣ ଦୋଷେ ଯେହାକୁ ପାତିଲ ତୁମ୍ଭେ ଛଟି । ୨୩୨ ।
କୋନ୍ତେ ବୋଇଲେ ଯେ ସୂପକାର ନ ଥିଲେ
ତୋହୋର ରଜ୍ୟେ କା ଲୋକେ ଉପବାସେ ଥିଲେ । ୨୩୩ ।
ବଶଷ୍ଠର କଞ୍ଚିକ ଅଙ୍ଗସାର ଦେଇ
ପ୍ରଣପତ୍ୟ କଲ୍ଲିବ କୋନ୍ତଂକାର ମୁଖ ଚୃହିଂ । ୨୩୪ ।
ବଶଷ୍ଠ ବୋଇଲେ ଉଠ ଉଠ ଦ୍ୱିଜବର
ରଜାର ବଚନେ କଂପେ ଉଠିବ ସୂପକାର । ୨୩୫ ।
କୋନ୍ତେ ବୋଇଲେ ସେ ଆମ୍ଭର ଆଗ୍ୟାଂ ନ ପାଇଲେ
ସେ କଂପେ ଉଠିବ ବଶଷ୍ଠର ବୋଲେ । ୨୩୬ ।
କୋନ୍ତେ ବୋଇଲେ ହୋ ଠାକୁକଂକର ଆଗ୍ୟାଂ ହୋଇଲା ତୋତେ
ଉଠି କହୁ କନା ବ୍ରାହ୍ମଣ ପ୍ରଳମ୍ବ କରୁ କେତେ । ୨୩୭ ।

---

୨୨୯।୨ ଆସ୍ଥାନର ତଳେ ଯେ ପାତଲ ଯେତେ ଶାସ୍ତି ।—ଛ, ଥ, ଜ

୨୩୨।୨ ଛଟି—ଛଟା ।

୨୩୩।୨ ରଜ୍ୟଯାକ ତୋହୋର କା ଉପବାସେ ଶୋଇଥିଲେ ।—
ଙ, ଛ, ଓ, ଘ, ଜ

ସ୍ୱାମୀର ବଚନ ଶୁଣି ଉଠିଲା ପାଞ୍ଚାଳୀ
ଯୁଧିଷ୍ଠିରଙ୍କ ମୁଖ ଚୁମ୍ବ‌ି ଶିରେଣ କର ଦେଲି । ୨୩୮ ।
ବନସ୍ତ ଭାବ ହୋଇ ଦେନାଲର ଡୋଳ
ମାକ ସଞ୍ଜନ ଦେଲେ ଅଇଲ ମୁନ୍ଦ୍ରି ଚଳ । ୨୩୯ ।
କେବଣ ଆଗ୍ୟାଂତି ସ୍ୱାମୀ ମୋତେ ବଚନ କହିବା
ଅନମିତେ ସାଧ ମୋହୋର ଘେନ ସେବା । ୨୪୦ ।
ଶୁଣହୋ ବଲ୍ଲଭ ବଦସ୍ତନ୍ତ ବରାଟେ
ଜ ବୁଦ୍ଧି କରିବାକ ମୋତେ ପଡିଲା ପରବ୍ରଷ୍ଟେ । ୨୪୧ ।
ବଲ୍ଲଭ ବୋଇଲା ଆମ୍ଭେ ପର ଉପୁଗାର
କରିବା ସମର ଆମ୍ଭେ ଯେତେମାନ ପାର । ୨୪୨ ।
ଶୁଣିଣ ସାନନ୍ଦ ଯେ ହୋଇଲା ବ୍ରପେ ମତ୍ସେ
ବୋଇଲେ ପ୍ରଦେଶୀ ଶବର ବ୍ୟାଘ୍ରେକ ଅଣିଛୁ ପ୍ରତକ୍ଷେ । ୨୪୩ ।
ବହୁତ ଉପଦ୍ରବ କଲା ସ୍ନେହୁ ବନେ
ସେମନ୍ତ ବ୍ୟାଘ୍ର ବଧ ହୋଇବ କେସନେ । ୨୪୪ ।

---

୨୪୪।୧   "ବହୁତ ଉପଦ୍ରବ କଲା ସ୍ନେହୁ ବନେ" ପାଠ ପରେ
"ଚ" ପୋଥିରେ ଅଧିକା ପାଠ:—
କୁଟୁଣୀ ଯନ୍ତ ପାଢ ଧଇଲା ମହାରଣ୍ୟେ
ଗୋ ବ୍ରାହ୍ମଣ ଋଷି ବିପ୍ର ଭକ୍ଷଇ ଅରଣ୍ୟେ ।
ସେହାର ଭୟେ ମୁନି ତପସ୍ଥାନ ତେଜି
ଅନ୍ୟ ଅନ୍ୟ ସ୍ଥାନେ ଭୟେ ଗଲେ ସର୍ବେ ଭାଜି ।
ଜାଣିଲା ଶବର ଯେ ବ୍ୟାଘ୍ରର ଉପଦ୍ରପ
ସ୍ନେ ବ୍ୟାଘ୍ର ଥିଲେ ବନେ କରିବ ଉପତାପ ।
ଚଉକଢ ବୁଲାଇଲା ମହା ଜାଲମାନ
କୁଟୁଣୀ ଯନ୍ତ ପାଢ ଧଇଲା ବହନ ।
ମହାମତ୍ତ ଗଜ ବ୍ୟାଘ୍ରକୁ କଲା ବନ୍ଦୀ
ଲୁହାର ଶିକୁଳସ୍ନେ ଦୃଢକର ଛନ୍ଦି ।

[ ଅବଶିଷ୍ଟାଂଶ ପରପୃଷ୍ଠାରେ ]

କୀଚକଙ୍କୁ ସମର ମାଗଇ ବ୍ୟାଘ୍ରବର
କେମନ୍ତେ ପେଷିବୁ ତାକୁ ତାହାରେ ମୋହୋର ରାଜ୍ୟଭାର । ୨୪୫।
ଭୀମସେନ ବୋଇଲା ରାଜ୍ୟେ ରାଜ୍ୟ କରୁଥିଲେ
ଅନେକ କଉତୁକ ଉପୁଜାଇ ପ୍ରଦେଶୀ ଆଇଲେ । ୨୪୬ ।
ସେମାନ ସେ ନିବର୍ତ୍ତାଇବାର ଉଚିତ
ନୋହିଲେ ରାଜ୍ୟ କଳନା ଯିବା ଉପୁଜଇ ବିକୃତ । ୨୪୭ ।
ବିରାଟ ବୋଇଲା ଶୁଣ ବଲ୍ଲବ ପଣ୍ଡିତେ
ସେ ବ୍ୟାଘ୍ର ବଧ ହୋଇବାକ କେବଣ ଉପାୟେ । ୨୪୮ ।
ଶୁଣ ହେ। ମହେଶ୍ୱର ବଦୟନ୍ତ ବଲ୍ଲବ
ବ୍ୟାଘ୍ର ମନୁଷ୍ୟର ଯୁଦ୍ଧ ଯେ ବଡାଇ ଦୁଲଭ । ୨୪୯ ।
ନଖ ଦନ୍ତ ପ୍ରହାର ଯାହାର ଅଟଇ ବିଷ
ମନୁଷ୍ୟ ମାସ ହୋଇ କରିବ ତାର କସ । ୨୫୦ ।
ମୁହିଂ ଭୁମ୍ଭର ରାଜ୍ୟେ ଅଛଇ ସୂପକାର ବୃତ୍ତେ
ଅଥବା ନ ଯୋଗାଇଲେ ବାହାର କରିଦେବୁ ମୋତେ । ୨୫୧ ।

---

[ ପୂର୍ବ ପୃଷ୍ଠାର ପାଠାନ୍ତର ]

ଶିକଳା ଲଗନ୍ତେ ବ୍ୟାଘ୍ର ହୋଇଲା ଦର୍ଶଣ୍ଡି
ବ୍ୟାଘ୍ରର ରଡଘାତେ ଗିରିବର ଝଡ ।
ଭଲ୍ଲୁକ ବଦାରଣେ ଶବର ମିଳିଲା ତାର ପଛେ
କଣ୍ଠିରେ ଶିକଳା କରି ବାନ୍ଧିଲା ଦାରୁଗଛେ ।
ମାସେ ପକ୍ଷେ ବ୍ୟାଘ୍ରକୁ କରାଇ ଉପବାସ
ବ୍ୟାଘ୍ରକୁ ଶବର କଲାକ ଉଶ୍ୱାସ ।
ବଶ ହୋଇଲା ବ୍ୟାଘ୍ର ଶବର ବଚନେ
ତଉକତ ବୁଲାଇଲା ବ୍ୟାଘ୍ରକୁ ସକଳ ଭୁବନେ ।
ବିଦୃରେ ଶବର ସ୍ନେହା କରାଇବ ମାନୁଷରେ ଯୁଦ୍ଧ
ସ୍ନେହା ସଙ୍ଗେ ସମର କେ କରିବ ମହାମଧ ।
ସମରାଜ୍ୟେ ସେନାପତି କୀଚକ ମହାବଳୀ
ତେଣୁ ଅଣାଇଲା ବ୍ୟାଘ୍ର ସମର କରାଇବ ବୋଲି ।

ବ୍ୟାଘ୍ରର ହାଥେ ରଜା ନ ମରାଅ ମୁକୁ
ବ୍ରହ୍ମହତ୍ୟା ଦୋଷ ଲାଗିବନା ତୁକୁ । ୨୫୨ ।
ସୂପକାର କହନ୍ତି ସହୁଂ କଠର ବାଣୀ
ବିରାଟ ଭୂନ ହୋଇଲେ ବଚନ ତାହାର ଶୁଣି । ୨୫୩ ।
କୋନ୍ତେ ବୋଇଲେ ପଣ୍ଡାସ୍ତେ ତୁମ୍ଭେ ସ୍ତେଡ଼େକ ଅଗିଆନ
କେମନ୍ତେ ଭ୍ରଷ୍ଟ କରୁଅଛ ରାଜାର ବଚନ । ୨୫୪ ।
ଆସ୍ତ ନର ତଳେ ତୁମ୍ଭଂକୁ ହୋଇଲା ଯେବେ ଆଗ୍ୟାଂ
ପାର କି ନ ପାର କିଂପେ ବଚନ କର ଅବଗ୍ୟାଂ । ୨୫୫ ।
ମାର ହୋ ବ୍ରାହ୍ମଣ ପ୍ରତଗ୍ୟାଂ ତୋର ଥିଲେ
ବହୁତ ପୂଜା ପାଇବୁ ସ୍ତେ ବ୍ୟାଘ୍ର ବଧକଲେ । ୨୫୬ ।
ହରାଟର ବଚନକୁ ସେ କରିଥିଲା ନାସ୍ତି
କୋନ୍ତଂକର ବଚନେ ଯେ ଫିଟିଗଲା ମନଭ୍ରାନ୍ତି । ୨୫୭ ।
ଯାହାକୁ ଡର ଥିଲା ସେ ଯେବେ ଆଗ୍ୟାଂହେଲା
ହୃଦଗତେ ବୃକୋଦର ସାନନ୍ଦ ହୋଇଲା । ୨୫୮ ।
ମେଲ ମେଲ ବେଣ୍ଟକାର ବୋଲଇ ଦ୍ୱିଜବର
ଦୂର କରି ନେଇ ଫେଡ଼ ହୋ ତୋର ବ୍ୟାଘ୍ରବର । ୨୫୯ ।
ଜରା ଶବର ବୋଇଲା ତୁ ଅଟୁ ଯେ ବ୍ରାହ୍ମଣ
ତୁ କେହ୍ନେ ଜାଣିମୁଂ ଯେ ବ୍ୟାଘ୍ରର ବନ୍ଧାଣ । ୨୬୦ ।
ଅପାର ଦୋଷ ଅଛି ସ୍ତେ ବ୍ୟାଘ୍ର ତୋତେ ମାଇଲେ
ବ୍ରହ୍ମହତ୍ୟା ଦୋଷ ଲାଗିବନା ବ୍ୟାଘ୍ର ତୋତେ ଖାଇଲେ । ୨୬୧ ।
ବଲ୍ଲବ ବୋଇଲା ହୋ ପଶୁଅଛି ଯେବେ ମୁହିଂ ଯୁଦ୍ଧେ
ସାଗ୍ରାମେଣ ଗୋରୁ ବ୍ରାହ୍ମଣ ହୋଅଇ ଶିରଚ୍ଛେଦେ । ୨୬୨ ।
ବେଣ୍ଟକାର ବୋଇଲା ତୁମ୍ଭେ ଶୁଣ ଦଶ ହଗପାଳେ
ମୋହୋର ଦୋଷ ନାହିଂଟି ବୁଝ ହୋ ସକଳେ । ୨୬୩ ।
ବଲ୍ଲବ ବୋଇଲା କରାତ ହୋ କେତେ ହାହ୍ମ ହାହ୍ମ ବୋଲୁ
ହତ୍ୟାକୁ ସ୍ତେବେ ଡରୁ ବ୍ୟାଘ୍ର କିଂପେ ତୁ ଆଣିଲୁ । ୨୬୪ ।

ବେଣ୍ଟକାର ସେ ବ୍ୟାଘ୍ରକୁ ଦୂରେ ଅଛି ଥିର
ମୂର୍ଖ ଦ୍ଵିଜବର କଂକେ ସ୍ନେହ ନ ବର୍ତ୍ତର । ୨୬୫ ।
ବେଣ୍ଟକାର ବୋଇଲା ଜୀବନ ଗରୁ ହୋଇଲା ପଣ୍ଡାପ୍ତେ
ଭୁ ମରବୁ ମୋତେ ଲାଗିବ ବ୍ରହ୍ମହତ୍ୟା ଗୋଟାପ୍ତେ । ୨୬୬ ।
ଭୀମସେନ ବୋଇଲା ହୋ ମେଲ ଧୂରକର
ପୁଣ ପୁଣ ସାକ୍ଷୀ କରଇ ଶବର ଗଗନ ବହାର । ୨୬୭ ।
ସାଧୁ ସାଧୁ ଶବରରେ ଭୁ ଅଟୁ ମହାବଳୀ
ବ୍ୟାଘ୍ର କଇଂ ହାଂକୋଳଣ ସେ ମେଲଲା ଶିକୁଳ । ୨୬୮ ।
ବେଣ୍ଟକାର ବୋଇଲା ଯାଆ ଯାଆରେ ବ୍ୟାଘ୍ରବର
କର ଯା ଭକ୍ଷପାନ ଯେହୁ ସୂପକାର ଶରୀର । ୨୬୯ ।
ସୂପକାରକଇଂ ଦେଖିଣ ବ୍ୟାଘ୍ର ଧଇଲା ଗଂଲଗାଜ
ଗର୍ଜନ ଘାତେ ପର୍ବତ କମ୍ପା ପଡୁ ଅଛି ଘାଜ । ୨୭୦ ।
ଭୀମସେନ ବୋଇଲା ପ୍ରଥମହୁଂ ମାରିବ କ ବଜ୍ରମୁଠେ
ପୁଣ ବର୍ତ୍ତରଲା ଜାଣିମେ ଯେ ବିରାଟ ସନ୍ନତେ । ୨୭୧ ।
ଯତନେ କଉନ ଯେ ହୋଇଲା ବୀର ଭୀମ
ଆକ୍ଷେପି ଭୀମ ବ୍ୟାଘ୍ର ପାଡଲା ବହନ । ୨୭୨ ।
ବ୍ୟାଘ୍ରର ମୃତ୍ୟୁ ଦେଖି ପଳାଇଲେ ନଗ୍ରପୁର ଜନେ
ମେଦ ମଣ୍ଡପ ଜଗଣି ଉପରେ ଉଠିଲେ ବହନେ । ୨୭୩ ।
ବିରାଟ ଯେ ଆସ୍ଥାନେ ନ ଆରଲା ରହି
ଭତର ଜଗଣିରେ ଉଠିଲା ରାଜା ଯାଇଂ । ୨୭୪ ।
ପ୍ରେକାମାନ ଆସ୍ଥାନେ ରହିଲେ ରାଜା ଯେ ଯୁଧିଷ୍ଠି
ଭୀମସେନକଇଂ ଗୁହାନ୍ତ ଆକ୍ଷେପିଣ ଦୃଷ୍ଟି । ୨୭୫ ।
ଉଗ୍ରାନଶାୟୀ ହୋଇ ଭୀମସେନ ଅଛି ପଡ
ବକ୍ଷସ୍ଥଳେ ବସି ବ୍ୟାଘ୍ର ହଅଇ ଘୋର ରଡ । ୨୭୬ ।

---

୨୬୫।୨ ମୂର୍ଖ ଦ୍ଵିଜବର ଯାଇଣ ହୋଇଲା ଆଗସରି ।—ଡ, ଦ

ତଳେ ପଡ଼ି ବ୍ୟାଘ୍ରକୁ ଆକ୍ଷେପିଅଛୁ ପବନ ତନୟେ
ଉପରେ ବ୍ୟାଘ୍ର ବସିଅଛୁ ଯେ କେଶରୀ ତେଜପ୍ରାୟେ । ୨୭୭ ।
କେବଳମାତ୍ର ବ୍ୟାଘ୍ର ହୃଦରେ ମାଡ଼ ବସିଅଛୁ
ତାହାର ବଳେ ଖ୍ରମକୁ କଣ୍ଠ ନୋହୋଇ କଟୁ । ୨୭୮ ।
ତଳେଣ ବୃକୋଦର ଉପରେ ଅଛୁ ମତ୍ତ ବ୍ୟାଘ୍ରବର
ଦେଖିଣ ନଗ୍ରଜନେ କ୍ରୋଧରେ ଗୁରୁତର । ୨୭୯ ।
ହା ହା ସୂପକାର ବୋଲି ବୋଲନ୍ତି ନଗ୍ରଜନେ
ମୃତ୍ୟୁଯୋଗ ହୋଇବ ବୋଲି ଅଛଲୁ ଏ ମତ୍ସ୍ୟଦେଶ ସ୍ଥାନେ ।୨୮୦।
ଆମ୍ଭେ କେମନ୍ତେ ଜାଣିମୁଂ ରାନ୍ଧଣା ନିତପ୍ରତି
ତୋହୋର ପ୍ରସାଦେ ଆମ୍ଭେ ଭୋଜନ କରୁ ସୁଖେ ନିତି । ୨୮୧ ।
ଏକା ବ୍ରାହ୍ମଣକେ କରୁଥିଲୁ ଯେବଣ ରାନ୍ଧଣା
ସୂପକାରମାନଂକର ଭୁ ଅଟୁ ଜଗୁଜଣା । ୨୮୨ ।
ବୋଲନ୍ତି ନଗ୍ରର ଯେ ସମସ୍ତ ନରନାରୀ
ସମସ୍ତେହେଂ ଶୋକଭର ବଲ୍ଲବ ନାମ ଧରି । ୨୮୩ ।
ଯେ ଯେତେବେଳେ କ୍ଷୁଧାରେ ମାଗନ୍ତି ଅନ୍ନ
ନିଅଳସ ବ୍ରାହ୍ମଣ ଯେ ଦେଉଥାଇ ଅନ୍ନ ଯେ ଭୋଜନ । ୨୮୪ ।
କାହ୍ନୁଂ ଏ ଶବର ବ୍ୟାଘ୍ର କଇଂ ଅଇଲକ ଯେନ
ଏହାର ଫଳେ ଆମ୍ଭେ ହେ ଇଲୁ ବୀର୍ଯ୍ୟହୀନ । ୨୮୫ ।
ବଲ୍ଲବକଇଂ ପଠିଆଇବାକୁ ଠାକୁରଂକ ନାହିଂ ଇଚ୍ଛା
ଏକା କୌନ୍ତଭକେ କଲେ ତାଂକୁ କଇଚ୍ଛା । ୨୮୬ ।
ଆମ୍ଭର ନିଶ୍ୱାସ ଯେ କୌନ୍ତଂକ ମୁଣ୍ଡେ ପଡ଼ୁ
ଆହୋ କୌନ୍ତ ପଣ୍ଡାଏ ଏବେ ପେଟ ଭୁମି ପୂରୁ । ୨୮୭ ।
ଉଦାର ବ୍ରାହ୍ମଣଗୋଟି ନ ଜାଣଇ କୂଟଛନ୍ଦ
ବ୍ୟାଘ୍ରର ଭୁଲେ କାହିଂ ମାନୁଷରେ ଦ୍ୱନ୍ଦ । ୨୮୮ ।
ହେ ଧର୍ମ ଦେବତା ଅମ୍ଭ ସବୁଂକର ଆୟୁ ଘେନ
ବେଳେକେ ବ୍ରତୁ ବ୍ରାହ୍ମଣ ବୋଲି ଉଠିଲା ସବୁରି ମୁଖେ ଧ୍ୱନ ।୨୮୯।

୨୮୭।୨ ଆରେ କାଣ୍ଡ ଶବର ରେ ତୋହୋର ଜୀବ ଛୁଡ଼ୁ ।—ଜ,ଛ

ବଶିଷ୍ଠ ବଚନ ଯେ ବ୍ରାହ୍ମଣ ଭାଳିଲା
ଯେବା କୋନ୍ତ ପଣ୍ଡାଯେ ବ୍ରାହ୍ମଣକୁ ନାଶକଲା । ୨୯୦ ।
କି ଯେ ତାହାର ହୋଇଥିଲା ପିତୃ ବଇରି
ପରେଣ ମରାଇଲା ସେ ଆପଣେ ନ ମାରି । ୨୯୧ ।
ସଂସାର ମୂତଖଣ୍ଡ ସେ ଶୁଣିଣ ଯେହ୍ନେନେକ ଅପଚ୍ଛାନ୍ତି
କୋନ୍ତେ ବୋଇଲେ ମୁହିଂ ନସ୍ତରିଲି ଶିଖିପନ୍ତି । ୨୯୨ ।
ସଂସାର ଧପଚ୍ଛାନ୍ତି ଯେବେ ଦେଉଛନ୍ତି ମୁକୁ
ଯେତେବେଳ ଯାଏ ତହିଁ ନୁଆରିଲେ ଭୀମାକୁ । ୨୯୩ ।
ଯେଣେ ନସ୍ତରିଲି ମୋତେ ବହୁତ ପ୍ରତିକାର
ଆଗ୍ୟାଂ ଯେବେ ଦିଅ ବଧହୋଉ ବ୍ୟାଘ୍ରବର । ୨୯୪ ।
ଯେତେବେଳେ ନାଥ ତୁହ୍ମେ ନୋହିଲେ ପ୍ରସନ୍ନ
ଆଜଠାରୁ ବୁଡିଲାକ ଭୀମ ନାମ ପୁଣ । ୨୯୫ ।
ଜଗନ୍ନାଥ ନାମ କୁନ୍ତେ କରନ୍ତେ ସୁମରଣ
ନୃସିଂହ ମୂରତି ଯେ ଧଇଲା ଭୀମସେନ । ୨୯୬ ।
ତଳେ ପଡ଼ି ଭୀମସେନ କୋନ୍ତିଂକୁ ଗୁହିଂଲେ
ମାରବୋଲି ଯୁଧିଷ୍ଠି ଆଖି ଠାରିଦେଲେ । ୨୯୭ ।
ଯୁଧିଷ୍ଠିଂକ ଆଗ୍ୟାଂକୁ ସେ ଭୀମ ଗୁହିଂଥିଲା
ଅଙ୍ଗ ଝାଡିଦେଇ କରି ବେଗେ ସେ ଉଠିଲା । ୨୯୮ ।
ତତକ୍ଷଣେ ପ୍ରକାଶିଲା ବ୍ରିକୋଦର ମୂର୍ତ୍ତି
ଆକ୍ଷେପି ବ୍ୟାଘ୍ରକୁ ଭୀମ ମାଡ଼ି ବସିଲାକ ଧାନ୍ତି । ୨୯୯ ।
ରେ ରେ କାର କରିଣ ସେ ପବନର ବାଳେ
ବାମକରେ ବ୍ୟାଘ୍ରକୁ ମାଡ଼ି ବସିଲା ଅବନୀର ତଳେ । ୩୦୦ ।
ବେନି ଅଣ୍ଟୁରେ ମାଡ଼ି ବସିଲାକ ତାର ହୃଦେ
ବାମକରେ ତଣ୍ଟି ଚପି ମାଡିଲାକ ହାଦେ । ୩୦୧ ।
ଦକ୍ଷିଣ ଭୁଜେ ନେଇ ମାଇଲାକ ମୁଖେ ଚୋଟ
ବ୍ୟାଘ୍ରର ମୂର୍ଦ୍ଧନା ଫାଟି ହୋଇଲାକ ମସୀଧୂଳି । ୩୦୨ ।
ବେନିପାଦ ଯେ ତାହାର ଧଇଲା ଯେକହାଥେ
ଅନ୍ତରୀକ୍ଷ ମାର୍ଗେ ଧରି ବୁଲାଇଲା କୋନ୍ତସୁତେ । ୩୦୩ ।

ଊର୍ଦ୍ଧ୍ୱଗତେ ପ୍ରାଣ ଯେ ଛାଡ଼ିଲା ବ୍ୟାଘ୍ରବର
ପର୍ବତ ସମାନ ହୋଇ ପଡ଼ିଲା ଭୂମିର । ୩୦୪ ।
ବ୍ୟାଘ୍ରର ହୃଦରେ ଯେ ପୁରୁଷେକ ଥିଲା
ବିଦ୍ୟାଧର ସାରଷେ ସେ ବାହାର ହୋଇଗଲା । ୩୦୫ ।
ଅମରଗଣେ ଦିଲେ ତାଙ୍କୁ ପୁଷ୍ପକ ବିମାନ
ଆରୋହଣ ବିଦ୍ୟାଧର ହୋଇଲା ଅନ୍ତର୍ଦ୍ଧାନ । ୩୦୬ ।
ବ୍ୟାଘ୍ର ବଧ ଦେଖିଣ ଯେ ଜାଗ୍ର ନାମେ ଶବର
ବହୁତ ପ୍ରଶଂସା ସେ କରଇ ସୂପକାର । ୩୦୭ ।
ନୋହୁ ନୋହୁ ବ୍ରାହ୍ମଣ ତୁ ଯେ କେବଣ ଦିଗପାଳ
ତୋ ତନୁଂ କଳକନ୍ତା ନାହିଁ ପୃଥ୍ୱୀମଣ୍ଡଳ । ୩୦୮ ।
ଆହୋ ପ୍ରତାପ କଥାପୃ ତୋତେ ଚାରିବା ନକ
ଆହୋ ବଲ୍ଲବ ତୁ ଭୀମସେନ ଠାକୁରକ । ୩୦୯ ।
ଭୀମସେନ ବୋଇଲେ ତୁ ଜାଣିଲୁ କେମନ୍ତେ
ଶବର ବୋଇଲା ବାଲକାଳେ ମୁଂ ଖେଳାଉଥିଲି ତୋତେ । ୩୧୦ ।
ଶତଶୃଙ୍ଗ ପର୍ବତରେ ସେ ତୁମ୍ଭର ଆଶ୍ରମ
ପଣ୍ଡୁ ରାଜାଂକର ଯେ କ୍ଷେତ୍ରରେ ତୁମ୍ଭେ ଜନ୍ମ । ୩୧୧ ।
ତୁଳା ମାସ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ଚନ୍ଦ୍ରବାର
ସ୍ୱାତୀ ନକ୍ଷତ୍ର ଅଟଇ ଭୋଗ ଯେ ସେ ଦିନର । ୩୧୨ ।
ପଣ୍ଡୁରାଜା ପାଇଛନ୍ତି ଅହାଗ୍ରି ବେଣ୍ଟପାଶଧି
ମୋହୋର ପିତା ବିରାଜସେନ ପଣ୍ଡୁଙ୍କ ସଙ୍ଗତେ ଯୋଧୀ । ୩୧୩ ।
ମୋହୋର ମାତାଂକ ନାମ ଅଟଇ କାର୍ତ୍ତିକା
କୋଇନ୍ତାଂକ ସଙ୍ଗେ ସେ ବସିଣ ଥାନ୍ତି ପ୍ରେକା । ୩୧୪ ।

---

୩୦୯।୧ ଆହୋ ବିଶ୍ୱାସ କଥା ତୋତେ ପଗ୍ଭରିବା ନକ ।—
ଅ, ଗ, ଙ, ଦ, ଟ, ପ

୩୧୦।୧ ଭୀମସେନ ବୋଲି ତୁ ଜାଣିଲୁ କେମନ୍ତେ ।—ଦ, ଥ

ରବେ ସୁମରିଲେ ମନ୍ତ୍ର ସେ ଯେ ଶେଯ୍ୟାର ଯୁଗତ
ପବନ ଦେବତା ଆସି ବଜେକଲେକ ତୁରିତେ । ୩୧୫ ।
ମରୁତେ ରମଣ ସେ ଇଚ୍ଛିଲେ ମାହେଶ୍ୱରୀ
ସେ ଦିନ ଜାତ ତୁମ୍ଭେ ଶତଶୃଙ୍ଗ ନାମେ ଗିରି । ୧୬ ।
ବାବୁ ଶ୍ରାବଣ ଶୁକଳ ଯେ ପଞ୍ଚମୀ ଦିନର
ପଣ୍ଡୁ ମୃଗୟାରେ ପଶିଛନ୍ତି ବନସ୍ତ ଭିତର । ୩୧୭ ।
ତୋତେ ଘେନି କୋଇନ୍ତାଏ ବସିଛନ୍ତି ଶତଶୃଙ୍ଗ ପର୍ବତର
ମୋତେ ତେତେବେଳେହିଁ ହୋ ପଞ୍ଚଇ ସଂବତ୍ସର । ୩୧୮ ।
ମହାଘୋର ଅନ୍ଧାର ବଢାଇ ବରଷାର କାଳ
ବ୍ୟାଘ୍ରେକ ଗରଜିଲା ଆସି ଶତଶୃଙ୍ଗ ପର୍ବତର ତଳ । ୩୧୯ ।
ଡରେଣ ଥରହର ହୋଇଲେ ଦେବୀ କୋନ୍ତେ
ତୋତେ ପକାଇଲେ ବାବୁ ସେହି ଶତଶୃଙ୍ଗ ପର୍ବତେ । ୩୨୦ ।
ଆହୋ ଶତେକ ଯୋଜନ ଆୟତନ ଯେବଣ ଗିରି ଅଚଳ
ବାଳପୁତ୍ର ପଡନ୍ତେ ସେ ହୋଇଲା ରସାତଳ । ୩୨୧ ।
ତେ ତେ ପକାଇ କୋଇନ୍ତା ଯେ ପଳାଇଗଲେ ଡରେ
ଭୟେଣ ଉଠିଲେ ଯାଇଂ ପର୍ବତ ବୃକ୍ଷର ଉପରେ । ୩୨୨ ।
ପର୍ବତ ଉପରେ ପଡିଣ ତୁ କାନ୍ଦନ୍ତେ ବାଳପୁତ୍ର
ପୁତ୍ରକଇଂ ଦେଖି ବ୍ୟାଘ୍ର ଯେ ଘୋଟିଲା ତୁରିତ । ୩୨୩ ।
ବାଳପୁତ୍ର କନିଷ୍ଟ ଅଙ୍ଗୁଳି ବାଜିଲା ବ୍ୟାଘ୍ରର ମୁଣ୍ଡନା
ସେ ବ୍ୟାଘ୍ରର ମୁଣ୍ଡେ ବାଜ ହୋଇଲା ଶତେଚୂନା । ୩୨୪ ।
ଜରା ଶବର କହଇ ଭୀମସେନର ଆଗେ
ବାବୁ ବାଳୁତ କାଳହିଂ ତୁ ମାଇଲୁ ମତ୍ତବ୍ୟାଘେ । ୩୨୫ ।
ନବଦିନର ପୁତ୍ର ତୁ ବ୍ୟାଘ୍ର ବଧକରି
ତୋହୋର ବେଳେ ସେ ବ୍ୟାଘ୍ର ହାଦେ ହୋଏ୍ସ ମାରି । ୩୨୬ ।

---

୩୨୩।୨ ବାଳପୁତ୍ର ପଡନ୍ତେ ସେ ହୋଇଲା ଗିରିଖଣ୍ଡତ ।—ଚ, ଙ, ଚ

୩୨୬ { ନବମାସ ବେଳେ ତୁ ବ୍ୟାଘ୍ରେ ବଧକରି
ତୋହୋରେ ସେ ବାବୁ ହାଦେ ବ୍ୟାଘ୍ରେ ହୋଏ୍ସ ମାରି ;—
କ, ଗ, ଖ, ଣ, ଦ

ଭୀମସେନ ବୋଇଲେ ତୁ ଯେ ମୋହୋର ସୋଦର
ପାଞ୍ଚମାସ ଗୋପ୍ୟଅଛୁ ତୁ ପ୍ରଘଟ ନ କର । ୩୨୭ ।
ଜୟ ବୋଇଲା କାଞ୍ଚକର ଭ୍ରାଥ ଶତେ
ତୁମ୍ଭର ଅଜ୍ଞାତବାସ ହୋ ତହିଁର ନିମନ୍ତେ । ୩୨୮ ।
ମୁହିଁ ତାହା ଜାଣି ଅଛଇନ ଆଗତୁଂ
ହୃଦୟଗତେ ଲିହିଅଛୁ ମାତା ମୋହୋର କନ୍ଥୁଂ । ୩୨୯ ।
ଆହୋ ଭୀମସେନ ତୋତେ ଦେଖିବାର ନିମନ୍ତେ
କାର୍ତ୍ତିକା ମାତା ଯତନେ ପଠିଆଇ ଛନ୍ତି ମୋତେ । ୩୩୦ ।
ବ୍ୟାଘ୍ର ବଧ ବାବୁ ନୋହୋଇ ଆନର ହେଲେ
ଯେ ମାରଇ ବ୍ୟାଘ୍ର ସେ ଭୀମସେନ ମହାବଳେ । ୩୩୧ ।
ତୋହୋର ନାମ ଧରନ୍ତା ଜାଣନ୍ତା ହୋଇ ବୋଲ
ତେଣୁକରି ସିନା ବାବୁ କାଞ୍ଚକକୁ ବ୍ୟାଘ୍ରଯୁଦ୍ଧ ମାଗଲ । ୩୩୨ ।
ଯାଉଅଛୁ ବାବୁ ମୁଂରେ ମନୋହର ନାମେ ବନେ
ତୁମ୍ଭନ୍ତ ଦେଖିବାକଇଂ ବିରାଟ ଦେଶକୁ ଆସୁଥିବ ପ୍ରଚ୍ଛନ୍ନେ । ୩୩୩ ।
ଭୀମସେନ କରାଜ ଯେ ଦୁଅନ୍ତେଣ କଥା
ଭୀମସେନ ପଚାରିଲା ସେ ବ୍ୟାଘ୍ରର ବାରତା । ୩୩୪ ।
ସ୍ୱାମୀ ପୁରୁଷେକ ଥିଲା ଯେ ବ୍ୟାଘ୍ରର ଗର୍ଭଗତେ
ବ୍ୟାଘ୍ରବଧ ହୋଅନ୍ତେ ସେ ପୁରୁଂ ଗଲା ସ୍ୱର୍ଗପଥେ । ୩୩୫ ।
କେଉଂଅର୍ଥେ ପୁରୁଷେକ ଥିଲା ଯେହ୍ନା ଗର୍ଭେ
ଯେହ୍ନା ମୋତେ ସଞ୍ଚିପି କହିବାକ ଜାରି ଯେବେ । ୩୩୬ ।
ଜାରି ବୋଇଲା ବାବୁ ଶୁଣସି ପୂର୍ବର ଯେ କଥା
ତୁଯେ ପଚାରିଲୁ ସେ ବ୍ୟାଘ୍ରର ବାରତା । ୩୩୭ ।
ଜଳଜନ୍ଧାନ ବୋଲଣ ଯେବଇ ସତ୍ୟଯୁଗେ
ଦେବ ଗୋକୁଳ ବୋଲଣ ଇନ୍ଦ୍ର ବସଇ ଅମର ସ୍ୱର୍ଗେ । ୩୩୮ ।
ଅଜମୀଢ ନାମେଣ ମହର୍ଷି ଅଙ୍ଗିରାଂକର ବାଳ
ମହା ତପୋବନ୍ତ ସେ ବସଇ ବହୁତ ଚିରକାଳ । ୩୩୯ ।

ଅଜମୀଢ଼ର ନନ୍ଦନ କାଶୀପତି ମହଋଷି
ବଭ୍ରୁ ମହଋଷି ହୋ ତାହାଂକର ଶିଷି । ୩୪୦ ।
ବଭ୍ରୁଂକର ପୁତ୍ର ଯେ ବାଚବ୍ୟ ବ୍ରାହ୍ମଣ
ବାଚବ୍ୟର ପୁତ୍ର ଯେ ଅଛଇ ବାରୁଣ: । ୩୪୧ ।
ବାରୁଣର ନନ୍ଦନ ଯେ ଅରୁଣ ମହଋଷି
ଯେହାଂକର କୃପାଜଳ ଅଛଇ ଯେ ଶିଷି । ୩୪୨ ।
କୃପାଜଳ ନନ୍ଦନ ଯେ ବଇଶ୍ରମଣ ଋଷି
ଯଦୁବର ବୋଲକର ତାହାଂକର ଶିଷି । ୩୪୩ ।
ଯଦୁ ମହଋଷିର ନନ୍ଦନ କଉଣ୍ଡିଣ୍ୟ ମହଋଷି
ଠୁଳଋଷ ବୋଲକର ଯେହାଂକର ଶିଷି । ୩୪୪ ।
ସେ ଠୁଳଋଷି ବଇଶାଖ ମାସ ଶୁକଳ ତୃତୀୟାର ଦିନ
ଗୁରୁବାର ରୋହିଣୀ ଯେ ନକ୍ଷତ୍ର ବିଦ୍ୟମାନ । ୩୪୫ ।
ସେଦିନ ଠୁଳ ମହଋଷି ଯେ ଅମର ସ୍ୱର୍ଗକଇଂ ଗଲେ
ଇନ୍ଦ୍ରଦେବତା ତାଂକୁ ବସିତେ ନ ଦିଲେ । ୩୪୬ ।
ବହୁତ ବେଳ ସେ ଉଭା ହୋଇଲେ ଆସ୍ଥାନେ
ପୂଜା ଆସନ ଋଷିଂକ ନ ଦିଲେ ମଘବାନେ । ୩୪୭ ।
ଆସ୍ଥାନୁ ଅଇଲେ ଋଷି ପାଇଣ ବଡ ଲଜ୍ଜା
ବୋଇଲେ ଅମରେ ମୁଂ ହୋଇବି ଦେବରାଜା । ୩୪୮ ।
ଯେତେ ବୋଲି ମୁନି ଉହାଂକୁର କୂଳେ ଯାଇଂ ସେ ବଦ୍ରିକା ଆଶ୍ରମେ
ତପ ଆଶ୍ରେକର ତହିଂ ରହିଲେ ମହାତମେ । ୩୪୯ ।
ତରଶ ଦିନରେ ସେ ଭୁଞ୍ଜଇ ଅନ୍ନ ଯେବେକାବେଳେ
ତାହିଂ ଉପେକ୍ଷା ସେ କଲେକ ଅନ୍ତକାଳେ । ୩୫୦ ।
ମିର ଚନ୍ଦ୍ରଯେ ତୁଳସୀ ପତ୍ର ଗୋଟିଏ
ଯେମନ୍ତ କର ଯେକାବେଳେକେ ସେ ଭକ୍ଷିଏ । ୩୫୧ ।

---

୩୫୦।୨ ତପ ଆଶ୍ରେକର ତହିଂ ରହିଲେ ଉତ୍ତରେ ।—ଚ, ଜ, ଛ, ଣ, ଓ, ଗ

ପୁଣି ପବନ ଭକ୍ଷିଲେ ନବ ସହସ୍ର ବରଷ
ନିରାଶ ତପେଣ ମିଳାଏଁ ତାହାର ସବ ମାଏଁସ । ୩୫୨ ।
ଶୋଷିଗଲେ ପବନ ବହଇ ଅନୁବ୍ରତେ
ଏମନ୍ତେ ବସିଲେ ମୁନି ଏକାଦଶ ସହସ୍ର ବରଷ ପରଯନ୍ତେ । ୩୫୩ ।
ମଳୟ ସମୀରେ ପୁଣି କଣ୍ଟଂକିଲା କାୟା
କଠୋର ତପସ୍ୟା ଦେଖି କରତାର ବହିଲକ ଦୟା । ୩୫୪ ।
ନାରଦେ ବୋଇଲେ ତୁମ୍ଭେ ଶୁଣ ହୋ ମଘବା
ଅମର ସରଗ ତୁରେ ନାଶକଲୁ କାବା । ୩୫୫ ।
ଠୁଳ ମହର୍ଷି ଯେ ଅମରକୁ ଆଏ
ଆସ୍ଥାନେ ବସିଲେ ତାକୁ ନ ହେଲୁ ଦେବରାଏ । ୩୫୬ ।
ତାମସେ ମହର୍ଷି ସେ କରତାରକଇଂ ହାଦେ ତୋଷି
ନିରାଶୀ ମହର୍ଷି ଏକାଦଶ ସହସ ତପେ ବସି । ୩୫୭ ।
କରତାର ପ୍ରସନ୍ନେ ଆସିବେ ଆବର ବେନଦିନେ
ଇନ୍ଦ୍ରପଦ ତୋହୋର ନେଇମ ଅମର ଭୁବନେ । ୩୫୮ ।
ଦେବ ଡଗର ନାରଦେ ସନ୍ଦେଶ କହିଲେକ ସବୁ
ଯେମନ୍ତେ ପାର ସ୍ୱର୍ଗ ରକ୍ଷାକର କାବୁ । ୩୫୯ ।
ଶୁଣିଣ ଶଂକା ମନେ ବସିଲା ମଘବାନ
ଶ୍ରୁତି ମୂର୍ତ୍ତି ବେନି ପୁହନ୍ତ ଇନ୍ଦ୍ର ରଇଲ ସନ୍ଧ ଧାନ । ୩୬୦ ।
କାବୁ ଏହିକ୍ଷଣି ଚଳ ତୁମ୍ଭେ ବଦରିକା ଆଶ୍ରମେ
ଠୁଳ ଋଷି ତପ ଯେ କରଇ ମହାତମେ । ୩୬୧ ।
ଯୋଗୀ ହନ୍ଦୀ କାମ ଆଦି ତପବନ୍ତ ରଗୀ
ଏଥି ଦୋଷ ନାହିଁ ଏହାଂକର ଯେବେ ତପ ବେଗେ ଭାଙ୍ଗି ।୩୬୨।
ସ୍ୱାମୀଙ୍କର ବଚନେ ବଦୟନ୍ତି ସୁତ ବେନି
କହାଇ ଦୁରପଦ ସେ ରଗୀ ମହାମୁନି । ୩୬୩ ।

---

୩୬୩।୨ ବଡାଇ ଦୁଷ୍ପର ଯେ ସେ ଅଟଇ ତପସ୍ୱିନୀ ।—ଦ, ଛ

ସ୍ୱାମୀ ତୋହୋର ବଚନେ ଯେ ନ କଲେଣ ମନ
ଋଷିର କୋପକଲେ ଦହନ ହୋଇବୁ ଶିଘ୍ର । ୩୬୪ ।
ଇନ୍ଦ୍ର ବୋଇଲେ ତୁମ୍ଭେ ମୋହୋର ନନ୍ଦନ ଅମର ରକ୍ଷାକଲେ
ଇନ୍ଦ୍ର ପଦ ପାଇବଟି ପିତାର କାର୍ଯ୍ୟେ ମଲେ । ୩୬୫ ।
ପିଅର ବଚନେ ସେ ଶ୍ରୁତି ମୃତ ବେନ
ଚଳିଲେ ବିଦ୍ୟାଧରେ ଦଣ୍ଡପାଣା ଘେନ । ୩୬୬ ।
ଉଦ୍ଭବାଂକୁରେଣ ବିଜୟେ ଠୁଳ ମହାଋଷି
ବାସବର ନନ୍ଦନ ଦୁହେଂ ମିଳିଲେ ତହିଂ ଆସି । ୩୬୭ ।
ମଧୁର ଓଂକାର ଧ୍ୱନି କରନ୍ତି ବିଦ୍ୟାଧରେ
ଦେଖିଣ ମୋହ ହୋଇଲେ କମଣ୍ଡଳର କୁମରେ । ୩୬୮ ।
ଅନେକ ବିନୋଦୀ ସେ ଗାବନ୍ତି ରସଗୀତ
ଦେଖିଣ ବିଦ୍ୟାଧର ପୁରୁଷଂକ ରୂପେ ମୋହିତ । ୩୬୯ ।
ମଦନେ ଅସାଷ୍ଟମ ଭରହରଷ ଶୁଣି
ଶଷ୍ଣରେ ପଡ଼ିଲା ସେ ମଦନ ବିରହିଣୀ । ୩୭୦ ।
ଭୁଣ୍ଡ ବିସ୍ତାରଣ ଋଷ ପିବଇ ପବନ
ଶ୍ରୁତି ମୃତ୍ତି ପଶିଲେ ଋଷିର ଗର୍ଭେଣ । ୩୭୧ ।
ଶୂନ୍ୟବାତ ସାରକ୍ଷେ ସେ ପଶିଲେ ଉଦରେ
ଋଷିର ପଞ୍ଚଭୂତ ବୁଡ଼ାଇଲେ ହୃଦୟରେ । ୩୭୨ ।
ଗର୍ଭେଣ ପଶିଲେ ସେ ହୋଇଲେ ପାପଆତ୍ମା
ଦୁଖେ ଅର୍ଜିଲା ତପ ଭଞ୍ଜିଲା ମହାତମା । ୩୭୩ ।
ଶଷ୍ପରେ ପଶିଣ ସେ ପୀଡ଼ିତ କଲେ କାମ
ତେଜିଲେ ତପସ୍ଥାନ ମଦନେ ଅସାଷ୍ଟମ । ୩୭୪ ।
ବନେଣ ଭ୍ରମଇ ସେ ବାଜୁତ ଭାବ ଜାଣି
ଶୃଙ୍ଗାର ଇଚ୍ଛିଲା ସେ ଧରଣ ମୃଗୁଣୀ । ୩୭୫ ।
ହରଣୀ ଗର୍ଭରେ ଯେ ପଡ଼ିଲା ତାହାର ରେତ
ସଇନ୍ଦୁ ଜାତ ହେଲା ତାହାର ପ୍ରେକଇ ଯେ ସୁତ । ୩୭୬ ।
ଦକ୍ଷିଣ ପ୍ରାଚୀର କୂଳେ ଭୁଚ୍ଛା ଭୁଠଗୋଟି
ତହିଂ ଜାତ ହୋଇଲା ଉତ୍ସ୍ଥା ତପନଷ୍ଟି । ୩୭୭ ।

ସେ ଭୃଷ୍ଟାକୁ ରାଇଣ ଯେ ବୋଇଲେ ମୁନି ମହରଷି
ତୁ ଯାଇଂ ସ୍ୱର୍ଗେ ଭୁବନେ ଇନ୍ଦ୍ର ସେ ହୁଅସି । ୩୭୮ ।

ଇନ୍ଦ୍ର ଯେବେ ମୋହୋର ତପ ନାଶକଲାକ ଉପାୟେ
ଇନ୍ଦ୍ରକଇଂ ନାଶକର ତୁ ସ୍ୱର୍ଗେ ହୁଅ ଦେବରାୟେ । ୩୭୯ ।

ବଇବସ୍ୱତ ମନୁ ପୁଚ୍ଛାକଲେ ଅଗସ୍ତି ମହରଷି ହେ
ଭୃଷ୍ଟା ଇନ୍ଦ୍ରପଦେ ବସିଲେକି ସତେହେଂ । ୩୮୦ ।

ଭୃଷ୍ଟା ନ କଲେ ଯେ ସ୍ୱର୍ଗକଇଂ ଇଚ୍ଛା
ଭୃଗୁ ମହରଷି ବୋଲ ଜାତହେଲେ ସେ ଭୃଷ୍ଟାଂକର ବଛା । ୩୮୧ ।

ଭୃଗୁ ମହରଷି କପିଳାସେ ବାଲଖିଲ୍ୟ ତପକଲା
ତୁଳମାସ ଶୁକ୍ଳପକ୍ଷ ଦଶମୀ ଦିନ ତାକୁ ସର୍ପଘାତ ହୋଇଲା । ୩୮୨ ।

ପାର୍ବତୀ ବୋଇଲେ ଶୁଣିମା ଦେବକାଶୀ
ତବ ସେହୁଁ ନାଶକଲା ଭୃଗୁ ମହରଷି । ୩୮୩ ।

ତପ ଗଡି ଯାଆନ୍ତେଣ ତାହାଂକଇଂ ଭଷିଲା ମହାବ୍ୟାଳ
ବଦନରୁ ପୃଣ ଯେ ତାହାର ବହଇ ଗରଳ । ୩୮୪ ।

ନାରଦଂକୁ ହକାରି ବୋଇଲେ ଶୂଳମନ୍ତ
ବ୍ରହ୍ମାଂକ ତହ୍ନଂକ ସେହାକୁ ତୁମ୍ଭେ ନଅ ଧାଇଁ । ୩୮୫ ।

ଜୀବନ୍ୟାୟ କରି ସେହାକୁ ପ୍ରାଣଦାନ ଦେଇ
ତାହାତହୁଂ ଭଲଠାବେ ଭୃଗୁ ମହରଷିଂକ ନେଇ ଥୋଉ । ୩୮୬ ।

ସଦାନନ୍ଦର ଆଜ୍ଞାଂଏ ନାରଦ ମୃତୁପିଣ୍ଡ ଘେନ
ସଶୋବନ୍ତୀ ଭୁବନେ ସେ ଭେଟିଲେ ପଦ୍ମଯୋନ । ୩୮୭ ।

ନାରଦେ ବୋଇଲେ ଭୃଗୁ ମହରଷିଂକ ଜୀବ ଦାନ ଦେଇ
ଈଶ୍ୱରେଣ ବୋଇଲେ ସେହାକୁ ଭଲ ଠାବେ ଥିବୁ ଥୋଇ । ୩୮୮ ।

ମୃତ୍ୟୁ ସଞ୍ଜୀବନୀ ଦେଇ ଭୃଗୁ ମହରଷିଂକ ଜୀଆଂଇଲେ
ନାରଦକଇଂ ରାଇ ପିତାମହ ଆଜ୍ଞାଂ ଦିଲେ । ୩୮୯ ।

ମୋହୋର ତହୁଂ ଭଲଠାବ ଅମର ଭୁବନ ବାରସ୍ୱର୍ଗ ଦିନା
ସେହାକୁ ନେଇ ବସାଅ ଇନ୍ଦ୍ରପଦ ମୃଧୁନା । ୩୯୦ ।

ମହଋଷିଂକ ଘେନଗଲେ ଦେବୀଂ ଯେ ନାରଦେ
ଅମର ଆସ୍ତାନେ ନେଇଣ ବସାଇଲେ ଇନ୍ଦ୍ର ପଦେ । ୩୨୧ ।
କଦମ୍ବୁନ୍ତ ଅଗସ୍ତି ଶୁଣ ବଇବସ୍ବତ ନୃପତି
ଇନ୍ଦ୍ର ପଦେ ବସିଲେ ସେ ଠୁଳ ମହଋଷିଂକର ନାତି । ୩୯୨ ।
ଇନ୍ଦ୍ର ଦେବତା ଭୂତ ମହଋଷ ଲୁଲେ ବହୁତ ଯୁଦ୍ଧକଲା
ବଜ୍ର ଘେନଣ ସେହୁ ଭୂତ ମହଋଷଂକ ମାଇଲା । ୩୯୩ ।
ରାଜପଦ ଯେତେ ଲେଉଟି ଇନ୍ଦ୍ରକଇଂ ଧର୍ମଙ୍କୁ ଛାଡ଼ିଲା
ମହାତପୀ ବଧକରି ଇନ୍ଦ୍ର ଅମର ଭୁବନ ମାଡ଼ିଣ ବସିଲା । ୩୯୪ ।
ନାରଦେ କହିଲେ ଯାଇଂ ତାହାର ପିତାଂକୁ
ବାସବ ବଧକଲା ହାଦେ ତୋହୋର ପୁତ୍ରକୁ । ୩୯୫ ।
ପୁତ୍ରର ବଧ ଶୁଣି କୋପକଲା ତ୍ବଷ୍ଟା
ତପ ଆଗୃର ଗୁଡ଼ ପ୍ରକୃତି କଲା ତ୍ବଷ୍ଟା । ୩୯୬ ।
କରେ ଛିଦଣ୍ଡ ଘେନଣ ଧାମଇଂ ମୁନ ରାଗେ
ଇନ୍ଦ୍ରକଇଂ ନାରଦେ କହିଲେ ତୁ ନ ଥାଅ ଅମର ସ୍ବର୍ଗେ । ୩୯୭ ।
ଆସୁଅଛି ତ୍ବଷ୍ଟା ଯେ ମହାକୋପ କରି
ଯେତେ ତୋହୋର ସମ୍ପଦପଣ ପ ରଇଛି କ୍ଷଣକେ ସେ ହରି । ୩୯୮ ।
ଆହୋ ମଘବା ତପୀଂକର ଲୁଲେ ତୁ ହୋଇଲୁ ବବାଘୀ
କଣ୍ଟତ ଦୋଷେ ନାଶଗଲୁଟି ଜମ୍ବୁଭେଦୀ । ୩୯୯ ।
ଠୁଳ ମହଋଷିଂକ ନ ଚଲୁ ହାଦେ ବସି
କଣ୍ଟତ ଦୋଷେ ଯେତେ ସମ୍ପଦ ହୋଇଲାକ ଧ୍ବଂସି । ୪୦୦ ।

---

୩୯୨।୨ "ଇନ୍ଦ୍ରପଦେ ବସିଲେ ସେ ଠୁଳ ମହଋଷିଂକର ନାତି" ପରେ ଅଧିକା ପାଠ—

ମନ ନ'ମେ ଇନ୍ଦ୍ର ଯେ ଶଚୀର ସଙ୍ଗତେ
ପଶା ଖେଳଇ ସେ ମନର କଣ୍ଟିକେ ।
ତଗର ମୁଖୁଂ ଶୁଣି କୋପେଣ ଅଇଲା
ବଜ୍ର ଘେନ ଠୁଳଋଷି ନାତିଂକେ ମାଇଲା ।

ନାରଦଙ୍କ ବଚନେ ଭୟେ କଲକ ମଘବାନ
ସକଳ ସମ୍ପଦ ତେଜସ୍ତ ଯେ ନାଶିଲକ ଜୀବନ । ୪୦୧ ।
ଶରୀରୁଂ କାଢ଼ିଲକ ସେ ପଞ୍ଚଭୂତ ଆତ୍ମା
ପାପଆତ୍ମା ଯେଣ ସେ ବସିଲକ ମହାତ୍ମା । ୪୦୨ ।
ପଞ୍ଚ ଆତ୍ମା ଥୋଇଲକ ସେ ପଞ୍ଚ ଠାବ କରି
ପ୍ରଥମ ଆତ୍ମାଗୋଟି ନେଇ ସେ ଧର୍ମେଣ ସଂହରି । ୪୦୩ ।
ଦୁଇଆତ୍ମା ନେଇଣ ସେ ପବନେଣ ଥୋଇ
ଆପଣା ଆତ୍ମା ନେଇ ଶୂନ୍ୟେଣ ରୁହାଇ । ୪୦୪ ।
ଅଶ୍ୱିନୀକଇଂ ଆତ୍ମାଯେ ଇନ୍ଦ୍ର ସମର୍ପଇ
କୁମାରେଣ ଆତ୍ମାଯେକ ଥୋଇଲା ଗୋପ୍ୟେ ନେଇ । ୪୦୫ ।
ପାପଆତ୍ମା ଯେଣ ଯେକା ଦେବଇନ୍ଦ୍ର ଅଛି ବସି
ମହା କାଳାନଳ ଜାଣି ଭୃଷ୍ଟା ପ୍ରବେଶ ହୋଇଲକ ଆସି । ୪୦୬ ।
ଭୃଷ୍ଟାଯେ ବୋଇଲେ ଇନ୍ଦ୍ର ତୁ ନାଶିଲୁ ମୋହୋର ବାଳକ ନନ୍ଦନ
ଯାଅରେ ବାସବ ତୁ ହୋଅସି ଦହନ । ୪୦୭ ।
ମହା ବ୍ରହ୍ମବେତ୍ତାର ଶାପ୍ୟ ଯେ ପଡ଼ିଲା
ଭୃଷ୍ଟାର ଇହଂବାକ୍ୟେ ଇନ୍ଦ୍ର ନାଶଗଲା ୪୦୮ ।
ଶୁଣ ହୋ ମନୁରଜା ଋଷିଂକର ବିବାଦେ
ଆମରାଧି ନାଥଂକୁ ହୋଇଲା ଯେତ୍ତେକ ପରମାଦେ । ୪୦୯ ।
ଧର୍ମେଣ ଯେବଣ ଆତ୍ମା ନେଇଣ ଥୋଇଲା
ହାପରେ ସେ ଧର୍ମସାର୍ଦ୍ଧେ ପୃଥ୍ୱେଁ ଉପୁଜିଲା । ୪୧୦ ।
ପବନେଣ ନେଇ ଥୋଇଲା ଯେବଣ ଦୁଇଆତ୍ମା
ହାପରେ ପବନ ସାର୍ଦ୍ଧେ ହୋଇଲକ ବୀର ଭୀମା । ୪୧୧ ।
ଇନ୍ଦ୍ର ଯେବଣ ଆତ୍ମା ଥୋଇଲା ଶୂନ୍ୟେଣ
ଇନ୍ଦ୍ର ସାର୍ଦ୍ଧେ ଜାତ ସେ ହୋଇଲକ ଅର୍ଜୁନ । ୪୧୨ ।
ଅଶ୍ୱିନୀରେ ଯେବଣ ଆତ୍ମା ନେଇଣ ଥୋଇଲା
ସେ ଅଶ୍ୱିନୀ ସାର୍ଦ୍ଧେ ଯେ ନକୁଳ ଉପୁଜିଲା । ୪୧୩ ।
କୁମାରେ ଯେବଣ ଅତ୍ମା ଥୋଇଲା ପଞ୍ଚଭୂତ
ସହଦେବ ମହାମନ୍ତ୍ରୀ ମାଦ୍ରୀଦେବୀର ସୁତ । ୪୧୪ ।

ବ୍ରହ୍ମବେତ୍ତା ମହର୍ଷି କହିଲେ ପରସ୍ତାବେ
ପଞ୍ଚୁ ଆତ୍ମାରୁ ଜାତ ହୋଇଲେ ପଞ୍ଚୁ ସେ ପାଣ୍ଡବେ । ୪୧୫ ।
ବଇବସ୍ୱତ ମନୁ ସେ ଅଗସ୍ତିଙ୍କ ପୁଚ୍ଛାକଲେ
ସେ ବ୍ୟାଘ୍ର ଗଜ ପୁଣ କେ କେଉଁ ହୋଇଥିଲେ । ୪୧୬ ।
ଅଗସ୍ତି ବୋଇଲେ ହୋ ଏସ୍ବେ ଅସଂକ୍ଷେପ ଶାସ୍ତ୍ରକଥା
ସିନ୍ଧୁରେଣୁ ଗଣିବାକୁ କେତ୍ତୁ ସେ ସାମରଥା । ୪୧୭ ।
ମୁହିଂ କହପଣ କଲ ହୋ ସାରଳାଙ୍କ ପ୍ରସନ୍ନେ
ମୋତେ ଯେତେ ଦୃଶ୍ୟ ହୋଇଲା ମୁଂ କଲଇ ଲେଖନେ । ୪୧୮ ।
ଅଥବା ଦେଖାଉଅଛୁ ମୁଂ ଠିକ ଠିକ କରି
ସଂସାର ଜନ ବୋଧ ନିମନ୍ତେଣ ମୁହିଂ ସିନା ତରି । ୪୧୯ ।
କେବଳ ସାରଳା ପ୍ରସନ୍ନେ ବ୍ରହ୍ମଗ୍ୟାନ
ଅସଂକ୍ଷେପ ଅଗାଦ ଏସ୍ବେ ମହାଭାରଥ ଆଖ୍ୟାନ । ୪୨୦ ।
ଅଭୟେ ଅପର୍ଣ୍ଣା ସେ ଜଙ୍ଘେର ପୁର ବାସୀ
ଅସଂଖ୍ୟ ହୋଇଅଛନ୍ତି ମୋତେ ସଖ୍ୟକରି ଦାଅସି । ୪୨୧ ।
ସର୍ବ ମଙ୍ଗଳା ମାଗୋ ଯାହାର ନାମଗୋଟି
ଦଧି ସମୁଦ୍ର ଯେହ୍ନେ ଶ୍ୱେତ କମଳ ଫୁଟି । ୪୨୨ ।
ନିଧଉତ ନିର୍ମଳ ଶରତ ଯାହାର ପରକୃତ
ବସନ୍ତ କାଳେ ଯେହ୍ନେ ମଳୟେ ବହନ୍ତ । ୪୨୩ ।
ତୁହି ମାତ ଗୋ ସର୍ବସିଦ୍ଧି ଋଦ୍ଧି ବୃଦ୍ଧି ନିଧି
ତୋହୋର ପ୍ରସନ୍ନେ ତରିବି ଦୁସହ ପୟୋଧି । ୪୨୪ ।
ଭୂଥ ଖଣ୍ଡ ମଣ୍ଡଣି ଗୋ ଅଭୟେ ଅପର୍ଣ୍ଣା
ଦଇତବଳ ନିଶୋଧିନୀ ଗୋ ତୁ ବ୍ରହ୍ମ ଯୋଗୀ ସିନା । ୪୨୫ ।

---

୪୧୯।୨ କେବଳ ମ ଯ ଦେଖାଉଅଛୁ 'ମୁଂ ଠିକ ଠିକ କରି ।—ବ, ଦ
୪୨୫।୨ ଦଇତ ନାଶିନୀ ବ୍ରହ୍ମଯୁଗ ଜନା ।—ପ, ଧ
୪୨୫।୨ ଦଇତ ନାଶିନୀ ସାରଳା ଚଣ୍ଡୀ ନାମା ।—ଛ, ଜ

ନୟନେ ଦେଖଇ ଗୋ ମୁଂ ଲିହଇ ଶାସ୍ତ୍ର ଯୋଗେ
ଏମ୍ଭେ ବିରାଟ ପର୍ବକୁ ବଞ୍ଚାଇଲି ଶ୍ଳୋକକୁ ଗୀତବାଗେ । ୪୨୬ ।
ଶ୍ରୀ ସିଦ୍ଧ ସାରେଳା ଗୋ ପ୍ରସନ୍ନବଦନୀ
କଉତୁକେ ଖେଳଇ ଯେ ବାଳୁଡ଼ ରୂପ ଘେନ । ୪୨୭ ।
କଳକାଳ ଧ୍ୱଂସିଂନୀ ଗୋ ଆନନ୍ଦନନ୍ଦନୀ
ସଦା ସର୍ବଦା ଗୋ ତବ ଚରଣେ ଦଣ୍ଡିନୀ । ୪୨୮ ।
ମମହୃଦେ ବିଶ୍ରାମ ଗୋ ନର୍ମଦା ସରସ୍ୱତୀ
ସଞ୍ଜୀବନୀ ନାଥଙ୍କୁ ଗୋ ଯେମନ୍ତେ ନୋହେ ଶ୍ରାନ୍ତି । ୪୨୯ ।
ମୁକ୍ତିବନ୍ତ ନାଥ ସେ ଯେ ଅନାଦି ଶ୍ରୀପତି
ନିରାକାର ବ୍ରହ୍ମ ସେ ଯେ ଅଟନ୍ତି ସ୍ୱୟଂଜ୍ୟୋତି । ୪୩୦ ।
ଜନ୍ମେଣ ମୂର୍ଖ ମୁଂ ଗୋ ଅପଣ୍ଡିତ ଅଗ୍ୟାନ
ଶୃଙ୍ଗମୁନି ସାରେଳ ଦାସକୁ ଦିଅ ଗ୍ୟାନ ଦାନ । ୪୩୧ ।
କଦମ୍ବନ୍ତ ଅଗସ୍ତି ଯେ ବିଲଂକା ଦେଶର ରାଜା
ତୁଳରଷି ଗର୍ଭେ ପଶିଥିଲେ ଯେ ବାସବ ତନୁଜା । ୪୩୨ ।
ଅନେକ ବାତୁଳ ଭାବ ସେ କରାଇଲେ ମୁନିଂକ
ଅବିରତେ ଶୃଙ୍ଗାର କଲେ ସେ ଧରଣ ମୃଗୁଣୀକ । ୪୩୩ ।
ଯେତେ ଝରୀଲିଙ୍ଗ ବନେ ପାବନ୍ତ ତପସ୍ୱୀ
ଅବିଛିନ୍ନେ ଶୃଙ୍ଗାର ସେ କରଇ ନ ବିଗୁରି । ୪୩୪ ।
ଭାଦ୍ରବ ମାସ ଶୁକ୍ଳପକ୍ଷ ଯେ ଚଉଠୀର ଦିନ
ତୁଳ ଋଷି ପଶିଲେ ଯେ ଦଣ୍ଡକା ଅରଣ୍ୟ । ୪୩୫ ।
ହିରଣ୍ୟଗିରି ପର୍ବତେ ଯେ ନିଦ୍ରାଗଲେ ତୁଳପତି
ଗର୍ଭଂ ବାହାର ହୋଇଲେ ବାସବର ସନ୍ତତି । ୪୩୬ ।
ବ୍ରହ୍ମାଣ୍ଡ ଭୋଟିଲି ତେଜ ମୁନିଂକର ତାହାଂକର ଯାନ୍ତେ
କାହିଂକ ଯାଉଛ ଆରେ ନାଶ କର ମୋତେ । ୪୩୭ ।

---

୪୨୬।୧  ନୟନେ ନ ଦେଖଇ ମୁଂ ଲିହିଲି ଶାସ୍ତ୍ରଯେ ଗୋ ।—ଗ, ଣ, ଜ
୪୨୬।୨  ବିରାଟ ପର୍ବ ଲେଖିଲି ଗୋ ପରକୃତ ବାଣେ ।—ଙ, ଦ
୪୩୭ { ଚେତନା ପାଇଲେ ମୁନି ତାହାଂକର ଯାଆନ୍ତେ
କାହିଂକ ଯାଉ ଅଛ ରେ ନାଶକର ମୋତେ ।—ଦ, ଛ,

ଦୁଃଖେଣ ଅରଜନ୍ନ ତପ ମୋହୋର ଯେ ଭାଞ୍ଜି
ଆରେ ବେଦାଭ୍ରାଥେ ତୁମ୍ଭେ ହୋଅ ଅରଣ୍ୟେ ବ୍ୟାଘ୍ରଗଜ । ୪୩୮ ।
କରପଦ ଯୋଡ଼ଣେ ସେ ବୋଲନ୍ତି କ୍ରମରେ
ମୋକ୍ଷକଇଂ କାରଣ ଆମ୍ଭନ୍ତ ହାଦେ ଦେବାକ ମୁନିବରେ । ୪୩୯ ।
ମହା ବ୍ରହ୍ମଋଷି ସେ ବୋଇଲେ କଇଶଗେ
ତୁମ୍ଭେ ଦୁହେଂ ମୋକ୍ଷ ହୋଇବ ରେ ଚନ୍ଦ୍ରବଂଶ ଯୁଗେ । ୪୪୦ ।
ଘଟ କଲଶ ବୋଲଣ ହୋଇବ ଦ୍ୱାପର ଯୁଗେ
ଜମ୍ଭଭେଦୀ ନାମେ ଇନ୍ଦ୍ର ବସିବ ଅମର ସ୍ୱର୍ଗେ । ୪୪୧ ।
ପଦ୍ମଯୋନି ନାମେ ବ୍ରହ୍ମା କାର୍ତ୍ତିକା ନାମେ ଯମ
ଯୁଗାନ୍ତକ ନାମେ କାଳ ବ୍ୟନ୍ତପାତ ନାମେ ଧର୍ମ । ୪୪୨ ।
ଅନନ୍ତ ନାମେଣ ଆଦିତ୍ୟ କାମ୍ୟେକ ନାମେଣ ନିଶାପତି
ଜୀବନ୍ତ ନାମେଣ ମନ୍ତ୍ରୀ ପାବକ ନାମେ ବହନ୍ତି । ୪୪୩ ।
ଶୋହୋଇ ନାମେ ପୃଥ୍ୱୀ ହୋଇବ ଭୂଅଗ୍ରେ
ମର୍ତ୍ତ୍ୟପୁରେ ଯାତ ସେ ହୋଇଥିବ ତୁମ୍ଭେ । ୪୪୪ ।
ସୋମବଂଶରେ ରାଜା ହୋଇବେ ଧର୍ମର ନନ୍ଦନେ
ମହାଧର୍ମ ସେ ସାଧିବେ ବନ୍ଧୁମାନେ । ୪୪୫ ।
ଦ୍ୱାପର ଯୁଗ ଆଠଲକ୍ଷ ଚଉଷଠି ସହସ୍ର ବରଷ ଅନ୍ତେ
ବଇବସ୍ୱତ ମନୁର ଯୁଗଭୋଗ ପ୍ରେ ଲେଖନ୍ତେ । ୪୪୬ ।
ସେ ଦ୍ୱାପର ଅନ୍ତେ ସେ ସୁକୁମାର ସମ୍ଭ୍ରରେ
ଯୁଧିଷ୍ଠିର ଅଗ୍ୟାଂତ ବାସ ବରାଟ ରାଇଜରେ । ୪୪୭ ।
ଜାଗାନାମେ ଶବର ସେ ଅଙ୍ଗଦ ଅଟଇ ପୂର୍ବେ
ସେ ଭୁମ୍ଭନ୍ତ ଧରିନେବ ମହାଧିପ ଆଗେ । ୪୪୮ ।
ଗଜକଇଂ ବ୍ୟାଘ୍ର ସେ କରିବ ଜାଣ ପ୍ରାଣେବଧ
ବ୍ୟାଘ୍ରପ୍ରାଣ ନାଶିବ ଭୀମ କରିଣ ମାଲଯୁଦ୍ଧ । ୪୪୯ ।

---

୪୪୩।୨ ଯାବକ [ଯାବତ] ନାମେଣ ମନ୍ତ୍ରୀ ପାବକ ନାମେ ବହୃତ ।—
ଧ, ପ, ଜ, ଛ, ଘ

ସେ ପାଣ୍ଡବେ ତୁମ୍ଭର ସହୋଦ୍ର ଅଟନ୍ତି ଯୁଗତେ
ଭୀମସେନ ପ୍ରହାରେ ଯୁଦ୍ଧେଶ୍ୱି ଦୁଃଶାସନ ତୁମ୍ଭେ ଆସିବ ସ୍ୱର୍ଗପଥେ ।୪୫୦।
ସ୍ୱେଷନେକ'ଚରିତ ସେ ପୂର୍ବର ଆଦିକଥା
ଶୁଣ ହୋ ମନୁରାଜା ପୁଚ୍ଛିଲୁ ଯେ ଗଜ ବ୍ୟାଘ୍ରର ବାରତା । ୪୫୧ ।
ବାସବର ନନ୍ଦନ ଯେ ଶାପ୍ୟ ପାଇଥିଲେ
ମୋକ୍ଷ ହୋଇଣ ସେ ଅମର ସ୍ୱର୍ଗକଇଂ ଗଲେ । ୪୫୨ ।
ବଇବସ୍ୱତ ମନୁ ବୋଇଲା ଗଜ ବ୍ୟାଘ୍ର ବଧଅନ୍ତେ
ବିରାଟ ସମରାଜ୍ୟ ଲୋକେ ହୋଇଲେ ତୋଷଚିତ୍ତେ । ୪୫୩ ।
କିଚକ ଡାକଇ ଆସ ଆସ ହୋ ରନ୍ଧେ ମହେ
ତୋହୋର ଶରୁକୁ ସୂପକାର ନାଶିଲା ପ୍ରତକ୍ଷେ । ୪୫୪ ।
ସମସ୍ତ ବାରତା ଜାଣି କହିଲା ଭୀମକୁ
ବୃକୋଦର ବୋଇଲା ପ୍ରଣପତ୍ୟ ହୋଇବ କି ତୁକୁ । ୪୫୫ ।
ଜାରାଣବର ବୋଇଲା ବାରୁ ନୋହୋଇ ବହିତ
ତୁମ୍ଭେ ମୋହୋର ତାତ ଯେ ମୁହିଂ ତୁମ୍ଭର ସୁତ । ୪୫୬ ।
ଭୀମସେନ ବୋଇଲା ମୁଂ ନ ବୁଝିଲି ସ୍ୱେହା
ସୁଗ୍ୟାମି ପଣ୍ଡିତ ତୁ ସେ କହ ପୂର୍ଣ୍ୟଦେହା । ୪୫୭ ।
କିଚକ ହୋଇଲା ସତ୍ୟଯୁଗେ କେତୁ ଯେ ମଙ୍ଗଳ
ତ୍ରେତୟା ଯୁଗେ ବଳୀ ସୁଗ୍ରୀ ମହାବଳ । ୪୫୮ ।
ଦ୍ୱାପର ଯୁଗେ ଯେବେ ଭୀମ ଦୁଃଶାସନ
ବାଳୀ ସୁଗ୍ରୀ ଅବତାରେ ଅଙ୍ଗଦ ମୁଂ ଅଟଇ ତୁମ୍ଭର ନାନ । ୪୫୯ ।
ଯେବେ ମୋହୋର ପିତା ଶତଶୃଙ୍ଗେ ଖଟିଥିଲା ପଣ୍ଡୁଂକୁ
ମୁହିଂ ଭଗତ ଭାବେ ଯେବେ ଖଟିବି ତୁମ୍ଭଂକୁ । ୪୬୦ ।
ତୁମ୍ଭେ ଯେ ଭୀମସେନ ବଲ୍ଲବ ସୂପକାର
ଲୋକତ କର୍ମେ ବ୍ରାହ୍ମଣ ରୂପକୁ ନମସ୍କାର ମୋହୋର । ୪୬୧ ।

---

୪୫୦ { ସେ ପାଣ୍ଡବେ ଅଟନ୍ତି ହୋ ଇନ୍ଦ୍ରର ପଞ୍ଚ ଭୂତେ
ଭୀମର ହାଥେ ବଧହୋଇ ଆସିବ ସ୍ୱର୍ଗପଥେ ।—ଦ, ଛ, ଜ

ଆ.ମ୍ଭ ବ୍ରାହ୍ମଣ ଅଟ ବ୍ୟାସବଂଶ
କଉରବ ପାଣ୍ଡବ ତୁମ୍ଭେ ଅଟ ହୋ ସୋମବଂଶ । ୪୬୨ ।
ଶ୍ରୀମ କରାଚ କଥା ସରଲ ଯମ୍ଭ ବାଣୀ
ଶ୍ରୀମସେନ ତୃଷ୍ଣୀ ହୋଇ ସୁମରଇ ଚକ୍ରପାଣି । ୪୬୩ ।
ବ୍ୟାଘ୍ରର ବଧ ଦେଖି ଯେ ବିରାଟ ରାଜନେ
କଟଣିରୁ ଓହ୍ଲାଇ ରାଜା ବଜପ୍ରେ ଆସ୍ଥାନେ । ୪୬୪ ।
ଆସ ଆସ ସୂପକାର ହୋ ସ୍ନେହେନେକ ତୁମ୍ଭର ମହିମା
ପ୍ରେ ମଧ୍ୟସ୍ୱର୍ଗରେ ବାବୁ ଥୁହାଇଲୁ ତୋହୋର ଗାରିମା । ୪୬୫ ।
ତୁମ୍ଭେ ସେ ରକ୍ଷାକଲୁ ମୋହୋର ରାଜ୍ୟର ଜାତପାତ
ମହାଭୟରୁ ରକ୍ଷା କଲୁ ତୁ ଆମ୍ଭନ୍ତ । ୪୬୬ ।
ଆପଣା ଶରୀରେ ଯେତେକ ରତ୍ନ ଅଳଂକାର ଥିଲା
ବଲ୍ଲବ ଶରୀରେ ସମସ୍ତ ଆଭରଣ କଲା । ୪୬୭ ।
ଅପାର ଧନବସ୍ତ୍ର ଯେତକ ବୋଇଲେ ମହାନାଥେ
ବଲ୍ଲବକଇଂ ପାଦପଣେ ଶାଢୀ ଦିଅ ହୋ କୁନ୍ତେ । ୪୬୮ ।
ଶ୍ରୀହସ୍ତେ କୋନ୍ତେ ଯେ ଆପଣେ ବଲ୍ଲବକୁ ଦିଲେ ଶାଢୀ
ବୋଇଲେ ରୋଷୁଅ ଘରେ ହୁଅ ତୁ ସୂପକାର ଅଧିକାରୀ । ୪୬୯ ।
ଅନେକ ପ୍ରଶଂସା ଯେ କରନ୍ତି ରାଜ ଲୋକେ
ସାଧୁ ସାଧୁ ସୂପକାର ମହିମା ତୋ ହୋର ହଇଲୋକେ । ୪୭୦ ।
ବିରାଟ ବୋଇଲା ତୋହ ପରି ଜଣେ ଥିଲେ
ପୃଥିବୀ ଜିଣିପାରେ ମେ ହୋର ସେ ବେଳେ । ୪୭୧ ।
ମନେଣ ଅନେକ ସାନନ୍ଦ ସେ ହୋଇଲା ବୃକୋଦର
ସ୍ୱଇଚ୍ଛାପ୍ରେ ରହିଲା ଯାଇଂ ସେ ପବନ କୁମାର । ୪୭୨ ।
। ୨୪୮୭ ।

---

୪୬୫। ମହାଭୟ ନିବାରଣ ରୂ ସ୍ୱୟଂ ବିଶ୍ୱନାଥ ।— ଘ, ଛ ଜ

## ଭୀମଙ୍କ ସହିତ ପ୍ରଦେଶୀ ମଲ୍ଲର ଯୁଦ୍ଧ ଓ ତାହାର ମୃତ୍ୟୁ

ବଇଶମ୍ପାୟନ ଅଗସ୍ତି ଶୁଣ ବଇବସ୍ୱତ ମନୁ
ବ୍ୟାଘ୍ରକଇଂ ବଧକଲା ସେ ପବନର ତନୁ । ୧ ।
କେହି ଜାଣନ୍ତା ନୋହିଲେ ସେ ବ୍ୟାଘ୍ର ମାଇଲା ଗୋପ୍ୟାନେ
ଶାନ୍ତିପାଇ ଭୀମସେନ ଗଲା ଗୋଷ୍ଠୁଅ ସ୍ଥାନେ । ୨ ।
ମନୁ ପୃଚ୍ଛା କଲେ ଆଉ କିସ କଲା ଯୁଦ୍ଧ
ଅଗସ୍ତି ବୋଇଲେ ପୁଣି ମାଲେକ କଲା ବଧ । ୩ ।
କାହାଂର ମାଲ ସେ ହୋଇ କେଉଁଣ ପୁରେ ଥିଲା
ବଲ୍ଲବର ତାହାର କାହିଂ ଭେଟ ଯେ ହୋଇଲା । ୪ ।
ଅଗସ୍ତି ବୋଇଲେ ସତ୍ୟଯୁଗେ ମହାରାଜା ବଳୀ
ଅଶୀଖର୍ବ ମଲ ଯେନ ସେ ସାଧିଲା ମହାଆଳୀ । ୫ ।
ବାମନରୂପୀ ନାରାୟଣ ଧରି ବିଶ୍ୱମୂର୍ତ୍ତି
ଗୃପକ୍ଷେଣ ବଳୀ ସେ ଗଲା ରସାଂଗତି । ୬ ।
ମାଲମାନେ ଧଇଲେ ସେ ବାବନର ଜାନୁ
ଚରଣ ଉପାଡି ଲେଉଡିଲେ କୃଷ୍ଣଶାନୁ । ୭ ।
ରୋମମୂଳ ଉତସଲ୍ୟ ଯନ୍ତ୍ରଂ କଲେକ ବାମନ
ଅନେକ ଦୂରେ ପଡିଲେ ବଳୀର ମାଲମାନ । ୮ ।
ବୀର ବ୍ରେଡଙ୍ଗ ବୋଲଣି ନଗ୍ର ପଶ୍ଚିମ କୋଣେ
ବଜ୍ରବାହୁ ମାଲ ପଡିଲା ସେ ନବସହସ୍ର ଯୋଜନେ । ୯ ।

---

୬।୨  ଉଦକପୂର ଦାନ ଦେଇ ପାତାଳେ ବଳୀ ଗୃପକ୍ଷ ।—ଣ, ଦ
୭।୧  ବାବନ—ବାମନ
୭।୨ କୃଷ୍ଣଶାନୁ—ବିଷ୍ଣୁ ।
୮।୧  ରୋମାବଳୀମାନ ଯେ ଟାଂକୋରିଲ ବାମନ ।—ଜ, ଝ, ଛ

ପଞ୍ଚଦଶ ଯୋଜନ ଅଟଇ ସେ କଟକର ସ୍ଥଳୀ
ସେ ମାଲ ପଡିଲ୍ଲ ତହିଂ ପାଞ୍ଚଯୋଜନ ଉଗୁଳି । ୧୦ ।
ମନ୍ଦର ପର୍ବତ ଯେସନ୍ଧେ ପଡିଲ୍ଲକ ଉଡି
ମାଲ ପଡନ୍ତେ ବିଂଶ ଯୋଜନ ହୋଇଲ୍ଲକ ଚୂରି । ୧୧ ।
ଜନ ମଣିଷ ଆଦି ହୋଇ ନ ରହିଲ୍ଲ କିଛି
ଯେବ୍ଧ ବଜ୍ର ମହାମଲ୍ଲ ତହିଂ ପଡିଅଛି । ୧୨ ।
ସେ ବଜ୍ରବାହୁର ନନ୍ଦନ ଅମସ୍ତବାହୁ ବୀର
ମେଦିନୀ ନ ସହଇ ସେ ମାଲଂକର ଭର । ୧୩ ।
ଅମସ୍ତେ ମାଲକୁ ସେ ମାରିଲ୍ଲ ହନୁମନ୍ତ
ରଣକେଶରୀ ବୋଲି ତାହାଂକର ନିଜ ସୁତ । ୧୪ ।
ରଣକେଶରୀର ପୁତ୍ର ପୃଥୁ କେଶରୀ ମଲ୍ଲ
ହରଣକେଶରୀ ନାମେ ଯେହାର ଦୁଲାଳ । ୧୫ ।
ସେ ହରଣକେଶରୀ ନନ୍ଦନ ମହାକେଶରୀ ମଲ୍ଲ
ଜିଣିଣ ଦିଗପାଳ କଲା ସକଳ ସମତୁଲ । ୧୬ ।
ମହାକେଶରୀ ପୁତ୍ର ସେ ମେରୁକେଶରୀ ବୀର
ଯେହାର ମୁଥଘାତେ ଖଣ୍ଡଗିରି ହୋଇଲ୍ଲ ଶତେଚୂର୍ଣ୍ଣ । ୧୭ ।
ମେରୁକେଶରୀର ପୁତ୍ର ପ୍ରଚଣ୍ଡ କେଶରୀ
ପୃଥୀର ମାଲନ୍ତ ଯେ ଜିଣିଲା ସର୍ବ ଧରି । ୧୮ ।
ପ୍ରଚଣ୍ଡ କେଶରୀର ପୁତ୍ର ଯେ ଦୁର୍ଦ୍ଦଣ୍ଡ କେଶରୀ
ଗଗନକେଶରୀ ବୋଲି ଯେହାର ପୁତ୍ର ଅବତରି । ୧୯ ।
ତାହାର ପୁତ୍ରର ନାମ ଆକାଶ କେଶରୀ
ଆକାଶ କେଶରୀ ପୁତ୍ର ପାତାଳ କେଶରୀ । ୨୦ ।
ପାତାଳକେଶରୀ ପୁତ୍ର ଚନ୍ଦ୍ର ଯେ କେଶରୀ
ଚନ୍ଦ୍ରକେଶରୀର ପୁତ୍ର ପଦ୍ମ ଯେ କେଶରୀ । ୨୧ ।

---

୧୪।୧ ଅବସ୍ତେ ମାଲକୁ ସେ ମାଡିଲ୍ଲ ହନୁମନ୍ତ ।—ଝ, ଢ
୧୪।୧ ମାସ୍ତେମାଲକୁ ମଡି ବସିଲା ହନୁମନ୍ତ ।—ଅ, ଖ, ଠ

ପଦ୍ମକେଶରୀର ପୁତ୍ର ବିକ୍ରମକେଶରୀ
ଯେମନ୍ତେ ମାଲବଂଶ କେ ପାରେ ଲେଖାକରି । ୨୨ ।
ଯେତୁ ସେ ବୋଲିବଇ ପ୍ରତାପ୍ୟଂ ମାଲରାଜା
ଯେହାର ନନ୍ଦନ ମାଲ ଯମ ଅନର୍ଗଳ ଭଂଜା । ୨୩ ।
ଯେହାର ନନ୍ଦନ ମାଲ ସୁବାହୁ କେଶରୀ
ଯେହାର ନନ୍ଦନ ଯେ ଗଜଦର୍ପ କେଶରୀ ବୋଲି ନାମ ଧରି । ୨୪ ।
ପ୍ରତାପୀ ମାଲ ସେ ଯେ ଜମ୍ବୁଦ୍ୱୀପର ମଧ୍ୟେ
ତାହାର ସରି ତିନମାଲ ମାଇଲାନ ଯୁଦ୍ଧେ । ୨୫ ।
କନ୍ୟାମାସ କୃଷ୍ଣପକ୍ଷ ଅଷ୍ଟମୀର ତିଥି
ଭୃଗୁବାର ଆରଦ୍ରା ନକ୍ଷତ୍ର ଯୁଗତି । ୨୬ ।
ସେ ଦିନ ମାଲ ଆସଇ ଦଣ୍ଡ ଚଢିକରି
ଅତ୍ୟବ୍ଭୁତେକ ମାଲ ଅଛଇ ଭୁଲେଣ ତାହାରି । ୨୭ ।
ପ୍ରତାପ୍ୟଂ ଆରମ୍ଭେଣ ଅପାର ବାନା ଘାରଧୃ
ଯେକା ଜଣେକ ମଚ୍ଛି ସେ ପାରଇ ସପ୍ତସିନ୍ଧୁ । ୨୮ ।
ମନ୍ଦର ପର୍ବତନ୍ତ ସେ ଉପାଡି ପାରଇ ବାମହାଥେ
ହେମବନ୍ତ ଅଚଳ ସେ ଗୃହ ପାରଇ ମାଥେ । ୨୯ ।
ଘାର ଦାଉଣ୍ଡିମାନ ଯେ ଘାରମର୍ଦ୍ଦଳ ଘାର ଢୋଲ
ବଜ୍ରଘୋଷ ନିଶାଣ ବଜାନ୍ତ ଘାରମଲ୍ଲ । ୩୦ ।
ଘାର କାହଳୀ ଘାରଧ୍ୱନି ଘାରନେତ ଯେ ଉଡଇ ତଉପାଶ
ବିଲମ୍ବ ଆଲମ୍ବ ଚିରାଳ ଉଲାଝ ଉଡନ୍ତ ଆକାଶ । ୩୧ ।
ଘାରନେତ ବାନା ଯାର ବନ୍ଦନ ଭୂଜଗତ
ଅସୁର ବଳ ପ୍ରାୟେକ ସେ ଦିଶନ୍ତ ସାକ୍ଷାତ । ୩୨ ।
ନିକଳଂକ ଚମ୍ପାଚକ୍ର ଜାଣି ମାଲର ବେନିଆଖି
ମଚ୍ଛ ରାଇଜ ଲୋକେ ଭୟେକଲେ ତାକୁ ଦେଖି । ୩୩ ।

---

୨୪।୨ ଯେହାର ନନ୍ଦନ ଯେ ଜଗତକେଶରୀ ବୋଲି ନାମ ଧରି ।—
କ, ଦ, ଜ, ଚ, ଛ

ଛରଣ ଯୋଗେ ଯେହ୍ନେ ଅଗ୍ନି ଜଳନ୍ତି
ଶିକୂଟ ପର୍ବତ ଜାଣି ମାଲର ବେନମୁଷ୍ଟି । ୩୪ ।
ତମ୍ବାର ଡିଙ୍ଗର ଜାଣି ଦଶଇ ମାଲର ତନୁ
ଦଶଜଣ ଭୁଜେ କୁଣ୍ଡକଲେ ନପାଇ ତାର ଜାନୁ । ୩୫ ।
କେଶଗ୍ର ଆକ୍ରଷଣ ଜାଣି ମାଲର ବେନଭୁଜ
କାଳାନଳ ଜାଣି ଦରଗଜଇ ମାଲର ହାବେ ତେଜ । ୩୬ ।
ଗଜଦର୍ପ ମାଲ ପ୍ରବେଶ ମହାରାଜ୍ୟେ
ଦେଖିଣ ସର୍ବଜନେ ହୋଇଲେ ଆଶ୍ଚିଜେ । ୩୭ ।
କୃତାନ୍ତକ ତେଜ ପ୍ରାୟେ ଦେଖିଲେ ମହାଦେଶର ଲୋକେ
ମାଲ ମହାଗିରି ଯେ ଚଳଇ ମହାମତ୍ତ ଗର୍ବକେ । ୩୮ ।
ଭୟେଣ ବେନଭାଗ ହୋଇଲେ ନରଲୋକେ
ଦେଖିଣ ଆଶ୍ଚିଜ ଯେ ହୋଇଲେ ମହାଦୁଖେ । ୩୯ ।
ଆସ୍ଥାନ ତଳେ ମାଲ ହୋଇଲା ପ୍ରବେଶ
ବାହାସ୍ଫୋଟ ଦେଇଣ ହାମ୍ଭୋଡନ୍ତେ କମ୍ପିଲା ଆକାଶ । ୪୦ ।
ଭୂମିକି ଆକ୍ରେଷିଣ ସେ କଲାକ ଠିଆଠାଣ
ଯୈକାଘାନ୍ତ କଲା ସେ ତଉରାଣୀ ବନ୍ଧାଣ । ୪୧ ।
ଅଧର ପୁଷ୍ଟକର ସେ ଗୃପିଲା ବଳପାଟି
ଭୟେଣ ଆସ୍ଥାନ ତେଜଇ ମଚ୍ଛପତି । ୪୨ ।

---

୩୫।୧ ତମ୍ବାର ବର୍ଣ୍ଣିଜାଣି ମାଲର ଦଶେ ତନୁ ।—ଦ, ଜ, ଛ
୩୫।୧ ଶୁଦ୍ଧ ତମ୍ବା ପର୍ବତ୍ୟେ ଶୋଭା ମାଲର ତନୁ ।—ଖ, ଠ
୩୬।୧ ଅକ୍ରେଷଣ—ଆକର୍ଷଣ
୩୬।୧ ହାଥୀର ଥୋର ପ୍ରାୟେ ମାଲର ବେନ ଭୁଜ ।—ଙ୍କ, ଥ, ଖ
୩୮ { ମହା ପ୍ରବଳ ଯେ ମାଲ ମହାମତ୍ତଦର୍ପେ
ଭୟେଣ ବେନଭାଗ ହୋଇଲେ ବେଗେ ଗୋପ୍ୟେ ।—ଡ,ଟ,କ,ଟ }
୪୧।୧ ଭୂମିକି ଆବୋରଣ ଯେ କଲାକ ଠିଆଠାଣ ।—
ଚ, ଖ, ଧ, ଜ, ଘ, ଛ, ଠ

ଆରେ ଆରେ ବୋଲକରି ହାମ୍ଭୋ ଶବ୍ଦ ବେନିବାହୁ
ଅନ୍ତପୁର ବକ୍ରେ ଯେହ୍ନେ ଚଳନ୍ତିକ ରାହୁ । ୪୩ ।
ବିରାଟ ପଚାରଇ ମାଲ୍ଲ ତୁ କେବଣହୁଂ ଦେଶୀ
ମାଲ ବୋଇଲା ମୁଂ ଆହ୍ମମାଲ୍ଲ ଅଟଇ ବଳୀବଂଶୀ । ୪୪ ।
ଜପର ବଂଶର ବାରତା ଯହୁଂ ସଞ୍ଚିପି କହିଲ୍ଲିକ ସବୁ
ବିରାଟ ବୋଇଲା ମାଲ ଯେଥେ ଉନ୍ହବୁନା ଯିବୁ । ୪୫ ।
ମାଲ ବୋଇଲା ମୁଂ ପ୍ରଦେଶୀ ମାଲ୍ଲ ଅନର୍ଗଳା
ଶତେସିଂଘର ପ୍ରାକର୍ମ ଯେ କୀଚକେ ତୋର ଶଳା । ୪୬ ।
ଲକ୍ଷେ ଜୁଣ ପଣି ଜିନମାଲ୍ଲ କଲା ବଧ
ଯେବେ କୀଚକର ଭୁଲେ କରିବଇଂ ମାଲଯୁଦ୍ଧ । ୪୭ ।
ମେଲ୍ଲଦେ କୀଚକ ସମର କରୁ ମୋର ଭୁଲେ
ଚତୁର୍ଦ୍ଦିଗେ ଛଷୀ ଧରାଇବ ସେ ମୋତେ ଯେ ଜିଣିଲେ । ୪୮ ।
ମୁହିଂ ତାକୁ ସମରେ ପାରଇ ଯେବେ ମାରି
ଆଜର ଜମ୍ବୁଦ୍ବୀପେ କେ ଅଚ୍ଛି ମୋତେ ସରି । ୪୯ ।
ଭୁଇଂ ହୁଇଂ ଶର୍ବଣ ହୁଅଇଂ ମଚ୍ଛପତି
ତୋହୋର ଭୁଲେ ମୋହୋର ସମର କସ ଯେ ଯୁଗତି । ୫୦ ।
କୀଚକର ବାହୁବଳେ ମୋହୋର ରାଜ୍ୟଭାର
ଯାହାର ଭୟେ ପଳାଇଲା ରାଜା ତ୍ରିଗର୍ତ୍ତ ନୃପବର । ୫୧ ।
ପରରାଜ୍ୟ ମାରି ମୋତେ ରାଜଭୋଗ୍ୟ ସେ କରାଇ
ଦୁହାଂକ ଦୁଇ ପଦ୍ମ ମୋର ବରତ୍ତି ବାରଲକ୍ଷ ଗାଈ । ୫୨ ।
ଯେତେକ ଭୋଗ୍ୟ କରଇ ଯାହାର ପରସାଦେ
ତାହାକୁ ପେଷିବି କଂପେ ଯେତେକ ପରମାଦେ । ୫୩ ।
ବିରାଟ ବୋଇଲା ମାଲ ବାହୁଡ଼ ଯାଅ ଯା ଆନ ରାଜ୍ୟକୁ
ମୋହୋର ବେଳେ ପେଷି ନୋହଇ କୀଚକକୁ । ୫୪ ।

---

୫୦।୧ ଶର୍ବଣ—ଶ୍ରବଣ ।
୫୦।୨ ତୋହୋର ଭୁଲେ ମୋହୋର କସ ଯେ ଅପ୍ରୀତ ।—
ଛ, ଜ, ଦ, ଫ, ଖ

ମାଲ ବୋଇଲା କୀଚକ ମୋ'ର ଭୁଲେ ଯୁଦ୍ଧ ନ କଲେ
ସେ ତୋହୋର ରାଜ୍ୟରୁ ମୁହିଂ ନ ଯାଇ ଭଲେ । ୫୫ ।
ଦେଶ ଉଜାଡିବ ମାରିବ ଜୀବଜନ୍ତୁ ପରଜାନ୍ତ
ଅଶ୍ୱଶାଳ ଗଜଶାଳ ଭାଙ୍ଗି କରିବ ଧୂମାନ୍ତ । ୫୬ ।
କ୍ଷଣେ କ୍ଷଣେ ମାଲ କୋପକଲାକ କହୁଁ କହୁଁ
କୋନ୍ତେ ବୋଇଲେ ବିରାଟେ ସେକାନ୍ତେ ତୋତେ କହୁଁ । ୫୭ ।
ରାଜ୍ୟ କରୁଥିଲେ ହୁଅଇ ଅପାର କଉତୁକ
ଅରିଷ୍ଟି ଅପାଦ ଯେ ଘଡଇ ଅନେକ । ୫୮ ।
କପାଇଂ ଆନେ ଦିଅଇ ରାଜ୍ୟଭାର
ମାନ୍ତ ଅମାନ୍ତ ସବୁ ରାଜ୍ୟର ଉପର । ୫୯ ।
ସେ ମାଲ ଯଦ୍ୟପି ସେଥୁ ବାହୁଡଣ ଯିବ
ନି ଗର୍ଭିକଇଂ ଘେନଣ ସେ ଅବଶ୍ୟ ବାହିବ । ୬୦ ।
ସେତେବେଳେ ନ ଭାଙ୍ଗିଲେ ତେତେବେଳେ କିସ କରି
ଯେଉଂଣସି ପରକାରେ ହୋଇସେ ସେହାକୁହିଂ ମାରି । ୬୧ ।
ଶତେସିଂଘର ପ୍ରାକର୍ମ ଯେବଣ କୀଚକ ସେନାପତି
ମାଲ ସୁର ପ୍ରାକର୍ମକୁ ସେ ହେବେ ନକ କରଇ ଖ୍ୟାତି । ୬୨ ।
ବିରାଟ ବୋଇଲା ହୋ ଶୁଣିମା ଦେବ କୋନ୍ତେ
କହୁଛନ୍ତି ନିଜ ନାହିଂ ହୋ ସେ ମାଲ ବାହୁଡନ୍ତେ । ୬୩ ।
କୋନ୍ତେ ବୋଇଲେ ମାଲ ତୁ ଯେବେ ଅଇଲୁ ସମର କରି
ବାହୁରି କହିବା ତୁ ରହିଥାଅ ଦିନାରି । ୬୪ ।
କୋନ୍ତେ ବୋଇଲେ ରାସେ ଆଗ୍ୟାଂଦିଅ ବଲ୍ଲବକୁ
ଅନ୍ନ ଦେଉଥାଉ ସେ ପ୍ରଦେଶୀ ମାଲକୁ । ୬୫ ।
ଦିନା ଚାରି ପଞ୍ଚ ମାଲ ହୋ ବିଶ୍ରାମ ସେଥି କରି
କହୁଛିଂ ଅନ୍ତର ନାହିଂ ତୋତେ ଦିଆଇବା ସମର । ୬୬ ।

---

୫୬।୨ ଅଶ୍ୱଶାଳ ଗଜଶାଳ ଭାଙ୍ଗି କରିବ ଭଗନସ୍ତ ।—କ, ଔ, ଘ, ଛ, ଜ
୫୬।୨ ଧୂମାନ୍ତ—ଭଗନସ୍ତ, ଭାଙ୍ଗିବା ।
୬୬।୨ କହୁଛନ୍ତି ବିଚାର ନ କର ତୋତେ ଦେବନ୍ତି ସମର ।—କ, ଘ

ବିରାଟ ଆଜ୍ଞା ହେଲା ରାଇଣ ମୁନେନ୍ଦ୍ରଂକ
ପ୍ରେ ମାଲକୁ ଘେନଯାଅ ବଲ୍ଲବ ଛନ୍ଦଂକ । ୬୭ ।
ବୋଲବ ଅନ୍ତିବ୍ରତେକ ମାଲ ଘେନ ଆସିଛୁ ଏଥୁ ପ୍ରଦେଶୀ ମାଲ
ପ୍ରେହାଙ୍କୁ ହେନା ଗୃର ପାଞ୍ଚ ଯୋଗାଡ ଦେଉଥିବୁ ଭଲ ଭଲ । ୬୮ ।
ରାଜାର ଆଜ୍ଞାଂପ୍ରେ ମାଲକୁ ଗଲେ ଘେନ
ଗୃରଗଣ କହନ୍ତି ଯେ ଧନପୁ ତଇନ । ୬୯ ।
ଗୋସାଇଂ ସୂପକାର ହୋ ପରଚ୍ଛା ବଲ୍ଲବ
ଠାକୁରଂକ ଆଜ୍ଞାଂପ୍ରେ ପ୍ରଦେଶୀ ମାଲକୁ ଯୋଗାଣ ଦେଉଥିବ ।୭୦।
ବହୁତ ଦୁର ଦେଶୀ ଜାଣ ପ୍ରେ ପରଦେଶୀ ମାଲ
ନନ୍ଦା ହୋଇବଟି ଯୋଗାଣ ଦେଉଥିବ ଭଲ । ୭୧ ।

---

୬୭।୧ ମୁନେନ୍ଦ୍ରଂ—ଦୂତ ।
୭୦।୧ ପରଚ୍ଛା—ରାଜାଘର, ପ୍ରଧାନ ସୂପକାର
୭୧।୨ "ନନ୍ଦା ହୋଇବଟି ଯୋଗାଣ ଦେଉଥିବ ଭଲ" ପାଠ ପରେ 'ଣ' ପୋଥିରେ ଅଧିକ ପଠ:—

ଶୁଣିଣ ପ୍ରଜ୍ୱଳତ ଯେ ବଲ୍ଲବ ଦ୍ୱିଜବର
କପ୍ସେ ରେ ଠାକୁର ହୋ ମୋହୋର ଉପର ।
ଶୁଣିଣ ଗୃରଗଣେ ଯେ ବାହୁଡିଣ ଗଲେ
ନୃପଙ୍କର ଗ୍ରୁମୁରେ ଯାଇଂ ସକଳ କହିଲେ ।
ଗୋସାଇଂ ନ ଶୁଣିଲା ବଲ୍ଲବ ଯେ କଲ୍ଲକ ପ୍ରତଗ୍ୟାଂ
କପ୍ସେ ରେ ଠାକୁର ବୋଲି ଯେ ମେଣ୍ଟିଲ୍ଲକ ଆଜ୍ଞାଂ ।
ଶୁଣିଣ ବିରାଟ କୋନ୍ତେଂକ ମୁଖ ଚାହିଂ
ତୁମ୍ଭେ ଆଜ୍ଞାଂଦିଅ ବଲ୍ଲବକୁ ବୋଲି କହି ।
କୋନ୍ତେ ବୋଇଲେ ହୋ ଚାରଗଣେ ପ୍ସେବେ ଯାଅ
ବଲ୍ଲବ ଗ୍ରୁମୁରେ କୋନ୍ତେ ଆଜ୍ଞାଂ ହଲେ ବୋଲି କହ ।
ଶୁଣିଣ ଚାରଗଣେ ଗଲେକ ତତ୍ପର
ଯାଇଣ ଜଣାଇଲେ ବ୍ରୁକୋଦର ମାରୁଢ ।
ଗୋସାଇଂ ବଲ୍ଲବ ହୋ ଶୁଣିମା ସାବଧାନେ
କୋନ୍ତଂକର ଆଜ୍ଞାଂପ୍ରେ ମାଲକୁ ଦେବା ଅନ୍ନେ ।
ଶୁଣି ସନ୍ତୋଷ ଯେ ହୋଇଲା ମାରୁଢ
ରୋଷଘରୁ ବାହର ହୋଇଲା ତତକ୍ଷଣାନ୍ତ ।

ବଲ୍ଲବ ବୋଇଲା କ୍ଷଣେକେ ହୋ ରହ ମାଲଭାଇ
ସାର ବଧାନ ଯୋଗାଡ ଭୁଆଇଂଣ ଦେବଇଂ । ୭୨ ।
ଧାନ ଉଷୁଂଇଲା ଯେ ଶତେକ ପଉଟି
ଚୁଲିଡା ଉପରେ ସେ ଲୁଡାଇଲା ମେଦଂଗୋଟି । ୭୩ ।
ମୁଗୁନ ପାଂଚ ପଥର ମୁଥେକ ମାରି କଲା ଚୂନା
ପେଜରେ ଫୁଟାଇ ତାହା କଲାକ ମେଞ୍ଜନା । ୭୪ ।
ବସ ହୋ ମାଲ ତୋହୋର ଭୁଲେ ଯେତେ ଗୋଟି
ପେଟ ଭାତ ଭଜଣ ଭୁଞ୍ଜ ଯେତେକ ତୋତେ ଅଣ୍ଟି । ୭୫ ।
ପଚର ପାଣି ଘେନ ମାଲ ଭୁଞ୍ଜିଣ ବସଇ
ବଲ୍ଲବ ସୂପକାର ନେଇଣ ପରଶଇ । ୭୬ ।
ଆହୋ ବଲ୍ଲବ ସୂପକାର ହୋଇ ପେଟେକ ନଶଂକା
ଦେଖିଣ ମାଲସାରେ ହୋଇଲେ ଚାଟକା । ୭୭ ।
ମାଲ ବୋଇଲା ହୋ ପଣ୍ଡାପେଟ ପେଟ ଭୋଜନର କସ ଯୁଗନ୍ତ
ଅସରେ ପୁଣି ପାଷାଣ ହୋ ଭୋଜନ ନ କରନ୍ତୁ । ୭୮ ।
ବଲ୍ଲବ ବୋଇଲା ତୁ ପେଟହା ଭୁଞ୍ଜି ଯେ ନୁଆରିଲେ
କେସନେକେ ସମର ତୁ କରିବୁ ଖାଟଙ୍କର ଭୁଲେ । ୭୯ ।
ଲୁହା ଭାଞ୍ଜିଣ ଶ୍ରମ ଗୋଟି ଗୋଟି କର
ମାଲ ଦେଖନ୍ତେ ତାହା ଗେହ୍ନାଇ କଲା ଧୂଳ । ୮୦ ।
ବେନଆଣ୍ଠୁ ମାଡ ସେ ବସିଲା ଭୟଂକର ମୂର୍ତ୍ତି
ଶତେପଉଟି ଧାନ ଭୁଞ୍ଜିଲା ମାରୁତ ତତକ୍ଷଣାନ୍ତ । ୮୧ ।
ପଥ ଭାଞ୍ଜିଣ ଯେତେକ କରିଥିଲା ଭଜଣ
ଶତେକ ନଉତ ଭଜଣ ଯେ ଭୁଞ୍ଜିଲା ବଲ୍ଲବ ବ୍ରାହ୍ମଣ । ୮୨ ।
ମାଲକୁ ବ୍ରହ୍ମଂଣ ସେ ବୋଲଇ ଉତ୍ତର
ଖାଟଙ୍କର ଭୁଲେ ସମର କରିଲେଉ ତୋହୋ ସ୍ଥିର । ୮୩ ।

---

୭୨।୨ ସାର ବଧାନ ଯୋଗାଡ ମୁଂ ଗିନ୍ଦେ ତୋର ପାଇଂ ।—
କ, ଖ, ଘ, ଙ

ମୁହିଂ ଯେ ତାହାର ସୂପକାର ବ୍ରାହ୍ମଣ ଅଟଇ
କଣକଲ୍ଲ ବିଦ୍ୟା ମୁହିଂ ମାଲ ବିନ୍ଧାଣ ଜାଣଇ । ୮୪ ।
ଆହେ। ମାଲ ଆନଥାନେ ଯେ କୃଷକାଷ୍ଟ ଭେଣ୍ଡା
ଦେଶାନ୍ତର ଆଖଡାସ୍ଥେ ସେ ଯେ ହୋଇଥାନ୍ତି ହେଣ୍ଡା । ୮୫ ।
ସେମାନେ ଯେବେ ସୁସ୍ଥ ଭୋଜନେ କରନ୍ତି ଇଛା
ସେହାଂକର ବପୁ ଖୀନ୍ନ ପ୍ରତଙ୍ଗ୍ୟାଂ ସବୁ ମିଛ । ୮୬।
ସୂପକାର ଚରିତ୍ର ଦେଖିଣ ବାହୁଡିଲ୍ଲ ମାଲ
ଆସ୍ଥାନର ତଳେ ଯାଇଂ ନ କହଇ ଭଲ । ୮୭ ।
ଆହେ। ବିରାଟ ସୂପକାର ବୋଲି ତୁ ବୋଇଲୁ ଯାହାରେ
କେବଣ ବ୍ରହ୍ମ ରାକ୍ଷସଟି ଗୋପ୍ୟାନ ତୋହୋର ପୁରେ । ୮୮ ।
ରାନ୍ଧଣା ଚରିତ ତାର କହିତ ନ ପାରି
କଞ୍ଚାହାରୁ ଅଟରି ଚୁଲ୍ଲୀରେ ନେଇ ଭରି । ୮୯ ।
ଅକଟା ଅବଟା ପରିବା ଲୁଣ୍ଡ କରି ହାଥେ
ହାଣ୍ଡିରେ ପୂରେଇ ବୋଲେ ସେ ମୋହୋର ମେଞ୍ଜନ ଯୁଗତେ ।୯୦।
ମୁଗୁନ ପଥର ମୁଥେକ ମାରି କଲ୍ଲ ଚୂନା
ପେଜରେ ଫୁଟାଇ ତାହା କଲ୍ଲକ ମେଞ୍ଜନା । ୯୧ ।
ଉଷୋଇଂ କୁଟୋଇଲ୍ଲ ଧାନ ଶତେକ ପଉଟି
ବୋଇଲ୍ଲ ଭୁଞ୍ଜ ହୋ ମାଲ୍ ନେଯତେକ ତୋତେ ଅଣ୍ଟେ । ୯୨ ।
ମୁହିଂ ତାହା ହାତେ ଦେଖି ହୋଇଲି ତାଟକା
ଆପଣେ ଭୋଜନ ତାହା କଲ୍ଲକ ପୂଣ ସେକା । ୯୩ ।
ସେ କଥା ପରମାଣି ବୁଝିବା ରାସ୍ଥେ ମଛ
ସେତେ ଦୁଷ୍ଟ ରାକ୍ଷସକୁ କିଂପେ ରଖିଅଛ । ୯୪ ।

---

୮୫ ଆହେ। ମାଲ ମିଛେ ଯାଇ ଆନଥାଠେ ହୋଇଥାଅ ଲୁଣ୍ଡି
ମହା ବଳବନ୍ତା ବୋଲି କହୁଥାଅ ଭଣ୍ଡି । —ଦ

୮୫ ଆହେ। ମାଲମାନେ ଆନଦେଶ ଲୋକଂକୁ ଯେ ଭଣ୍ଡି
ଦେଶାନ୍ତର ଚାରମାନେ କହନ୍ତି ବାରତା ଖଣ୍ଡି ।—ଣ

୯୦।୨ ଅକଟା ଅବଟା ସେ ଲୁଣ୍ଡି କରଇ ହାଥେ ।—କ, ଖ, ଦ, ଙ

ସ୍ୱେକା ବଣ୍ଡ୍ରକେ ତୋହୋର ସମଦଣ୍ଡ କରିବ ସେ ଭକ୍ଷ
କୋହିଲେ ସମର ତୁ ଦିଅରେ ପ୍ରତକ୍ଷ୍ୟ । ୯୫ ।
ବିରାଟ ଶୁଣିଂଲେ ତହୁଂ ସେ କୋନ୍କଂକର ବଦନ
କୋନ୍କେ ବୋଇଲେ ସେ ଜାଣଇ ରାନ୍ଧଣା ବିଧାନ । ୯୬ ।
କୋନ୍କେ ବୋଇଲେ ଯହୁଂ ମାଲକଥା ସେ ଶୁଣିଲା
ବୁଝିବ ବୋଲି ତୋହୋର ଗନ୍ତ ପରୀକ୍ଷ ନେଲା । ୯୭ ।
ଭୀମସେନର ସୂପକାର ସେ ଅଟଇ ଯୁଗତେ
ମାଲମାନଂକୁ ସେ ଅନ୍ନ ଦିଅଇ ପ୍ରେମମତେ । ୯୮ ।
ସୂପଂକୁ ଅନ୍ନ ଯେବେ ଭୁଞ୍ଜି ଲୋଡ଼ିବଟି ମାଲ
ରଜନୀ ବଞ୍ଚିବ ଯେବେ ସୁସ୍ତି ଶୀର ଭୁଲ । ୯୯ ।
ଶୟନ କାଳେ ଯେବେ ଲୋଡ଼ିବ ସୁଶେଯ୍ୟା
ସେ କସ ମାଲ ଯୁଦ୍ଧ ହୋ କରିବଟି ରାଜା । ୧୦୦ ।
ପୁଣିହୁଂ କୋନ୍କେ ବୋଇଲେ ମାଲହୋଇ ଯେବେ ହୋଅଇ ଭୋଗୀ
ଆଧାର ସ୍ୱାଗେଣ ବ୍ରତଇଟି ଯେବଣ ରୋଗୀ । ୧୦୧ ।
ଯୋଗୀ ହୋଇ ଯେବେ ରମଣୀକୁ କରଇ ବାଞ୍ଛା
ବ୍ରାହ୍ମଣ ହୋଇ ଯେବେ ଦ୍ୱନ୍ଦ୍ୱ କରଇ କକ୍ଷା । ୧୦୨ ।
ଛେଦକାର ଲୋକ ଯେବେ ନିଦ୍ରା କରେ ବାଞ୍ଛା
ଉଚକଳନ୍ତର ଯେବେ ସାହୁକାର କରେ ଇଚ୍ଛା । ୧୦୩ ।
ତପୀ ହୋଇ ଯେବେ ଭୋଗେ କରଇ ଆଶ
ରିପୁର ଭୃତ୍ୟକଇଂ ଯେବେ ବଢ଼ାଇ ବିଶ୍ୱାସ । ୧୦୪ ।
ଛନ୍ଦୀହୋଇ ଯେବେ ଲୋଡ଼ଇ ସୁଖଭୋଗ
ବଇଦ ହୋଇ ଯେବେ ନ ଚିହ୍ନଇ ରୋଗ । ୧୦୫ ।
ରୋଗୀହୋଇ ଯେବେ ଇଚ୍ଛଇ ସ୍ତ୍ରୀସମ୍ଭୋଗ
ବନଜୀବ ହୋଇ ଯେବେ ସୁସ୍ୱାଦ ଆହାରକଇଂ ତ୍ୟାଗ । ୧୦୬ ।

---

୧୦୨।୨ ବ୍ରାହ୍ମଣ ହୋଇ ଯେବେ ବେଦ ନ କରଇ ଦୀକ୍ଷା ।— ଜ, ଛ, ଦ, ଣ
୧୦୩।୧ ଛେଦକାର—କଟୁଆଳ ।

ବ୍ରାହ୍ମଣ ହୋଇ ଯେବେ ହୁଅଇ କ୍ରିୟାହୀନ
ଯେତେକ ଲୋକେ ହୁଅନ୍ତି ସେ ମୃତ୍ୟୁରେ ବନ୍ଧନ । ୧୦୭ ।
ଆଳସ୍ୟ ନିଦ୍ରା ଯେବେ କରଇ କର୍ମଯୋଗୀ
ପୁତ୍ରବନ୍ତ ହୋଇ ଯେବେ ବନ୍ଧ୍ୟାସ୍ତ୍ରୀ ଭୋଗୀ । ୧୦୮ ।
ରାଜାହୋଇ ଯେବେ ଯୋଗ କରଇ ଚିନ୍ତା
ଯେତେ ଲୋକଂକୁ ହୋ ପଣ୍ଡିତେ ନ କରନ୍ତି ଗଣିତା । ୧୦୯ ।
ସୁପଂକୁ ଅନ୍ନ ଯେବେ ଇଚ୍ଛା କରଇ ମାଲ
ମରଣ ସେ ଲୋଡ଼ୁ ଅଛୁ ନ କଲୁ କିଛୁ ଭଲ । ୧୧୦ ।
ଚଳ ହୋ ସୂରଗଣେ ଆମ୍ଭର ବାକ୍ୟ କହ
କୋନ୍ତଂକର ଆଜ୍ଞା ହେଲା ଯେହ୍ନାକୁ ଭଲ ଭୋଜନ ଦିଅ । ୧୧୧ ।
କୋନ୍ତଂକର ଆଜ୍ଞା ପାଇ ଚଳିଲେ ସୂରଗଣେ
ବାରତା କହିଲେ ଯାଇ ବଲ୍ଲବ ବ୍ରାହ୍ମଣେ । ୧୧୨ ।
ଆହେ ଯୁଦ୍ଧ ମାଗି ଆସିଅଛୁ ପରଦେଶୀ ମାଲ
କୋନ୍ତେ ବୋଇଲେ ଯେହ୍ନାକଇଂ ଦେଉଥିବ ଅନ୍ନ ଭଲ । ୧୧୩ ।
କୋନ୍ତଂକର ଆଜ୍ଞା ଯେ ପାଇଣ ପାବେନ
ମାଲକୁ ପରଶଇ ଅମୃତ ଯୋଗାଡ଼ ଯେନ । ୧୧୪ ।
ଗଡ଼ଶି ସଜରୀ ଯେ ନଳବଧି ଶତପାଗ
ଭୁଞ୍ଜଇ ମାଲ ଯେ ପାଇଣ ବଡ଼ ସ୍ରାଗ । ୧୧୫ ।
ଯେ ମଧ୍ୟ ଭୁବନେ ତୋତେ ଦେଖିଲୁତ ନାହିଂ
ପଚରଇ ବୃକୋଦର ଯେ ମାଲର ମୁଖ ଚାହିଂ । ୧୧୬ ।
ପୁଣିହିଂ ଭୀମସେନ ପଚରଇ ମାଲର ଯୁଦ୍ଧ କଥା
ସଞ୍ଚପି କହିବା ମାଲ ସମସ୍ତ ବାରତା । ୧୧୭ ।
ସୁପଂକୁ ଅନ୍ନ ଯତ୍ନଂ ଯୋଗାଇ ଦିଲା ବଲ୍ଲବ ଦ୍ୱିଜ
ବେଳକୁ ବେଳ ମାଲର ହୋଇଲା ବଡ଼ ତେଜ । ୧୧୮ ।
ବିରାଟର ଆଗେ ଆସି ବହୁତ ପ୍ରଶଂସି
ସମସ୍ତ ରାଇଜ ମୁଂ ବୁଲଇ ପରଦେଶୀ । ୧୧୯ ।

---

୧୦୮ । ୨ ଅପତ୍ନିକ ଲକ୍ଷଣେ ଯେ ସ୍ତ୍ରୀ ହୋନ୍ତି ଭୋଗୀ ।—କ, ଖ, ଦ, ଛ

ଯେତେହେଲେକ ସୂପକାର ହୋ ସ୍ୱଜା ପାଇଲୁଁଟି କାହିଂ
ଯେ ମହାମନ୍ତ୍ରଲେ ମୋହୋର ଯେହ୍ନା ଦେଖିଲ ତ ନାହିଂ । ୧୨୦ ।
ହାଣ୍ଡି ରେ ପୂଷେଇ ଚୁଲ୍ଲୀରେ ବସାଇଲେ ହୁଅଇ ପାଗ
ଯୋଗାଡ଼ି ଖପ୍ପରେ ବସାଇଲେ ହୁଅଇ ଅଡବେଗ । ୧୨୧ ।
ଅନେକ ପୁଣ୍ୟ କରିଥିଲେ ସେ ପାଇ ଯେ ବ୍ରାହ୍ମଣ
ସାଧୁ ସାଧୁ ଭୁପୂଜନ୍ତୁ କେବଣ ତୋହୋର ପୁଣ୍ୟ । ୧୨୨ ।
କେବଣ ବିଗପାଳ ବ୍ରାହ୍ମଣ ରୂପ ହୋଏ
ଅନେକ ଯତନେ ତାକୁ ଭଗତ ହୋଇଥିବ ମଚ୍ଛରାଏ । ୧୨୩ ।
ମାଲେ ବୋଇଲେ ଭୋଜନେ ଶଯନେ ନାହିଂ ଇଚ୍ଛା
ଆହୋ ବିରାଟ ସମର ଦିଅ ମୋର ପୂରୁ ମନବାଞ୍ଛା । ୧୨୪ ।

---

୧୨୧।୧ ଯୋଗାଡ଼ି ଖପ୍ପରେ ବସାଇଲେ ସୁଯ୍ୟପାଗ ହୋଅଇ ବେଗ ।— ଛ, ଡ

୧୨୧।୨ "ଯୋଗାଡ଼ି ଖପ୍ପରେ ବସାଇଲେ ହୁଅଇ ଅଡବେଗ ।"
ପାଠ ପରେ 'ଛ, ଦ, ଜ' ପୋଥିରେ ଅଧିକ ପାଠ :—
ଯେମନ୍ତ ପ୍ରକାରେ ଗଙ୍ଗା ସହସ୍ର ନଳ ବଧ ରାକ୍ଷଣା
ତ୍ରିଭୁବନ ମଧ୍ୟରେ ଯେ ବ୍ରାହ୍ମଣ ଜଗୁଭଣା ।
ପ୍ରଶୁରାମଂକ ବଂଶେ ଯେ ଯେତେକ ବ୍ରାହ୍ମଣ
ସକଳ ବିଦ୍ୟା ଜାଣନ୍ତି ଯେ କରନ୍ତି ମହାରଣ ।
ଦେବଋଷି ବ୍ରହ୍ମଋଷି ରାଜଋଷି ନରଋଷି ହୁଅନ୍ତି
ଗୃଣବେଦ ସାଧିଣ ଯେ ପୁଜ ଯେ କରନ୍ତି ।
ସମସ୍ତ ବିଦ୍ୟାମାନ ବ୍ରାହ୍ମଣଙ୍କଇଂ ସାଜଇ
ସମସ୍ତ ଜାତି ଉପରେ ମୁଖ୍ୟପାନ ଅଟଇ ।
ଦେବଂକର ଉପରେ ବ୍ରାହ୍ମଣ ଅଟଇ ଦେବତା
ଯେଣୁ ସେ ବ୍ରହ୍ମବଂଶୀ ଜାଣଇ ସକଳ କଥା ।
ଦେବତାଂକୁ ଦେବତ୍ୱ ଯେ କରାଇବ ବ୍ରାହ୍ମଣ
ଯାହାର ମୁଖେ ମୁଣୋହଂ କରନ୍ତି ନାରାୟଣ ।
ଯେ ସଂସାରେ ବ୍ରାହ୍ମଣେ ଅଟନ୍ତି ସାଧୁସାର
ଗୁଣବନ୍ତ ବ୍ରାହ୍ମଣ ରୂ କାହୁଂ ପାଇଲୁ ନୃପବର ।

ପ୍ରବେଶୀ ମାଳ ମୁଂ ଯେ ନାହିଂଟି ମୋହୋର ସେନେହା
ଅଣାଅ ତୋହୋର କାଂଚେକଙ୍କୁ ସମର ମୋତେ ଦିଅ । ୧୨୫ ।
ଶୁଣିଣ ବିରସ ଯେ ହୋଇଲେ ବିରାଟେ
କୀଚକ ସମର ଦେଇ ନୁଆରଇ କୋଳ୍ପଭଟେ । ୧୨୬ ।
ତୁମ୍ଭେ ତ ଜାଣ ମୋହୋର କୀଚକ ବଶ୍ୟ ନୋହି
ତାହାର ଅରଜିଲା ସମ୍ପଦ ଭୋଗ୍ୟ କରଇ ଯେ ମୁହିଂ । ୧୨୭ ।
ଯେତେହେନ୍ତେକ ଭଲନ୍ତେ ତହିଂ ତିନଦିନ ଗଲା
ସଭାରେ ମାଲ ଯାଇଂ ଉପଦର୍ପ ପଣିକ ବଖାଣିଲା । ୧୨୮ ।
ଦିଅ ମୋତେ ମହାରାଜା ସାଂଗ୍ରାମ ବେଗଇ
ଯେତୁଂ ବେଗେ ଯଦି ହୋ କୀଚକଙ୍କୁ ସମର ଦେଇ । ୧୨୯ ।
ବିରାଟ ବୋଇଲା ମୋର କୀଚକ ମହାରାଣ
ତାହାର ତୁଲେ ଯୁଦ୍ଧ କରିବାକୁ କେସ ତୋର ପ୍ରାଣ । ୧୩୦ ।
କୋନ୍ତେ ବୋଇଲେ ବିରାଟ ହୋ କଥାଯେ କରିବା
ସେହି ସୂପକାର ବଲ୍ଲବ ତୁଲେ ତାହାକଇଂ ଯୁଝାଇବା । ୧୩୧ ।
ଶୁଣିଣ ଅନ୍ତୀଭୂତ ହୋଇଲା ରାୟେ ମହା
କୋନ୍ତେ ବଲ୍ଲବ ସୂପକାରଙ୍କଇଂ କମ୍ପେ କଟାଳ କରୁଅଛ । ୧୩୨ ।
ବଦୟନ୍ତି କୋନ୍ତେ ତୁମ୍ଭେ ଶୁଣ ହୋ ବିରାଟ
ବ୍ୟାଘ୍ରକଇଂ ବଧକଲା ତୁମ୍ଭେ ଦେଖିଲ ସମରାସ୍ଥ । ୧୩୩ ।
ମାଲ ବିନ୍ଧାଣ ବିଦ୍ୟା ଅବା ଜାଣଇଟି ସେଥି
ବୁଝିକନା କେସ ହୋ ବୋଲଇ ତାହାକଇଂ ରୃହିଂ । ୧୩୪ ।
ବିରାଟ ବୋଇଲା ରେ ଶୁଣ ଗୃରଗଣ
ବଲ୍ଲବ ସୂପକାରକୁ ହକାରିଣ ବେଗେ ଆଣ । ୧୩୫ ।
ରାଜାର ବଚନେ ସେ ଚଳିଲେ ମୁନେହିଂ
ରୋଷ୍ଟଅ ଶାଳ ଦ୍ୱାରେ ପ୍ରବେଶ ହେଲେ ଯାଇଂ । ୧୩୬ ।

---

୧୨୬।୨ କୀଚକର ତୁଲେ ସମରଂ ନ କରିଅ କୋଳ୍ପଭଟେ ।—ଜ, ଯ,

ଗୋସାଇଂ ବଲ୍ଲବ, ଗୋସାଇଂ ବଲ୍ଲବ ବୋଲଣ ଚରଗଣେ ଡ଼ାକେ
ଠାକୁରଂକର ଆଗ୍ୟାଂ ବେଗେ ଆସିବ ସନ୍ଦେଶ ବାକ୍ୟ । ୧୩୭ ।

ରନ୍ଧଣାଶାଳରେ ଥାଇ ନ ଶୁଣଇ ମାରୁତ
ଅଗ୍ନିକି ଆକ୍ରୋଷିଣ ବଶଇ ଜ୍ୟୋଷ୍ଠ କାନ୍ତ । ୧୩୮ ।

ପୁଣ ପୁଣ ହାକ ସେ ବଞ୍ଚନ୍ତ ଜଗରେ
ବେଷେଣ ବଲ୍ଲବ ବୋଇଲା ମୋହୋର ଉପରେ ଠାକୁରେ କେ ରେ
। ୧୩୯ ।

କାହାର ବଶ୍ୟ ମୁଂରେ କେ ମୋତେ ଚର ବରଗି
ନ ଯାଇ ବୋଲି ବୋଲନ୍ତେ ଚରଗଣେ ଗଲେ ବେଗି । ୧୪୦ ।

ଆସ୍ତାନର ତଳେ କହିଲେ ବେଗେ ଚର
ବୋଇଲା କାହାର ବଶ୍ୟ ମୁଂ ଯେ କେ ମୋହୋର ଠାକୁର । ୧୪୧ ।

ଯୁଧିଷ୍ଠିର ଦେବେ ଆଶ୍ରିଜ ଯେ ହୋଇଲେ ତାହା ଶୁଣି
ହୃଦଗତେ ସୁମରଣା କଲେ ଦେବ ଚକ୍ରପାଣି । ୧୪୨ ।

ଅନୁବ୍ରତେ ଯାହାର ମୂର୍ଖ ଯେ ନ ଯାଇ ଦୁଷ୍ଟପଣ
ସେହାକୁ ଘେନ କେସନେକେ ବଞ୍ଚିବ ଅଗ୍ୟାଂତବାସେଣ । ୧୪୩ ।

ବରାଟ ବୋଇଲା ତୁମ୍ଭେ କୋପ କଲ କ କୋନ୍ତେ
ସେ ବ୍ରାହ୍ମଣ ବଶ୍ୟ ମୋହୋର ନୋହୋଇ ଯୁଗତେ । ୧୪୪ ।

ସେକା ସେ ବ୍ରାହ୍ମଣକେ ମୋହୋର ସମରାଜ୍ୟ ସୁଖ
ମୋହୋର ବଚୃରେ ହୋ ଆମ୍ଭେ ସମସ୍ତେ ତାହାର ଭୃତ୍ୟ । ୧୪୫ ।

ତୁମ୍ଭର ଆଗ୍ୟାଂକୁ ସେ ସର୍ବଦା ଥାଇ ଭଜ
ତୁମ୍ଭର ଆଗ୍ୟାଂସେ ସେ ଆସିବ ସର୍ବ ତେଜ । ୧୪୬ ।

କୋନ୍ତେ ବୋଇଲେ ରେ ଯାଅ ଚରଗଣ
ଆମ୍ଭର ବୋଇଲା ବୋଲି ବଲ୍ଲବକୁ ହକାରି ବେଗେ ଆଣ ।୧୪୭ ।

ଧାମନ୍ତ ଦେଶାନ୍ତରେ ଯେ କୋନ୍ତଂକର ଆଗ୍ୟାଂ ଶୁଣି
ବଲ୍ଲବ ଗୋସାଇଂ, କୋନ୍ତଂକ ଆଗ୍ୟାଂ ହୋଇଲା ତୁମ୍ଭେ ଆସିବ
ସେହିକ୍ଷଣି । ୧୪୮ ।

ଇନ୍ଦ୍ରଙ୍କ ଆଗ୍ୟାଂସ୍ୟେ ସେହ୍ନେ ଧାମନ୍ତ ମାତଳ ମଯୂଣ
ରାନ୍ଧଣା ଯୋଗାଡ଼ ଗୁଡ଼ି ବ୍ରାହ୍ମଣ ଗମଇ ତତକ୍ଷଣ । ୧୪୯ ।
ବିଜେ ବିରାଟ ସେ ଯେ ଧର୍ମସ୍ତମ୍ଭର ତୁଲେ
ଆସ୍ଥାନ ତଳେ ଯାଇଂ ସେ ବଲ୍ଲଭ ମିଳିଲେ । ୧୫୦ ।
ଅଙ୍ଗସାର ଦିଲ ବଲ୍ଲଭ ବିରାଟ ତନ୍ୱଂକ
ପ୍ରଣିପତ୍ୟ ହୋଇଲା ବଲ୍ଲଭ କୋନ୍ତଂକ ମୁଖ ଦେଖି । ୧୫୧ ।
ବିରାଟର ବାଞ୍ଛିତ ଜତ ମହାପ୍ରସାଦ
ଭୀମସେନ ନ ଜଠଇ ପ୍ରଣିପତ୍ୟ ଯୁଧେଷ୍ଟିଂକ ପାଦ । ୧୫୨ ।
କୋନ୍ତେ ବୋଇଲେ ହୋ ଶୁଣ ବଲ୍ଲଭ ସୂପକାର
ଠାକୁରଂକର ଆଗ୍ୟାଂ ହୋଇଲା ବହନେ ଜଠ ହୋ
ଦୃଜବର । ୧୫୩ ।
ବିରାଟ ବଚନେ ବଲ୍ଲଭ ଯେ ନ ଜଠି
କୋନ୍ତଂକର ବଚନ ଶୁଣି ସେ ଶିରେ କରଯୋଡ଼ି ଜଠି । ୧୫୪ ।
ସ୍ୱାମୀ କସ ଅର୍ଥେ ଆଗ୍ୟାଂ ହୋଇଲାକ ମୋତେ
ରାନ୍ଧଣା ଗୁଣ୍ଡଣ ଯେ ମୁଂ ଅଇଲି ତୁମ୍ଭତେ । ୧୫୫ ।
ବିରାଟ ବୋଇଲା ବିପ୍ର ହୋ ମୋହୋର ବଚନ ଶୁଣ
ପରଦେଶୀ ମାଲ ଆସି କାଞ୍ଚେକର ତୁଲେ ମାଗଇ ଯେ ରଣ ।୧୫୬।
ସ୍ୱେ ମୋହୋର ସମ୍ପଦ ଯାହାର ପରସାଦେ
ତାହାକୁ ଚିନ୍ତିବ କାହ୍ନଂ ସ୍ୱେଡେକ ପରମାଦେ । ୧୫୭ ।
ସ୍ୱେଥିକୁ ମତ୍ତବ୍ରାଧ ମାଇଲୁ ହୋ ଦେଖିଲଇଂ ତୋହୋର ମହିମାଂ
ମାଲର ତୁଲେ କୁସ୍ତିହୋଇ କର ପାରିବୁ କ ମହାତମା । ୧୫୮ ।

---

୧୫୨ { ବିରାଟ ବୋଇଲା ବାଞ୍ଛିତ ମହାପ୍ରସାଦ
ଭୀମସେନ ପ୍ରଣିପତ୍ୟ ଯୁଧେଷ୍ଟିଂକ ପାଦ ।—ଦ, ଛ, ଜ, ଘ

୧୫୪।୨ କୋନ୍ତଂକର ବଚନ ଶୁଣି ସେ ଦିଲା ଶିରେ
ବେନ ହାଥଯୋଡ଼ି ।—ଘ, ଚ, ଗ

୧୫୭।୨ ତାହାକୁ ପେଷିବ କେହ୍ନେ ଯେତେକ ପରମାଦେ ।—ଖ, କ,

ସୂପକାର ବୋଇଲା ହୋ ଯେତେହେଲେକ ମୋହୋର କର୍ମ
ଅଗାଧ କାଳେ ଜନ୍ମିତ ନୋହିଲାକ ଧର୍ମ । ୧୫୯ ।
ଶୁଣିହୋ ବସନ୍ତ ଚକ୍ରବର୍ତ୍ତୀ ବିଧାଣ ଛନ୍ଦଣ ପଢ଼ି ବନ୍ଧ
ବଜାଇ ବଡମନ୍ଦିତା ହୋ ଅଟଇ ମାଲଯୁଦ୍ଧ । ୧୬୦ ।
ମୋହୋର ବଚନ ରାଜା ହୋ କର ତୁ ସମ୍ପତେ
ରାଜଣା ବିଧାନୁ ଆନ ପ୍ରାପତ ନୋହୋଇ ମୋତେ । ୧୬୧ ।
ଯଦ୍ୟପି ଦୋଷ ମୁଂ ଯେ କଲଇଂ ତୋହୋରେ
ତୋହୋର ରାଜ୍ୟେ ମୋତେ ନ ଥୋଇପାରୁ ମହେଶ୍ୱରେ । ୧୬୨ ।
ବଚନେଣ ଜାଣି ସେ ନୃଆଇଲା ବସନ୍ତ
ବଲ୍ଲବ ବଦନ ଦୃଷ୍ଟିଂ ବୋଇଲେ କୋନ୍ତଭକ୍ତ । ୧୬୩ ।
ଆହୋ ବଲ୍ଲବ ତୁ ଦୁଜେଣ ବ୍ରାହ୍ମଣ ଯୁଗତେ ସୂପକାର
କର୍ମ୍ମ ଆସ୍ତାନେ ବୋଇଲୁ ମୁଂ ଜାଣଇ ମାଲବିଧାଣ ସମର । ୧୬୪ ।
ଯେତେବେଳେ କର୍ମେ ହୋ କରୁ ତୁ ଯେ ନାସ୍ତି
ଠାକୁରଂକର ଆଗ୍ୟାଂ ହୋଇଲା ଶୁଣ ତୁ ମନଭ୍ରାନ୍ତି । ୧୬୫ ।
ବସନ୍ତ ବଚନେ ବଲ୍ଲବ ନାସ୍ତି କରୁଥିଲା
କୋନ୍ତଂକର ଆଗ୍ୟାଂଯେ ସେ ସନମତ କଲା । ୧୬୬ ।
ଆସ ଆସ ମାଲ ହୋ ଯେବେ କରିବା ସମର
ଭୂଇଂ ଛୁଇଂ ମାଲ ଯେ ଶ୍ରବଣେ ଧଲା କର । ୧୬୭ ।
ମାଲ ବୋଇଲା ସୂପକାର ତୁ ରାଜଣା ପ୍ରାପ୍ତେ ବୁଝ୍
ବଡମଣ ସମର ତୁ ଯେହ୍ନା କଂଟକ ନ ବୁଝୁ । ୧୬୮ ।
ନଣ୍ଟେ କାଳକୁ ଯେହ୍ନେ ପ୍ରାଣୀଂକର ବିପରୀତ ବୁଦ୍ଧି
ବ୍ରାହ୍ମଣ ହୋଇ ତୁ କାହୁଂ ଜାଣିମୁ ଯୁଦ୍ଧ ସନ୍ଧି । ୧୬୯ ।

---

୧୬୮।୨ ମାଲ ସଙ୍ଗେ ସମର କର ପାରିବୁ କ ମହାତମା ।—
ଭ, ଦ, ଘ, ଚ, ଡ, ଥ, ଛ

୧୬୧।୧ ଯେ ମୋହୋର ବଚନ ରାଜା କରିପାରୁ କ ସମ୍ପତେ ।—
ଝ, ଗ, ଠ, ଣ

ବିମୁଖ ହୋଇଲୁକ ବ୍ରାହ୍ମଣ ଗ୍ରହଣାରେ ଘଣି
ଦେଖୁ ଦେଖୁ ଲଗାଇ ହୋ ଗଳାରେ କାଳଦଣ୍ଡ ଫାଶି । ୧୭୦ ।
ତୁ ଅବା ମୃତ୍ୟୁକୁ ତ୍ରାଗ କରୁଛୁ ଯୁଗତେ
ବ୍ରହ୍ମହତ୍ୟା ପାତକ ଦୋଷ ପ୍ରାପତ ହୋଇବାକ ମୋତେ । ୧୭୧ ।
ବ୍ରାହ୍ମଣ ବୋଇଲ୍ସ ସାଂଗ୍ରାମେ ଦୋଷ ନ ବିଷ୍ଣୁର
ବ୍ରାହ୍ମଣ ହୋଇ ଯେବେ ମୁଂ ହୋଇବ ହନ୍ଦକାଗ୍ର । ୧୭୨ ।
ତହୁଂକ ବ୍ରହ୍ମହତ୍ୟା ଦୋଷ ବୋଲିତ ନୁଆରଇ
ପାରିଲେ ସଜହୋଇ ସମର କର ମାଲଘଇ । ୧୭୩ ।
ନୁଆରିଲେ ପଳା ଯା ତୋହୋ!ର ନିଜ ଯେ ଭୁବନେ
ବାହାନାଦ ଦେଇଣ ଯେ ଉଭା ଦୁଜଜନେ । ୧୭୪ ।
ବିକଟାଳ ବାକ୍ୟ ମାଲ ବ୍ରାହ୍ମଣ ତହୁଂ ଶୁଣି ହସି
ରେ ରେ କାର କରିଣ ସେ ବଲ୍ଲବକୁ ଆକ୍ରୋଷି । ୧୭୫ ।
ଭୂମିଠାଣ ଦେଇଣ ସେ ମାଲ ବୋନ୍ଧିଲ୍ସ ସାରଧୁଳ
ଅଧର ପୃଷ୍ଟ କରିଣ ସେ କୋପେଣ ହାମ୍ଫୋଳ । ୧୭୬ ।
ରେ ରେ କାର କରିଣ ସେ କୋପେଣ ଗଳଗାଜ
ଶବଦର ଘାତେ ଗିରିକନ୍ଦର କ ପଡ଼ୁଅଛୁ ଭାଜ । ୧୭୭ ।
ମାଲର ମୂର୍ତ୍ତି ସେ ଯେ ଦେଖିଣ ପାଵେକ
ଯୁଦ୍ଧେଷ୍ଟିଂକ ଆକ୍ରେତିଣ ବୃହଂଲ୍ଲ କ୍ରୋଧ ଜୋକ । ୧୭୮ ।

---

୧୭୦।୨ "ଦେଖୁ ଦେଖୁ ଲଗାଇ ହୋ ଗଳାରେ କାଳଦଣ୍ଡ ଫାଶି"
ପାଦାନ୍ତ ପରେ 'ଦ, ଛ, ଜ, ଖ' ପୋଥିରେ ଅଧିକା ପାଠ:—

ବ୍ରହ୍ମହତ୍ୟା ଦୋଷ ଲଗିବ କ ମୋତେ
ଅଗ୍ୟାନ ପଣେ ବିରାଟ ପେଷିଲ୍ସ ରେ ତୋତେ ।

ବ୍ରାହ୍ମଣ ବୋଇଲା ହୋ ଯୁଦ୍ଧେ ସେ କଥା ନ ବିଷ୍ଣୁର
ବାହ୍ମଣ ହୋଇ ଯେବେ ରଣଯଗାଂ କର ।

ସାଂଗ୍ରାମ ଭୂଇଂରେ ଯେବେ ଗୋ ବ୍ରାହ୍ମଣ ମାର
ହତ୍ୟା ଦୋଷ ନ ଲାଗଇ ଶାସ୍ତ୍ରେ ଅଛୁ କର ।

କଞ୍ଚିତ ଆକ୍ରଷଣେ ଗ୍ରହିଂଲେ କୋନ୍ତେ ବକ୍ର ଦୃଷ୍ଟି
ନ ପୂଣ ପ୍ରଥମହିଂ ଭୀମ ମାରଇ ବଜ୍ରମୁଷ୍ଟି । ୧୭୯ ।
ଯେବକା ପ୍ରହାରକେ ମାରନ୍ତେ ହୋଇବ ଜାଣନ୍ତା
ଆମ୍ଭେ ସେ ମନ୍ଦକଲୁ ହୋ ସମସ୍ତ ଯେ କଥା । ୧୮୦ ।
ଯେବଢେ ଦୁଷ୍ଟେ କଂପେ ଅଣାଇଲୁ ଆସ୍ଥାନକୁ
ଆବର ପ୍ରପଞ୍ଚ ପୁଣ ପେଷିଲୁ ସାଂଗ୍ରାମକୁ । ୧୮୧ ।
ବାହାସ୍ଫୋଟ ମାଗ ମାଲ କରଇ ଠିଆଠାଣ
ଦେଖିଣ ଧଜ ହୋଇ ଆସଇ ସୂପକାର ବ୍ରାହ୍ମଣ । ୧୮୨ ।
ହିକଚ୍ଛ ବସନ ଲମ୍ବିତ ଜୁଡ଼ା ଭୀମସେନ
ମାଲର ମୂର୍ତ୍ତି ଦେଖି ପ୍ରହସିତ ବଦନ । ୧୮୩ ।
ଗେଲେ ଗେଲେ ଗୃଲଇ ସେ ପବନ ନନ୍ଦନ । ୧୮୪ ।
ବିରାଟ ବୋଇଲା କୋନ୍ତେ ନ ବୃତଇ ସୂପକାର
ତୁମ୍ଭ ପରସାଦେ ଶିଖି ଯାଉଛୁ ମୋହୋର ରାଜ୍ୟର । ୧୮୫ ।
କୋନ୍ତେ ବୋଇଲେ ଧୃପକାର ବଲ୍ଲବ ନ ଥିଲା ଯେତେକାଳ
ଉପବାସେ ଶୋଉଥିଲେ କ ତୋହୋର ରାଜ୍ୟେ ସଇନ ସକଳ ।୧୮୬।
କୋନ୍ତକୁ ବିରାଟ ରାଜା କହଇ ବହୁତ
ଶୁଣିଣ ସାନନ୍ଦ ସେ ପବନର ସୁତ । ୧୮୭ ।
ହିକଚ୍ଛ ବସନ ଯେ ତୋଳଣ ସୂପକାର
ମାଲବନ୍ଧ କରିଣ ସେ ଉଡ଼ଲା କଟିର । ୧୮୮ ।
ଲମ୍ବିତ ଜୁଡ଼ା ଫେଡ଼ି ନାଗବନ୍ଧେ ବାନ୍ଧଇ ବେଣୀ
କାନ୍ଧରୁ ପଇତା କାଢ଼ି ବାନ୍ଧିଲା ବାମପାଣି । ୧୮୯ ।
ଭୀମସେନର ପ୍ରତାପ୍ୟାଂ ସେ କହିତ କ ପାର
ଯାହାର ପାଦ ଲାଗି ପାତାଳଗତ ଶେଷଶିଂଘ ଶିର । ୧୯୦ ।
ଆସରେ ମାଲ ବୋଲି ଡାକଇ ବଲ୍ଲବ ହୋଇ ଉଭା
ମାଲ ବୋଇଲା ଯୁଦ୍ଧ ବନ୍ଧାଣ କସ ଜାଣୁ ବାବା । ୧୯୧ ।

---

୧୮୦। { ଯେବକା ପ୍ରହାରକେ ମାରନ୍ତେ ହୋଇବ ଜାଣନ୍ତ
ଆମ୍ଭେ ସେ ନାଶକଲୁ ଯେବକା କାର୍ଯ୍ୟ ସମସ୍ତ ।—କ, ଛ, ଟ, ଢ

କୀଚକ ବୋଇଲା ମୁଁ ଯେ ଯୁଗତେ ସୂପକାର
ମୁଁ କେବେହେଁ ଜାଣଇ ହୋ ସମର ବେଭାର । ୧୯୨ ।
ତୋର ମାଲ ବିଜ୍ଞାଣ ମୁଁ ଦେଖିବି ଆରେ ଭାଇ
ସଞ୍ଜୀବନୀ ନାଥଂକୁ ଆଜ ଦେଖାଇବି ନେଇ । ୧୯୩ ।
ନ ଜାଣଇ ଯୁଦ୍ଧ ମୁଁ ଯେ ସ୍ୱଭାବେ ଅଟେ ବିପ୍ରଜନ
ବେଦବିଦ୍ୟା ସିନା ସେ ଯେ ଆମ୍ଭର କର୍ମମାନ । ୧୯୪ ।
କେବଳ ନୃପତି ମୋତେ ବୋଇଲେ ଆସ୍ଥାନେ
ଠାକୁରଂକ ଆଜ୍ଞାଂ ମୁଁ ଯେ ଭଙ୍ଗିବି କେସନେ । ୧୯୫ ।
ଶୁଣିଣ ମାଲ ଯେ ଭୀମସେନକୁ କହଇ ବାଣୀ
ମାଲ ଯୁଦ୍ଧର ବାରତା ତୋତେ କହିବା ପରମାଣି । ୧୯୬ ।
ଚଉଷଠୀ ବିଜ୍ଞାଣ ଯେ ଛତିଶ ପରିବନ୍ଧ
ମହା ବିଡମ୍ବଣ ସ୍ୱେ ଯେ ଅଟଇ ମାଲଯୁଦ୍ଧ । ୧୯୭ ।
ଖଡଗ ଗଦା କୋଦଣ୍ଡ ଗୁରୁଜ ମୁଷଳୀ
ନାନା ବିଦ୍ୟାହୁଂ ହୋଇସ୍ୱେ ମାଲଯୁଦ୍ଧ ମହାବଳୀ । ୧୯୮ ।
ଭୁଜେ ଭୁଜ ବନ୍ଧନ ପାଦେ ପାଦ ଛନ୍ଦ
ମୁଥେ ମୁଥ ପରିତାଳ ହୃଦେ ହୃଦ ବାନ୍ଧ । ୧୯୯ ।
ଉଭୟେ ସମର ସେ କରନ୍ତେଣ ବଳି
କରଟୀ ବୋଇଲେ ହୋ ସମରେ ପୁଣ ଗୁଞ୍ଜ । ୨୦୦ ।
ମାଲର ବଚନ ଯେ ଶୁଣି ବୃକୋଦର
ମୋହୋର ସନମତ ହୋ ଯେ ଇଚ୍ଛା ତୋହୋର । ୨୦୧ ।
ଧାଇଂଣ ମାଲ ଧଇଲା ଯେ ଭୀମସେନର ବେନଭୁଜ
ବେନଜାନୁ ଭିଡିଣ ଧଇଲା ପାଦ ପଂକଜ । ୨୦୨ ।
ପାଦେ ପାଦ ଛନ୍ଦିଣ ସେ ପକାଇଲା ସୂପକାରକୁ
ପାଡିଣ ମାଲ ଯେ ଚୃପିଲା ତାର ବୁକୁ । ୨୦୩ ।
ତଳେଣ ଭୀମସେନ ଯେ ଉପରେଣ ମାଲ
ଆରେ ଆରେ ସୂପକାର ଭାଞ୍ଜିବି ତୋର ଗାଲ । ୨୦୪ ।

---

୧୯୯।୦ ଦେହେ ଦେହ ଯନ୍ତ୍ରାଯନ୍ତ୍ର ହୃଦେ ହୃଦ ବାନ୍ଧ ।—କ, ଗ, ପ

ଧାଡିକାରେ ଭୀମସେନ ମାଲକୁ ଲେଉଟାଇ
ମାଲର ବକ୍ଷସ୍ଥଳେ ଯେ ବସିଲେକ ଯାଇ । ୨୦୫ ।
ପୁଣି ଲେଉଟାଇ ମାଡି ବସିଲା ମାଲ ମହାବୀର
ପୁଣ ଲେଉଟାଇ ଯେ ପାଡିଲା ସୂପକାର । ୨୦୬ ।
ଭୁଜେ ଭୁଜ ଭଡାଭଡି ପାଦେଣ ପାଦ ଛନ୍ଦ
ଶିରକୁ ଶିର ପଡି ଚାଳ ପାଦେ ପାଦ ବାନ୍ଧ । ୨୦୭ ।
ହୃଦେ ହୃଦ ଭଡା ଭଡେ ଭୁଜେ ଭୁଜ ଛାଡି
ଶିରକୁ ଶିର ପଡିଚାଳ ଅଗ୍ନିଶିଖା ଝଡ଼ । ୨୦୮ ।
ବଜ୍ରଘାତ ପ୍ରାୟେକ ଶୁଭଇ ପଡଚାଳ
ଶୂନ୍ୟ ପୂରୁଷେ କର୍ମିଲେ ଆକାଶ ମଣ୍ଡଳ । ୨୦୯ ।
ବ୍ରହ୍ମାଣ୍ଡମାନେ ଯେ କଂପିଲେ ଜାଣ ଦଢ
କୁରୁମ ଚମକଇ ହେଲ ଯେମନଇ ପୃଥୀଦେବୀ । ୨୧୦ ।
ମେଘନାଦ ପାଟେଣ୍ଡ ଯେ ହୋଇଲା ସର୍ବଚୂର
ବ୍ରହ୍ମାଣ୍ଡ ଉଚ୍ଛୁଳଲା ଦୁହିଂକର ସିଂଘରଡି । ୨୧୧ ।
ଆହୋ ଚଇତନ କଲ୍ଲକଇଂ ମାଡ ବସିଲା ମାଲ ହୃଦଗତେ
ଚଳ ନୂଆରଲା ସେ ହୋଇଣ ମୋହଗତେ । ୨୧୨ ।
ବାମଭୁଜେ ଚଣ୍ଡି ମାଡିଲା ଡାହାଣ ହାଥେ ମୁଥ ମାର
ବୋଇଲା ଇଷ୍ଟ ଦେବତା ବ୍ରାହ୍ମଣ ରେ ସୁମର ତୋହାର । ୨୧୩ ।
ରେ ରେ ସୂପକାର ପୂରିଲାନ ତୋହୋର କାଳ
ବାନ୍ଧଣ ବୁଝୁଥିଲୁ ରେ ତୁ ବେଷୁଅର ଶାଳ । ୨୧୪ ।
ମୁହିଂ ମାଲ ବଳବନ୍ତ ପୃଥିବୀର ମଧେ
ଆଜକ ସେ ସମସରି ହୁଅନ୍ତା ମୋତେ ଯୁଦ୍ଧେ । ୨୧୫ ।
ରେ ରେ ସୂପକାର ତୋର ଜନମ ସୁଫଳ
ମୋହୋର ଭୁଜେ ପଡିଚାଳ ଦିନୁରେ ଯେତେବେଳ । ୨୧୬ ।

---

୨୧୦।୧ ବଜେ ନବର ପାଟେଣ୍ଡ ଯେ ହୋଇଲା ସର୍ବଚୂର୍ ।—
ଚ, ଝ, ଢ, ଞ, ପ

ନୋହୁ ନୋହୁ ଭୂରେ ସପକାର ବ୍ରାହ୍ମଣ
ଛଦ୍ମବେଶ କେଉଁ ଅସୁର ରହିଲୁ ବଳାଢ଼ ଗଞ୍ଜେୟଣ । ୨୧୭ ।
ଆଜ ସେ ସମର ହୋ ପାଇଲୁ ଯଥାର୍ଥ
ତୋତେ ଦୂତ ପଠିଆଇଲେ ସଞ୍ଜୀବନୀ ନାଥ । ୨୧୮ ।
ଯେସନ ବୋଲ ମାଲ ଯେ କରଇ ଗର୍ଜନ
ମଚ୍ଛଦେଶ ନରନାରୀ ଦେଖି ହୋଇଲେ ଆଶ୍ରିଜ । ୨୧୯ ।
ସମରାଜ୍ୟ ଲୋକେ ଯେ ଦେଖିଲ ହୀନବାର୍ଯ୍ୟ
ସାଧୁ ସାଧୁ ସୂପକାର ତୋହୋର ଅଟଇ ବଳବାର୍ଯ୍ୟ । ୨୨୦ ।
ସାଧୁ ସାଧୁ ବଲ୍ଲବ ତୋହୋର ଅଟଇ ରୂପକାନ୍ତ
ତୋହୋର ପ୍ରସାଦେ ରାଜ୍ୟ ଲଭୁଥିଲ ଶାନ୍ତ । ୨୨୧ ।
ସମରାଜ୍ୟ ଲୋକେ ଯେ ହାହାକାର ବାଣୀ
ଯେବା ସୂପକାରକୁ ହୋ ମରାଇଲେ କୋଳୁବଳେ ପୁଣି । ୨୨୨ ।
ଯେବା ସୂପକାରେ ଅନ୍ନ ଦେଉଥିଲୁ ରାନ୍ଧି
ସାତ ଷଉଣୀ ବଳ ସବୁହିଂ ଭୋଜନେ ପ୍ରବୋଧି । ୨୨୩ ।
ଗର୍ଭକଷ୍ଟ ପାସୋରାଇଲୁ ସଭିଂକୁ ଅମିସ୍ଥ ପାକ ଦେଇ
ଅଖଣ୍ଡେ ନାଶଗଲୁ ପଡ଼ିଲୁ ବପ୍ର କାହିଂ । ୨୨୪ ।
ଯେ ଆମ୍ଭର କଷ୍ଟ ତାହାର ତହିଂ ପଡୁ
ଆହେ କୋଳୁପଣ୍ଡାଯେ ଯେବେ ଭୁମ୍ଭ ପେଟ ପୂରୁଂ । ୨୨୫ ।
ବସନ୍ତେ ବୋଇଲେ କୋଳେ ମୁହିଂ ଯେ ବୋଇଲ
ବାହୁଡପାଇ ପ୍ରଦେଶୀ ମ ଲ ବୋଲି ମୁହିଂ ନାସ୍ତି କଲ । ୨୨୬ ।
ଦଇବ ଖଣ୍ଡିଲ ଯେ ଯେ ମୋହୋର ଆଶା
ଆଜହୁଂ ସୂପକାରେ ଯେ ମୁଂ ନ କରଇ ଭରସା । ୨୨୭ ।
ମୋହୋର ବଚନ ସେ ଭାଙ୍ଗିଲ ଯୁଗତେ
ଆଶ୍ୱାସ ବଚନେ ତାକୁ ନାଶ କଲ କୋଳେ । ୨୨୮ ।

---

୨୨୩।୧ ଗର୍ଭ କଷ୍ଟ ପାସୋରାଇଲୁ ସଭଂକୁ ଅମିସ୍ଥ ରସ ଦେଇ ।—
ଛ, ଟ, ଙ, ଦ, ଜ, ଞ, ଅ, ଘ, ଚ

୨୨୪।୨ ଅଖଣ୍ଡ—ଅସୁବିଧା, ଅନାୟାସ ।

ଆହା ସୂପକାର ମୋ ରାଜ୍ୟକୁ ଯେସନେକେ ଭୁଞ୍ଜ ଉପୁଗାସି
ମୁହିଂ ତୋତେ ଅଦୋଷରେ କଲ ଅପହାସି । ୨୨୯ ।
ମୋହୋର ପର ଠାକୁର ସବ୍ଦା ତୋତେ ନୋହୁ
ତୋହୋର ପରି ସୂପକାର ମୋତେ ଜନ୍ମେ ଜନ୍ମେ ହୋଇ । ୨୩୦ ।
ବହୁତ କ୍ରୋଧ କରି ବଦସ୍ମନ୍ତ ବରାଟେ
ସୂପକାର ହତ୍ୟାକାରେଣୀ ହୋଇଲେ କୋନ୍ତଇଟେ । ୨୩୧ ।
ହେ ଅଷ୍ଟ ଦଗପାଳେ ତୁମ୍ଭେ ବିଚାର କରିବା
ଏହି ହତ୍ୟାରେ ମୋହୋର ଦୋଷନାହିଂଟି ଅଥବ ।। ୨୩୨ ।
ବିରାଟର ମୁଖରୁ ଯେ ଶୁଣିଲେ ଅପଞ୍ଚାତ
ଯୁଟେଷ୍ଟି ବୋଇଲେ ମୁଂ ନସ୍ତରିଲ ଶ୍ରୀପତି । ୨୩୩ ।
ଏହୁଡେକ ଯୁଦ୍ଧରେ ଭୀମକୁ ନ ଚାହ୍ନି ଲେ କେହି
ହୋଇ ପଛେ ଅପଞ୍ଚାତ ତହିଂକ ଉପେନାହିଂ । ୨୩୪ ।
ଏହିହେଷ୍ଟେକ ବଚନ ଶୁଣି ଭୀମ ପଣ୍ଡ ଚଳେ
କୋନ୍ତଂକର ମୁଖ ସେ ଗୃହିଂଲା ବେନଡୋଳେ । ୨୩୫ ।
ନୟନ କଟାକ୍ଷେ ତହିଂ ଆଗ୍ୟାଂଦିଲେ କୋନ୍ତେ
ମାଇରେ ମାଲକୁ ବୋଲି ବୋଇଲେ ତୋଷଚତ୍ତେ । ୨୩୬ ।
ପଣ୍ଡାଂକାର ଠାର ଯେ ଜାଣିଲା ପାବେନ
ଧାଇଁକାରେ ମାଲକୁ ମାଡି ଛଡ଼ିଲା ପାଦବେନ । ୨୩୭ ।
ହାବୋଡା ଘାତକେ ଯେ ପକାଇଲା ତଳେ
ରେ ରେ କାର ଶବଦେ ତାକୁ ମାଡବସିଲା ବକ୍ଷସ୍ଥଳେ । ୨୩୮ ।
ଭୀମସେନ ପ୍ରତାପ୍ୟାଂ ନଯ ଦେବଂକୁ ଦୁର୍ଲଭ
ମାଲକୁ ତଳେ ମାଡବସିଲା ବଲ୍ଲବ । ୨୩୯ ।
ବେନ ଚରଣ ମାଡବସିଲା ତାହାର ବୁକୁ
କେ ନ ଦେଖିଲେ ବଲ୍ଲବ ପାଡ଼ୁଛୁ ମାଲକୁ । ୨୪୦ ।

---

୨୩୩।୨ ଯୁଟେଷ୍ଟି ବତାଇଲେ ମୁଂ ନସ୍ତରିଲ ଶ୍ରୀପତି ।—କ, ଗ, ଙ୍ଗ, ଠ, ଧ, ଡ
୨୩୪।୨ ହୋଉ ପଛେ ଅପଞ୍ଚାତ ତହିଂକ କଥା ନାହିଂ ।—ଗ, ଙ୍ଗ, କ, ଠ, ଜ

ଅଧର ପୃଷ୍ଟ କରି ଯେ ଗୃପିନ୍ତି ଦେବଜାନୁ
ଦେବଫଳ ହୋଇ ସେ ଫାଟିଲେ ତାହାର ତନୁ । ୨୪୧ ।
ଗିରଭେଦ ପ୍ରାୟେ ହୋଇ ଯତ୍ନଂ ଶ୍ରୋଣିତ ବହିଲା
ମାଲ ବୋଇଲା ବଲ୍ଲବ ମୋହୋର କରଛି ହୋଇଲା । ୨୪୨ ।
ବଲ୍ଲବ ବୋଇଲା ମୁଂ ସୂପକାର ବ୍ରାହ୍ମଣ
ମୁଂ କେହ୍ନେ ଯାଣଇଂ ତୋର କରଛି ବିଧାନ । ୨୪୩ ।
ମନ୍ଦର ମାଡ଼ି ଯେହ୍ନେ ବସଇ ହେମବନ୍ତ
ସେହ୍ନି ସାବ୍ରଣେ ଦିଶୁଅଛୁ ଦୁହିଂକର ଗାବ ।। ୨୪୪ ।
ନାଭି ମଣ୍ଡଳେ ସ୍ୱେକପାଦ ଆରେକ ପାଦ କଟି
ବକ୍ଷସ୍ଥଳେ ଭୂଜଦଣ୍ଡ ଆହାଣକୁ ଉର୍ଦ୍ଧ ମୁଷ୍ଟି । ୨୪୫ ।
ହିରଣ ବିଦାରଣ କାଳେ ଯେହ୍ନେ ନରସିଂହ
ତେସନେ ଦିଶୁଅଛୁ ପାଣ୍ଡବ ବୀର ଅଙ୍ଗ । ୨୪୬ ।
ଦେବ ଲୋଚନ ଦିଶଇ କାଳଚକ୍ର ପ୍ରାୟେ
ମଚ୍ଛ ଦେଶର ସଇନ ଦେଖି କଲେ ମହାଭୟେ । ୨୪୭ ।
ଆକ୍ଷେପି ମୁଥେକ ଯେ ମାଇଲାକ ବୀର ତୋଳି
ମାଲର ଶରୀରଯାକ ସେ ହୋଇଗଲା ଧୂଳି । ୨୪୮ ।
ଆହୋ ଚଇତନ ମାଲ ମାରି ସୂପକାର ଆସ୍ତାନର ତଳେ ଭଲା
ସମସ୍ତେ ବିସ୍ମରନ୍ତି ଯେ ଯମ ଦେବତା ଅଟଇ ଅବା । ୨୪୯ ।

---

୨୪୯।୨ "ସମସ୍ତେ ବିଚାରନ୍ତି ଯେ ଯମ ଦେବତା ଅଟଇ ଅବା" ପରେ
'ଢ' ପୋଥିରେ ଅଧିକା ପାଠ:—
ବିରାଟ ବୋଇଲା ମୁଂ ନ ଜାଣିଲି ସ୍ୱେଥିର ଭଙ୍ଗି
କି ଅବା ଗୃପତରେ ବିଜୟୁ ସାରଙ୍ଗୀ ।
କି ସ୍ୱେ ଇନ୍ଦ୍ର ଦେବତା ଯେ ଅଟଇ କୁବେର
କସ୍ୱେ ତପଲିଙ୍ଗ କସ୍ୱେ ଦେବତା କରତାର ।
କସ୍ୱେ ଯୁଦ୍ଧେଷ୍ଠି ଭ୍ରାଥ ଅଟଇ ଭୀମସେନ
କେମନ୍ତେ ଜାଣିମା ହୋ ସ୍ୱେଥିର ବିଧାନ ।

ଯେତେକ ମାଲକୁ ଭୀମସେନ ବଧକଲା
ଗର୍ଭରୁ ତାହାର ଯେ ପୁରୁଷେକ କାହାର ହୋଇଗଲା । ୨୫୦ ।
ସମସ୍ତଯାକ ଯେ ଦେଖିଲେ ପ୍ରତକ୍ଷ
ଭରତ ବୋଇଲେ ତୁମ୍ଭେ କାହାକୁ ଅନାଉଛ । ୨୫୧ ।
ମାଲକନ୍ଧୁ ପୁରୁଷେ ହୋଇ ଗଲା କାହାର
ବିମାନ ଆରୋହି ସେ ଗଲା ସ୍ୱର୍ଗପୁର । ୨୫୨ ।
ଭୀମସେନ ହାତେ ବଧହୋଇ ଯୁଦ୍ଧେଷ୍ଟିଙ୍କ ଦେଖି ମୁଖ
ପାଇଲା ଅକ୍ଷୟ ସ୍ୱର୍ଗ ତାହାର ପାଉଗଲା ଦୁଖ । ୨୫୩ ।
ପୁଷ୍ପେକ ବିମାନ ଆରୋହି ସେ ହୋଇଲା ସ୍ୱର୍ଗଗାମୀ
ଭୁଶନ କଲା ଯାଇ କପିଳାସେ ବିଶ୍ୱନାଥ ଦେବସ୍ୱାମୀ । ୨୫୪ ।
ଜୟକୁ ତ୍ରିଲୋଚନ ଗଜଷି ପ୍ରାଣଗୁରୁ
ଜୟ ଜୟ ତ୍ରିଲୋଚନ ସଙ୍କଟ ପାରିକରୁ । ୨୫୫ ।
ଶୁଦ୍ଧ ସଷ୍ଟିକ ଜାଣି ବିରାଜଇ ତୋର ତନୁ
ଅବ୍ୟୟ ନିରାକାର ଯାହାର ନୟନ କୃଶାନୁ । ୨୫୬ ।
ପଞ୍ଚଦଶ ଲୋଚନ ପଞ୍ଚ ଯେ ବଦ୍ୟଣ
ପିନାକ ପଶୁପତ ତ୍ରିଶୂଳ ଅକ୍ଷୟ ଯେ ତୋଣ । ୨୫୭ ।
ଶ୍ୱେତପଦ୍ମ ମହାପଦ୍ମ କର୍କୋଟକ କୁଳିକ ଅନନ୍ତ ତକ୍ଷକ
ଆଦରେ କୁଣ୍ଡଳ କଣ୍ଠ ମୁକୁଟ ବାହୁଟି ଯେ
ଶୋହେ ହାର ବକ୍ଷ । ୨୫୮ ।
ଚରଣେ ନେପୁର ଯେ ଭୁଜଙ୍ଗ ବାହୁଟି
ବ୍ୟାଘ୍ରବାସ କନ୍ଥା ଯେ ଗଳାରେ ଲମ୍ବକୁଟି । ୨୫୯ ।
ତାଣ୍ଡବ ଆରୋପଣ ବିଧ୍ୱଂସନ ତ୍ରିପୁରର
କଣ୍ଠତ କାଳେଣ ଅନେକ ପ୍ରାଣହାର । ୨୬୦ ।

---

୨୫୬।୨ କୃଶାନୁ—ଅଗ୍ନି ।

୨୫୭।୧ ବଦ୍ୟଣ—ବଦନ ।

୨୫୯।୨ ଚରଣେ ନେପୁର ଯେ ଭୁଜେଶ ବାହୁଟି । ଗ, ଙ, ଦ, ଠ

ଅବମାସ୍ୱର ନସ୍ତାର କଲୁ କଉଣପକଳ ଧ୍ୱଂସ।
ତାମ୍ରବର୍ଣ୍ଣ ଶରୀର ନାଥ ଲେପନ ଅଙ୍ଗେ ଅଂଶା । ୨୬୧ ।
କେୟୂର କୁଣ୍ଡଳ ଯେ କର୍ଣ୍ଣେଣ ନାଗଫେରୁ
ଅନ୍ତରୀକ୍ଷେ ହାଡ଼ମାଳଇ ନବଲକ୍ଷ ଡମ୍ବରୁ । ୨୬୨ ।
ନମସ୍ତେ ବନାସ୍ବକ ପିଅର ଶୂଳଲିଙ୍ଗ
ମଜ୍ଜନେ ତ୍ରିବେଣୀ ଯେ ବହଇ କ୍ଷୀରେ ଗାଙ୍ଗ । ୨୬୩ ।
ତ୍ରିଲୋଚନ ଦେବ ତୋର ଅଗ୍ନି ସୂର୍ଯ୍ୟ ଶଶୀ
କାଶୀରଜାକୁ ଧଂସିଲୁ ରକ୍ଷଣ କାଣରାଶୀ । ୨୬୪ ।
ଶଇଳ ରଜାର ନନ୍ଦନୀ ହୃଦରେ ଗିରିଜା
ପର ଦୁଃଖେଣ କାତର ନାଥ ଅଭସ୍ବକର ଦେଉ ଦେବରଜା । ୨୬୫ ।
ମଣିକର୍ଣ୍ଣିକା ତୀର୍ଥ ମଣ୍ଡଳ ବାରଣାସୀ
ଜୟନ୍ତୁ ବିଶ୍ୱନାଥ ସ୍ୱାମୀ ତବ ଭୁବନେ ଠାବ ମୋତେ ଦେସି । ୨୬୬ ।
ସ୍ୱାମୀ ଅନନ୍ତ କୋଟି ଯୁଗର ପାତକ ଖଣ୍ଡଇ ସେବଣ ତୀର୍ଥେ
ସଦା ସମ୍ପଦ ନାଥ ପ୍ରସନ୍ନେ ପ୍ରାପତ କରିବ: ହୋଉ ମୋତେ ।୨୬୭।
ପାବଣର ବଲ୍ଲଭ ତଲସ୍ୱେ ନଚ୍ୟେ ମୋର ସେବା
ଶୂଦ୍ରମୁନି ସାରଳେ ଦାସକୁ ଗତି ମୁକତି ଦେବା । ୨୬୮ ।
। ୨୬୫୫ ।

---

୨୬୩।୨ କାଶୀରଜ ମହାଦେବଙ୍କ ସାହାଯ୍ୟ ପ୍ରାର୍ଥନା କରି କୃଷ୍ଣ ସଙ୍ଗରେ ଯୁଦ୍ଧ କରିଲେ । କୃଷ୍ଣ ତାହାଙ୍କୁ ହତ୍ୟାକରି କାଶୀ ଦଗ୍ଧ କଲେ । ମହାଦେବ କାଶୀରେ ଥାଇ ତାଙ୍କୁ ରକ୍ଷାକଲେ ନାହିଁ । ପରନ୍ତୁ ତାଙ୍କ କାଶୀକୁ କୃଷ୍ଣ ଭସ୍ମୀଭୂତ କଲେ । (ସ୍କନ୍ଦ ପୁରାଣ)

୨୬୫।୧ ଶିରିବନ୍ତ ଗିରିଜା ଚରଣେ ମୋ ସେବା । —କ, ଦ

## ମାଲର ପୂର୍ବଜନ୍ମ ବୃତ୍ତାନ୍ତ
## ଓ
## ଭୀମଙ୍କ ରନ୍ଧନ ପ୍ରଣାଳୀ

ଯେତୁ ଅନନ୍ତରେ କଳିଂଗ ଦେଶର ରାଜା
ଅଗସ୍ତିଂକ ପାଦପଦ୍ମେ କଲା ଦିବ୍ୟପଜା । ୧ ।
ଯେବଣ ମାଲକୁ ବଧକଲା ବ୍ରାହ୍ମଣ ବଲ୍ଲଭ
ତହୁଂ ସେ ପୁରୁଷେକ ପୁଜିଲା ମୁନିଦେବ । ୨ ।
କେବଣ ମହାତମା ସେ କହିବା ଅଗସ୍ତି
ଶୁଣିବେ ଇଚ୍ଛା ମୋର ଅମିୟ ରସଶ୍ରୁତି । ୩ ।
ଶୁଣ ହୋ ମନୁପୁରୁଷ ବନ୍ଦ୍ୟପୁନ୍ତ ବ୍ରହ୍ମବେତ୍ତା
ତୁ ଯାହା ପୁଛାକଲୁ ସେ ବହୁତ କାଳର କଥା । ୪ ।
ଯେତୁ ସତ୍ୟଯୁଗେ ଥିଲେ ବଶ୍ୱାନର ଦକ୍ଷ
ତାହାର ନନ୍ଦନ ହୋଇଲା ବଦୁର କବଚ । ୫ ।
ବଦୁରକବଚ ପୁତ୍ର ହିରଣ୍ୟକେଶୀ
ମାତଙ୍ଗ ଦକ୍ଷ ବୋଲି ଯେହାର ଯେ ଶିଶି । ୬ ।
ମାତଙ୍ଗ ଦକ୍ଷର ପୁତ୍ର ଅକାଳ ମାଲ୍ୟବନ୍ତ
ତାହାର ନନ୍ଦନ ଯେ ଦକ୍ଷ ହିମବନ୍ତ । ୭ ।
ହିମବନ୍ତର ନନ୍ଦନ ଅଟଇ ହେମମାଳୀ
କୃତାନ୍ତକ ଦକ୍ଷ ବୋଲି ଯେହାର ପୁତ୍ର ମହାବଳୀ । ୮ ।
ଯେ ବିଧି ଦକ୍ଷବଂଶ ଥୋକାଏ କହିଲି
କୃତାନ୍ତକ ଦକ୍ଷର ପୁତ୍ର ବଳୟା ଦକ୍ଷ ବୋଲି । ୯ ।
ବଳୟା ଦକ୍ଷର ପୁତ୍ର ହୋଇଲା ହନୁକାଶ
ତିନ ଭୁବନ ମଧ୍ୟେ ତାହାକୁ କେହି ନାହିଁ ସର । ୧୦ ।

ବଡମ୍ବଣ ସମରେ ତାହାକୁ କେହ୍ନ ନାହିଂ ସମସର
ତନପୁର ମଧ୍ୟେ ଅନେକ ସାର ମାରି । ୧୧ ।
ଅନେକ ଭୁବନ ଭ୍ରମି ସେ ଆଶିନ ଶୁକଳ ଅଷ୍ଟମୀ
କପିଳାସ ଭୁବନେ ସେ ଧନକ ଗଲା ଭ୍ରମି । ୧୨ ।
କପିଳାସ ସିଂହଦୁଆରେ ପ୍ରବେଶ ସେ ହୋଇଲା ବଳୟା ନାମେ ଦକ୍ଷ
ନନ୍ଦୀ ମହାକାଳ ସେ ଭୁବନର ରକ୍ଷ । ୧୩ ।
ତାହାନ୍ତ ବୋଇଲା ସେ ତୁମ୍ଭେ ରୁଦ୍ରର ଦ୍ୱାରପାଳ ଅଟ ହୋ ମହାବଳୀ
ମୋହୋରେ ସେ ରଣରଙ୍ଗ ଦଅ ହୋ ତୋହଲୀକୁ । ୧୪ ।
ତାହାର ବଚନ ଶୁଣି ସେ ନନ୍ଦୀକେଶ୍ୱର ହସି
ଗୁରୁହଂସୀ ପଣେ କେହ୍ନ ଯେ ନ ଦେଲେ ସମ୍ଭାଷି । ୧୫ ।
ପୁଣି ଉତ୍ତର ଦ୍ୱାରେ ଯାଇଂ ହୋଇଲା ପ୍ରବେଶ
ଜୟନ୍ତକ ଅଜୟନ୍ତକ ଦେଖଇ ଅବକାଶ । ୧୬ ।
ବୋଇଲା ଈଶ୍ୱରଙ୍କ ଦ୍ୱାରପାଳ ତୁମ୍ଭେ ଅଟ ହୋ ମହାମେରୁ
ମୁହିଂ ମାଲ ଅଟଇ ବଳୟା ହନ୍ତକାରୁ । ୧୭ ।
ସିଂହଦ୍ୱାରେ ଦ୍ୱାରପାଳ ନନ୍ଦୀକେଶ୍ୱର ମହାକାଳ
ସମର ମାଗନ୍ତେ ସେ ମୋତେ କଲେକ ହେଳ । ୧୮ ।
ତୁମ୍ଭେ ଯେ ଉତ୍ତର ଦ୍ୱାରେ ଦ୍ୱାରପାଳ ଅଟ
ମୋହୋର ତୁଲେ ସମର କର ତୁମ୍ଭେ ଅଟ ହୋ ଗରିଷ୍ଟ । ୧୯ ।
ଜୟନ୍ତକ ବୋଇଲା ତୁ ଅଗ୍ୟାନ ଦୁଷ୍ଟ ବାଇ
ତୁମ୍ଭର ତୁଲେ ଆମ୍ଭର ସମର କସପାଇଂ । ୨୦ ।
ତୁ ଆମ୍ଭର କହୋ ହରିଲୁ ବୁଦ୍ଧିବାଇ
କିସ ଅର୍ଥେ ତୋହୋର ତୁଲେ ଆମ୍ଭର ଦନ୍ଦକାଣ୍ଡ । ୨୧ ।
ଯୋଗଲୟେ ଆମ୍ଭର ହୋ ଅଟଇ ମହାମନ୍ତ୍ର ସାଧି
କେଉଂଣସି କାଳେ ଆମ୍ଭେ ନେ ହୁଂ ହତ୍ୟାବାଦୀ । ୨୨ ।

---

୨୨।୧ ଯୋଗଲୟେ ଆମ୍ଭର ହୋ ଅଟଇ ମହାବ୍ରହ୍ମ ସିଦ୍ଧ ।—ପ, ଙ
୨୨।୨ କେଉଣସି କାଳେ ଆମ୍ଭେ ନୋହୁ ହିଂସା ବିବାଦୀ ।—ପ, ଣ, କ

ତାହାଂକର ବଚନ ଶୁଣି ବଳସ୍ଥା ମହାମଲ୍ଲ ଗଲେ
ପଶ୍ଚିମ ଦ୍ୱାରେ ଯାଇଂ ମଣିଭଦ୍ରକଇଂ ଦେଖିଲେ । ୨୩ ।
ପଶ୍ଚିମ ଦୁଆରେ ସେ ଯେ ଦ୍ୱାରପାଳ ବେନି
ବଳସ୍ଥାମାଲ ପ୍ରବେଶ ବାରବାର ପ୍ରତଗ୍ୟାଂ ଘେନି । ୨୪ ।
ମୂହିଂ ମାଲ ବଳବନ୍ତା ଅଟଇ ହନ୍ତକାରୁ
ରୁଦ୍ରଂକର ଦ୍ୱାରପାଳ ଅଟ ହୋ ବଳସ୍ଥ ମହାମେରୁ । ୨୫ ।
ମୂହିଂ ଭୁମ୍ଭନ୍ତ ସମର ମାଗଇ ବେନବାର
ଯେତେକେ ଯେତେକେ ଜଣକରେ ମୋତେ ଦିଅ ଭୁମ୍ଭେ ସମର । ୨୬ ।
ଆକେଷିଣ ଭାବେ ଯକ୍ଷଂ ବୋଇଲେ ଅନେକ
ପ୍ରତଗ୍ୟାଂ ବଚନ ଶୁଣି ବାହାର ହୋଇଲେ ଖ୍ରମେକ । ୨୭ ।
ପୁଷ୍ପଦନ୍ତ ବିଦାରଣ ଗଣନାଥ ଆଦିସଙ୍ଗା
କପିଳାସ ଘଟଣ ସେ ପ୍ରାସ୍ତେ କାଳବଞ୍ଚା । ୨୮ ।
ଶିରେଣ ଯେତେକ ଜଟା କୃତାନ୍ତେକ ପରମ ଯୋଗୀ
ପରର ପ୍ରତଗ୍ୟାଂ ନ ସହଇ ସେ ମହା ବଇରାଗୀ । ୨୯ ।
ବାହାସ୍ଫୋଟ ଦେଇଣ ସେ ଅଧରେ ଦନ୍ତଚୃପି
ଆସ୍ଥାନୁ ଡେଇଂଣ ସେ ପଡିଲେ ମହାକୋପୀ । ୩୦ ।
ବଳସ୍ଥା ଦଇତ୍ୟକୁ ସେ ଧଇଲେ ଆକ୍ଷେପି
ଭୂମିଗତେ ପାଡି ତାର ହୃଦରେ ମାଡିବସି । ୩୧ ।
ମାଲର ଖ୍ରମର ଯକ୍ଷଂ କରିଲେ ସାଂଗ୍ରାମ
ମହାଯୁଦ୍ଧ ଲଗିଲା ଗୁଣ ଦିବସ ଅବଶ୍ରାମ । ୩୨ ।
କେହ୍ବ କାହାକଇଂ ସେ ସମରେ ନୋହନ୍ତି ଉଣ୍ଟ
ମହା ବଳବନ୍ତା ସେ ବଳସ୍ଥା ମାଲଯକ୍ଷ । ୩୩ ।
ବନ ଡିଙ୍ଗର ଚୂରିଗଲା ସେ ସମର ପଡିତାଳେ
ମେଦିନୀ ହେଲ ଘେନିଲ କମ୍ପିଲେ ଦିଗପାଳେ । ୩୪ ।

---

୩୪।୨ ମେଦିନୀ ଦଳିଦଳିତ ଯେ କମ୍ପିଲେ ଦିଗପାଳେ ।—କ, ୪ ୨

ପ୍ରହାରେ ଦଲଦଲିତ ହୋଅଇ ମେଦିନୀ
ଚଉଁପି ହୋଇ ପୃଥିବୀ ହୋଇଲା ଶକ୍ତିହୀନ । ୩୫ ।
ଭୂମିଖାଲ ନଥିବୋଲି ନ ଗଲେଁ ବାରଣ
ଜଳ ମନ୍ଥନ ମହୀ ମନ୍ଥନ ହୋଇଲା ସାଂଗ୍ରାମେଣ । ୩୬ ।
ଏମନ୍ତେ ଦଶ ସହସ୍ର ବରଷ ପରଯନ୍ତେ ବଢିଲା ସାଂଗ୍ରାମ
ଅଗ୍ନି ତାପ ହୀନ ହୋଇଲା ଦିନକର ଧ୍ୟାନ । ୩୭ ।
ମହାଯୁଦ୍ଧ ଦେଖି ଯେଁ ବିଜେକଲେ ଈଶାନ
ରହ ରହ ବୋଲଣ ସେ କଲେକ ସମାର୍ଜନ । ୩୮ ।
ଦଶ ସହସ୍ର ବରଷେ ଯୁଦ୍ଧେ ନୋହିଲେ ବିମୁଖ
ମଧ୍ୟରେ ପଶି ସମର ନିବର୍ତ୍ତାଇଲେ ପଞ୍ଚମୁଖ । ୩୯ ।
ବହୁତ ସମ୍ବୋଧନା ସେ କରନ୍ତି କପାଳୀ
କାହିଂର ନିମନ୍ତେ ରେ ତୁମ୍ଭର ହୋ ଯେତେ ବାରୁଆଳି । ୪୦ ।
ମାଲ ହୋଇଲା ଆମ୍ଭର କଉତୁକ ଯୁଦ୍ଧ
ଏହିମନ୍ତ କାଳେ କାଳେ ସମରେ କେହି ନୋହୁ ବଧ । ୪୧ ।
ଈଶ୍ୱରେ ବୋଇଲେ ତୁମ୍ଭେ ହୋ ବଡାଇ ଶକତା
ଏ ଯୁଗରେ ସମର ତୁମ୍ଭର କେହି ନୋହିଲା ଦେଖନ୍ତା । ୪୨ ।
ଦ୍ୱାପର ଯୁଗେ ତୁମ୍ଭେ ଭୀମମାଲ ହୁଅ
ମଲ୍ଲଦେଶେ ମତ୍ସଦେଶେ ତୁମ୍ଭେ ସମର ଆରୋହ । ୪୩ ।
ଭୀମଂକ ତୁଲେ ତୋହୋର ସମରର ଇଚ୍ଛା ଯେବେ
ଭୀମସେନ ନାମେ ଏ ଜାତ ହୋଇବ ପାଣ୍ଡବେ । ୪୪ ।
ତୁହି ହନ୍ତକାରୁ ଯେ ମାଲ ହୋଇଥିବୁ
ବିରାଟ ଆସ୍ଥାନ ତଳେ ଯାଇଂ ସମର ମାଗିବୁ । ୪୫ ।
ତହିଂ ତୁମ୍ଭ ଦୁହିଂଙ୍କର ସରିସମ ଯୁଦ୍ଧ
ଭୀମସେନ ରୂପେ ଏ ତୋତେ କରିବ ଜାଣ ବଧ । ୪୬ ।

---

୩୭ { ଏମନ୍ତ ଦଶ ସହସ୍ର ବରଷ ପରଯନ୍ତେ ବଢିଲା ସମର
ଅଗ୍ନି ତାପ ନଉନ ହୋଇଲେ ଉଦେ ନାହିଂ ଦିନକର ।—କ

ଇଦଂବାକ୍ୟ କହନ୍ତ ସେ ଘଟଋଷି ର ତନୁ
ସାବଧାନେ ଶୁଣ ଭୁହୋ ବଇବସ୍ୱତ ମନୁ । ୪୭ ।
ମାଳର କଥା ସେ ଯେ ପୂଚ୍ଛିଲୁ ପ୍ରତକ୍ଷ
ଯେ ମାଳ ଅଟଇ ହାତେ ବଳସ୍ୱା ମାଳ ବକ୍ଷ । ୪୮ ।
ଯୁଦ୍ଧେଷ୍ଟି ଦୃଶନେ ଲଭିଲ ଅକ୍ଷୟ ଯେ ସ୍ୱର୍ଗ
ଦକ୍ଷ ପୁରୁଷଂକ ଭୁଲେ ସେ ପାଇଲ ସ୍ୱର୍ଗଭୋଗ । ୪୯ ।
ଶୁଣିଣ ସାନନ୍ଦ ସେ ବଳଂକା ଆଧିପତି
ଷଡଅର୍ଘ୍ୟେ ପୂଜାକଲା ସେ ପଣ୍ଡିତ ଅଗସ୍ତି । ୫୦ ।
ମୂନ ହେ ସାଧୁ ସେ ବୃକୋଦର ରହିଲ ଗୃପତେ
ଅନ୍ନ ସମ୍ବାଦ ତାହାଙ୍କୁ ହେଉଅଛୁ କେମନ୍ତେ । ୫୧ ।
ଷାଠିଏ ପଉଟି ଅନ୍ନେ ଯେ ବେଳକେ ଅହ ପୃଷ୍ଠ
ବସନ୍ତେ ଯେତେକ ମିଳଇ ଟିକ ନନ୍ତପ୍ରତି । ୫୨ ।
ଅଗସ୍ତି ବୋଇଲେ ହେ। ଶୁଣ ଯୋଗେଶ୍ୱର
ଆଧାର ଲୁବୁଧେ ସେ ହୋଇଲା ବଲ୍ଲବ ସୂପକାର । ୫୩ ।
ଅହବ୍ରତେକ ସୂପକାର ବସନ୍ତ ସେଷୁଅ ଘରେ ଥିଲା
ସବୁନ୍ତ ଛଡାଇ ଭୀମ ଯେକା ସୂପକାର ହୋଇଲା । ୫୪ ।
ନିତ୍ୟାପ୍ରତି ପ୍ରାପତ ହୋଇ ତିନ ଅହବ୍ରତେକ ପଡି
ତାହା ଭୋଜନ କରଇ ଭୀମ ଯେ ଅନ୍ନ ପଞ୍ଚନ କରି । ୫୫ ।
ସୋଋଷ ନ କାଟିଣ ସେ ପରବା ନ କାଟି
ସବୁନ୍ତ ଯେକ କରଣ ଘଣ୍ଟେ ନେଇ ଘୋଟି । ୫୬ ।
ଜୀର ହେଙ୍ଗୁ ମେଥି ମରିଚ ଘୃତ ଦୁଧ ବାସଖଣ୍ଡ
ଯେକା ଘାନ୍ତକେ ସମସ୍ତ ପୂରେଇ ନେଇ ଭଣ୍ଡ । ୫୭ ।
ଦୋହଗନ୍ତ ସୁମରଇ ସେ ଯେକାଜାଳେ ଦେଇ
ଯେକା ନିଶ୍ୱାସକେ ସେ ସିଝାଇ ଓହ୍ଲାଇ । ୫୮ ।

---

୪୯।୨ ଦକ୍ଷ ପୁରୁଷଂକ ସଙ୍ଗେ ବସିଲା ଯାଇ ବେଗେ।—ଛ, ଜ, ଙ

୫୫।୨ ତାହା ଭୋଜନ କରଇ ଭୀମ ଯେ ଅନ୍ନପାକ କରି ।—ଅ, ଜ, ପ, ଖ, ଗ, ଛ, ଓ

କଣ୍ଠା ବାନ୍ଧୁନ୍ତ ନେଇ ସେ ଅଗମୂଳ ମୋଡ଼ି
ଚୁଲ୍ଲୀରେ ପ୍ରବେଶଇ ନେଇ ବୋହୋର ନାମ ଧରି । ୫୯ ।
ଗନ୍ଧର୍ବ ସଞ୍ଜରୀ ଯେ ଯେ ନଳ ଯେ:ଷନବନ୍ଧି ରନ୍ଧଣା
କାରଣ ନ ଯାଇ ସେ ଯେ ମେଞ୍ଜନ ଯେକଇ ସିଝଣା । ୬୦ ।
ବଇବସ୍ୱତ ମନୁ ଯେ ପୁଚ୍ଛାକଲେ ବାରତ
ସଞ୍ଜରୀ ପ୍ରତି ରନ୍ଧଣା ମୁନ ହେ ଅଟଇ କେମନ୍ତ । ୬୧ ।
ଶଞ୍ଜରୀ ନାରାୟଣ ରୂପେ କେଶବ ବନକ୍ରୀଡ଼ା ହେତ
ଆପଣେ ସରସ୍ୱତୀ ନାମେଣ ଶକଣ । ୬୨ ।
କାଠ କୁଟୋଇଣ ସେ ଅନଳେ କଲେ ଦାହା
ବନଫଳ ମାଂସ ସେ ବନରେ ଯାଆନ୍ତି ଯାହା । ୬୩ ।
ମୃଗମାଂସ ଆମ୍ବିଳ ମଦ୍ଗୁର ଶାଗ
ସମସ୍ତଂକୁ ଯେକଯୋଗ କରି ପଞ୍ଚ ସଙ୍ଗ । ୬୪ ।
ଛଇଳ କ୍ଷୀର ଲବଣ ପାଣେ ସବୁ ଭରି
ଶିଆଳି ଲତାରେ ଗୁଡ଼ାଇ ଅଗ୍ନିରେ ଚାହା ପୋଡ଼ି । ୬୫ ।
ଅଗ୍ନି ଜାଳନ୍ତେଣ ସେ ପୋଡ଼ି ହୋଇ ଯଂକୁ
ଭୋଜନକୁ, ଯାର ସହିତ ନୋହୋଇ କେହି ତାକୁ । ୬୬ ।
ବାତପିତ ଶ୍ଳେଷ୍ମା ନାନା ରୋଗ ବ୍ୟାଧି
ସମସ୍ତଙ୍କ ଧ୍ୱଂସନ ହୋଅଇ ସେ ରନ୍ଧଣା ପ୍ରସିଦ୍ଧି । ୬୭ ।
ଯେହା ସେ ବୋଲ ହୋ ସଞ୍ଜରୀ ରନ୍ଧଣାର ପ୍ରତି
ଶକଣ ରୂପେ ଯେହା ସମ୍ଭଲେ ସରସ୍ୱତୀ । ୬୮ ।
ନଳ ଯେ ସମସ୍ତ ଯୋଗାଡ଼ମାନ ଯେକକରି
ଆମିଷ ଆମ୍ବିଳ ମଦ୍ଗୁର ସମସ୍ତ ସମେ ହାଣ୍ଡିରେ ନେଇ ଭରି । ୬୯ ।
ଖପରେ କସାକନ୍ତେ ସେ ସିଝଇ ଅତି ବେଗେ
ନଳବନ୍ଧି ରନ୍ଧଣା ଯେ ଅଟଇ ସୂର୍ଯ୍ୟପାଗେ । ୭୦ ।
ସଞ୍ଜଣ ରକ୍ଷଣା ଯେ ଅଟଇ ଯେମନ୍ତ
ସମସ୍ତ ଦ୍ରବ୍ୟମାନ ଯେ ହୋଇବ ଯେକତ୍ର । ୭୧ ।

---

୭୦।୧ ବାରତ ନ ଯାଇ ମେଞ୍ଜନ ଯେକୁଂଯେକ କଣା । ⊢ ଚ, ୪, ୯

ପରିବା ଅବସ୍ଥା ଯେ ଷୋଡ଼ଷ ଅବସ୍ଥା
ସମଯୋଗ କରଣ କରିବ ପଂକଗୋଷ୍ଠା । ୭୨ ।
ହେଙ୍ଗୁ ମେଥି ଜୀରା ଯେ ମରୀଚ ସମକରି
ମାରି ତଣ୍ଡୁଳ ସେ ପ୍ରେକଯୋଗ କରି । ୭୩ ।
ରନ୍ଧଣାର ବେଳେ ଦେହବଂକ ନାମକୁ ସୁମରି
ପ୍ରେବଧି ରନ୍ଧଣା ଯେ ଅଛଇ ଗଢ଼ଜୀ । ୭୪ ।
ପ୍ରେତ୍ନମନ୍ତ ରନ୍ଧଣା ଯେ ରନ୍ଧେ ନନ୍ଦପ୍ରଭ
ପ୍ରେ ଭନପ୍ରଭ ରନ୍ଧଣା କରଇ ମାରୁତ । ୭୫ ।
ରନ୍ଧଣାକୁ ତଣ୍ଡୋଳ ନ ଯୋଗାଇ ଯେତେବେଳେ
ଶତେ ପଞ୍ଝି ଧାନ ସେ କୁଢୋଇ କୁଚ୍ଛୋଲେ । ୭୬ ।
ମୁଥ ପ୍ରହାର ସେ କରଇ ଭୀମସେନା
ଭାଙ୍ଗିଣ ଧାନମାନ ହୋଅଇ ସବୁ ଚୂନା । ୭୭ ।
ନଶ୍ୱାସ ଛାଡ଼ନ୍ତେ ସେ ଉଡ଼ିଯାଇ ଟେପା
ସେ ତଣ୍ଡୁଳ ରନ୍ଧନ ଯେ କରଇ ମନରୁପା । ୭୮ ।
ଅମନାତ୍ୟ ଯୋଦ୍ଧାନ୍ତ ହୋନଣ ବସନ୍ତ ରାଜେଶ୍ୱର
ସମଦଣ୍ଡ ହୋନ ଭୁଞ୍ଜି ବସନ୍ତ କୋନ୍ତଂକ ସଙ୍ଗତର । ୭୯ ।
ଆପଣେ ଅନ୍ନ ଯେ ପରସଇ ପାବେନ
ପ୍ରଥମ ଯାନ୍ତକେ ଦେଇଯାଇ ସୁବର୍ଣ୍ଣ ପଲମ ହୋନ । ୮୦ ।
ପୁଣ ପୁଣ ଅନ୍ନ ଯେ ମାଗନ୍ତ ଅପ୍ରମିତେ
କାଳଚକ୍ର ପରାପ୍ରେ ବୁଲଇ ବେକନେତେ । ୮୧ ।
କୋନ୍ତଂକୁ ବସନ୍ତକୁ ପରଶଇ ସାମାନ୍ୟ ରୁପ ହୋଇ
ପରଶିଲା ବେଳେ ସନ୍ୟଂକୁ ଗ୍ରୀଷ୍ମରୁପ ଦେଖାଇ । ୮୨ ।
ଦେଖିଣ ଭଯ୍ରେ ଭୁଞ୍ଜି ନୁଆରନ୍ତ ସର୍ବଲୋକେ
ଗୋସାଇଂ ଅଣ୍ଡିଲନ ବୋଲି ବୋଲୁଥାନ୍ତ ଥୋକେ । ୮୩ ।
ଅପାର ଅନ୍ନ ଯେ ଉତ୍ତୁରଇ ପ୍ରେତ୍ନମତେ
ସୁଖେଣ ବ୍ରିକୋଦର ଭୁଞ୍ଜଇ ଅଣଇ ତାହାକୁ ଯେତେ । ୮୪ ।
ଭୁଞ୍ଜିଣ ହିପୁତ ଯେ ପବନର ବାଳ
ଶରୀର ପୁଷ୍ଟି କଲା ସେ ଖଞ୍ଜିପୁ ଅର୍ଗଳ । ୮୫ ।

ବହୁତ ନିପୁଣ ହୋଇ ସେ ଭୁଞ୍ଜଇ ଶ୍ରୀକୃଷ୍ଣାର ସାଇଂ
ମୁଣୋହ୍ବଂର ଗାତେ ଘଷା ଉଠିଚ ନୁଆରଇ । ୮୬ ।
ବିରାଟେ ବୋଇଲେ କୋନ୍ତେ ଯେତ ବଡାଇ ଦୁଲଭ
ଯେମନ୍ତ କରଣ ସୁପଂକୁ ଅନ୍ନ ସେ ଦିଅଇ ବଲ୍ଲବ । ୮୭ ।
ଅନ୍ତଅନ୍ତ ଯୋଗାଡେ ସେ ପୁଷ୍ଟ ହୋଅଇ ଭୋଗୀ
ବପୁଖୀନ୍ନ ହୋଇଲେ ଶରୀର ହୋଯେ ରୋଗୀ । ୮୮ ।
କୋନ୍ତେ ବୋଇଲେ ବିରାଟେ ଆମ୍ଭର ମନ୍ତ୍ର ଗୋଟିଏ ଅଛୁ
ଭୋଜନ ଅନ୍ତରେ ମନ୍ତ୍ର ପଢି ଡନବେଲ ଆଉଂସିବ କୁକ୍ଷି । ୮୯ ।
ଗଣ୍ଡସ୍ଥଳ କରି ସରି ଯେବେ ପ୍ରବେଶିବ ଉଦର
ନାଭି ମଣ୍ଡଳ ମନ୍ଦିଲେ ସମସ୍ତ ଯିବ ପାର । ୯୦ ।
ବିରାଟ ବୋଇଲେ କୋନ୍ତେ ସରୂପ ମୋତେ ଦେଖା
ଶରୀର ସୁସ୍ଥହୋଉ ମନ୍ତ୍ରଗୋଟି ମୋରେ ସିଖା । ୯୧ ।
ଶୁଣ ହୋ ମଚ୍ଛେଶ୍ୱର ସେ ମନ୍ତ୍ରର ମହିମା
କାରୁଣ ହେତୁ ବୋଲଣ ଅଟଇ ଯେକ ବ୍ରହ୍ମା । ୯୨ ।
ପଣ୍ଡୁ କଲୁଷ ବୋଲଣ ତାଂକ ପୁଅ ବେନ
ଯେହାଂକର ପୁଅ ବେନ ଭାବମା କାମିନା । ୯୩ ।
ଯେହାଂକର ପୁଅ ଯେ ସୁତାପି ସରୁପୀ
ଯେହାଂକର ନନ୍ଦନ ଯେ ଆତାପି ବାତାପି । ୯୪ ।
ଉଦ୍ଦାଳକ ପ୍ରୋହିତଂକର ପୋଷିଲ୍ଲ ଗଣ୍ଡାଟଗୋଟି
ତଉର୍ପଣ କରି ତାହା ଅରଣ୍ୟେ ନେଇ କାଟି । ୯୫ ।

---

୮୯।୨ କୁକ୍ଷି—ଉଦର, ବା ପେଟ ।
୯୩।୧ ପଣ୍ଡ ଶୁକଳ ବୋଲଣ ତାଂକ ପୁତ୍ର ବେନ । —କ, ଦ
୯୩।୧ ଗଣ୍ଡ କଲୁଷ ବୋଲଣ ତାଂ ପୁଅ ବେନ । —ଚ, ଛ
୯୩।୧ ଗୃବୁଣ କଶ୍ୟପ ବୋଲଣ ତାଂକ ପୁଅ ବେନ । —ଞ, ଅ
୯୪।୧ ଯେହାଂକର ପୁଅ ଯେ ଶଉଙ୍ଗୀ ସାରଙ୍ଗୀ । —ଚ, ଙ, ଅ, ଓ

ଅଗ୍ନିରେ ପୋଡ଼ି ତାହା ଖାଇଲେ ବେଦଭ୍ରାଥେ
ଆହ୍ଲାନକ ସାର ଖଣ୍ଡା ଲେଉଡନ୍ତ ଉଦ୍ଦାଳକ ପ୍ରୋହିତେ । ୯୬ ।
ନଚ୍ୟାପଣ ଗଣ୍ଡାକୁ ଯେ ଅନ୍ତ ଭୁଲେ ଅନ୍ଧ
ଗଣ୍ଡା ଲେଉଡ଼ି ମହାତ୍ମା ନ ପାଇଲେ ସେ ଦାନ । ୯୭ ।
ଲେଉଡ଼ି ନ ପାଇଣ ମୁନି ଚନ୍ତିଲେ ହୃଦଗତେ
ଧ୍ୟାନେ ଜାଣିଲେ ପୋଡ଼ି ଭକ୍ଷିଲେ ଆଚାପି ବାତାପି ବେଦ ଭ୍ରାଥେ ।୯୮।
ତାମସେ ମହାତମା ଯେ କଲେ ଅତି କୋହ
ସଗେ ଶାପ୍ୟଦଲେ ତୁମ୍ଭେ ବ୍ରହ୍ମରାକ୍ଷସ ହୋଅ । ୯୯ ।
ଉଦ୍ଦାଳକ ଋଷି ଶାପ୍ୟେ ଆଚାପି ବାତାପି
ବ୍ରହ୍ମ ରାକ୍ଷସ ହୋଇଣ ବୁଲନ୍ତ ମହାପାପୀ । ୧୦୦ ।
ଆଶ୍ରମ କରି ରହିଲେ ପଞ୍ଚୁବଟୀ ବନେ
ପ୍ରୟାଗ ଯିବାକୁ ବାଟର ଯେ ମଧ୍ୟସ୍ଥାନେ । ୧୦୧ ।
ଯେତେ ଲୋକ ଗମନ୍ତ ସେ ପ୍ରୟାଗ ତୀର୍ଥକୁ
ବାଟ ପଡ଼ିଅଛି ସେ ପଞ୍ଚୁବଟୀ ବନକୁ । ୧୦୨ ।
ପଞ୍ଚଶତ ଯୋଜନ ପର୍ଯ୍ୟନ୍ତେ ନାହିଁ ଘର ଗ୍ରାମ
ସେତିକାମାନ ଅଛଇ ଯେ ତାହାଂକର ଆଶ୍ରମ । ୧୦୩ ।
ଦ୍ୱାଦଶ ଶତ ଶ୍ରୀବତ୍ସ ଚିହ୍ନ କନ୍ଦେ ଉତ୍ତୁରି ପଇତା
ମହା ଆନନ୍ଦରେ ବସି ଭାଷନ୍ତ ବେଦ ପୋଥା । ୧୦୪ ।
ଦୂରପଦ ବନେ ସେ ଯେ ଦେଖିଣ ଆଶ୍ରମ
ତୀର୍ଥବାସୀ ଜନେ ତହିଂ କରନ୍ତ ବିଶ୍ରାମ । ୧୦୫ ।
ବାଳ ମୃଗଗୋଟି ତହିଂ ହୋଇଥାଇ ଆତାପି
ଦାଣ୍ଡ ପିଣ୍ଡାରେ ତାକୁ ଦୃଢେ ବାନ୍ଧଥାଇ ବାତାପି । ୧୦୬ ।
ଭୋଜନ ଅର୍ଚ୍ଚନା ଯେ କରାଇ ପଥକଙ୍କ
କହନ୍ତିଂ ବ୍ୟଞ୍ଜନ ନାହିଂ ମାରିବା ଏହି ମୃଗୀକ । ୧୦୭ ।
ସେହି ତୀର୍ଥବାସୀର ସମ୍ମୁଖରେ ତାହା ହାଣି
ଛୁଦ୍ରକରି କାଟିଣ ମେଞ୍ଜନ କରଇ ତାହା ପୁଣି । ୧୦୮
ସ୍ନାହାନ କରି ଆସିଣ ସେ ଭୁଞ୍ଜଇ ତୀର୍ଥବାସୀ
ସୂପଂକୁ ଅନ୍ନ ମେଞ୍ଜନ ସେ ଅତିଥିଂକ ପରଶି । ୧୦୯ ।

ବହୁତ ପୁଷ୍ପ କରି ଭୁଞ୍ଜାଇ ତୀର୍ଥବାସୀଜନ
ଆହାର ସମ୍ପୂର୍ଣ୍ଣେ ସେ ଯେ କରନ୍ତି ଆଶୋଚନ । ୧୧୦ ।
ଚଳନ୍ତି ପଥୁକ୍ମା ଯେ ଅନେକ ଚନ୍ତୁଂ ରନ୍ତି
ଥୋକାଏ ଦୂର ବାତାପି ଗୋଡ଼ାବଇ ଚନ୍ତୁଂ । ୧୧୧ ।
ଥୋକାଏ ଦୂର ଯାଇ ବାହୁଡ଼ଇ ପଥୁକ୍ମ କ କନ୍ତି
ଆସରେ ଆତାପି ବୋଲି ବାତାପି ଡାକ ଦେଇ । ୧୧୨ ।
ପେଟର ଭିତରେ ଯେ ପୁରୁଷେକ ଅବତରି
ଗର୍ଜିଣ ବାହାର ହୁଆଇ ସେ ପଞ୍ଜରା ବିଦାରି । ୧୧୩ ।
ଯେତେବେଳେ ପ ଥୁକ୍ମା ପଡ଼ଇ ଭୂମିଗତେ
ସେହି ମାଂସ ଆହାର କରନ୍ତି ବେନଭ୍ରାତେ । ୧୧୪ ।
କୋନ୍ତେ ବୋଇଲେ ହୋ ବରାଟ ରାଏ ଶୁଣ
ଯେହ୍ନମତେ କରି ସେ ଭକ୍ଷିଲେ ଅନେକ ବ୍ରାହ୍ମଣ । ୧୧୫ ।
ସତ୍ୟଯୁଗ ସତର ଲକ୍ଷ ଅଠାଇଶ ସହସ୍ର ବରଷ
ତୀର୍ଥବାସୀଜନଙ୍କୁ ସେ ଅନେକ କଲେ ନାଶ । ୧୧୬ ।
ତ୍ରେତୟା ଯୁଗରେ ସେ କରନ୍ତେ ଯେହ୍ନମତେ
ଆତାପି ବାତାପି ସେ ଦୁଇବ୍ରହ୍ମ ଯେ ହଇତେ । ୧୧୭ ।
ଅଦୋହାସ ନାମେଣ ସୂର୍ଯ୍ୟବଂଶେ ମହାରଥୀ
ସତାଶୋଇ ସହସ୍ର ଅଂକେ ସେନକ ବାରତା । ୧୧୮ ।
କାର୍ତ୍ତିକ କୃଷ୍ଣପକ୍ଷ ଦ୍ଵିତୀୟା ଚନ୍ଦ୍ରବାର
ରେବତୀ ନକ୍ଷତ୍ର ଯେ ଅଟଇ ସେ ଦିନର । ୧୧୯ ।
ଦଣ୍ଡ କମଣ୍ଡଳ ହୋଇ ଅଗସ୍ତି ମହର୍ଷି
ସେ ଦିନ ମହାମୁନି ପ୍ରୟାଗ ତୀର୍ଥକୁ ଆସି । ୧୨୦ ।
ସେହି ଆତାପି ବାତାପି ବେନଜନେ
ଅଗସ୍ତିଂକୁ ଛୁହାଇଲେ କରି ଆଚ୍ଛାଦନେ । ୧୨୧ ।

---

୧୧୦।୧ ବହୁତ ପୁରୁଷାର୍ଥ କରି ଭୁଞ୍ଜାଇ ଦ୍ଵିଜଜନ ।—କ, ଝ, ଢ, ଙ
୧୧୦।୧ ବହୁତ ପୁରୁଷାର୍ଥ କରି ଭୁଞ୍ଜାଇ ପଥିକଜନ ।—ଥ, ଚ, ଞ

ସେହିମନ୍ତ କରଣ ସେ ମାଇଲେ ମାୟାମୃଗ
ବାତାପି ଗାକ ସଞ୍ଚାକଲା ନେଇ ବେଗ । ୧୨୨ ।
ଅଗସ୍ତିଙ୍କ ପରଶିଲା ସେହି ମୃଗ ମାଂସ
ବଡାଇ ସୁସ୍ୱାଦୁ ବୋଲ ଅଗସ୍ତି କଲେ ସବଗ୍ରାସ ।୧୨୩ ।
ଭୋଜନେ ହୋଇଣ ସେ ଆଂଗ୍ଭେବନ କଲେ
ରାକ୍ଷକ ରହି ମୁନ ପାହାନ୍ତକ ଉଠିଗଲେ । ୧୨୪ ।
ବାତାପିକ କହିଣ ଚଳନ୍ତ ଅଗସ୍ତି
ପଛେଣ ଗୋଡାଇଲା ସେ ରାକ୍ଷସ ମନ୍ଦଜାତି । ୧୨୫ ।
ବାହୁଡ ପଣ୍ଡାସ୍ୱେ ହୋ ବାଲ ବୋଲନ୍ତ ଅଗସ୍ତି ବ୍ରହ୍ମବେତ୍ତା
ଆତାପି ଆସ ବୋଲ ଡାକଲା ବ୍ରହ୍ମହତ୍ୟା । ୧୨୬ ।
ଆହୋ ବବାଟ ସାତ ସମୋଦ୍ର ଯେବଣ ମୁନ କଲାକ ଗଣ୍ଡୁଷ
ଯାହାର ଉଦରେ ପଡି ସାଗର ଗଲା ଧ୍ୱଂସ । ୧୨୭ ।
ବ୍ରହ୍ମରାକ୍ଷସ ଆତାପି ମାଂସ ହାଦେ ଗଲା କ୍ଷୟେ
ବାତାପି ନ ପାଇଲା ତା ସୋଦରର କାୟେ । ୧୨୮ ।
ବାହୁଡଣ ବାତାପି ଅଗସ୍ତ୍ୟଙ୍କ ଚରଣେ ପଣଣାମି
କେବଣ ମହାତମା ତୁମ୍ଭେ ପୁରୁଷଙ୍କ ଉତ୍ତମି । ୧୨୯ ।
ଆମ୍ଭେ ବେନ ସହୋଦ୍ର ଅଟୁ ବ୍ରହ୍ମରାକ୍ଷସ
ଅମୋକ୍ଷ ହୋଇ ପଡଲୁ ଆସି ଗହନ ଘୋରବାସ । ୧୩୦ ।
ଅନେକ ହତ୍ୟାକଲୁ ସେ ଆହାର ନିମନ୍ତେ
ତୋର ଉଦରେ ପଡ ସେ ହୋଇଲା ଭସ୍ମଗତେ । ୧୩୧ ।
ତୁମ୍ଭେ କେଉଂ ମୁନ ମୁହିଂ ଜାଣି ନୁଆରଲ
ଅଜ୍ଞାନର ମତେ ମୋର ଭାଇକ ନାଶିଲ । ୧୩୨ ।
ଆରେ ଆରେ ବାତାପି ଆମ୍ଭେ ଅଗସ୍ତି ବ୍ରହ୍ମଦେବେ
କ୍ଷୀରୋଦ୍ର ଗଣ୍ଡୁଷ କଲୁ ହାଦେ ପୂର୍ବେ । ୧୩୩ ।
ବାତାପି ବୋଇଲା ମୁଂ ନସ୍ତରଲ ନସ୍ତରଲ ମୁନ ହେ
ମୋକ୍ଷକଇଂ କାରଣ ମୋତେ କହିବା ସନ୍ଦେହେ । ୧୩୪ ।
ଅଗସ୍ତ୍ୟ ବୋଇଲେ ତୁ ହୁଅସି ମୃଗାର
ଆହାରେ ଆମ୍ଭେ ତାହା ପାରୁ ଭସ୍ମକର । ୧୩୫ ।

ମୃଗେକ ହୋଇଲା ଯହୁଂ ବାତାପି ବ୍ରହ୍ମରାକ୍ଷସ
ପୋଡ଼ଣ ଅଗସ୍ତ ଯେ ଭକ୍ଷଲେ ତାର ମାଂସେ । ୧୩୬ ।
ଦୁହେଂ ପଶିଲେ ଯାଇଂ ଅଗସ୍ତିଂକ ଉଦର
କୋଷ୍ଠ ଅଗ୍ନିରେ ପଡ଼ି ଦୁହେଂ ଗଲେକ ପାର । ୧୩୭ ।
ଶୁଣସି ହୋ ବରାଟ ବଦନ୍ତି କୋଳ୍ର ଯେ ପଣ୍ଡାପେ
ଅଗସ୍ତିଂକର ସଞ୍ଚିଲା ଅଛି ଆମ୍ଭ ତହିଂ ମନ୍ତ୍ର ଯେ ଗୋଟିଏ । ୧୩୮ ।
ଆପଣେ ସେ କୋଳ୍ରେ ଶିଖାଇଲେ ବରାଟକୁ
ଯେଣେ ସେ ଆଧାରମାନ ସବୁ ହୋଏ ପଂକୁ । ୧୩୯ ।
ଅଗସ୍ତଂକ ମନ୍ତ୍ର ସେ ପାଇଣ ବରାଟେ
ଆଧାରେଣ ଜତା ସେ ହୋଇଲେ ସେ ମହାପୁଷ୍ଟେ । ୧୪୦ ।
ଆହେ ବୁଧଜନେ ଯେ ହୁଅଇ ଭୋଜନେ ଶକତା
ଅଗସ୍ତିଂକ ମନ୍ତ୍ରେ ଆହାର ଯାଇ ସେ ଭସ୍ମଭୂତା । ୧୪୧ ।
ସବୁନ୍ତହିଂ ପ୍ରାପତ ଯେ ନୋହଇ ମନ୍ତ୍ରଗୋଟି
ଅଗସ୍ତି-ସ୍ମରି ଭକ୍ଷଯାନ୍ତ୍ର ଛୁଇଂକ ନାଭିମଣ୍ଡଳେ ଅଙ୍ଗୁଷ୍ଠି । ୧୪୨ ।
ତେଣୁକରି ଭୋଜନ ଯାଇଟି ସର୍ବ ଜୀର୍ଣ୍ଣ
ବାରାନିଧି ଗଣ୍ଡୂଷ କଲେ ଯେହ୍ନ ମନ୍ତ୍ର ବିଧାନ । ୧୪୩ ।

---

୧୩୯।୨ "ଯେଣେ ସେ ଆଧାରମାନ ସବୁ ହୋଏ ପଂକୁ" ପାଦାନ୍ତ ପରେ 'ଛ' ପୋଥିରେ ଅଧିକ ପାଠ 'ମନ୍ତ୍ର ଅଛି' :—

ବାତାପି ଭକ୍ଷିତୋ ଯେନ ବାତାପି ଚ ମହାସୁର
ସମୁଦ୍ର ଶୋଷିତୋ ଯେନ ଅଗସ୍ତି ବଡ଼ବାନଳ ।
ଜୀର୍ଣ୍ଣମନ୍ତ୍ର:—ଓଁ ଅଗସ୍ତି ବଡ଼ବାନଳ ଭସ୍ମକୁରୁ ।
ଯାଅ ନଯାଅ ବୋଲି କାହାର ଗୁଣେ
ଅଗସ୍ତ ମହାଋଷିଂକର କୋଟି କୋଟି ଗୁଣେ ।
ଯେହ୍ନମନ୍ତ୍ର ପଢ଼ି ବାମ ହାଥେ ନାଭି ମଣ୍ଡଳ ଦଲେଛୁଇଂ
ତକ୍ଷଣ ଆତାପି ବାତାପି ଗଲେ ଭସ୍ମହୋଇ ।
ଅଗସ୍ତଂକର ବଚନ ଯେବଣ ମହାମନ୍ତ୍ର
ବରାଟଂକୁ ଶିଖାଇଲେ କୋଳ୍ରଭଞ୍ଜ ପଣ୍ଡିତ ।

ଜୟ ଜୟ ଅଗସ୍ତି ତୁ ପଣ୍ଡିତ ମହାଭାଗ୍ୟଂ
ଭୂତ ଭବିଷ୍ୟ ଗ୍ୟାଂତା ଅଟୁ ଯେ ସର୍ବଗ୍ୟଂ । ୧୪୪ ।
ଭୋଜନ ପୂର୍ବେ ଯେ ଯୋଗାଇ ସର୍ବବ୍ୟାଧି
ଅଗସ୍ତିଂକ ମନ୍ତ୍ରବଳେ ସମସ୍ତ ହୋଏ ଛେଦ । ୧୪୫ ।
ପିତାମହର ନନ୍ଦନ ସତ୍ୟଭାଗ୍ୟ ବାଲଖିଲ୍ୟା
ବହନ୍ତି ପୁରୁଷଂକ ତୁଲେ ଅହନିଶି ଯାହାର ମେଳା । ୧୪୬ ।
ଭୂତ ଭବିଷ୍ୟ ବ୍ରତମାନ ଯେତେଣ ମୁନିଂକ ଗ୍ୟାଂତା
ସମସ୍ତ ବେଦରେ ମହାମନ୍ତ୍ରେଣ ଅଟେ ସେ ଶକତା । ୧୪୭ ।
ଶକ୍ତ ଅଶକ୍ତ ନାହିଂ ଯାହାର ଦେହ ହେନ୍ତୁଂ
ବାନ୍ଧିତ ଖେଡରେ ସେ ବାରିନିଧି କଲୁ ଚନ୍ତୁ । ୧୪୮ ।
କୋଟିଏ ବ୍ରହ୍ମବେତ୍ତା ଶୁଦ୍ଧପଦରେ ଧାରଣା
କଳ୍ପ କଳ୍ପ ଆଷ୍ୟ ଯାହାର ନ ଯାଇ କଳଣା । ୧୪୯ ।
ଯେତେକ ଅବଲୋକନେ ଯାହାର ଚତୁର୍ଯୁଗ ଯାଇ ବହି
ଭବଗ୍ୟଂ ମହାତମା ପୁରାଣେ ନାମ ଯାର କହି । ୧୫୦ ।
ଧାତାକଇଂ ବୁଦ୍ଧିମନ୍ତ ଯେ ମାଗଇ ଯୋଗବଳେ
ସପତ ସମୋଦ୍ର ବଶ୍ରାମଇ ଯାହାର କମଣ୍ଡଳେ । ୧୫୧ ।
ସେ ମୁନି ଚରଣେ ଯେ ଶରଣ ପଣଣାମି
ଶୁଦ୍ରମୁନି ସାରୋଳା ଦାସ ଅଗସ୍ତିଂକ ସେବାଧର୍ମି । ୧୫୨ ।
। ୨୯୦୭ ।

---

୧୪୭। ୨ ଅଥର୍ବ ବେଦ ମହାମନ୍ତ୍ରେ ସେ ଶକତା । କ, ଖ, ଙ
୧୪୭। ୨ ଋଗବେଦେ ଷଡଶାସ୍ତ୍ର ଅନେକ ମନ୍ତ୍ରେଣ ମହାଶକତା ।—ଜ, ଛ, ଦ

## ବିରାଟ ରାଜ୍ୟରେ ଚନ୍ଦନଯାତ୍ରା ଉତ୍ସବ ପ୍ରବର୍ତ୍ତନ

ବଇବସ୍ୱତ ମନୁ ଯେ ପୁଚ୍ଛାକଲେ ଅଗସ୍ତି
ଅନ୍ନପୃଷ୍ଟେ ଶରୀର ଯେ ବଢ଼ ନା ମାରୁତି । ୧ ।
କ୍ୟାହିଁ ମାଲ ବଧକଲାକ ସମରେ
ଆବର୍ତ୍ତକ ଯୁଦ୍ଧ ହୋଇଲା ବିରାଟ ରାଜ୍ୟରେ । ୨ ।
ଶୁଣ ହୋ ବଇବସ୍ୱତ ମନୁ ବଦଯ୍ୱନ୍ତ ବ୍ରହ୍ମଋଷି
କୀଚକକୁ ବଧକଲା ଭୀମ ବିରାଟ ରାଜ୍ୟେ ପଶି । ୩ ।
ଶୁଣିଣ ଆଶ୍ଚର୍ଯ୍ୟ ହୋଇଲେ ବଇବସ୍ୱତ ମନୁ
ଶତେସିଂହର ପ୍ରାକର୍ମ ସଂକୋଚନର ତନୁ । ୪ ।
ସେକାସିଂହର ବଳ ଅଛଇ ଭୀମ
କେସନେକ କୀଚକକୁ ସେ ମାଗିଲା ସାଂଗ୍ରାମ । ୫ ।
କହାଇ ଦ୍ୱାପର ସେ ଶୁଣିବେ ମୋହୋର ଇଚ୍ଛା
ସମ୍ପ୍ରତି କହିବା ମୋତେ ପୂରେଇବା ମନୋବାଞ୍ଛା । ୬ ।
ଅଗସ୍ତି ବୋଇଲେ ପାଣ୍ଡବେ ରହିଲେ ବିରାଟେ ଗୁପତେ
ଅଗ୍ୟାଂତେ ପଶିଲେ ସେ ଧନୁମାସର ଅନ୍ତେ । ୭ ।
ବଇଶାଖ ପ୍ରବେଶେ ସେ ପଚାରିଲେ କୌନ୍ତେ
ବସନ୍ତ ଉଛବ.ବୋଲି ଆକାଶର ଯାତେ । ୮ ।
ମୃତ୍ତୁ ମଣ୍ଡଳରେ ଯେ ବସନ୍ତ ଉଛବ ଯାତ୍ରା
ଦ୍ୱାଶନେ ମୋକ୍ଷଗତି ସେ ରାଜ୍ୟକୁ ପବିତ୍ରା । ୯ ।

---

୧।୨ ଭୀମସେନ ଅନ୍ନଖାଇ ପୁଷ୍ଟ ହୋଇଲା ଅପ୍ରମିତ ।—ଟ, କ, ଡ

୩।୨ { ଶୁଣ ବଇବସ୍ୱତ ମନୁ ବଦଯ୍ୱନ୍ତ ଅଗସ୍ତ
କୀଚକ ବଧକଲା ପବନ ଆପତ ।—କ, ଣ

ଆହେ। ବିରାଟ ଯେବଣ ରାଜ୍ୟରେ ରଙ୍ଗସଭା ନାହିଁ
ଯାହା ଉଛବ ଯେବଣ ରାଜ୍ୟରେ ନ ଥାଇ । ୧୦ ।
ଯେବଣ ରାଜ୍ୟରେ ହୋ ନାହିଁ ଯାଗଯଜ୍ଞ
ନଚୟ ସେ ରାଜ୍ୟ ଜାଣ ଅସୁରେଣ-ଭୋଗ୍ୟ । ୧୧ ।
କୀଚକେ ବୋଇଲେ ଯେ ତୋହୋର ମହାରାଜ୍ୟେ
ବସନ୍ତ ଉଛବ ଯାହା ଅଛୁ କିକ ମହାରାଜେ । ୧୨ ।
ବିରାଟ ବୋଇଲା ଯାହା ପୁଛାକଲ କୀଚକେ
ମୁହିଁ ନ ଜାଣଇ ବସନ୍ତ ଉଛବ ଯାହାବିଧି ସେ କେମନ୍ତେ । ୧୩ ।
ମୁହିଁ ବନସ୍ତପତ୍ର କୁଜନ ଜନେ ସଙ୍ଗୀ
ଗୋପାଳ ବୃତ୍ତିହୁଁ ମୁହିଁ ନ ଜାଣଇ ଆନ ଭଙ୍ଗୀ । ୧୪ ।
ସୁଜନ ଜନ ସଙ୍ଗ ମୁଁ ପାଇଲି ଯେତେକାଳେ
ତୁମ୍ଭେ ଥାଇ ଯାହା ଆରୋପଣ କରି କଥା ରହୁ ଚିରକାଳେ । ୧୫ ।
କୀଚକେ ବୋଇଲେ ତୁମ୍ଭେ ଶୁଣସି ମହାରାଜ
ଲକ୍ଷେକ ମାତ୍ର ସୁବର୍ଣ୍ଣ ବୋଇବ ତୋର ବ୍ୟାଜ । ୧୬ ।
ବିରାଟ ବୋଇଲା କୀଚକର ବାକ୍ୟ ସରାଗୁଁ
ତୁହିଁକ କଛୁ ବିଗ୍ରହ ନ କର ବେନିଲକ୍ଷ ମାତ୍ର ଲାଗୁଁ । ୧୭ ।
ଭଣ୍ଡାର ନାୟେକ ରାଇ ଆଜ୍ଞାଂ ଅବଧାରି
କୀଚକକୁ ସମର୍ପି ମୋର ଲକ୍ଷେ ଭଣ୍ଡାର ଆଦିକରି । ୧୮ ।
ଭଣ୍ଡାର ଫେଇଦିଲା ସେ ବିରାଟର ବଚନେ
କୀଚକେ ବଜେକଲେ ଭଣ୍ଡାର ଆସ୍ଥାନେ । ୧୯ ।
ବିଶ୍ୱକର୍ମା କଣ୍ୟୁ ଘଟଣା ବିନ୍ଧାଣି
ଅଷ୍ଟଚୁଡେକ ମାତ୍ରଇନ୍ଦ୍ର ଚାହା ଘୁମୁରେ ଦିଲେ ଆଣି । ୨୦ ।

---

୧୪।୨ ଗୋପାଳ ବୃତ୍ତି ମୋହୋର ମୁଁ ନ ଜାଣଇ ଆନଭଙ୍ଗୀ ।— ଝ, ଞ, ପ, କ

୧୬।୨ ବ୍ୟାଜ — ସୁଧ ।

୧୬।୨ ଲକ୍ଷେମାତ୍ର ସୁବର୍ଣ୍ଣ ତୋର ହୋଇବାକ ବ୍ୟାଜ ।— କ, ଣ, ଥ, ଟ, ଛ

୧୭।୨ ତୁହିଁକ କଛୁ ବିଗ୍ରହ ନ କର ମୋର ଯେତେ ଧନ ଲାଗୁ ।— ଥ, ଞ, କ

୧୯।୨ କୀଚକେ ବଜେକଲେ ଭଣ୍ଡାର ସନ୍ନିଧାନେ ।— ଝ, ଜ, ଥ

ଆହେ ବିଶ୍ୱକର୍ମା ଆଜ୍ଞାଦେଣ୍ଡ ଯେ ହୋଇବ ପଂକଜ
ଶଙ୍ଖଚକ୍ର ଗଦା ଯେ ଶାରଙ୍ଗ ଚତୁର୍ଭୁଜ ।୨୧।
ଅମୂଲ୍ୟ ରତ୍ନମଣି ମୁକୁଟ ଯେ ହୋଇବ ଲଲାଟେ
ଚକ୍ରଧର ଦେବତା ବନ୍ଦନ କର ଘଟେ ।୨୨।
ଲାଗିଲେ ବିଶ୍ୱକର୍ମା ବଦ୍ଧୁତ ବିଜ୍ଞାଣି
ଶ୍ରୀ ନାରାୟଣ ଦେବତା ବନ୍ଦନ କରିବାଣି ।୨୩।
ପୁଣି ପାଞ୍ଚ ଅନ୍ଧବ୍ରତକ ମାତ୍ର ଫଲେକ ରତନ
ଶୁଦ୍ଧ ସୁବର୍ଣ୍ଣରେ ଯେ ନବାଣ ବିମାନ ।୨୪।
ଅନ୍ଧବ୍ରତେକ ମାତ୍ର ସୁବର୍ଣ୍ଣ ଉଦ୍ଧଣ୍ଡ ଆଲମ୍ବ ପାଞ୍ଚଲକ୍ଷୀ
ଉଚ୍ଚବ ନଗର ଯେ ନଦୀଷ୍ଠରେ ତାହା ରଖି ।୨୫।
ବହଇ ଉତ୍ତରବାହିନୀ ନଦୀ କୃଷ୍ଣବେଣୀ
ତାହାଂର ତଟରେ ଉଚ୍ଚବ ନଗର କରିବାଣି ।୨୬।
ଅନ୍ଧବ୍ରତେକ ନାବ ରତ୍ନେଣ ଘଟଣ କର
ଫଳନ୍ତ କଦଳୀ ଆମ୍ବ ନଟିକାଳ ବୃକ୍ଷନ୍ତ ନେଇ
ଆରୋପଣ କର ।୨୭।
ନାବର ଭିତରେ ରତ୍ନ ନବାଣ ଜଗତି
ଯେସନେକେ ସାରିକ୍ଷ ଭୁବନ ବାରସ୍ୱର୍ଗି ।୨୮।
ରତ୍ନର କାନଫୁଲ ରତ୍ନବଳା କଂକଣ ନଯୋଗୀ
ଦିବାରାତ୍ରେ ଅବକାଶ ନାହିଂ ଲାଗିଲେ ବେଗି ବେଗି ।୨୯।
ଜଳନ୍ତ ଦଧୁତ ଲକ୍ଷେକ ବିଜ୍ଞାଣିଂକ ଆଗେ
ଗଢନ୍ତ ରୂପକାରେ ଲାଗିଛନ୍ତି ଅତି ବେଗେ ।୩୦।
ଆତୁର ଦେଖି ବିରାଟର ବଢାଇ ଶରଧା
ରାତ୍ର ଦିବସେ ଦେଖି ଉପେକ୍ଷା କଲ ନିଦ୍ରା କ୍ଷୁଧା ।୩୧।
ସମରାଜ୍ୟ ଲୋକେ ସମ୍ପୁରେ ଦେଖନ୍ତି
ଆହାର ନିଦ୍ରା ମଇଥୁନ ତିନିହିଂ ଉପେକ୍ଷନ୍ତି ।୩୨।

---

୨୮।୧ ନବାଣ—ନିର୍ମାଣ ।
୨୯।୨ ଦିବାରାତ୍ରେ ବିଶ୍ରାମ ନାହିଂ ଲାଗିଲେ ବେଗି ବେଗି ।—ଜ, ଝ

ସ୍ୱେକୋଇଣ ଦିନେ ନିର୍ବାଣ ସର୍ବ କର୍ମ
ବିରାଟ ବୋଇଲା କୋନ୍ତେ ପ୍ରତକ୍ଷେ ତୁମ୍ଭେ ଧର୍ମ । ୩୩ ।
କୋନ୍ତେ ବୋଇଲେ ବିରାଟ ସ୍ୱେ କଥା ଅଟଇ ଯୁଗତ
ଧର୍ମଦାସ ପଣ୍ଡାଂକର ଅଟୁ ଆମ୍ଭେ ସୁତ । ୩୪ ।
ସମସ୍ତ ଯୁଗେ ଆମ୍ଭେ ଠାକୁରଂକ ବରଗି
ସର୍ବ ସୁବିଧାନେ ଆମ୍ଭେ ଅଟୁ ପରମଯୋଗୀ । ୩୫ ।
ସମରଜ୍ୟ ଲୋକେ ଯେ ଅଛନ୍ତି ସୁବେଶ
ମଣ୍ଡନ୍ତି ନଗ୍ରପୁର ଭୁବନ ଚଉପାଶ । ୩୬ ।
ବଇଶାଖ ଶୁକଳପକ୍ଷ ତୃତୀୟା ଚନ୍ଦ୍ରବାର
ରୋହିଣୀ ନକ୍ଷତ୍ରକୁ ଭୋଗ୍ୟ ସେ ଦିନର । ୩୭ ।
ବାଣିଜ୍ୟ ନାମେ କରଣ ସୁକର୍ମ ନାମେ ଯୋଗ
ବସନ୍ତ ଉଚ୍ଛବ ଯାତ୍ରା ବିଧାନ ଆରମ୍ଭ । ୩୮ ।
ଦିବ୍ୟ ବିମାନେ ଶ୍ରୀ ଚକ୍ରଧର ସ୍ୱାମୀ କରାଇଲେ ବିଜେ
ଭାରତ୍ରୂର ଟମକ ନିଶାଣ ଢୋଲ ବାଜେ । ୩୯ ।
ଭେରି ମୃଦଙ୍ଗ ବିମାଲୁ ମର୍ଦ୍ଦଳ ଭାରବାଦ୍ୟ
ବିଜଘୋଷ କାହାଳୀ ମହୁରି ଶଙ୍ଖନାଦ । ୪୦ ।

---

୩୫।୧ ସକଳ କାଳେ ଆମ୍ଭେ ଠାକୁରପଣେ ଭୋଗୀ ।—ଅ,, ଓ, ଗ
୩୫।୨ ସର୍ବ ସୁବିଧାନେ ଆମ୍ଭେ ଅଟୁ ପରମଯୋଗୀ ପାଦାନ୍ତ ପରେ ।—
'ଓ, ଣ, ଗ, ଅ' ପୋଥିରେ ଅଧିକ ପାଠ :—
ବିରାଟ ବୋଇଲା ତୁମ୍ଭେ ଠାକୁର ଯେବେ ଅଟ
ମୋହୋର ରାଜ୍ୟେ କର୍ମେ ବୋଲାଅ କୁନ୍ତଭଟ ।
କୋନ୍ତେ ବୋଇଲେ ହୋ ମହାରାଜା ମହାପ୍ରଭୁ
ତୁମ୍ଭର ରାଜ୍ୟରେ ଆମ୍ଭେ ଠାକୁର ବୋଲାଇବୁ କାହୁଂ ।
ବସନ୍ତ ଉଚ୍ଛବ ଯାତ୍ରାର ବିଧାନେ
କୋନ୍ତେ ସିଂଜନା କଲେକ ସାଜେକ ବସନେ ।
ଫଳନ୍ତ ବୃକ୍ଷନ୍ତ ସେ ନାବରେ ନେଇ ରୋପି
ରୂପନ୍ତ ପରେ ନେଇ କଣ୍ଟୁ ନରୋପି ।

ଚାଳ ପତ୍ର ପଡ଼ପଡ଼ି ବାଜଇ ପଖାଉଜ
ଗୃଲୁଥାନ୍ତି ଫଉକାରେ କେତେ ହୋଇ ସଜ । ୪୧ ।
ଡାକ କୁଣ୍ଡଳୀ ଯେ ଅଧାଚ୍ଛି ସାଣାଯନ୍ତ୍ର
ଅନେକ ପସରୀ ବକ୍ରେ ଦାଣ୍ଡହାଟ ସମସ୍ତ । ୪୨ ।
ଅନେକ ପସରୀ ସଜାଡଣ ଦାଣ୍ଡେ ଚଳିଯାନ୍ତେ
ବହୁତ ଜନଗହଳ ହୋଇଲାକ ପଛେ । ୪୩ ।
କୃଷ୍ଣବେଣୀ ନଗ୍ରାଞ୍ଚରେ ଉତ୍ସବ ନବର
ଚଳ୍ପି ନେଇ ବିଜେ କରାଇଲେ ଦେବ ଦାମୋଦର । ୪୪ ।
ହାଥୀ ବଣ୍ଡ ରଥ ଅଶ୍ୱ ବଡ଼ାଇ ଗହଳ
ଆଚ୍ଛାଦ୍ୟ ଅଦୃଶ୍ୟ ହୋଇଲେ ଉଡ଼ନ୍ତେ ପାଟଛତ୍ର ମାଳ । ୪୫ ।
ଉଡ଼ଇ ଗଗନେ ଯେ ପଦରଜ ଧୂଳୀ
ଆକାଶେ ଅଦୃଶ୍ୟ ଯେ ହୋଇଲେ ଅଂଶୁମାଳୀ । ୪୬ ।
ନଗ୍ରାନ୍ତରେ ଯାଇଣ ଆରମ୍ଭିଲେ ଥାଠ
କୁନ୍ତକଇଂ ବହୁତ ପ୍ରଶଂସା ଯେ କରଇ ବିରାଟ । ୪୭ ।
କୋନ୍ତେ ବଂଶେ ବଂଶେ ମୋର ଅନେକ ପୁରୁଷ ଗଲ
ଯେତେକ ସମ୍ପଦ ଯାହା ମୋର ନାହିଂ ନ ଦେଖିଲି । ୪୮ ।
କୋନ୍ତେ ବୋଇଲେ ବିରାଟେ ଅନେକ ପୁଣ୍ୟ କରିଥିଲେ
ବହୁତ ପୁଣ୍ୟ ଉପୁଜଇ ଧର୍ମ ଉଦିତ ହୋଇଲେ । ୪୯ ।
ବିଜୟେ ପ୍ରତିମା ନେଇ ବସାଇଲେ ନାବେ
ସମସ୍ତ ସମ୍ପଦ ଘେନି ବିଜୟେ ରାଜଦେବେ । ୫୦ ।

---

୫୦।୨ ସମସ୍ତ ସମ୍ପଦ ଘେନି ବିଜୟେ ରାଜଦେବେ ।
ପାଦାନ୍ତ ପରେ 'ଖ, ଠ, ଫ' ପୋଥିରେ ଅଧିକ ପାଠ :—
ଦାରଭୁର୍ ଟମକ ଯେ ନିଶାଣ ଘୋଷଇ
ଉଦଣ୍ଡ ପାଟଛତ୍ର ଯେ ଶୋ ପ୍ରକାଶଇ ।
ଶ୍ୱେତ ଚ୍ୟାମର ଯେ ଢାଳନ୍ତି ଚଉପାଶେ
କର୍ପୂର ଗୁଣ୍ଡି ଆମୋଦ ଉଠଇ ଆକାଶେ ।

ଅନେକ ସମୂହରେ ସେ କାଞ୍ଚେକ ସେନାପତି
ନାଉକା ବମାନେ ବସି ଜଳକ୍ରୀଡ଼ା କରନ୍ତି । ୫୧ ।
ପବନରୁଂ ବେଗେ ନାବ ବାହାନ୍ତି କୁତୂହୋଳେ
ମାରୁଛନ୍ତି ପିଚକା ପନର ଗାରଜଳେ । ୫୨ ।
କରନ୍ତି ନୃତ୍ୟଗୀତ ଯେ ଗଣିକାଗଣମାନେ
ବଜପ୍ୟେ ମଚ୍ଛେଶ୍ଵର ଯେ ନାଉକା ବମାନେ । ୫୩ ।
ବରାଟ ପୁଚ୍ଛାକଲ ଶୁଣିମା ଠାକୁର ଦେବକୋନ୍ତେ
ମହାଦେଈମାନେ ବଜେ କରିବେ କ ଯାତ୍ରା ଦେଖିବା ନିମନ୍ତେ । ୫୪ ।
କୋନ୍ତେ ବୋଇଲେ ହୋ ବଭ୍ରମଙ୍ଗଳ ଉତ୍ସବେ
ଯାତ୍ରା ସ୍ଥାନକୁ କଂପେ ନ ଆସିବେ ସ୍ୱେବେ । ୫୫ ।
ଶୁଣିଣ ବରାଟେଶ୍ଵର ମୃଦୁସ୍ୱଳ୍ପ ହକାର
ଉତ୍ସବ ନବରକୁ ରାଣୀ ଆସନ୍ତୁ ବଜେକର । ୫୬ ।
ରାଜାରଂ ବଚନେ ସେ ଚତୁର ସିହାଣୀ
ଧାଇଂଯାଇ କହିଲେ ଯାତ୍ରାକୁ ବଜେ କରବା ଠାକୁରାଣୀ । ୫୭ ।
ଶୁଣିଣ ମହାଦେଈ ଯେ ସଇରନ୍ଧ୍ରୀକି ହକାର
ଆସ ଆସ ମାପ୍ୟେ ଗୋ ଯିବା ଯାତ୍ରା ଦେଖିକର । ୫୮ ।
ସଇରନ୍ଧ୍ରୀ ବସ୍ତ୍ରରନ୍ତି ମୁଂ ଯିବ ସ୍ୱେହାଂକର ଭୁଲେ
ଦେଖିବ ସ୍ୱାମୀଂକ ମୋର ଅଛନ୍ତି କନା ଭଲେ । ୫୯ ।
ମହାଦେଈଂକର ବାକ୍ୟେ ଅନେକ ଶ୍ରୀଗକର
ଶ୍ରୀକୃଷ୍ଣାଂକ ଭୁଲେ ସଜ ହୋଇଲେ ସଇନ୍ଧ୍ରୀର । ୬୦ ।

---

୫୧।୨ ମାରନ୍ତି ପିଚକା ହନ ରସ ଜଳେ ।—ଛ, ଜ

୫୫।୨ ଯାତ୍ରାଥାନକୁ କ ବରୋଧ ଅଛୁ ପୁଣ ସ୍ୱେବେ ।—ଙ, ଣ

୫୪।୨ { କୋନ୍ତେ ବୋଇଲେ ଯାତ୍ରା ଉତ୍ସବ ମଙ୍ଗଳେ
ଯାତ୍ରାଠାକୁ ଅସିବାକୁ ଯୋଗାଇ ସକଳେ ।—ଦ, ଜ

 

କନେକର ହାଣ୍ଡେଲରେ ବଜେକଲେ ପାଟରାଣୀ
ପାଣେଣ ବସାଇଛନ୍ତି ପାଣ୍ଡବ ଘରଣୀ । ୬୧ ।
ଆଗ ପଛ ଓଗାଳ ମହାଦେଈଙ୍କର ପାନ୍ତେ
ଅନେକ ପାଟଛତ୍ର ଉଡନ୍ତି ଗଗନ ପଥଗତେ । ୬୨ ।
ବାଜଇ ବଜଘୋଷ ମର୍ଦ୍ଦଳ କଂସାଳ କାହାଳୀ
କଉତୁକେ ବହଉନ୍ତି ତୁଳେଣ ସବବାଳୀ । ୬୩ ।
ନଗର ଖରେ ଯାଇଂ ବିଜୟେ ମହାଦେଈ
ସନ୍ନିଧେ ସଇରନ୍ଧ୍ରୀ ଅଛନ୍ତି ଉଭାହୋଇ । ୬୪ ।

। ୨୯୬୧ ।

---

୬୧।୨ ପଛରେ ଗୋଡାଇଛନ୍ତି ଖଗ୍ର ନବାରଣୀ ।—ଫ, ଛ, ଟ, ଢ, ଦ

୬୪।୨ ସନଧେ ସଇରନ୍ଧ୍ରୀ ଅଛନ୍ତି ଗୋଡାଇ ।—
କ, ଣ, ଟ, ଢ, ଝ, ଗ ଜ, ଫ

## ସୈରନ୍ଧ୍ରୀ ଦର୍ଶନେ କୀଚକର ଦୂତ ପ୍ରେରଣ

ଯାହାକଇଂ ଉଦବେଗ ଗମନ୍ତେ କନ୍ଦର୍ପସେନୀ
ସର୍ବଜନ ରଞ୍ଜନୀ ମନ୍ଥର ଗମନୀ । ୧ ।
ସମସ୍ତ ଅବଲୋକନ ସଇରନ୍ଧ୍ରୀକି ଦେଇ ଆଖି
ନାହେଁଣ ଥାଇ କୀଚକ ସେ ଗୃହାଂଇ ନିରେଖି । ୨ ।
ଦଇବେ ଆବଚ୍ୟ ଅସ୍ତ୍ର ପ୍ରବେଶ ହେଲା ନିଶି
ହିତୁକ କଣ୍ଠରେ ସଇରନ୍ଧ୍ରୀର ତେଜ ସେ ବିକାଶି । ୩ ।
କୀଚକ ପଚ୍ଚରଇ ରାଇଣ ମୃଦୁସ୍ୱନି
ଆଲୋ ବଡ଼ାଇ ଉପାଧି ଯେତ ଅନ୍ତେଶ୍ୱର ପୁରେ ଦେଖିଲି । ୪ ।
ରାଣୀଂକ କଣ୍ଠରେ ଯେ ହୋଇଅଛି ଉଭା
କୋଟିଏ ଗୁଣେ ଶ୍ରୀକୃଷ୍ଣାହୁଂ ଦଶଇ ଅତି ଶୋଭା । ୫ ।
କେବଣ ରାଜା ବିରାଟକୁ ଅବା ଦଳ ବନ୍ଦୀ
ମୋତେ ନ କହ ବିରାଟ କେମନ୍ତେ ସମ୍ବାଦ । ୬ ।
ଆଲୋ ତଦନ୍ତ କଟି ତାହା ପଚ୍ଚରଆସ ଜାଣି
କେବଣ ରାଜାର ସେ ଅଟଇ ଦୁଲଣୀ । ୭ ।
କୀଚକର ବଚନେ ସେ ଚଳିଲେ ମୃଦୁସ୍ୱନି
ଶ୍ରୀକୃଷ୍ଣାଂକ ସନ୍ନିଧେ ଯାଇ ହୋଇଲେ ପୋଇଲି । ୮ ।
ଅନ୍ତେଶ୍ୱର ପୁରେ ମୃଦୁସ୍ୱନୀକ ପଚ୍ଚର
ଆଗୋ କେବଣ ରାଜାର ଯେ ଅଟଇ କୁମାରୀ । ୯ ।
ଦାସୀଂକର ଅଗ୍ରତେ କହିଲେ ମୃଦୁସ୍ୱନୀ
କମ୍ପୂତ ମାୟା ଯେହା ଜାଣିତ ନୁଆରଲ । ୧୦ ।

୧। ୨ ସର୍ବଜନ ମୋହନୀ ସେ ତ୍ରିଜଗତ ମୋହନୀ ।—ବହୁ ପୋଥି ପାଠ

କେବଣ ଦେଶରୁ ଯେ ଅଇଲ୍ଲ ଅଦଭୁତେ
ତାହାର ପଞ୍ଚଭ୍ରୁଆ ନାହିଂ ଛଡ଼ମାସ ପଶ୍ଚାତେ । ୧୧ ।
କୁଳମୂଳ ନାହିଂ ଯେହାର ଯେ ଅଟଇ ଦେଶାନ୍ତରୀ
ଠାକୁରାଣୀଂକ ଅଲେଖ ଲେଖ କରଇ ନାମ ଯେହାର ସଇନ୍ଧ୍ରୀ । ୧୨ ।
ଯେମନ୍ତ ଶୁଣିଣ ସେ ଗଲେ ଦାସୀଗଣମାନେ
ବାରତା କହିଲେ ଯାଇଂ କୀଚକ ସନ୍ନିଧାନେ । ୧୩ ।
ସ୍ୱାମୀ କେବଣ ଦେଶର ସେ ଅଟଇ ଦେଶାନ୍ତରୀ
ପିତା ମାତା ଭ୍ରୁଆ କେହି ନାହିଂ ଯେ ତାହାରି । ୧୪ ।
ପଞ୍ଚଭ୍ରୁଆ ନାହିଂ ତାର ସନ୍ନିଧେ ଖଟି ସେବା
ଅଲେଖ ଲେଖ କରଇ ମହାଦେଈଂକର ବାନ୍ଧବା । ୧୫ ।
ଶୁଣିଣ କୀଚକ ଯେ ମଦନେ ବିରହିତା
ନାନାବିଧ ରସମାନ କଲ୍ଲକ ବିଷପିତା । ୧୬ ।
କରୁଣା ନାଟେଣ ଯେ କୀଚକର ମୂଦୁସୂଳି
ଅନେକ ଅଳଂକାର ଦେଇ ବିଶ୍ୱାସ କଥା ବୋଲି । ୧୭ ।
ଲଲାଟ ବନ୍ଧମା ଯେ ଶିରେ ସୀମନ୍ତିମା
ମୁକୁତା ଜାଲ ହରିଆଳୀ ରେଖ ଘେନ । ୧୮ ।
ଲଲାଟ ପାଟିକ ଯେ କର୍ଣ୍ଣାଞ୍ଚଳ ଶୋଭା
ହୃଦୟେ ଭୂଷଣ ଯେ କଣ୍ଠେ ସୁରଙ୍ଗ ପ୍ରଭା । ୧୯ ।
ବଳୟା ଗୁପସରି ଦଶ ଅବତାର ମାଳା
ସୁବର୍ଣ୍ଣର ବେନଚୂଡ଼ୀ କଟିକ ମେଖଳା । ୨୦ ।
ବିଦମ୍ବୁଦ କଂକଣ ଅଷ୍ଟରତ୍ନ ପାଣିଦ୍ରବ୍ୟ
ରୁଣୁଝୁଣିତ ନେପୂର ବେନି ଚରଣେ ଆରମ୍ଭ । ୨୧ ।
ଦାସୀନେତ ସିନ୍ଧୁଆ ଝୀନ ଯେ ପଚମୀ
ଦାସୀନ୍ତ ଭିଆଇଇ ୱାର ଯେମାନନ୍ତ କରେ ଘେନ । ୨୨ ।

---

୧୮।୨ ମୁକୁତାର ଜାଲ ଯେ କସ୍ତୁରୀ ରେଖା ଘେନ ।—ଛ, ଦ
୨୧।୧ ବିଦମ୍ବୁଦ ବୋହୁଟି କଂକଣ ପାଣିଦ୍ରବ୍ୟ ।—ଠ, ଣ

ଯେତେମାନଙ୍କ ସେନଙ୍କର ପିତୃ ସେ ଯେତେକ୍ଷଣି
ସଇରନ୍ଧ୍ରୀକି ନେଇ ସମସ୍ତ କର ଆଭରଣି । ୨୩ ।
କଣସ୍ତୁ ହାନ୍ଦୋଳାରେ ବଳପ୍ରେ କରାଇ
ମୋହୋର ଭୁବନକୁ ନଅ ସମସ୍ତ କଥା କହି । ୨୪ ।
କାଞ୍ଚନ ବୋଇଲା ମୋହୋର ଶତେକ ଘରଣୀ
ସବୁଂକର ଉପରେ ସେ ହୋଇବ ଠାକୁରାଣୀ । ୨୫ ।
ମୁହିଂ ତାହାର ଭୃତ୍ୟର ଭୃତ୍ୟ ଦାସର ଯେ ଦାସ
ଦ୍ରଶନ ମାତ୍ରକେ ମୋର ଲାଗ ଲା ମୁହାଂସ । ୨୬ ।
ମଚ୍ଛଦେଶେ ମହଦେଶେ ହୋଇବ କାରେଣୀ
ବିରାଟ ରାଜ୍ୟରେ ସେ ହୋଇବ ଠାକୁରାଣୀ । ୨୭ ।
ମୁହିଂ ଅଲଂଘିତ ହୋଇଥିବ ତାହାର ବଚନୁ
ମୁଂହି ମହାଛତ୍ରୀ ସଇରନ୍ଧ୍ରୀ ମୋହୋର ବନିତ ଯେନୁ । ୨୮ ।
ମୁହିଂ ମହାଛତ୍ରୀ ସାଂଗ୍ରାମେ ଜଗୁଜତା
ସଇରନ୍ଧ୍ରୀ ନୟନ ବାଣେ ମୋହୋର ଶରୀର ଅଶକତା । ୨୯ ।
ଦେଖିଣ ଜାଣିଲଇ ସେ ମହତ ସାଧବୀ
ଶରଣ ରକ୍ଷଣ ଯେ ଭଗତଜନ ଭାବି । ୩୦ ।
ମୁଂହି ତାହାରେ ଶରଣ ସେ ରକ୍ଷା ମୋତେ କରୁ
ମନ୍ମଥ ପଞ୍ଚବାଣରୁ ସେ ମୋତେ କେଳେକ ଉଦ୍ଧରୁ । ୩୧ ।
ସର୍ବମଙ୍ଗଳା ସୁମରି କର ଲେ ଗବନ
ଯେତେବାଟେ ପୁରକୁ ମୋହୋର ଆଣଲେ ବହନ । ୩୨ ।
ଅନେକ ଧନରତ୍ନ କାଞ୍ଚନ ଦଲା ଯୋଇଲାକ
ଆଣଲେ କଣସ୍ତୁ ସାହାନ କରାଇବ ଭେଟାଇଲେ ସଇରନ୍ଧ୍ରୀକି । ୩୩ ।

---

୨୫।୨ ସବୁର ଉପରେ ମୋହୋର ହୋଇବ ଶିରପଣି ।—ଚ, ପ, ଡ

୩୧।୨ ମନ୍ମଥ ଶରଘାତୁଂ ଉଦ୍ଧର ମୋତେ ଧରୁ ।—
ଙ ଦ, ଣ, କ, ଛ, ଘ, ଅ

ଅନେକ ଉଷଛେଣ ଯହୁଂ ଗଲେକ ଚକ୍ଷୁଶ
ଉଚ୍ଛବ ନବରୁ ଯାଇ ପଶିଲେ ଅନ୍ତପୁଶ । ୩୪ ।
ସଇରନ୍ଧ୍ରୀକି ହକରାଇଲେ ଯେତେକାନ୍ତ ଠାବକର
ବସ ବସ ମହାମ୍ଭାଣୀ ଗୋ ଦୁଃଖ ଅପହର । ୩୫ ।
ଯେତେକା ଜଣକେ ମାଗୋ ହୋଇଲୁ ଲକ୍ଷପୋଷୀ
ଯେ ମଚ୍ଛଦେଶ ମଦ୍ରଦେଶ ସୂକ୍ଷେଣ ହାଦେ ଭୋଗକର ଆସି । ୩୬ ।
ମାଗୋ ସ୍ତ୍ରିୟଂକର ଛନ୍ନଦଶା ଯେ ଷଣକେ ଲେଉଟଇ
ଆଜହୁଂ ମହାମ୍ଭାଣୀ ଗୋ ତୋର ଫିଟିଲ୍ କଷ୍ଟଇ । ୩୭ ।
ସ୍ତ୍ରିଶଜନ୍ମ ମଧ୍ୟେ ଗୋ ଜୀବନ ତୋର ସାଧୁ
ସଂକୋଚନ ରାଜାର ତୁ ହୋଇବୁ କୁଳବଧୂ । ୩୮ ।
ପୂର୍ବ ଜନ୍ମରେ ଗୋ ଅର୍ଜିଥିଲୁ ସୁଫଳ
ଯେତେବେ ଆସି ତୋହୋର ଗୋ ହୋଇଲା ଭାଗ୍ୟକାଳ । ୩୯ ।
ଦାସୀପଣେ ସେବାକର ପାଉଥିଲୁ ଦୁଃଖ
ରାଜ୍ୟର କାରେଣୀ ହୋଇ ପାଇବୁ ଭୁଞ୍ଜ ସୁଖ । ୪୦ ।
ଶୁଣି ଦ୍ରୋପଦୀର ଯେ ଉଡଲାକ ଦେହୀ
ବଢ଼ିଲା ପ୍ରମାଦ ଚନ୍ଦ୍ରଲା ଆଣି ମୋତେ ବନ୍ଧି । ୪୧ ।
ରାଜ୍ୟଭାର ତେଜ କଲୁ କନ୍ଦମୂଳ ଗ୍ରାସ
ଭୃତ୍ୟପଣେ ଖଟାଇଲୁ ଜୀବନେ ପ୍ରତିଆଶ । ୪୨ ।
ଯେତେଥିରେ ପ୍ରମାଦ ଧାତା କରୁଅଛୁ କଷ୍ଟି
ହୃଦଗତେ ସୁମରିଲେ ଶ୍ରୀ ନାରାୟଣ ନାମଗୋଟି । ୪୩ ।
ସଇରନ୍ଧ୍ରୀ ବୋଇଲେ ତୁ କ ହୋଇଲୁ ବାଣ୍ଡ
ପୂର୍ବେଣ ଯାହା ଅର୍ଜି ଯେତେବେ ସେ ତାହା ପାଇ । ୪୪ ।
ହୋଇ ହୋଇ ମହାମ୍ଭାଣୀ ଗୋ ପୂର୍ବର ତପ
କୀଚକର ଦ୍ରଶନେ ଗୋ ଖଣ୍ଡିବୁ ତୋହୋର ପର୍ବ ପାପ । ୪୫ ।

---

୩୭।୧ ଅଭାଗ୍ୟ ଦଶାରୁ ଉରୁଇଲେ ପାଇବୁଟି ଭାରଣଇ ।—ଦ,ଛ
୪୪।୨ ପୂର୍ବେ ସେ ଯାହା ଦାହ୍ଵ ଯେତେବେ ସେ ତାହା ପାଇ ।—କ,·ଘ

ବସନ୍ତ ଉତ୍ସବ ଯାହା ଭିଆଇଲେ କୋନ୍ତ ଯେ ପଣ୍ଡାପ୍ତେ
ତୋହୋର ସୁକର୍ମ ଗୋ ହାଥରେ ବରଦାପ୍ତେ । ୪୬ ।
ମାଗୋ ସଂକୋଚନ ରାଜାର କୁଳେ ଉତପତ୍ତି
ଜ୍ୟୋତିପୁର ନଗ୍ରର ଅଟଇ ଚକ୍ରବ୍ରତ୍ତି । ୪୭ ।
ତିଗର୍ତ୍ତି କରାତ କାଳନଜମି ଡର୍ପଭଞ୍ଜା
ସୁରବର ସୁନ୍ଦର ସେ ମସ୍ତାଣ ଦର୍ପଗଞ୍ଜା । ୪୮ ।
ମା ଗୋ ମଘଦେଶ ମଚ୍ଛଦେଶର ସେ ଆଧିପତ
ଶତେସିଂଘର ପ୍ରାକର୍ମ ପୃଥୀକ ପ୍ରେକଛନ୍ତୀ । ୪୯ ।
ମାଗୋ ବରାଟ ନରମାଖୀ ଅଟଇ ଜନ୍ମକାଳେ
ପ୍ତେ ଦୁଇଦେଶ ଭୋଗ୍ୟ କରଇ ସେ ଙ୍କାଙ୍କେକ ବାହୁବଳେ । ୫୦ ।
ଆବର ମହିମାଂ ଦେଖ ସହୋଦ୍ର ଶତେଭ୍ରାଥ
ସମରେ ଜିଣିପାରନ୍ତି ସେ ତିନ ଯେ ଜଗତ । ୫୧ ।
ମାଗୋ ଶ୍ରୀକୃଷ୍ଣାଂକ ସନ୍ନିଧେ ତୋହୋର ରୁପ ଦେଖି
କେବଣ ଭାବେ ଭଜନ୍ତି ତୁମ୍ଭକଇଂ ତାହାର ପାପ ଆଖି । ୫୨ ।
ଆମ୍ଭନ୍ତ ରାଇ ବରଗିଲ୍ଲ ହୋଇଲ୍ଲ ବହୁତ ଅର୍ଭ୍ୟର୍ଥୀ
ଆଜହୁଂ ଖଣ୍ଡଣ ଗଲ୍ଲ ଗୋ ତୋହୋର ଦୁର୍ଗତି । ୫୩ ।
ମାଗୋ ସୁଷ୍ଟ ଶରୀ ପ୍ରାପତ ଅଦଭୁତେ ନ ଗଞ୍ଜ
ଙ୍କାଙ୍କେକର ପ୍ରସାଦେ ଗୋ ଅନେକ ଭୋଗ ଭୁଞ୍ଜ । ୫୪ ।
ପ୍ତେ ଅଳଂକାରମାନ ଗୋ କର ଆଭରଣି
ଙ୍କାଙ୍କେକର ଭବନକୁ ଗୋ ଚ଼ଲ ଯିବା ପ୍ତେହିଷଣୀ । ୫୫ ।
ଅନେକ ଚ଼ାଟୁ ବଚନେ କହିଲ୍ଲ ଯହୁଂ କଥା
ଶରୀର କମ୍ପାଇ ଦେଶୀ ରାଗେଣ ହଲାଇଲେ ମଥା । ୫୬ ।
ଆଲୋ ସ୍ତ୍ରିରୀକୁଳେ ଉପୁଜ ତୁମ୍ଭେ ଅଟସି ଚ଼ଣ୍ଡାଳୀ
ପରେ ପରତେଜ୍ୟା ଖଟ ତନପ୍ତୋଳ । ୫୭ ।

---

୪୬ { ବସନ୍ତ ଉତ୍ସବ ଯାହା ଭିଆଇଲେ କୋନ୍ତ ଯେ ପଣ୍ଡାଂତ
ତୋହୋ ସୁଭାଗ୍ୟ ହୋଇଲ୍ଲ ପ୍ରାପତ ।—ଦ, ଣ

୫୪।୧ ମାଗୋ ସୁଷ୍ଟ ଶରୀ ପ୍ରାପତ ଅକାରଣେ ନ ଗଞ୍ଜ ।—ଥ ଘ

ପୂର୍ବର ପାପେ ଆମ୍ଭେ ପରେ ପରାର୍ଥନା
ଯାହା ଅରଜକ ସ୍ୱେବେ କଳନ୍ତର ଭୋଗ ଦିନା । ୫୮ ।
ପୁଣ ଜନ୍ମ ଲଭି ଅଖଣ୍ଡେଣ ବେଗେ ପାପେ ପଣ
ଭ୍ରୁତ୍ୟ ସ୍ୱଗ୍ରେବେଣ ପୁଣି ପରେଣ ପରଟବଣ । ୫୯ ।
ଦୁଷ୍ଟର ବାକ୍ୟେ ଆସନ୍ତେ ସଜ୍ଜନ ତହିଂକ
ସ୍ୱେଘାନ୍ତ ଜନମ ମ୍ଭେ ତୁମ୍ଭେ ହୁଅ ମହାନର୍କୀ । ୬୦ ।
ଗୃଣ୍ଡାଳ ଘରେ ଯାଇ ଜନ୍ମହୁଅ କର୍ମେ
ଜୁଗୁପ୍ସ ଭକ୍ଷକର ମ୍ଭେ ସ୍ୱେଥିର ଯେ ଅନୁକର୍ମେ । ୬୧ ।
ଘୁର ପାମେଶ୍ୱ ମ୍ଭେ ଦୂଷିତ ଜାତହୀନ
ସ୍ତ୍ରିଶ୍ରୁକୁଳେ ତୁମ୍ଭନ୍ତ ମ୍ଭେକେ କରବ:ଲେଖନ । ୬୨ ।
ଫୋଡ୍ଡୁ ଫୋଡ୍ଡୁ ବଦନ ମ୍ଭେ ନଂପାଅ କଂପେ ଲଜ୍ଜା
ଯାଅ ତୁମ୍ଭେ ଜନ୍ମେ ଜନ୍ମେ ପରଦାରେଣୀ ହୋଇ ନିଜ ସ୍ୱାମୀଂକ
କର ଚେଜ୍ୟା । ୬୩ ।
ଯେବଣ ପୁରୁଷ ତୁମ୍ଭଂକୁ ମ୍ଭେ ହୋଇବ ବିଗ୍ରଯୋଗ
ସ୍ତ୍ରିଶ୍ରୁକୁଳେ ଦୂଷିତ ତୁମ୍ଭନ୍ତ ଆନେ କରୁ ଭୋଗ୍ୟ । ୬୪ ।
ଦୁର୍ବାଦେ ବଚନ ଶୁଣିଣ ଗଲେକ ପରିବାଗ୍ର
ଗାଞ୍ଜକର ଅଗ୍ରତେ ସେ କହନ୍ତ ବିନୟ କରି । ୬୫ ।
ସ୍ୱାମୀ ଅନେକ ପ୍ରାର୍ଥନା କରି କହିଲୁ ତାଂକୁ ବାଣୀ
ପାଷାଣ ତରଳ ପାରଇ ଆମ୍ଭର ବାକ୍ୟ ଶୁଣି । ୬୬ ।
ସ୍ୱାମୀ ସ୍ତ୍ରିଶ୍ରୁକୁଳେ ଜନମି ସେ ବଢ଼ାଇ ଦୁରପାନ୍ତ
କଂପାଇ ଆନେ ତାହାକୁ ସ୍ତ୍ରିଜଅଛୁ ବସି ପ୍ରଜାପତ । ୬୭ ।
ଜଗ୍ଗଜନ ମୋହିନୀ ରୂପ ଧରି ସେ ପରେଣ ଭୃତ୍ୟକାଂଶ୍ର
ସଜ୍ଜନ ମ୍ଭେକଂକର ନାମ ହୁଅଇ କ ସଇନ୍ଦ୍ରୀଗ । ୬୮ ।
ସ୍ୱାମୀ ଯେତେକ ଅଳଂକାରମାନ ଗ୍ରମୁରେ ଦିଲୁ ନେଇ
ସମସ୍ତ ଫିଙ୍ଗିଦିଲା ସେ ପାଦେଣ ପେଲାଇ । ୬୯ ।

---

୬୧।୨ ଜୁଗୁପ୍ସ ଭକ୍ଷକର ମ୍ଭେ ସ୍ୱେଥିର ଉତକର୍ମେ ।—ଛ, ଣ, ଦ, ପ, ଫ

୨୧୮

ଶୁଣିଲା କୀଚକ ଯତ୍ନଂ ସଇରନ୍ଧ୍ରୀ ନାସ୍ତି କଥା
ପରଦାର ସୁଚରିତ ତାକୁ ଲାଗିଲା ବଡ ବ୍ୟଥା । ୭୦ ।
ଦୁଗୁଣ ରାଗ ତାହାର ବଢିଲା:କ୍ଷଣେ କ୍ଷଣେ
ପୁରୁଷ ବିରହିତା କାମ ବିନ୍ଧିଲା ପଞ୍ଚବାଣେ । ୭୧ ।
ନିରାଶ ବଚନ ଶୁଣି ସେ ଗଳିତ ମତ୍ତହାରା
ଅସାଷ୍ଟମ ହୋଇଣ ପଡିଲା କୀଚକ ମହାବୀର । ୭୨ ।
ଠାବ ଠାବକେ କୀଚକ ପଡିଣ ମୋହଯାଇ
ଛଟଛଟ ହୋଇଲା ମଦନେ ବିରହ ବାଣେ । ୭୩ ।
ସ୍ୱେଦ ଗଳଇ ଯେ ରୋମମୂଳେ ଜାଣି
ନ ରୋଚଇ କର୍ପୂର କସ୍ତୁରୀ ଅନ୍ନପାଣି । ୭୪ ।
ଆହା ସଇରନ୍ଧ୍ରୀରେ ତୁ ମୋହୋର ପଞ୍ଚ ଭୂତ
ତୋହୋର ନିରାଶ ବଚନ ଶୁଣି ଦ୍ୱିଗୁଣ ବିରହିତ । ୭୫ ।
କୋଳେ ଧରିଣ ଦାସୀ ମୁଖେଣ ପାଣି ସିଞ୍ଚି
ସାଷ୍ଟାମ ନମନ୍ତ୍ରେଣ ତାକୁ ଆଳଟ ଧରି ବଞ୍ଚି । ୭୬ ।

---

୭୦।୨ କାମଦେବର ଜ୍ୱାଳା ତାକୁ ଲାଗିଲା ବଡ ବ୍ୟଥା ।—ଦ, ଜ

୭୩।୧ ନିଶ୍ୱାସ ଖରତର ପଡଇ ମୋହଯାଇ ।—ଙ, ଅ

୭୬।୨ "ସାଷ୍ଟାମ ନମନ୍ତ୍ରେଣ ତାକୁ ଆଳଟ ଧରି ବଞ୍ଚି"
ପାଦାନ୍ତ'ପରେ 'ଗ, ଙ, ଝ' ପୋଥିରେ ଅଧିକ ପାଠ :—
ଯେଣିକି'ବୃହଂଲେ ଚେତେଣେ ଦଶଇ ସଇନ୍ଧ୍ରୀର
ସଇରନ୍ଧ୍ରୀ ସଇରନ୍ଧ୍ରୀ ବୋଲି ଉଚ୍ଚେ ବିଳାପ ଯେ କରି ।
ଚେତନା ପାଇଣ ସଂକୋଚନ ରାଜାର ବଳା
ରଖ ରଖ ସଇରନ୍ଧ୍ରୀ ମୋର ପଞ୍ଚଭୂତ କଳା ।
ରେ ରେ ସଇରନ୍ଧ୍ରୀ ମୋର ପଞ୍ଚଭୂତ ଆତ୍ମା
ବିରହ ସାଗରୁ ମୋତେ ବାରେକ ଉଦ୍ଧାରନ୍ତା ।
ଅଧରୁ ଅମୃତ ଦେଇ ମୋତେ ବାରେ ସଖୀ
ମଦନେ ସନ୍ତାପ ମୋତେ ଗୋ ବୃନ୍ଦ ପାରୁ ରଖି ।

ସଚେତ ହୋଇଣ ବସିଲା ସଂକୋଚନର ବଳା
ଆଗୋ ସଇରନ୍ଧ୍ରୀ ତୁ ପଞ୍ଚଭୂତ କଲା । ୭୭ ।
ଶରୀର ଅଚେତନ ମୋହୋର ତୋହୋର ଅଭାବେ
ଲୁକ୍କ ମୋହୋର କାୟା ସଇରନ୍ଧ୍ରୀ ନିଜ ଠାବେ । ୭୮ ।
ଯେବେ ତୋହୋର ଚରଣ କମଳ ପାଦକାନ୍ତ
ଦଶନଦେ ଶରୀର ମୋହୋର ପକାଅ ବିକୋଳ୍ତ । ୭୯ ।
କୀଚକ ବୋଇଲା ଲୋ ସେ କାହାକଇଂ ଥାଇ ସେବ
ବାସୀ ବୋଇଲା ତୁମ୍ଭର ଜ୍ୟେଷ୍ଠଭଗ୍ନୀ ସେ ଶ୍ରୀକୃଷ୍ଣା ମହାଦେବୀ । ୮୦ ।
କୀଚକ ବୋଇଲା ଯେବେ ରତ୍ନମାନ ନେଇ ଶ୍ରୀକୃଷ୍ଣାଗ୍ରମୁରେଣ ଦିଅ
ମୋହୋର ଅବସ୍ଥାମାନ ନାମୀଂକ ଆଗେ ଯାଇଂ କହ । ୮୧ ।
ବୁଡ଼ିଲା ଛଦ୍ମୀପଣ ମୁଂ ସମସ୍ତ କଲି ତେଜ୍ୟା
ଅନଙ୍ଗ ଅସାଷ୍ଟମେ ବୁଡ଼ିଲି ଉପେକ୍ଷିଲି ସର୍ବଲଜ୍ଜା । ୮୨ ।
ଆଲୋ ମୋହୋର ଅବସ୍ଥାତ ଯାଉଛୁ ସର୍ବ ଦେଖି
ସମସ୍ତ କହିବୁ ଗୋ ଭୟ ସଂକୋଚ ଉପେକ୍ଷି । ୮୩ ।
ଅଭ୍ୟର୍ଥୀ କରଣ ଲୋ ବୋଲିବ ତୁମ୍ଭେ ଯାଇ
ସଇରନ୍ଧ୍ରୀକି ଦିଅନ୍ତୁ ମୋହୋର ପୁରକୁ ପଠାଇ । ୮୪ ।
ମୋହୋର ଜୀଇଂବାରେ ଯେବେ ଅଛୁ ତାହାଂକର ଆଶ
ସଇରନ୍ଧ୍ରୀକି ଭେଟ ସେ କରାଇବେ ମୋର ପାଶ । ୮୫ ।
ଅଥବା ଓପ୍ରୋଧେ ଯେବେ ନ ପାରିବେ ତାକୁ ବୋଲି
ମୁହିଂ ବଳାତ୍କାରେ ଅନ୍ତେଶ୍ୱରୁଂ ଆଣିବି ଯାଇଂ କାଲି । ୮୬ ।
। ୩୦୫୬ ।

————

୭୮।୨ ଲୁକ୍କ—ଲୋଟି ।
୮୦।୨ ନାମୀ—ଭଗ୍ନୀ
୮୬।୨ ଅନ୍ତେଶ୍ୱରୁ—ଅନ୍ତଃପୁର ।

## ସୁଦେଷ୍ଣା ସୈରନ୍ଧ୍ରୀଙ୍କୁ କୀଚକ ନିକଟକୁ ପ୍ରେରଣ ଓ ସୈରନ୍ଧ୍ରୀଙ୍କର ସୂର୍ଯ୍ୟଙ୍କୁ ପ୍ରାର୍ଥନା

ଚଳିଗଲେ ମୃଦୁସ୍ୱଳା କୀଚକର ଆଗ୍ୟାଂ ଘେନ
ବନକର ଯାହା ସାରଣ ବାହୁଡ଼ନ୍ତି ସଇନ । ୧ ।
ଦେବନବରେ ନାରାୟଣଂକୁ କଲେକ ବିଜୟେ
ନିଜ ଆସ୍ତ.ନେ ବିଜୟେ କଲେ ବିରାଟ ମହାରାୟେ । ୨ ।
ସ୍ନାହାନ ଭୋଜନ ସେ ସାରିଲେ ନିତ୍ୟକର୍ମେ
ଶ୍ୟନ ମନ୍ଦିରେ ଯାଇଂ ବିଜୟେ ଧର୍ମେ । ୩ ।
ରଜ୍ୟଣୀ ପ୍ରଭାତେ ଯେ ପଞ୍ଚମୀ ଦିବସ
କରୁଣା ମୃଦୁସ୍ୱଳା ଯାଇ ପ୍ରବେଶ ଶ୍ରୀକୃଷ୍ଣାର ପାଶ । ୪ ।
ଅନେକ ଅଳଂକାର ଯୋଗାଡ଼ ନେଇଣ ଦିଲେ ସ୍ତ୍ରମ୍ଭୁ
କାଞ୍ଚେକ ମୃଦୁସ୍ୱଳା ସ୍ତ୍ରମ୍ଭୁରେ ପରଣାମୁଂ । ୫ ।
ଝାଳେ ବିପଣ୍ଡ ଯେ କେଶବାସ ଅସମ୍ଭାଳ
ଦେଖିଣ ଶ୍ରୀକୃଷ୍ଣା ବୋଇଲେ କେ କେମନ୍ତ ଜଞ୍ଜାଳୀ । ୬ ।
କରୁଣା ମୃଦୁସ୍ୱଳାକ ପୃଚ୍ଛନ୍ତି ମହାଦେଈ
ଆଲେ ଉପାଧି ଅଳଂକାର କମ୍ପେ କାଞ୍ଚକ ମୋ ଚେଦେଇ । ୭ ।
ମା ଟଗୋ ତୁମ୍ଭର ସୋଦର ଟଗୋ ଅନେକ ରତ୍ନ ଧ୍ୱଂସି
ତୁମ୍ଭେ ଭୋଗ୍ୟ କରିବ ନାହିଂକ ଅମୂଲ୍ୟ ରତ୍ନରାଶି । ୮ ।
ଆଲେ ଦାସୀ ମୋହୋର ମାତାପିତା ଅଛନ୍ତି ନା କୁଶଳ
କ୍ଷମେ ବ୍ରତିଛନ୍ତି ନା କୁଟୁମ୍ବ ସକଳ । ୯ ।
କାଞ୍ଚେକର ମୂଳେ ମୋହୋର ଶତେଗୋଟି ଭ୍ରାଥ
କୁଶଳେ ବ୍ରତିଛନ୍ତି ଟିକ ସେମାନେ ସମସ୍ତ । ୧୦ ।

୪।୧ ରଜ୍ୟଣୀ—ରଜନୀ ।
୮।୧ ମାଗୋ ତୁମ୍ଭର ସୋଦର ଗୋ ସର୍ବରତ୍ନ ଧ୍ୱଂସି ।—ଖ, ଠ

କହଇ ଚତୁରା ସେ ଅଭୟେ କୃଟବାଣୀ
ସମସ୍ତେ କୁଶଳେ ଗୋ ଅଛନ୍ତି ଠାକୁରାଣୀ । ୧୧ ।
ସୈରିକା ଜାଣିଅଛକୁ ଗୋ ଆଟବୋରଲା କସ ବ୍ୟାଧି
ସମରାଜ୍ୟ ଲୋକେ ଲୋଡ଼ି ନ ପାଇଲୁ ମଉଷଧି । ୧୨ ।
ମାଗୋ ଅନ୍ନ ନ ରୁଚଇ ତାମ୍ବୋଳଇ ବଷପିତା
ପଲଂକ ତେଜଣ ଗୋ ଭୂମିରେ ସୁପିତା । ୧୩ ।
ପିନ୍ଧିଲା ବସନ ଗୋ ପକାଇ ପାଲଟି
ଲଲାଟେ କର ତାଡ଼ିଣ ଗୋ ଭୂମିରେ ବଅଇ ଘୋଡ଼ାଳେଟି । ୧୪ ।
ଅଶ୍ରୁଜଳ ଛଳଛ ଗୋ ବେନ ଯେ ଲୋଚନ
ଗତପ୍ରାଣ ପ୍ରାୟେ ଦଶେ ତାହାର ବଦନ । ୧୫ ।
ମାଗୋ ରାତ୍ରରେ ନାହିଁ ନଦ୍ରା ଦବସେ ନାହିଁ କ୍ଷୁଧା
କେବଣ ରୋଗ ଆସି କଲାନ ବଡ଼ ବାଧା । ୧୬ ।
ବାରଣ ନ ଗଲା ଗୋ ସୈରିନ୍ଧ୍ରୀଙ୍କ ଚରତ
ଶୁଣିଣ ମହାଦେଈ ଯେ ବଡ଼ାଇ ଆରତ । ୧୭ ।
ଧର୍ମ ଧର୍ମ ସୁମରଇ ସେ ବରାଟର ନାରୀ
ଆଲୋ ରାଜାଂକ ଗ୍ରାମୁରେ କହ ବଦ୍ୟ ଆଣନ୍ତୁ ଲୋଡ଼ି । ୧୮ ।
ଅନେକ ଧନରତ୍ନ ଲୋ ନଅ ମୋର ଠାରୁଂ
ବେଗେ ବଦ୍ୟ ଲୋଡ଼ିଆଣ ପାଇବ ସନ୍ତୁଂ ଠାରୁଂ । ୧୯ ।
କହୁଂ କହୁଂ ଶ୍ରୀକୃଷ୍ଣା ଯେ ପଡ଼ିଗଲେ ମୂର୍ଚ୍ଛା
ଆଲୋ ବୁଦ୍ଧି କରନ ମୋହୋର ଯେମନ୍ତ ଭାଇ ହୋଏ ରକ୍ଷା । ୨୦ ।
ମୃଦୁସ୍ୱଳ୍ପି ବୋଇଲେ ମାଗୋ ତରସ୍ତ ନୋହ ମାଏ
ଅନେକ ବେଦବଦ୍ୟ ଆଣି କରାଇଲେଣି ଉପାଏ । ୨୧ ।
କେବେହେଂ ନ ତୁଟଇ ସେ ଅନଙ୍ଗ ମହାବ୍ୟାଧି
ଭଲ ହୋଇବାକୁ ତୁମ୍ଭର ଠାରୁଂ ଅଛଇ ମଉଷଧି । ୨୨ ।

---

୧୧।୧ କହଇ ଚତୁରା ସେ ଅଭୟେ କୁଟୁଣୀ ।—ଛ, ଣ, ଙ, ଡ

ଶ୍ରୀକୃଷ୍ଣା ବୋଇଲେ ତାହା ପାଇବଇ କାହ୍ନଂ
କେବଣ ମଉଷଧିଟି ମୋତେ କହ୍ମା ନ କହ୍ନ । ୨୩ ।
ଗୋସାମଣି ଗୋ ସଇରନ୍ଧ୍ରୀ ବୋଲି ଯେ ଅଛୁ ତୁମ୍ଭ ତହିଂ
ତାହାର ଗଲେ ରକ୍ଷା ହୋଇବ ତୁମ୍ଭ ଘର । ୨୪ ।
ନାନା ମନ୍ତ୍ରମାନ ସେ ଜାଣଇ ମଉଷଧି
ଯେହ୍ନାର ଅଙ୍ଗ ଲାଗନ୍ତେ ତାହାର କ୍ଷୟେ ହୋଇବ ବ୍ୟାଧି । ୨୫ ।
ଶୁଣିଣ ଶ୍ରୀକୃଷ୍ଣା ଯେ ସାଷ୍ଟାମ ହୋଇଲେ
ସଇରନ୍ଧ୍ରୀର ସନ୍ନିଧିକୁ ଆପଣେ ବିଜେକଲେ । ୨୬ ।
ଅନ୍ତେଶ୍ୱର ଗମ୍ଭୀରେ ସେ ଥିଲେ ମହାସ୍ୱନ୍ତି
ଧାଡକାରେ ଦେଖା ଉଠି ଅଇଲେ ତଡନ୍ତି । ୨୭ ।
ଶ୍ରୀକୃଷ୍ଣାର ସନ୍ନିଧେ ଆସି ସଇରନ୍ଧ୍ରୀ ହୋଇଲେକ ଭଷ
ବାଳଅର୍କ ପ୍ରାୟେକ ବଶନ୍ତ ଦେଖା ଶୋଭ । ୨୮ ।
ଶ୍ରୀକୃଷ୍ଣା ବୋଇଲେ ଗୋ ପୁଚ୍ଛଇ ତୋତେ ବାକ
ମନ୍ତ୍ର ମଉଷଧି ମାଗୋ ଜାଣୁ କି ବ୍ୟାଧିକ । ୨୯ ।
ମାଗୋ କୀଚକ ମୋହୋର ଯେ ସହୋଦର ଭ୍ରାଥ
ତାହାର ବାହୁବଳେ ଗୋ ସମସ୍ତ ରାଜ୍ୟ ମୋହୋର ସୁସ୍ଥ । ୩୦ ।
ଚତୁର୍ଦ୍ଦିଗ ରାଜାଂକର ଯେତେ ଅଟଇ ରାଜ୍ୟଭୂମି
ଯେଥି ରାଜ୍ୟ କରୁଥିଲା କାଳ ଯେ ନଉମି । ୩୧ ।
ମଗଧଦେଶ ରାଜା ଯେ ଅଟଇ ତ୍ରିଗର୍ତ୍ତ
ସେ ଦୁର୍ଦ୍ଧନ୍ତ ଜଣିଣ ମାଗୋ ରାଜ୍ୟ କରଇ ଯେଥ । ୩୨ ।
ମାଗୋ କୀଚକର ଦର୍ପେ ସିନା ରାଜ୍ୟ ଯେ ମୋହୋର
ତାହାକୁ ଅପଚୟେ ପଡିଲେ ରାଜ୍ୟ ମୋ ହୋଇବ ଛାରଖାର । ୩୩ ।
ଯେବେ ମହାମ୍ବାଣୀ ଗୋ ଜାଣୁ କଉଗୁଣି
କେଳେକ ଦାନ ଦିଅ ଗୋ ମୋହୋର ସୋଦର ବ୍ୟାଧିଖଣ୍ଡି । ୩୪ ।

---

୨୭।୧ ମହାସ୍ୱନ୍ତି — ମହାସତୀ ।
୨୮।୨ ବାଲଅର୍କ ପ୍ରାୟେ ତନୁ ଦଶେ ଶୋଭ ।— ଛ ଅ
୨୯।୧ ବାକ — ବାକ୍ୟ, କଥା ।

ଶୁଣ ଗୋ ମହାଦେବଙ୍କ ବିଦଗ୍ଧ ସଇରନ୍ଧ୍ରୀ
ମୁହିଂ କେହ୍ନେ ଜାଣିମି ଗୋ ମନ୍ତ୍ର ମହୌଷଧି । ୩୫ ।
ଶୁଭଗୋ ଗ୍ୟାନବନ୍ତ ଭଗ୍ୟଂବନ୍ତ ଶ୍ରୀବନ୍ତ ପୟୋଧି
ତୋତେ ସ୍ୱେକ ଗୁପତ ଚତୁର୍ଦ୍ଦିଶଂକ କୂଟବୁଦ୍ଧି । ୩୬ ।
ମାଗୋ ମୋତେ ଦେଖିକରି ତୋ ଭାଇ ଆଞ୍ଜନ କଲା ଇଚ୍ଛା
କୂଟ ବୁଦ୍ଧିମାନ ଯେତେକ କହୁଛନ୍ତି ସ୍ୱେ ସର୍ବ ମିଥ୍ୟା । ୩୭ ।
ସଇରନ୍ଧ୍ରୀଙ୍କ ମୁଖୁଂ ସ୍ୱେହେନେକ ବାକ୍ୟ ଶୁଣି
ଅମ୍ବୀଭୂତ ହୋଇଣ ବସିଲେ ବିରାଟ ପାଟରାଣୀ । ୩୮ ।
ସଞ୍ଚସ୍ୱେ ଭାଇର ମୋର ଶୀଘ୍ର ହୋଇଲା ଚୂତ
ନୋହିଲେ ଭ୍ରାଥ ହୋଇ ଭଉଣୀଠାରୁ ପାଠାସ୍ୱେ କ ଦୂତ ? ୩୯ ।
ଯେତେବେଳେ ନଶନ୍ତ କାଳ ହୁଅଇ ପୁରୁଷା
ଅର୍ଥ ତେଜ ବିଅର୍ଥକୁ ବଳାଇ ମନୀଷା । ୪୦ ।
ଯେତେ ପରବାସ ଥିଲେ ଅନ୍ୟେଶ୍ୱର ପୁରେ
ବହୁମତେ କଟିଲି ସେ କହିଲେ ପ୍ରସ୍ତୁରେ । ୪୧ ।
ଭୁ ସ୍ତୁର ପାମରେ ଲେ ଭଖାରୀ ଦେଶାନ୍ତରେ
ମାତା ସହୋଦ୍ର ଲେ କେ ଅଟେ ତୋହୋର । ୪୨ ।
ଆଞ୍ଜନ ସେ ମନ୍ଦବାଇ ଅସାଞ୍ଜନ ପୁରୁଷଇ
ଅକୁଳୀଣ ନାରୀ ତହିଂ ସାମ୍ଯ ତାଳତ ନ ଯୋଗାଇ । ୪୩ ।
ଦାସୀଂକର ଅଙ୍ଗେ ଯେ ସମାର୍ଜନୀ ବାତ
ସ୍ୱେତେକ ଲାଗଲେ ଆଷ୍ୟଶୀଘ୍ର ହୋସ୍ୱେ ହତ । ୪୪ ।
ଶ୍ରୀକୃଷ୍ଣା ବୋଇଲେ ଗୋ ଅନେକ ରତ୍ନ ଦେବା
ଭଲ ସୁଲକ୍ଷଣୀ କରି ଗୋ ବିଭା କରାଇବା । ୪୫ ।
ମାଗୋ ବଡ ଲୋକ ରୋଗ ଯେ ସ୍ୱାଗିଲାକ ସୋଗ
ଉଛୁଳଲା ନଦୀ ଅବଶ୍ୟ କରଇ ଯେ ଭୋଗ୍ୟ । ୪୬ ।

---

୩୮।୧ ସଞ୍ଚସ୍ୱେ—ନଷ୍ଟସ୍ୱେ ।
୩୯।୧ ଚୂତ—ଚୂତ (ଚୁଟିବା) ।
୪୦।୧ ନଶନ୍ତ—ବିନାଶ ।
୪୦।୨ ମନୀଷା—ଆଶା ।
୪୬।୧ ସୋଗ—ସରଗ ।

ବସ୍ତୁୟେ ମହାଦେବଙ୍କ ଚନ୍ତଇ ହୃଦଗତେ
ବରାଟ ଶୀଘ୍ର ସମ୍ପଦ ସେ ନାଶପିବାଙ୍କ ଯେମନ୍ତେ । ୪୭ ।
ଆବର ଜାବନ୍ତେ କ ବ୍ରତଇ.ମୋର ଭାଇ
ଯାହା ସେ ଅରଜନ୍ତି ଅବଶ୍ୟ ତାହା ସେହୁ ପାଇ । ୪୮ ।
ଶ୍ରୀକୃଷ୍ଣାୟେ ବୋଲନ୍ତି ୟେ ଅଟଇ ମହାସତୀ
ବଚନ ବାକ୍ୟ ବୁଝିବାନା କେବଣ ପ୍ରକୃତି । ୪୯ ।
ମାଗୋ ସଇରନ୍ଧ୍ରୀ ତୋତେ କଥାୟେ ପୁଚ୍ଛିବି ପ୍ରିୟଭାବେ
ଅଥବା ଭଲ ନୋହିଲେ ନ କହିବୁ ବଇରାଗେ । ୫୦ ।
ସଇରନ୍ଧ୍ରୀ ବୋଇଲେ ତୋତେ ଯାହା ଅଛୁ ମାଗି
ସମସ୍ତ ବୋଲିବୁ ମୋତେ ତେଟେକ ପରିତ୍ୟାଗୀ । ୫୧ ।
ପାଦପାଲଟା ନ ଛୁଆଁଇବୁ ଉଚ୍ଛିଷ୍ଟ ନ ଛୁଆଁଇବୁ
ପୁରୁଷେ ନ ପେଷିବୁ ଭଞ୍ଜନା ନ ବୋଲିବୁ । ୫୨ ।
ଆବର ତୁ ଯାହା ଗୋ ବୋଲିବୁ ତଥ୍ୟବାଣୀ
ମୁହିଂ ତାହା କରିବନା ଗୋ ବର୍ଷର କର ରାଣୀ । ୫୩ ।
ଶ୍ରୀକୃଷ୍ଣା ମଜନ ହୋଇଲେ ଦୃଢବାକ୍ୟ ଦେଖି
ଅନ୍ତୀଭୂତ ହୋଇଲେ ସେ ନୁଆୟଇ ବାକ । ୫୪ ।
ରାଗେଣ ମୁଦୁସ୍ଥଳୀ ଯେ ବୋଲଇ କରୁଣା
ତୋହୋ ଗୁରୁ ପାମେଶ୍ୱ ଠାକୁରାଣୀକ କହୁଁ ଜଣା । ୫୫ ।

---

୫୦।୨ ଅସୁଲଭ ହୋଇଲା କି ତୁ କଥା ନ କହୁ ୟେବେ ।—ଛ, ଜ

୫୩।୨ "ମୁହିଂ ତାହା କରିବନା ଗୋ ବର୍ଷର କର ରାଣୀ" ।—
ପାଦନ୍ତ ପରେ 'ଣ' ପୋଥିରେ ଅଧିକ ପାଠ:—
ପଶ୍ଚିମ ଦିଗେ ଯେବେ ଉଦୟେ ସୂର୍ଯ୍ୟଜ୍ୟୋତି
ରସାଙ୍ଗତ ହୋଇ ଯେବେ ପଡ଼ିବାକ କ୍ଷିତି ।
ପର୍ବତ ଉପରେ ଯେବେ ଫୁଟିବାକ ପଦ୍ମ
କୂଳ ଲଂଘି ରତ୍ନାକର ଯେବେ ହୋଇବାକ ମଧ୍ୟସ୍ଥାନ ।
ଆକାଶ ଯେବେ ମାଡ଼ି ବସିବାକ ମୃତ୍ତୁଲୋକେ
ତଥାପି ମହନ୍ତଙ୍କର ନ ଚଳଇ ବାକ୍ୟେ ।

କୀଞ୍ଚକ ବୋଲିକରି ସେ ଯେବଣ ମହାରଥୀ
ଶତସିଂହର ପ୍ରକ୍ରମ ଜାଣି ଦୁଷ୍ଟ ଯମ ଦେବତା । ୫୬ ।
ମହୀଦାସ ପର୍ବତ ଯେ ଭାଙ୍ଗିଣ କଲା ଚୂନା
ଯେ ମହୀସ୍ଥଳ ମଧରେ କେଶରୀ ଦର୍ପ ସିନା । ୫୭ ।
ଅନଙ୍ଗ ପଟାନ୍ତରେ ସେ ଗୁଣେଣ ଗୁଣନିଧି
ବୃହସ୍ପତି ସାରସ୍ତେ ଯାହାର ପ୍ରସରଇ ବୁଦ୍ଧି । ୫୮ ।
କୁବେର ସମାନେଣ ଧନେଣ ଗଣିତା
ଈଶ୍ୱର ସମାନେଣ ଅଟଇ ବଳବନ୍ତା । ୫୯ ।
ତାହାର ଭାରିଯା ତୁ ହୋଇବୁ ଯେତେବେଳେ
ଦଶା ତୋର ନେଉଟିଲା କର୍ମର ସୁଫଳ । ୬୦ ।
କେବଣ ଜନ୍ମେ ପ୍ରୟାଗେ ପଡିଲୁକ ଅଗ୍ନି
ତେଣୁକରି ଭଜିଲା ତୋତେ କୀଞ୍ଚକ ସେନାପତି । ୬୧ ।
ଶ୍ରୀକୃଷ୍ଣା ସହିତେ ଖଟିବେ ତୋହୋର ପାଦତଳେ
ଚରଣେ ଲକ୍ଷ୍ମୀ ତୁ ବୋଲାଉଛୁ କର୍ମର ଅବଳେ । ୬୨ ।
ଛଛନ୍ଦେ ବିନୋଦ ତୁ କରିବୁ ରଙ୍ଗରତି
ଲକ୍ଷ୍ମୀ ଆସି ଆଜିକି ବସିଲାଣି ତୋର କତି । ୬୩ ।
ମାଗୋ କୀଞ୍ଚକ ଯେବେ ତୋତେ ହରିବ ନିଶ୍ଚୟେ
ରକ୍ଷାକରି ପାରିବେ କି ତୋତେ ଦେବତାୟେ । ୬୪ ।
ଯେହ୍ନକ୍ଷଣି ଆମ୍ଭତନ୍ତ୍ରଂ ବାରତା ତଥ୍ୟ ଶୁଣି
କେଶ ଧରି କୀଞ୍ଚକ ତୋତେ ଗୋ ନେମନ୍ତି ତତକ୍ଷଣି । ୬୫ ।
ସଇରନ୍ଧ୍ରୀ ବୋଇଲେ ଶୁଣ ଗୋ କରୁଣା ମୃଦୁସ୍ୱଳୀ
ମହତଂକର ବାକ୍ୟେ ଲେ ସମାସ୍ୟାୟେ ଜାଣିଲି । ୬୬ ।
ଆଗୋ ସମୁଦ୍ର ହୋଇ ଯେବେ ଲଂଘିବାକ ମହୀ
ସଚରାଚର ମଧ୍ୟେ ବ୍ରତିବେକ ଆଉ କେହି । ୬୭ ।
ପୃଥିବୀ ଆପଣେ ଯେବେ ହୋଇବ ଶସ୍ୟହୀନ
ସକଳ ଜୀବଜନ୍ତୁ କି ବ୍ରତିବେ ମେଦିନୀ । ୬୮ ।
ମାଗୋ ଇନ୍ଦ୍ରଦେବତା ଯେବେ ନ କରିବାକ ବୃଷ୍ଟି
ଆବର ରକ୍ଷା କାହିଂ ହୋଇବ ନବସୃଷ୍ଟି । ୬୯ ।

ଅମାତ୍ୟ ଅବଧି ଯେବେ କରିବାକ ରାଜା
କାହାର ଆଗେ ଗୁହାରି କରିବେ ଜନପ୍ରଜା । ୭୦ ।
ପ୍ରସବନ୍ତି ପୁତ୍ର ଯେବେ ମାତା କରିବାକ ଭକ୍ଷ
ସେ ବାଳୁତ ଆବର କେଉଁ ହୋଇବାକ ରକ୍ଷ । ୭୧ ।
ଆଗୋ ସ୍ୱାମୀ ନ ସହିଲେ ସେବକ କାହିଁ ବ୍ରତ
ତପୋଧନେ ବ୍ରତନ୍ତି କ ରାଜାର ଅମାତ୍ୟ । ୭୨ ।
ମାଗୋ ସ୍ୱାମୀ ହୋଇ ଯେବେ ସେ ସେବକେଣ ହୋଏ ବୈରୀ
ସହସ୍ରେ ଅରଜିଲେ ସେ ସେବା ପରିତ୍ୟାଗୀ । ୭୩ ।
ମୁହିଂ ତୋହୋର ରାଜ୍ୟରୁ ଯାଉଅଛୁ ଗୋ ମାଏ
ମୋହୋର ଯେଥେ ଥିଲେ ପଡବ ଗୋ ବହୁତ ଅପଚଏ । ୭୪ ।
ଶୁଣି ଶ୍ରୀକୃଷ୍ଣାଏ ବୋଇଲେ ପୈହ ର ଯେଥୁଂ ଗଲେ
ପୁର ମୋହୋର ଦହିଜ ହୋଇବ ଯେହାର ପିଠିହଲେ । ୭୫ ।
କୋଳକରି ଶ୍ରୀକୃଷ୍ଣାଏ ବସାଇଲେ କନ୍ତ
ମାଗୋ ବୋଲକ କ୍ଷମା କରିବା ମୁଂ ହୋଇଲି ଅମାତ୍ୟ । ୭୬ ।
ଶୁଣି ପ୍ରତଜୟର ହନ୍ତ ମୁଦୁସୂଲୀ
ରାଗେଣ ଅପାର ଭ୍ରୁକୁଟା ପେ ବୋଲନ୍ତି ପୋଇଲି । ୭୭ ।

---

୭୩ । 'ସହସ୍ରେ ଅରଜିଲେ ସେ ସେବା ପରିତ୍ୟାଗୀ'' ପରେ 'ଚ' ପୋଥିରେ ଅଧିକ ପାଠ—

ଦେବତା ବ୍ରାହ୍ମଣଙ୍କୁ ନ ମାନନ୍ତି ଯେବଣ ଜନ
ତାହାର କାହିଂ ଥିବ ଅର୍ଜିଲା ଅନେକ ଜନ୍ମ ପୁଣି ।
ଅନାଥ ଜନଙ୍କୁ ଗୋ ନାଥ ଯେବେ ନ ପାଳିବ
କେବଣ ଭରସାରେ ସେ ଜୀବନ ବଞ୍ଚିବ ।
ଯେତେକ କଥାକୁ ଗୋ ଅଛଇଟି କଥାଏ
ମୋହୋର ଯେଥେ ଥିଲେ ପଡିବ ବହୁତ ଅପଚଏ ।

୭୭। ରାଗେଣ ଅପାର କଥା ଭହିଂ କହିଲେ ପୋଇଲି ।—ଙ, ଟ

ମେଦମେଦା ମାଂସେଣ ଗୋ ଶରୀର କଲା କାୟ୍ଯା
କାମସାଗର ପ୍ରବେଶ ଘଟଣ କଲା କାୟ୍ଯା । ୭୮ ।
ବୃହସ୍ପତିଙ୍କର ଭାରଯା ଯେ ତାରା ମହାସତୀ
ଚନ୍ଦ୍ରଦେବତାଂକର ଭୁଲେ ସେ ବଢାଇଲେ ପିରତି । ୭୯ ।
ଶ୍ରୀରାମଚନ୍ଦ୍ରର ଭାରଯା ଗୋ ଅଟଇ ଦେବୀ ସୀତା
ତାହାଙ୍କଇଂ ପୁଣି ହରନେଲା ଗୋ ରାବଣ ଦଇତା । ୮୦ ।
ମାଗୋ ଗଉତମ ଋଷିଙ୍କର ଭାରଯା ନାମ ତା ଅହଲ୍ୟା
ପରଦାରସ୍ୟେଣ ଚନ୍ଦ୍ର ସୂର୍ଯ୍ୟେ ରମଣ ହେଲା । ୮୧ ।
ଚନ୍ଦ୍ର ନଉମୀଂକର ଭାରଯା ଶକୁନ୍ତଳା ମହାସତୀ
ତାହାଂକୁ ହରଲନ୍ତି ରବ ମହାଜ୍ୟୋତି । ୮୨ ।
ଗୋପସ୍ତ୍ରୀମାନେ ଯେ ଅଟନ୍ତି ମହାସତୀ
ସେ ପୁଣି କାଳେ ଗୋ କରାଇଲେ କୃଷ୍ଣେ ରତି । ୮୩ ।
ମାଗୋ ପାଣ୍ଡବଂକର ଭାରଯା ଯେ ଦ୍ରୋପଦର ଦୁହିତା
ତାହାଂକର ପ୍ରାପତ ପୁଣି ହୋଇଲେ ପଞ୍ଚଭ୍ରତା । ୮୪ ।
ଆଗୋ ହରିଭୁବରେ ଯେତେକ ହୋଇଲେକ ଜନ୍ମ
ପରଦାର ସ୍ତ୍ରୀଙ୍କର ପୁଣି ଲଲାଟ ଲେଖନ । ୮୫ ।
ସଇରନ୍ଧ୍ରୀ ବୋଇଲେ ସେ ଯେ ନୋହୋଇ ଯୁଗତ
ଯତ ସତୀ ନ ଥିଲେ ଗୋ ସଂସାର ରହିବ କେମନ୍ତ । ୮୬ ।
ଚନ୍ଦ୍ର ଯେ ହରିଲା ତାରା ମହାସତୀ
ବୃହସ୍ପତିଂକର ଶାପେ ରହୁ ଗ୍ରାସିଲା ତାର ମୂର୍ତ୍ତି । ୮୭ ।
ଇନ୍ଦ୍ର ଯେ ହରିଲେ ଗଉତମଂକର ପତ୍ନୀ
ଋଷିଂକର ଶାପେ ସେ ହୋଇଲା ସହସ୍ର ଯୋନି । ୮୮ ।
ସୀତାହରଣ ଦୋଷେ ରାବଣ ନାଶଗଲା
ସୁଗ୍ରୀ ଭାରଯା ହର ବାଳୀ ପ୍ରାଣଦେଲା । ୮୯ ।

---

୭୮।୧ ମେଦମେଦା ମାଂସେ ଯେ ଶରୀର କଲ ମାସ୍ଥା ।—କ, ଝ, ଢ

ଶକୁନ୍ତଳା ହରଣେ ନାଶଗଲା ସ୍ୱୟଂଭୂବ ମନୁ
ତରଣ ପ୍ରମାଣେ କୃତାନ୍ତକ କାଟିଲା କେ ତନୁ । ୯୦ ।
ମାଗୋ ବିରାଟ ରାଜ୍ୟ ମୁହିଂ ହୋଇଅଛି ବଡଦୁଖୀ
ସଦା ସର୍ବଦା ପ୍ରେଥେ ମୁଂ ନୁହଇଂ ନିରନ୍ମାଖୀ । ୯୧ ।
ପାଞ୍ଚଜଣ ଅଛନ୍ତି ଗୋ ମୋତେ ଆବୋରିବାକୁ
ଯେ ମୋତେ ବଢାଇ ଅବଶ୍ୟ ମାରନ୍ତି ତାହାକୁ । ୯୨ ।
ଶୁଣିଣ ଶ୍ରୀକୃଷ୍ଣା ଯେ ମଉନାବ୍ରତ ହୋଇଲେ
ସମସ୍ୟା ନ ଦେଇଣ ଉଠି ବାହୁଡିଣ ତହୁଂ ଗଲେ । ୯୩ ।
ସନ୍ନିଧିକୁ ହକାରିଲେ କରୁଣା ମୃଦୁସ୍ୱନା
ଆଗୋ କରୁଣା ତୁ ଶୁଣିଲୁନା ମୁଂ ଯେତେ ବାଗେ ବୋଇଲ । ୯୪ ।
ସାମାନ୍ୟ ନୁହଇଂ ସେ ଅଟଇ ବଡଜଣ
ଦରିଦ୍ର ହୋଇ କେ ଉପେକ୍ଷା କରଇ ହିରଣ୍ୟ । ୯୫ ।
ସାମାନ୍ୟ ମାତ୍ର କ ଠାକୁରାଣୀଂକ ବୋଲ ଭଙ୍ଗି
ବାକ୍ୟ ଶୁଣିଲୁ ନା ପ୍ରତ୍ୟକ୍ଷେ ସେ ପରମ ଯୋଗୀ । ୯୬ ।
କୀଚକକୁ କହିବ ସେ ଦେଖୁ ଦାସୀଚେଡି
ତାହା ଦେହ ଲାଗିଲେ ଆଇଷ୍ୟ ଶୀଘ୍ର ଯାଏ ଛାଡି । ୯୭ ।
ଯେତେମାନେ କହିଲେ ବୋଧନ ମାନିବ ଅବା
ଉପାୟେ କରି ସଇରନ୍ଧ୍ରୀକି କୀଚକ ପୁରକୁ ପେଷିଦେବା । ୯୮ ।
ଥିର ହୋଇ ରହିଥାଉ ସେ ଦିନା ପାଞ୍ଚସାତେ
ଯେକଥା ମାନ ପାସୋରି ହୋଇଯିବା ପଶ୍ଚାତେ । ୯୯ ।
ବଚନ ବୋଧମାଇ ଗଲେକ ମୃଦୁସ୍ୱନା
କୀଚକର ପୁରକୁ ଯେ ଚଳଲେ ପୋଇଲା । ୧୦୦ ।
କୀଚକ ହରଷ ଯେ ଦୁଷ୍ଟର ବଳମ୍ବ ଦେଖି
ରହିଲେଣି ଯେବେ ସେନ ଆସିବେ ସଇରନ୍ଧ୍ରୀକି । ୧୦୧ ।

---

୯୫।୨ ହିରଣ୍ୟ—ସୁବର୍ଣ୍ଣ ।
୯୭।୧ ଚେଡି—ଦାସୀ ।

ନିଚୟେ ପ୍ରଧାନ ମୋତେ ହୋଇବାକୁ କାମନାଧି
ଦୁଷ୍ଟର ବିଳମ୍ବେ ଯେ ସମସ୍ତ କାର୍ଯ୍ୟ ସିଦ୍ଧି । ୧୦୨ ।
ଆପଣେ ବେଶ କେଶନ ହୋଅଇ କୀଚକ ସେନାପତି
ଯେମନ୍ତ ସମୟେଣ ଦୁଷ୍ଟମାନେ ମିଳନ୍ତି । ୧୦୩ ।
ଯାହା ସାର ରାଜା ବିଜୟେ ନିଜପୁରେ
କୀଚକ ପଚାରଇ ବିକାର ସ୍ୱରୂପରେ । ୧୦୪ ।
କେମନ୍ତ ବାରତ ଲୋ କେବଣ ସୁବିଧାନ କାର୍ଯ୍ୟ
ବଦପୃଷ୍ଠ ସିହାଣୀ ଯେ କହିଲେ ବଡ ଲାଜ । ୧୦୫ ।
ଶୁଣ ଦେବ ପଣ୍ଡିତ କ୍ଷତ୍ରିୟ ଚୂଡ଼ାମଣି
ଶ୍ରୀକୃଷ୍ଣା ବିମୁଖ ହୋଇଲେ ତୁମ୍ଭର କଥା ଶୁଣି । ୧୦୬ ।
ବୋଇଲେ ଯେହ୍ନେ ପଣ୍ଡିତ ସହୋଦ୍ର ମୋହୋର
ବେଟୀ ଚେଟୀ ସମାର୍ଜନୀ ବାତ ଲାଗନ୍ତେ ହୁଅଇ ହତଶିର । ୧୦୭ ।
ମୋହୋର ରାଜ୍ୟେ ଯେ ଖଟଇ ଭୃତ୍ୟପଣେ
ଲେଞ୍ଚେ ବର୍ଣ୍ଣ କଂକେ ହୋଇବ ଅକାରଣେ । ୧୦୮ ।
ଅପରଚେ ଅଙ୍ଗଭୋଗ ଦେଇ ନ ଯୋଗାଇ
ଶିରହୀନ ହୁଏ ଆୟୁଷ କ୍ଷୟେ ଯାଇ । ୧୦୯ ।
ସ୍ୱାମୀ ତୋହୋର ବଚନେ ଯତ୍ନଂ କହିଲୁ ଅବସ୍ଥା
ବହୁତ ବିକଳ ଯେ ହୋଇଲେ ଜଗତମାତା । ୧୧୦ ।
ବୋଇଲେ ଯେତେ ଧନ ଲାଗଇ ନେଇ ସେ ଭଣ୍ଡାରୁ
ଆହ୍ଣର ଶତେକନ୍ୟା ସେ ବିରାଟ ବନ୍ଧୁକରୁ । ୧୧୧ ।
କୀଚକ ବୋଇଲା ଲୋ ବଢିଲା ନଦୀ ବରଷିଲା ଜଳଦ
ମନମତ୍ତ କାମ ଲହରୀ ପଡିଲା ପରମାଦ । ୧୧୨ ।
କୀଚକ ବୋଇଲା ଲୋ ନ ପାରଇ ତାକୁ ମୂର୍ଚ୍ଛି
ଉନ୍ମତ୍ତ କାମବାଣେ ନ ଜାଣେ ମୂର୍ଚ୍ଛାଂ କଚ୍ଛି । ୧୧୩ ।

---

୧୦୮।୨ ଲେଞ୍ଚେ—ନିତ ।
୧୧୨।୨ ଅନୁବ୍ରତେ କାମ ଲହରୀ ପଡିଲା ପରମାଦ ।—ଟ, ପ

କାହାର ବେଳେ ରୁହାଇ ନୁହଇଂ କଦାଚତେ
ସ୍ୱେ ଶରୀର ଭୁଞ୍ଜୁ ମୋହୋର ସଇନ୍ଦ୍ରୀ କମଚନ୍ତେ । ୧୧୪ ।
କଣ୍ଠାଗତ ପ୍ରାଣ ଶରୀରୁ କଲ୍ଲ ଚେଜ୍ୟା
ଅଶକତ ପ୍ରାଣୀଂକର ହୋ କସ ଅଛଇ ଲଜ୍ୟା । ୧୧୫ ।
କରପଦ୍ମ ଯୋଡ଼ିଣ ସେ କହଇ ମୃଦୁସ୍ୱଳ୍ପ
ସ୍ୱାମୀ ଅଙ୍ଗଚେ ପୁଣି ମହାଦେଈଙ୍କ ଘେନଗଲ । ୧୧୬ ।
ବହୁତ ସଂକୋଚ ତାହାକୁ କରନ୍ତ ଠାକୁରାଣୀ
ଭକାଣି କର ତାକୁ କହ୍ନ ନୁଆରନ୍ତ ବାଣୀ । ୧୧୭ ।
ଆମ୍ଭର ବଚନ କର ତାକୁ ବହୁତ କହିଲେ ମଣାଇଂ
ସ୍ତ୍ରିରୀକୁଳେ ପାଟମହା ଦେବ ତା ତହୁଂ ଆନ ନାହିଂ । ୧୧୮ ।
ଯେତେ ଅଳଂକାରମାନ ଗ୍ରୀମୁରେ ତାର ନେଇ ଦଲ
ଅମୂଲ୍ୟ ରତ୍ନମାନଜ୍ଞ ସେ ପାଦେଣ ଦେଲ ପେଲ । ୧୧୯ ।
ସ୍ୱାମୀ କ ସରୂପଗୁଣ ମୁଂ ବର୍ଣ୍ଣିବି ତାହାର
ହିରଣ୍ୟ ନ ଚ୍ଛେଇ ତାହାର ଚରଣର । ୧୨୦ ।
ହିରଣୁଂ ଅଧିକ ତାହାର ପାଦତଳ
ମରକତ ନ ଗଛଇ ତାହାର ଚରଣ ଅଙ୍ଗୁଳ । ୧୨୧ ।
ସ୍ୱେ ଅଷ୍ଟରତ୍ନମାନ ଯେ ଥୋଇଲୁ ତାରକଣ୍ଠ
ରତ୍ନହୁଂ ଅଧିକ ଦେବ ଅଛଇ ତାହାର ଜ୍ୟୋତି । ୧୨୨ ।
ଦେବସ୍ତ୍ରିରୀ ନାୟେକା ସେ ମଧ୍ୟପୁରର ନୁହଇ
ରମ୍ଭା ଉର୍ବଶୀହୁଂ ଅଧିକ ରୂପ ଅମର ଭୁବନ ମୋହଇ । ୧୨୩ ।
ସ୍ୱାମୀ ତାହାର ଗ୍ରୀମୁରେ ଦାସୀ ପ୍ରାପ୍ୟେ ହଶନ୍ତ ଶ୍ରୀକୃଷ୍ଣା
ଶୁଣିଣ କୀଚକର ବଢ଼ିଲା ଯେ ଦୁଗୁଣ ତୃଷ୍ଣା । ୧୨୪ ।
ସ୍ୱାମୀ କଞ୍ଚିତ କଣେ ଯେବେ କହିବ ହବ୍ୟବାଣୀ
ପିକଜନ୍ତୁ ଦୂରେ ଯାଇ ତାହାର ବାକ୍ୟ ଶୁଣି । ୧୨୫ ।

---

୧୨୪।୨ ଶୁଣିଣ କୀଚକର ଯେ ବଢ଼ିଲା ମହାତୃଷ୍ଣା ।—ପ, ଜ, ଅ
୧୨୫।୧ ସ୍ୱାମୀ କଞ୍ଚିତ କଣେ ଯେବେ କହିବ ମୃଦୁବାଣୀ ।—ଊ, ଡ, ଚ

ଅପାର ଗୁଣ ସନ୍ତୁଂ ଦେବ କହିଲ ବିଶେଷି
କୀଚକ ଭଳପଡ଼ିଲ ମୋହବନ୍ଧ ଫାଶୀ । ୧୨୬ ।
କୀଚକ ସନ୍ତୁଂ ବଢ଼ିଲ ମଦନ ଉଦବେଗ
ଆମ୍ଭେ ଯାଇଣ ଜଣାଅ ବେଗେ ଠାକୁରାଣୀଂକର ଆଗ । ୧୨୭ ।
ସେ ମୋହୋର ଠାକୁରାଣୀ ସେ ମୋତେ ରକ୍ଷା କରନ୍ତୁ
ଉପାୟେ କର ମୋ ପୁରକୁ ସଇରନ୍ଧ୍ରୀକୁ ପେଷିଦ୍ୟନ୍ତୁ । ୧୨୮ ।
ଶୁଣିଣ ମୃଦୁସ୍ୱନ୍ତୀ ଚଳିଗଲେ କୀଚକର ବଚନେ
ସନ୍ଦେଶ କହିଲେ ଯାଇ ରାଣୀଂକ ସନ୍ନିଧାନେ । ୧୨୯ ।
ଗୋସାମଣିହେ କୀଚକରେ କାର୍ଯ୍ୟ କ ସଇରନ୍ଧ୍ରୀରେ କାର୍ଯ୍ୟ .
ସଇରନ୍ଧ୍ରୀକି ନ ଦେଲେ କୀଚକ ହେଉଛୁ ପ୍ରାଣତ୍ୟାଜ । ୧୩୦ ।
ଶ୍ରୀକୃଷ୍ଣା ବୋଇଲେ ଲେ କୀଚକ ନାହିଂନା ଜୀବନ୍ତେ
ନ ଗଲେହେଂ ନ ବ୍ରତଇ ଗଲେହେଂ ନ ବ୍ରତଇ କଦାଚିତେ । ୧୩୧ ।
ଯେହେନ୍ତେ ସେ ଅରଜିଲା ଭୋଗ୍ୟକରନ୍ତୁ ତାର କର୍ମ
ଯେଥକୁ ବୋଲି ସେ ଯେ ହୋଇଅଛୁ ଜନ୍ମ । ୧୩୨ ।
ଲେଉଟି କହ ଯାଇଂ ଲେ ସମ୍ଭାଳିଥାଉ ତାର କାୟେ
ଦିନା ଦୁଇ ପାଞ୍ଚ ଉତ୍ତରେ ସଇରନ୍ଧ୍ରୀକି ପେଷଇ ପିନା
କରିଣ ଉପାୟେ । ୧୩୩ ।
ଚଳିଲେ ଚତୁରୀ ଯେ ଦୂତ ପରଯୋଗେ
ଯାଇଂଣ ଜଣାଇଲେ ପୁଣ କୀଚକର ଆଗେ । ୧୩୪ ।
ଦିନା ଦୁଇ ପାଞ୍ଚ ଉତ୍ତରେ ଯେ ପେଷିବେ ମହାଦେଈ
କ୍ଷୁଧା ଆତୁରେ କି ବେନହାଥେ ଅନ୍ନ ଖାଇ । ୧୩୫ ।
ଅଥବା ଯଦ୍ୟପି ସେ ନୁଆସିବେ ପେଷି
କେଶ ଧରି ଆଣିମା ତାହାକୁ ଅନ୍ତେଶ୍ୱର ପୁରେ ପଶି । ୧୩୬ ।

---

୧୨୬।୨ କୀଚକ ଭଳ ପଡ଼ିଲ ମୋହ କାଳଫାଶୀ ।—ଙ, ଚ
୧୩୨।୧ ଯେହେନ୍ତେ ସେ ଅର୍ଜିଲ ଅଛୁ ଶୁଭାଶୁଭ କର୍ମ ।—ଛ, ଜ
୧୩୩।୧ ମଣାଇ କହ ତାକୁ ଲେ ଧଇର୍ଯ୍ୟ ଧରୁ ତାର କାୟେ ।—ଚ, ଅ

ଯାହା ସମାପତ ସେ ସ୍ୱେକବଂଶ ଦିବସେ
ମୁବଳ୍ଟ ସାରଣ ଗଜା ଉହ୍ନଲେ ହରଷେ । ୧୩୭ ।
ଅନେକ ନିଯୋଗୀମାନଙ୍କ ଦିଲ ଶାଢୀ
କୋନ୍ତକୁ କୋଇଲ ମୋ ରାଜ୍ୟେ ତୁମ୍ଭେ ଠାକୁର ଅଧିକଷ । ୧୩୮ ।
ବଇଶାଖର ଅନ୍ତେ ଯେ ଋଷଭ ପରବେଶ
ଜ୍ୟେଷ୍ଠମାସ କୃଷ୍ଣପକ୍ଷ ଯେ ଚତୁର୍ଥୀର ଦିବସ । ୧୩୯ ।
ଭୂମିବାର ମୂଳା ନକ୍ଷତ୍ର ଅଟଇ ସେ ଦିନର
ଗାଙ୍ଗକର ନିମନ୍ତେ ସଇରନ୍ଧ୍ରୀର ଅଭିସାର । ୧୪୦ ।
ମନେ ସ୍ମର ଶ୍ରୀକୃଷ୍ଣାୟେ ଲେଖ ଅବଧାରି
ସଂଚତ ତାଳପତ୍ର ଲେଖନ କରେ ଧରି । ୧୪୧ ।
ତାଳପତ୍ର ଘେନିଣ ଲେଖନ୍ତି ମହାସତୀ
ଶ୍ରୀକୃଷ୍ଣାର ଗାଙ୍ଗକକୁ ହି ସନ୍ଧ୍ୟାରେ କଲ୍ୟାଣ ନିତି । ୧୪୨ ।
ବାବୁ ତୁ ଯେ ଜପୁଜାଲୁ ସଂକୋଚନର ରାଜାର ଘରେ
ଶରଧାପ୍ୱେ ବଶିଷ୍ଠେ ତୋତେ ଧଇଲେ କୋଡରେ । ୧୪୩ ।
ତୋଷେଣ ମହାତ୍ମା ତୋତେ କଲ୍ୟାଣ କଲେ ବାଞ୍ଛା
ଶତେସିଂଘର ବଳ ତୋର ହୋଉରେ ବାଳବଚ୍ଛା । ୧୪୪ ।

---

୧୩୮।୧ "ଅନେକ ନିଯୋଗୀମାନଙ୍କ ଦିଲ ଶାଢୀ" ପରେ 'ଛ' ପୋଥିରେ
ଅଧିକା ପାଠ:—

ସ୍ୱେମନ୍ତ ବୋଲ ପୋଇଲୀ କହିଲା ଗାଙ୍ଗକକୁ
ଶୁଣିଣ ଗାଙ୍ଗକ ଯେ ବସୃରେ ଆପଣାର ମନକୁ ।
ଯେବେ ସଇରନ୍ଧ୍ରୀକ ଶ୍ରୀକୃଷ୍ଣା ନ ପେଷିବ
କେବଣ ପ୍ରକାରେ ଯେ ରଖିବ ମୋର ଜୀବ ।
ସ୍ୱେସନେକ ମନେ ଭାଳଣ ମହାବୀର
କ୍ଷଣେହେଂ ସୁସ୍ଥ ନାହିଂ ଘର ଯେ ବାହାର ।
ସ୍ୱେମନ୍ତେ ଯାତ୍ରାବଧି ସରଲ ସ୍ୱେକବଂଶ ଦିବସେ
ହସ୍ତିବ ପାରି ବରଷ୍ଟ ମିଳିଲ ନଜପୁରେ ହରଷେ ।

୧୪୧।୨ ସଂକେତ ଲେଖିଲ ରାଣୀ ତାଳପତ୍ର ଧରି ।—ଦ, ଛ

ତୁ ଯେ କାରଣ ହଣିଲୁ ବେଦପାଦ
ତୋହୋର ବାମଚରଣ କାଟନ୍ତୁ ଯେ ବଶିଷ୍ଠଙ୍କ ସୁତ । ୧୪୫ ।
ମୁନିଙ୍କ ମୁଖରୁ ରୁଧିର ବାହାର ହୋଇ ଫୁଟି
ଭଗ୍ନମନୋହାରୀ ହୋଇ ଯେ ପଡ଼ିଲେ ତପନଷ୍ଠି । ୧୪୬ ।
କୋପେଣ ଶାପ୍ୟ ତୋତେ ଦଲେକ ତପୋବନ୍ତ
ଶତେସିଂହର ପ୍ରାକ୍ରମ ତୋର ଯେବା ସିଂହକେ ହୋଇ ହତ । ୧୪୭ ।
ସଇରନ୍ଧ୍ରୀ ବୋଲଇ ମୁଣ୍ଡେ ଗନ୍ଧର୍ବଙ୍କ କଳ୍ପଣ ହାଦେ
ସିଂହେକ ପ୍ରାକ୍ରମ ତୋତେ ଅଛୁଟି ପ୍ରମାଦେ । ୧୪୮ ।
ସଇରନ୍ଧ୍ରୀ ଯାଉଅଛୁ ଯେ ତୋହୋର ପୁର
ଅନେକ ଜନସ୍ଥ ଭଗତ ହୋଅ ଯେହାର ପସ୍ଥର । ୧୪୯ ।
ଯେ ମହାମ୍ନାଣୀ ତୋତେ କରନ୍ତୁ ସଦୟେ
ଆରୋଗ୍ୟ ଅକ୍ଳେଶ ହୋଇବ ତୋହୋର କାୟେ । ୧୫୦ ।
ଯେ ମୋହୋର ବୋଲ ମେଣ୍ଟି ଯେବେ ସଇରନ୍ଧ୍ରୀକି ହରବୁ
ତୁ ଶତେସିଂହ ପ୍ରାକ୍ରମ ଯେବା ସିଂହକେ ନାଶଯିବୁ । ୧୫୧ ।
ପ୍ରତକ୍ଷେ ଗୁରୁପତ୍ନୀ ଯେ ଅଟଇ ଗଜଗେଣା
ଗଜଗେଣା ସ୍ପର୍ଶି ହରିଲେ ଆପଣେ ପରାଭବ । ୧୫୨ ।
ମୋହୋର ଶପତ ତୋତେ ଠାକୁରଙ୍କ ଆନ
ଯାଇଂଣ ସଇରନ୍ଧ୍ରୀଟି ବାହୁଡ଼ ଆସିବ ଯେତିକ୍ଷଣ । ୧୫୩ ।
ବାବୁ ପଞ୍ଚଗନ୍ଧର୍ବଙ୍କର ଭାରଯା ଯେହା ନାମ ସଇରନ୍ଧ୍ରୀ
ଯେହାର ଅଙ୍ଗ ଛୁଇଂଲେ ଜୀବନ ଯେଥେ ନ ରହଇ କାହାର । ୧୫୪ ।
ଯେବେ ଜୀବନକୁ ଅଛୁ ତୋହୋର ଆଶ
ଦୂରେ ଥାଇ ପ୍ରଳମ୍ବ କରିବୁ ନ ଯିବୁ ଯେହାର ପାଶ । ୧୫୫ ।
ବାବୁ ମସ୍ତଦେଶେ ମସ୍ତଦେଶେ ତୁହି ସେ ଅଧିକାରୀ
ଯେତେକ ସ୍ୱାମୀ ହୋଇ କଣ୍ଠତେ ନୋହସି ଅପହାରୀ । ୧୫୬ ।

---

୧୫୬। ଯେତେକ ସ୍ୱାମୀ ହୋଇ କଣ୍ଠତେ ନୋହସ ପ୍ରାଣହାର ।— ଣ, ଟ, ଉ, କ, ଓ

କାବୁ ଭୁଞ୍ଜିତ ପଣ୍ଡିତ ଅଛୁ ମହାଭାଗ୍ୟଂ
ଛତ୍ରୀବର ସୋହୋଳ ସୁନ୍ଦର ଅଛୁ ତୁ ସର୍ବଗ୍ୟଂ । ୧୫୭ ।
ଚନ୍ଦନ ମୁଦ୍ର ଦେଇ ମୁଦ୍ରିଲେ ଶତଶ୍ରୀ ସ୍ଥା
ସଇରନ୍ଧ୍ରୀ ସନ୍ନିଧେ ଯାଇଂ ବିଜୟେ ରାଜପ୍ରିୟା । ୧୫୮ ।
ଭ୍ରୁହସିତ ବାକ୍ୟେ ଦେଖା ବଡାଇ ହରଷେ
ଶ୍ରୀକୃଷ୍ଣାପ୍ଲେ ସଇରନ୍ଧ୍ରୀକି ହକାରିଲେ ପାଶେ । ୧୫୯ ।
ମାଗୋ ତୁ ମୋହୋର ପଞ୍ଚଭୂତ ଆତ୍ମାର ବିଶ୍ୱାସୀ
ବିଶ୍ୱାସ ଠାବକୁ ଗୋ ଖଳଲୋକନ୍ତ ନ ପେଷି । ୧୬୦ ।
ମାଗୋ ନଗର ସ୍ତ୍ରୀମାନେ ଯେ ଅଛନ୍ତି ଚତୁରୀ
ବିଶ୍ୱାସ କଥାମାନ ଗୋ ନୁଆରନ୍ତି ଗର୍ଭିକରି । ୧୬୧ ।
ମାଗୋ ତୋହୋର କରେ ଦେଉଅଛୁ ବିଶ୍ୱାସ ଲେଖାଗୋଟି
କୀଚକ ଅନ୍ତେଶ୍ୱରେ ଦେଇ ଆସିବୁ ଲେଉଟି । ୧୬୨ ।
କୀଚକର ଭାରିଯା ନାମ ଅଛଇ ରାଧିକା
ତାହାର ହାଥେ ନେଇ ଲେଖଗୋଟି ଦେଖା । ୧୬୩ ।
କୀଚକକୁ ଦିଅ ଯେହ୍ନେ ଗୁପତେଣ ବୋଲ
ଧାଡିକାରେ ଆସିବୁଟି ବହନ ହୋଇ ଚଳ । ୧୬୪ ।
ଘେନ ବୋଲି ମହାଦେଈ ଯାଚିଲେ ଉପର ହାଥେ
ସଇରନ୍ଧ୍ରୀ ବିସ୍ମରନ୍ତି ଯେହ୍ନେ ମେଣ୍ଟିବି କେମନ୍ତେ । ୧୬୫ ।
ଲୋକତ କର୍ମକୁ ମୁହିଂ ଭୃତ୍ୟ ପ୍ରାୟେକ ଦିଶି
ନ ଗଲେ ଚିତ୍ତ ଅନ୍ତର ଧରିବଟି ବିରାଟ ପାଟବଂଶୀ । ୧୬୬ ।
ସ୍ୱାମୀର ବଚନ ସେ ସେବକ କାହିଂ ମେଣ୍ଟି
କେତେ ଭାଙ୍ଗିବି ମୁଂ ଯେହ୍ନାର ବାକ୍ୟଗୋଟି । ୧୬୭ ।
ବିସ୍ମରଣ ଦେଖା ଯେ କରେଣ ଲେଖ ଘେନ
ଧର୍ମ ଧର୍ମ ସୁମରନ୍ତି ସେ ପାଞ୍ଚାଳୀ ଜନ୍ମସେନୀ । ୧୬୮ ।

---

୧୫୭।୨ ଛତ୍ରୀବର ସୋହନ୍ତ ଅଛୁ ତୁ ସର୍ବଗ୍ୟଂ ।— ଅଧିକାଂଶ ପାଠାନ୍ତର
୧୬୧।୨ ବିଶ୍ୱାସ କଥାମାନ ଗୋ ନୁଆରନ୍ତି ଗୋପ୍ୟକରି ।— ଅଧିକାଂଶ ପାଠାନ୍ତର

ନଗଲେ କୋପ ମୋତେ କରିବ ମହାଦେଈ
ଗଲେଣ କାଞ୍ଚେକ ବଳାକ୍ରାରେ ହରିବ ମୁକୁଇଂ । ୧୬୯ ।
ତୁ ଦେବ ପରମାନନ୍ଦ ପ୍ରସନ୍ନ ପରମ ଯୋଗୀ
ସବ ବଳବନ୍ତ ପୁରୁଷ ତୁ ବୃଷରନ୍ତ ପରିତ୍ୟାଗୀ । ୧୭୦ ।
ଜୟତୁ ନାରାୟଣ ଭଗତମଙ୍ଗଳା
ଏତେ ମହା କଷଣୁଂ ମୋତେ ଉଦ୍ଧାର କର ଦେବକୀର ବଳା । ୧୭୧ ।
ଯେମନ୍ତେ ପାମର ମୋର ନ ଛୁଅଂଇ ଅଙ୍ଗ
ତୁହି ସ୍ନେହାବଗ୍ରହ କର ହେ ଶିଖରଙ୍ଗ । ୧୭୨ ।
ଲେଖଦେଇ ଶ୍ରୀକୃଷ୍ଣ ଚଳଲେ ନଜପୁରେ
ଚଳଲେ ସଇନ୍ଦ୍ରୀ ଯେ ଅନ୍ତପୁର ବାହାରେ । ୧୭୩ ।
ନଗ୍ର ପୂର୍ବଭାଗେ ସେ କାଞ୍ଚେକ ଭୁବନ
ଚଳନ୍ତି ସଇନ୍ଦ୍ରୀ ଯେ ଈଶାନକୁ କରଣ ବନ୍ଦନ । ୧୭୪ ।
ପବନ ଗତ ହୋଇ ଚଳନ୍ତି ପାଞ୍ଚାଳୀ
ଦେଖିଲେ ଆକାଶେ ଉଦୟେ ଅଂଶୁମାଳୀ । ୧୭୫ ।
ଚଳଇ ଜଦ୍ଧସେମା ଜାଣିଣ ନରମାଖୀ
କରଇ ବନୟେ ସେ ଆଦିତ୍ୟ ଦେବତାକଇଂ ଦେଖି । ୧୭୬ ।
ଜୟତୁ କରତାର ସ୍ୱାମୀ ଛାୟାଦେବୀର ପ୍ରାଣପତି
ତମିର ବଦାରଣ ନାଥ ଫେଡବା ଦୁର୍ଗତି । ୧୭୭ ।
ଯେକ ଚକକେ ଯାହାର ସପତ ଅଶ୍ୱ ଯୋଡ
କରୁଣାମଙ୍ଗଳ ନାଥ ଜୟତୁ ବରଞ୍ଚ । ୧୭୮ ।
ସ୍ୱାମୀ ପ୍ରସନ୍ନ ନାରାୟଣ ପ୍ରଭୁ ଜୟତୁ ମାରତଣ୍ଡ
ଅଶୀଲକ୍ଷ ଜୁଣ ଯାହାର ବକାଶଇ ଅକ୍ଷଦଣ୍ଡ । ୧୭୯ ।
କୋଟିୟେ ଧାର ଚକେ ସପତ ଅଶ୍ୱ ଯୋଡ
ବକସେ ଉଦୟେ ନାଥ ନଶାକାଳେ ଲୁଚ । ୧୮୦ ।

---

୧୮୦।୨ ବକସେ ଉଦୟେ ନାଥ ନଶାକାଳେ ପ୍ରାଚୀ ।—
ଟ, କ, ଝ, ଘ, ଡ, ଫ

ସ୍ୱାମୀ ଅର୍କ ବଦାରିଲୁ କଣପୁବନ୍ଦୁର ଭଗତେ
ଆକ୍ରେଷି ମାତ୍ତବସିଲୁ ଦେବ ଚନ୍ଦ୍ରଭଗା ତୀର୍ଥେ । ୧୮୧ ।
ସ୍ୱାମୀ ଜମ୍ବୁଦ୍ୱୀପ ଭରତଖଣ୍ଡ ପୃଥିବୀ ଈଶାନ ଅଗ୍ନି କୋଣେ
ତେଣୁ ସେ କୋଣାର୍କ ନାମ ବରଞ୍ଚ ନାଗପୁରେ । ୧୮୨ ।
ସ୍ୱାମୀ ସଂଗ୍ୟାଂରେ ବଲ୍ଲଭ ତୁ ଅନନ୍ତ ମହେଶ୍ୱର
ତୁହ୍ୱ ସେ ଦିବ୍ୟଚକ୍ଷୁ ପୁରୁଷ ଅଣାକାର । ୧୮୩ ।
ସ୍ୱାମୀ ଚନ୍ଦ୍ରଭାଗା ଦକ୍ଷିଣେ ମଜଦଧି ଉତ୍ତରଭାଗେ
ମହାଯୋଗେ ବସିଲୁ ନାଥ ଚନ୍ତିଲୁ ଶୂନ୍ୟମାର୍ଗେ । ୧୮୪ ।
ଲକ୍ଷେକ କୁସୁମ ଦେବ ନଚ୍ୟୋ ପ୍ରେକକର୍ଣ୍ଣ ପାଟୋଳ
ମର୍କତ ଲିଙ୍ଗେ ଦେଇ ପୂଜିଲୁ ତ୍ରିନେତ୍ରଜ । ୧୮୫ ।
ସ୍ୱାମୀ ପ୍ରେକଲପ୍ତେ ଆସନ ନବକୋଟି ସହସ୍ର ବରଷ
ଧ୍ୟାପ୍ରେଣ ଚନ୍ତିଲୁ ଦେବ ଅଣାକାର ପୁରୁଷ । ୧୮୬ ।
ଦୁସହ ତପ ଦେଖି ପୁରୁଷ ଅଣାକାର
ପୁଷ୍ପେକ ହରି ଉଣା ହୋଇଲା ଲକ୍ଷେକର । ୧୮୭ ।
ମନେ ବିସ୍ମରିଲୁ ଯେ ଚନ୍ତିଲୁ ଦେବରାଜ
କେ ପ୍ରେଥଂ ପୁଷ୍ପେକ ଉଣାକଲା ଆଜ । ୧୮୮ ।
ମୁହିଂ ଯେବେ ଉଠଣ ଯିବ ପୁଷ୍ପ ଆଣି
ଖଣ୍ଡ ତ ଲପ୍ତେ ମୋହୋର ହୋଇବ ପ୍ରେହିଷଣି । ୧୮୯ ।
ସଂକଳ୍ପ ସମାପତ କରିବ କେମନ୍ତେ
ଦକ୍ଷିଣ ଚକ୍ଷୁ ଛାଡିଲୁ ସ୍ୱାମୀ ପୁଷ୍ପର ନିମନ୍ତେ । ୧୯୦ ।
ଦକ୍ଷିଣଭଗ କରେ ଘେନଣ ନଜ ଡୋଳ
ଲିଙ୍ଗର ଉପରେଣ ନେଇ ଚଢାଇଲୁ କମଳ । ୧୯୧ ।
ସେହ୍ୱ ଲିଙ୍ଗ ବିଦାରିଣ ଦେଖିଲୁ ସରୂପ
ତହିଂ ତେ ତେ ଦୃଶ୍ୟମାନ ହୋଇଲା ଅଣାକାର ରୂପ । ୧୯୨ ।
ଯୁଗାନ୍ତେକ ପୁରୁଷ ତୋତେ ହୋଇଲା ପ୍ରସନ୍ନ
କମଳ ଆକାର ପୁଣି ଦିଶିଲା ଲୋଚନ । ୧୯୩ ।

---

୧୮୮।୨ କେ ପ୍ରେଥି ପୁଷ୍ପେକ କଲକ ଗା।ଧ ଜ ।—ଜ, ଛ, ଜ

ତୁ ଦେବ କମଳଲୋଚନ କରତାର
ଅଦଭୂତ ନାଥ ମୋତେ କରିବାକ ପାର । ୧୯୪ ।
ସ୍ୱାମୀ ଋଷିଙ୍କ ସତ୍ୟଯୁଗେ ମୋହୋର ନାମଟି କେତୁକା
ତଜ୍ଜଦ ବ୍ରହ୍ମା ହତ୍ୟାଗଲା ଉତ୍ପଲ ଶୂଦ୍ରକ ଯେଉଁକା । ୧୯୫
ସେ ଆହ୍ଦ ଧବଳୀ କ ଶରଣ ପଦ୍ମ ମାଗି
ଭଗତ ନମନ୍ତେ ସେ ସରୂପ ପରିତ୍ୟାଗି । ୧୯୬ ।
ଅଥବା ବନସ୍ଥ ତୁ ହୋଇଲୁ ଯେବେ ମୋତେ
ଶରଣ ରକ୍ଷଣ ମୁଂ ନ କରିବ କେମନ୍ତେ । ୧୯୭ ।
ଧବଳୀର ବଚନେ ମୁଂ ରକ୍ଷାକଲି ତାହା
ଇନ୍ଦ୍ରଭୂତ ଜନେ ମୁଂ ଭକ୍ଷିବ ତାର ବାହା । ୧୯୮ ।
ସ୍ୱାମୀ ଦ୍ୱାପର ଅବତାରେ ମୁଂ ପାଂଶ୍ଚ ଯେଉଁକବଳା
ରୁଦ୍ରବାକ୍ୟ ହୁଣ୍ଡଲ ମୋତେ ଶାପ୍ୟ ଦିଲେ କପିଳା । ୧୯୯ ।
ତାହାଂକର ବାକ୍ୟେ ମୋତେ ହୋଇଲା ପଞ୍ଚୁପନ୍ତ
ପଦ୍ମେକ ବର୍ଷ ବସିଲ ମୁଂ ଯେଉଁକବଳା ପାଂଶ୍ଚ । ୨୦୦ ।
ସ୍ୱାମୀ ଯେଉଁକବର୍ଣ୍ଣ ପାଟଳବସ୍ତ୍ର ପଞ୍ଚାଳନ କୋଟି ନେଲୁ
ତବ ପୁତ୍ର ଶନଶ୍ଚରକୁ କନ୍ୟା ପ୍ରଦାନ କରାଇଲୁ । ୨୦୧ ।
ସ୍ୱାମୀ କଉରେବ ସଭାତଳେ ଧୃଶାସନ କେଶ ଆକ୍ରଷଣ କେଲେ
ଛପନକୋଟି ବସ୍ତ୍ର ଦିଲୁ ମୋତେ ଆତଙ୍ଗର କାଳେ । ୨୦୨ ।
ସ୍ୱାମୀ ପରମାନନ୍ଦ ସତ୍ୟଯୁଗେ କଳପୀ ନାମେ ନାରାୟଣ
ତୋତେ ହରି ନେଇଥିଲା ଯେ କଇଶୀକ ନାମେ ରାବଣ । ୨୦୩ ।
ଆପଣା ରମ୍ୟସ୍ଥାନ ମନ୍ଦରେ ଥୋଇଥିଲା
ଅନୁବ୍ରତେ ଲଂକା ଭୁବନ ତାହାର ହବସ ପ୍ରାପ୍ତେକ ହଶୀଲା । ୨୦୪ ।

---

୧୯୭ { ଅଥବା ବନସ୍ଥ ମୋତେ ହୋଇବାକ ଯେବେ
ଶରଣ ରକ୍ଷଣ ମୁଂ କରିପାରେ ତେବେ ।—ଳ, ଣ }

୨୦୨।୧ ସ୍ୱାମୀ କଉରବ ଆସ୍ଥାନ ତଳେ ଧୃଶାସନ ବସ୍ତ୍ରହରଣ କଲାକାଳେ ।—
କ, ଣ, ଠ

ନବଖଣ୍ଡ ପୃଥୀ ସବୁ ହୋଇଥିଲା ସର୍ବଗତ
ତହିଁରେ ମନୁଷ୍ୟ ରୂପେ ମୁଂ ହୋଇଲି ଉତପତ୍ତି । ୨୦୫ ।
ମୋତେ ସେ ରାବଣ ଯେ ଘେନିଗଲା ହରି
ନିଷାଦ ନାମରେ ରାମଚନ୍ଦ୍ର ହୋଇଲେ ହିନ୍ଦୁକାରୀ । ୨୦୬ ।
ତହିଅର୍ଥେ ରାବଣକୁ ବଧକଲେ ମମ ପ୍ରଭୁ
ଜନକର ଜ୍ୟୋତ ପୁଣ ବଳାଣିଲା ତହୁଂ । ୨୦୭ ।
ସ୍ୱାମୀ ତୁମ୍ଭ ମୋତେ ମୁହିଂ ତୋତେ ଅନେକ ବାର ଜନ୍ମି
ସ୍ନେହ କଷଣୁଂ ଉଦ୍ଧର ମୋତେ କମଳାର ସ୍ୱାମୀ । ୨୦୮ ।
ସ୍ୱାମୀ ଦକ୍ଷନନ୍ଦନ ତୋତେ ହରିନେଲା ଯେତେବେଳେ
ମହାଖଳା ପାତ ତୋତେ ଥୋଇଲା କମଣ୍ଡଳେ । ୨୦୯ ।
ବସୁଧା ରୂପେଣ ମୁଂ ଥିଲି ଅବତରି
ତହୁଂ ଆଣିଲ ତୋତେ କମଣ୍ଡଳ ବିଦାରି । ୨୧୦ ।
ସ୍ୱାମୀ ମେତେ ସଂକଟ ଯେ ପଡିଲା ଯେତେବେଳେ
ତୁମ୍ଭ ସେ ବଟୁର ନାଥ ଅନାଦି ଦିବ୍ୟଡୋଳେ । ୨୧୧ ।
ସ୍ୱାମୀ ଇନ୍ଦ୍ର ନାଶ ଗଲା ଯେ ଭୃଷ୍ଟାର ବିବାଦେ
ପଞ୍ଚମୂର୍ତ୍ତି ହୋଇଲେ ସ୍ୱାମୀ ତୋହୋର ପ୍ରସାଦେ । ୨୧୨ ।
କର୍ମର ବିପାକେ ସ୍ୱାମୀ ପଡିଲା ଅପଚୟେ
ଅଗ୍ୟାଂତେ ପଶିଲୁ ଆସି ଗୋପ୍ୟାନ କରି କ'ସ୍ନେ । ୨୧୩ ।
ସ୍ୱାମୀ ସଇରନ୍ଧ୍ରୀ ରୂପେଣ ମୁହିଂ ରହିଲାଇଂ ସ୍ନେଥି
ଅଗ୍ୟାଂତବାସ ନିମନ୍ତେ ଶ୍ରୀକୃଷ୍ଣାର ବଶ୍ୟବୃତ୍ତି । ୨୧୪ ।
କୀଚକର ତହିଂକ ମୋତେ ପେଶିଲେ ଧର୍ମ ଲଙ୍ଘି
କେହି ମୋତେ ସାଖୀ ନାହିଂ ନୋହିଲାକ ଆନ ସଙ୍ଗୀ । ୨୧୫ ।
ଅବଶ୍ୟ ପାମର ନ ଛାଡ଼ିବ ମୋହୋର ବର୍ଣ୍ଣ
ବଳାତ୍କାରେ ହରିବ ସ୍ନେବେ ସଂସାରକୁ ରହିବ ଲେଖନ । ୨୧୬ ।
ଅଥବା କୀଚକ ମୋତେ ହରିବାକ ବଳେ
ମୁହିଂ କ ବ୍ରତିବ ନାଥ ଝଣେହେଂ ତେତେବେଳେ । ୨୧୭ ।

---

୨୧୬।୨ ବଳାତ୍କାରେ ହରିବ ସ୍ନେବେ ସଂସାରକୁ ରହିବ ଲାଞ୍ଛନା ।—କ,ଥ

ମମ ପ୍ରାଣତ୍ୟାଜ ପାଶବୃଷ୍ଟି ମୃଚ୍ଛି
ପୂର୍ବଭାବେ ଯେବେ ତୋହୋର ମୋହୋରେ କାର୍ଯ୍ୟ ଅଛି । ୨୧୮ ।
ତୁ ଦେବ ଭଗତମସ୍ତଳ ଅନାଦ୍ଧ
ତୁ ଦେବ ସତ୍ୟବାକ୍ୟ ଧୃତ ଅନୁସିଦ୍ଧି । ୨୧୯ ।
ତୁ ଦେବ ସଂକଟ କାଳକୁ ଉଦ୍ଧାରନ୍ତା
ତୁ ଦେବ ସଂସାର ଜନଂକୁ ଅଚ୍ଛୁ ହିତା । ୨୨୦ ।
ତୁ ଦେବ ଜପମନ୍ତ୍ର ଧ୍ୟାନ ଗ୍ୟାନସିଦ୍ଧି
ତୁ ଦେବ କୃପାନିଧି କରୁଣା ବାରିଧି । ୨୨୧ ।
ତୁ ଦେବ ଯଶୋବନ୍ତୀ ବଲ୍ଲଭ ହନମଣି
ତୁ ଦେବ ସମୂଳ ଜନ ଗ୍ୟାନ ପରଣାମି । ୨୨୨ ।
ତୁ ଦେବ ସମୂଳ ଜନ ସୋଦରୀ ପଦ୍ମନାଭ
ତୁ ଦେବ ଶରଣ ଉଦ୍ଧାରଣ ଆଦିଦେବ । ୨୨୩ ।
ତୁ ଦେବ ଯୋଗ ଧାରଣ ପଣ୍ଡିତ ବ୍ରହ୍ମରକ୍ଷା
ତୁ ଦେବ ସକଳ ଜନର ପୂରାଅ ମନବାଞ୍ଛା । ୨୨୪ ।
ତୁ ଦେବ ହନାଶନ ସିଂହକା ସୂତ ଗନ୍ଧ
ତୁ ଦେବ ମହ୍ନମାଂ ଧାରଣ ବଶ୍ୱବାନ୍ଧୁ । ୨୨୫ ।
ତୁ ଦେବ ପ୍ରଳୟ ମହାପ୍ରଳୟ ଈଶ୍ୱର
ପରେଣ ପରମାନନ୍ଦ ପରଲୋକ ହିତକାରୀ । ୨୨୬ ।
ତୁ ଦେବ ଜଗୁଜୀବନ ନାଥ ପ୍ରାଣଗୁରୁ
ତୁ ଦେବ କୃପାଜଳ ସମୂଳ ଉଦ୍ଧାରୁ । ୨୨୭ ।
ତୁ ଦେବ ଯତ୍ତ ସତ୍ତ ସରୁପେଣ ପରକ୍ଷା
ତୁ ଦେବ ସେବା ଜାଣି ପୂରାଅ ମନବାଞ୍ଛା । ୨୨୮ ।

---

୨୨୨।୧ ତୁ ଦେବ ଗୁମ୍ଫାର ବଲ୍ଲଭ ହନମଣି ।—ଦ, ଛ, ଜ
୨୨୪।୧ ତୁ ଦେବ ଯୋଗାଧି ପଣ୍ଡିତ ବ୍ରହ୍ମଦେଶ୍ୱ ।—କ, ଛ
୨୨୫।୨ ତୁ ଦେବ ପ୍ରାଣଧାରଣ ବଶ୍ୱବାନ୍ଧୁ ।—ଛ, ଦ, ଜ

ତୁ ଦେବ ଶରଦ ହେମନ୍ତ ଶିଶିର ବସନ୍ତ ଗ୍ରୀଷ୍ମ ବରଷା
ତୁ ଦେବ ଷଡଋତୁଙ୍କୁ ବାଞ୍ଛିତ ମନୀଷା । ୨୨୯ ।
ତୁ ଦେବ ମମ ଦୁଖେଣ ସବା ହୋଇ ଦୁଖୀ
ଯ୍ୱେ ଦୁସ୍ତର କଷଣରୁ ପାରିକର ଜନା ରଖି । ୨୩୦ ।
ମମ ଚନ୍ଦ୍ରାକର ନାଥ ଭଗତ ମହଲା
ଅରୁଣ ସୋଦର ନାଥ ଅନନ୍ତ କୋଟି କଳା । ୨୩୦ ।
ଉଦୟ୍ୱେ ମାରତଣ୍ଡ ଚରଣେ ଶରଣ ନତ୍ୟେ
ଶଦ୍ଧ ମୂନ ସାରେଳା ଦାସ ବନସ୍ତ·ଅନୁବ୍ରତେ । ୨୩୨ ।
। ୩୨୮୯ ।



## ଛାୟା ମାୟା ସାହାଯ୍ୟରେ ଦ୍ରୌପଦୀଙ୍କର ଗମନ
## ଓ
## କୀଚକର ଲାଞ୍ଛନା

ଦ୍ରୌପଦୀ ବଚନ୍ତୁ ଦେଖିଣ କମଳ ଲୋଚନ
ମହାଭୟୁ ଉପୁଜିଲା ସେ ଜଗତ ଧାରଣ । ୧ ।
ଛାୟା ମାୟା ବେନି ଦେବୀନ୍ତ ସେ ସନ୍ନିଧେ ହକାରି
ମଞ୍ଜପୁରକଇଁ ଯିବ ଥିବ ସଇରନ୍ଧ୍ରୀକି ଆବୋରି । ୨ ।
କୀଚକର ଭୁବନକୁ ଯେ ଯାଉଅଛି ଜଘସେନୀ
ବନ୍ଧନ କରି ତାକୁ ଆସ ତୁମ୍ଭେ ଘେନି । ୩ ।
ସ୍ୱାମୀର ବଚନେ ଯେ ଛାୟାମାୟା ବେନିମୂର୍ତ୍ତି
ଦୁହେଁ ପ୍ରବେଶ ହୋଇଲେ ପାଞ୍ଚାଳୀର ଶରୀରେ । ୪ ।
ଦେଖିଣ ମାହେଶ୍ୱରୀ ବେନି ଯେ ଦେବୀଙ୍କ
ସାନନ୍ଦେଣ ଜଘସେନୀ ବିକ୍ରମ ପାଦଗତ । ୫ ।
କୀଚକର ନବରି ସନ୍ନିଧେଣ ଯାଇଁ ପାଇ
ବିଶ୍ୱାସ ମୃଦୁସ୍ୱର୍ଣ୍ଣୀ କୀଚକକୁ ଜଣାଇ । ୬ ।
କୀଚକ ବିଜେ କରିଅଛି ଛନ୍ଦ ଶାଳା ମଧ୍ୟରେ
ବଚନ୍ତେ ମୃଦୁସ୍ୱର୍ଣ୍ଣୀ ଯାଇ କହିଲେ ଛାମୁରେ । ୭ ।
ସଇରନ୍ଧ୍ରୀ ଆଗତ ଦେବ ଆମ୍ଭର ଭୁବନେ
ଧାଇଁକାରେ କୀଚକ ଯେ ଉଠିଲା ତୋଷମନେ । ୮ ।
ତାରା ଅଭିଳାଷେ ଚନ୍ଦ୍ର ବିଶଇ ଯେସନେ
କୀଚକ ସାନନ୍ଦ ଯେନ୍ହେ ମଳୟ ପ୍ରସନ୍ନେ । ୯ ।

---

୩।୨ ବିରାଟର ଭୁବନକୁ ବନ୍ଧନ ଆସ ତାକୁ ଘେନି ।—ଛ, ଧ, ଜ
୯।୨ କୃତ୍ତିକା ଶୋଧନ ଯେ ମଳୟ ପବନେ ।—ଝ
୯।୨ କୀଚକ—ଢୋଲ ବାଉଁଶ ।

ତତକ୍ଷଣେ ବେଶ ଯେ ହୋଇଲା ଷାରମଣି
ଦିବ୍ୟ ସିଂହାସନେ ସେ ବସିଲା ସିଂଘଠାଣି । ୧୦ ।
ଅନେକ ରତ୍ନ ସେ ଆଭରଣ ଶରୀରେ
ମୃଗନାଭି କସ୍ତୁରୀ ଯେ ଲେପନ ଧାତକାରେ । ୧୧ ।
ବେଳ ପାଞ୍ଚଦଣ୍ଡ ଯେ ଦିନକର ପ୍ରକାଶ
କୀଚକର ମନ୍ଦିରେ ଯାଇ ସଇରିନ୍ଧ୍ରୀ ପ୍ରବେଶ । ୧୨ ।
ନିର୍ଧନେ ଧନ ପ୍ରାପତ ଯେହ୍ନେ ଅନ୍ଧକୁ ଚକ୍ଷୁଦାନ
ମୃତ୍ୟୁପ୍ରାଣୀ ଯେସନେ ଅମୃତ ପାନେ ପାଇଲା ଜୀବନ । ୧୩ ।
ଅନ୍ଧାର ମନ୍ଦିରେ ଯେସନେ ଦିଶେ ଆଲୋମୟେ
ଅନେକ ଉତସାହ କୀଚକର କାୟେ । ୧୪ ।
ଅନେକ ଆଲଟ ଯେ ବ୍ରମରନ୍ତ ଢାଳି
ଖଟନ୍ତି ଲକ୍ଷେକ ଯେ ବିଳାସୁଣୀ ବାଳୀ । ୧୫ ।
ନିର୍ମଳ ଶରୀର ତାର ସଇରିନ୍ଧ୍ରୀ ରୂପ ଦେଖି
ରେ ରେ ପ୍ରାଣବଲ୍ଲଭୀ ମୋତେ ଉଦ୍ଧର ଶଶୀମୁଖୀ । ୧୬ ।
ଶରଦ ପୂର୍ଣ୍ଣିମୀ ଚନ୍ଦ୍ରମା ଜାଣି ତୋହୋର ମୁଖଗୋଟି
ଦରିଦ୍ର ଭୁବନେ ତୁ ଗୋ କଲୁ କଣ୍ୟ ବୃଷ୍ଟି । ୧୭ ।
ତୋହୋର ଇଚ୍ଛା ମୋତେ ଅଛୁନ ରେ ସଂଘାତ
ମୁହିଂ ସେ ମଦକଳ ଅନମିତେ ପେଶିଲ ଯେ ଦୂତ । ୧୮ ।
ପରେ ବୋଲାଇଣ ମୁଂ ଯେ କାର୍ଯ୍ୟନାଶ କଲି
ମମ ଇଚ୍ଛାୟେ ତୋତେ କିଂପେ ହକାର ନ ବୋଇଲି । ୧୯ ।
ମୋହୋର ମନ୍ଦପଣେ କଲୁ ତୁ ମୋତେ କୋପ
ଭୁଜେ ବନ୍ଧନ କରି ମୋତେ ସାରସି ତୁ ପରତାପ । ୨୦ ।
ଅନେକ ଗୃହ୍ଟୁ ବଚନେ କୀଚକ ବୁଝାଇ
ତାପଇ ବିଷ ଲହରୀ ସଇରିନ୍ଧ୍ରୀ ଅଙ୍ଗେ ଯାଇ । ୨୧ ।

---

୧୭।୨ ଯେ୍ସ ଦିବ୍ୟ ଭୁବନେ ରୁ କଲୁ ଗୋ କଣ୍ୟ ବୃଷ୍ଟ । —ତ, ଚ
୧୮।୧ ତୋହୋରେ ରକ୍ଷା ମୋତେ ଅଛଇ ରେ ସଂଘାତ । —ଦ, ଗ, ଣ

ଯେ୍କଲଯେ୍ କରଣ କୀଚକ କରଇ ଦୃଷ୍ଟି
ଗ୍ରୀମୂରେ ସଇରନ୍ଧ୍ରୀ ଥୋଇଲେ ସୁପାତ୍ର ଲେଖଗୋଟି । ୨୨ ।
ଚନ୍ଦ୍ରଂର ଉପରେ ଥୋଇଲା ଚତୁସମ ଗୋଟିଯେ୍
ଧାତକାରେ ଲେଉଟିଲେ ପାଇଣ ମହାଭଯେ୍ । ୨୩ ।
ଆସନ୍ତେ କୀଚକ ଯେ ଉଠଇ ଚଞ୍ଚଳ
କାହ୍ନଂକ ଯାଉଅଛୁ ଗୋ କନ୍ଦର୍ପ୍ପ ସ୍ତବମନ୍ତ । ୨୪ ।
ଉହ ଉହ କାହ୍ନଂକ ଯାଉ ଅନେକ ବିନଯ୍ବୋଲି
ଅନ୍ତରୀକ୍ଷ ଦେବଦୂତଯେ୍ ତାହାକୁ ପକାଇଲେ ପେଲି । ୨୫ ।
ଅସାଷ୍ଟମେ କୀଚକ ଯେ ପଡିଲା ମୁଖମାଡି
ଶରୀରୁ ପଞ୍ଚ ଆତ୍ମା କ ଗଲା ତାର ଛାଡି । ୨୬
ପୁଣିହିଂ ମହାବୀର ଉଠଇ ସାଷ୍ଟାମେ
ସଇରନ୍ଧ୍ରୀକ ଆକ୍ରୋଷଇ ମଦନ ମନ୍ତଭ୍ରମେ । ୨୭ ।
ସଇରନ୍ଧ୍ରୀ ସିଞ୍ଚାଡିଲେ ବାମକର ଘାତେ
ପୁଣିହିଂ କୀଚକ ଯେ ପଡିଲା ମୋହଗତେ । ୨୮ ।
ପୁଣିହିଂ କୀଚକ ଯେ ମୋହଚେତ ଉଠି
ଆରେ ପ୍ରାଣବନ୍ଧୁ ବୋଲି ଧଇଲା ଲେଉଟି । ୨୯ ।
ପୁଣିହିଂ ଦରଶନ୍ତେ ଯେ ଧଇଲା ଅଞ୍ଚଳ
ଭଉଣ କୀଚକ ଯେ କରଇ ତାକୁ କୋଳ । ୩୦ ।
କେଉଣ ଓଗାଳନ୍ତେ ସମସ୍ତ ମୃଦୁସ୍ଥଳୀ
ଆଲେ ଶରୀର ନ ଛୁଅଂ ମୋର ସଇରନ୍ଧ୍ରୀ ଦେଖ ବୋଲି । ୩୧ ।
କୀଚକ ଅସାଷ୍ଟମେ ଅଇଲେ ସର୍ବବାଳୀ
ସଗେଣ ପେଲିଦେଲେକ ପାଞ୍ଚାଳ ରାଜାର ଦୁଲାଳୀ । ୩୨ ।
ଶ୍ରୀଭୂଜର ବାତ ଯାଇଂ ଲାଗିଲା ତା ହୃଦରେ
ନଚେଷ୍ଟ ହୋଇଣ ପଡଲେ ସର୍ବେ ଧୂଳିରେ । ୩୩ ।

---

୨୨।୨ ଗ୍ରୀମୂରେ ସଇରନ୍ଧ୍ରୀ ଥୋଇଲେ ସୁବ୍ରପାତ୍ର ଲେଖଗୋଟି । —
ଡ, ଖ, ଙ, ଚ, ଛ

ଲୋଭେଣ କୀଚକ ଯେ ନ ଗୁଡଇ ଅଞ୍ଚଳ
ସଇରନ୍ଧ୍ରୀ ଗାଢେ ଆସନ୍ତେ ପଡ଼ଇ ସେ ଭୂମିତଳେ । ୩୪ ।
କ୍ଷଣେ କ୍ଷଣେ କୀଚକ ଯେ ପଡ଼ଇ ମୂର୍ଚ୍ଛା ମାଡ଼ି
ଶରୀରୁଂ ରୋଧିର ବହଇ ନାଶିକା ମୁଖ ଛାଡ଼ି । ୩୫ ।
ରୋଧିରେ ବିଲେପନ ହୋଇଛି ତାର ଅଙ୍ଗ
ମନ୍ଦାର କୁସୁମ ଜାଣି ଦିଶଇ ସୁରଙ୍ଗ । ୩୬ ।
ପୂରୁଂ ବାହାର ସେ ଯେ ହୋଇଲା ସଇରନ୍ଧ୍ରୀ
କୀଚକ ସଇରନ୍ଧ୍ରୀର ଅଞ୍ଚଳ ଅଛି ଧରି । ୩୭ ।
ସଇରନ୍ଧ୍ରୀର ବାମ ଦକ୍ଷିଣେ ଲାଗିଛନ୍ତି ଗୁପ୍ତ ମାୟା ବେନି
ଆସ୍ଥାନର ତଳକୁ ବୋଲି ତାଙ୍କୁ ଗଲେ ଘେନି । ୩୮ ।
ପୁଣ ପୁଣ ଅଞ୍ଚଳ ଧରନ୍ତେ ଆସଇ ଦେଖା ଗେଲ
ଗୋଡ଼ାଇଣ ବଚନ ସେ ପୁଣ ପୁଣ ବୋଲି । ୩୯ ।
ସଇରନ୍ଧ୍ରୀ ବୋଇଲେ ଯେତେ ରାଜ୍ୟେ ଯେମନ୍ତ ବିଗ୍ରହ
ବଳେଣ ନାୟକ କେ ହରଇ ବଳାତ୍କାର । ୪୦ ।
ଜଳ୍ଲୋଳ ନୟନ ତାର ସୁନ୍ଦର ବଦନ
ଶରଦକାଳେ ଯେହ୍ନେ ନିର୍ମଳ ଦିଶଇ ଜହ୍ନ । ୪୧ ।
ଲୋତ୍ୟେଣ ବ୍ୟାପିତ ତାହାର ମାଳେନ୍ଦୀ ମାଳ ଆଖି
ଯୁଧିଷ୍ଠି ହେଠମାଥ ହୋଇଲେ ତାହା ଦେଖି । ୪୨ ।
ପଶାଖେଳେ ହସ୍ତିନାୟେ ହୋଇଲା ଯେମନ୍ତ
ସେହି ସାଦୃଶେ ହୋଇଲା ଯେବେ ମନ୍ଦ ଭୁବନନ୍ତ । ୪୩ ।
ଷଣ୍ଢ ଯେସନେକେ ଗୋଡ଼ାଇ ଥାଇ ଗାଈ
ପଛେଣ କୀଚକ ସେ ଆସ୍ଥାନେଣ ପାଇ । ୪୪ ।
ସଭାରେ କୀଚକ ଯେ ନ ମଣିଲା ଲଜ୍ଜା
ନିର୍ଲଜ ଶରୀର ତାହାର ସମସ୍ତ କଳ୍ପ ତେଜ୍ୟା । ୪୫ ।
ନଶତେ କାଳକୁ ଯେବେ ହୋଇଛି ଜାଣ ପ୍ରାଣୀ
ଅଥବା ଅର୍ଥ ଅନର୍ଥ ଯେତେକପ୍ରାୟେ ଜାଣି । ୪୬ ।
ବିରାଟରେ ଆସ୍ଥାନ ପୂରିତ ଗହଳ
ରୋଦନ କରଇ ସଇରନ୍ଧ୍ରୀ ଆସ୍ଥାନର ତଳ । ୪୭ ।

ସମସ୍ତେ ଚକିତ ସେ ହୋଇଲେ ତାହା ଦେଖି
ଜଗୁଜନ ମୋହନୀ ସେ ଶରଦ ଚନ୍ଦ୍ରମୁଖୀ । ୪୮ ।
ଆସ୍ଥାନେ ବସିଅଛନ୍ତି ବିରାଟ କୋନ୍ତଭଟ୍ଟେ
ପଶାକ୍ରୀଡ଼ା ଖେଳନ୍ତି ସେ ଅତି ମନତୁଷ୍ଟେ । ୪୯ ।
କୀଚକର ଅବସ୍ଥା ଦେଖିଣ ମଚ୍ଛନାହା
ଅଧର ପୃଷ୍ଟ କରି ସେ ଲଲାଟେ ଚାଡ଼ଇ ବେନବାହା । ୫୦ ।
ଦ୍ରୌପଦୀ ଅଞ୍ଚଳ କୀଚକେ ଧରିଅଛି କରେ
ବୋଇଲେ ପାଞ୍ଚାଳୀ ଯେ ଶୋକଇ ଉଚ୍ଚସ୍ୱରେ । ୫୧ ।
ସଇରନ୍ଧ୍ରୀ ବୋଇଲେ ରାଜନ୍ତ ଶୁଣିମା ମଚ୍ଛପତି
ତୋହୋର ରାଜ୍ୟେ ମୋତେ ହୋଇଲା ଅନୀତି । ୫୨ ।
କାହାର ଚର୍ଣ୍ଣ ଅବା କେ ସେବା ନ କରଇ
ପ୍ରଭୁପଣ ହୋଇଲେ କ ବଳାତ୍କାର କରଇ । ୫୩ ।
ରାଜାଂକର ଧର୍ମରାଜ୍ୟେ ଜାଣିମା କେମନ୍ତେ ।
ଅନାଥକଇଂ ସଦୟା ଯେବେ ଉପୁଜଇ ଅନୁବ୍ରତେ । ୫୪ ।
ପରଜା ତପୋଧନ ଅନାଥ ନରମାଖୀ
ଶରଣ ସମ୍ପଦ ରାଜ୍ୟ ରଜାହ୍ନଂ ସେ ରଖି । ୫୫ ।
ମହାକ୍ରୋଧ ଅବସ୍ଥା ହୋଇ ସଇରନ୍ଧ୍ରୀ ଯେ ପୁଚ୍ଛି
କୀଚକେ ଯେ ମୋତେ ବଳାତ୍କାରେ ହରୁଅଛି । ୫୬ ।
ବିରାଟ କୋପକଲା ସଇରନ୍ଧ୍ରୀ ବାକ୍ୟ ଶୁଣି
ଦେଖା ମୋତୀ ଦୋଗୁରୁଣୀ ପ୍ରକୃତି ଓଚ୍ଛବାଣୀ । ୫୭ ।
ସେ ମୋହୋର ଶ୍ୱଶୁରର ଅଟଇ ଭୃତ୍ୟଦାସୀ
ଅଗ୍ୟାନେ କୀଚକ ସେହା ଗୁରୁକଇଂ କଂପେ ରସି । ୫୮ ।
ଯାହାର ବାହୁବଳେ ମଚ୍ଛଦେଶ ମଦ୍ଧଦେଶ ବେନରାଜ୍ୟ
ତାହାର ବନ୍ଧୁଶ୍ରୀ ହୋଇଲେ ଭୁଞ୍ଜିବୁ ଅଇଶ୍ୱର୍ଯ୍ୟ । ୫୯ ।
ଲେଙ୍କେ ପ୍ରୀତି ହୋଇଲେ ଆପଣେ ହୋସ୍ତେ ହୀନ
ଅମାର୍ଗେଣ ପଶିଲେ ବପୁ ହୋଇବାକ କ୍ଷୀଣ । ୬୦ ।
କହୁଂ କହୁଂ କୋପିତ ସେ ମଚ୍ଛ ଅଧିକାରୀ
ରାଗେ ବୋଇଲା କୀଚକେ ସଇରନ୍ଧ୍ରୀକି ନଅ ବାଳ ଧରି । ୬୧

ନରାଧାର ବଚନେ ସାନନ୍ଦ ତାହାର ମତି
ସଇରନ୍ଧ୍ରୀ ଭୁଜ ଧରି ଉଚ୍ଛୁଡ଼ଇ କୀଚକ ସେନାପତି । ୬୨ ।
ରାଜାର ହରଣ କଲେ କି ବ୍ରତଇ ଆର କେହି
କେବଣ ସ୍ୱାମୀ ଲୋ ଅଛଇ ତୋର କାହିଂ । ୬୩ ।
କୀଚକ ଉଚ୍ଛୁଡ଼ନ୍ତେ ନ ଚଳଇ ସଇରିନ୍ଧ୍ରୀ
ଯେସନେକେ ନକ୍ଷତ୍ରେ ରହଇ ମେରୁଗିରି । ୬୪ ।
ନଅରେ କୀଚକ ବୋଲ ବିରାଟ ପୁଣ ପୁଚ୍ଛି
ହୋଇଲା ତୋହୋର ଭାରିଯା କେ ତାହାକଇଂ ରଖି । ୬୫ ।
ବିରାଟର ବଚନେ କୀଚକ ଉଚ୍ଛୁଡ଼ଇ ତାର କର
ଯେସନେକେ ନକମ୍ପ କଣପ୍ଳ ଗିରିବର । ୬୬ ।
ସଇରନ୍ଧ୍ରୀର ଅବସ୍ଥା ଦେଖିଣ କୋନ୍ତଭଟ୍ଟେ
ଧର୍ମ ଧର୍ମ ସୁମରି ବସିଲେ ବଦନ ହେଟେ । ୬୭ ।
ହେ କୃଷ୍ଣ ପ୍ରତିକାର କରସି ବାସୁଦେବ
ଯେଉଁକ୍ଷଣି ବିରାଟର ସମ୍ପଦ ନାଶଯିବ । ୬୮ ।
ହେ ଦେବ ନାରାୟଣ ପାଶକର କଇଦେହୀ ସାଇଂ
ଭ୍ରାଥମାନେ ମୋହୋର ଯେଉଁହା ନ ଦେଖନ୍ତୁ କେହି । ୬୯ ।
ଭୀମ ଅର୍ଜୁନ ଦେଖିଲେ ନାଶଯିବ ବିରାଟ
ନମିଶେକ ବଧ କରିବେ ଯେଉଁହାର ସମରାଷ୍ଟ୍ର । ୭୦ ।
ମୁହିଂ ଦୁର୍ଗତି କଷ୍ଟ ଅଛୁ ଯେଉଁହାର ପୁରେ ଥାଇ
କୀଚକର ଦୋଷେ ତ ନାଶଗଲା ଯେଉଁହି । ୭୧ ।
କୋନ୍ତେ ବୋଇଲେ ବିରାଟ ଯେଉଁକଥା ନ ଯୋଗାଇବାକୁ
ତୁ ଯେ ଦଣ୍ଡଧାରୀ ଅମିତ ନବର୍ତ୍ତି କରିବୁ ସବୁ । ୭୨ ।

---

୬୪।୨ ଯେସନେକେ ନକ୍ଷତ୍ରେ ରହଇ ହିମଗିରି ।—ଝ, ଠ, ଝ
୭୧।୨ "କୀଚକର ଦୋଷେ ତ ନାଶଗଲା ଯେଉଁହି ।" ପରେ 'ଦ, ଛ, ଜ' ପୋଥିରେ ଅଧିକା ପାଠ:—

କୀଚକ ବିରାଟକୁ ଯେବେ ନାଶ ମୁହିଂ କରିବି
କୋଉ ପଣ୍ଡା ନାମଗୋଟି କେହ୍ନେ ବୋଲାଇବି ।

ଆହୋ ବିରାଟ କ୍ଷୀରେନ୍ଦ୍ର ଲଂଘିଲେ କି ପୃଥୀ ହୋଯେ ରକ୍ଷା
ଶୀବ ସମ୍ପଦ ନ ପାଇଲେ କି ପୂରେଇ ମନୋବାଞ୍ଛା । ୭୩ ।
ଷଣ୍ଢ ପ୍ରହାର କଲେ କି ବ୍ରତଇ ହାଦେ ଗାବ
ଧର୍ମ ଲଂଘିଲେ ସଚରାଚର ବ୍ରତଇ କେବଣ ବାଗ । ୭୪ ।
ବିରାଟ ବୋଇଲେ କୋନ୍ତେ ଅମୀତ୍ତ କି ଯେ କଥା
କେବଣ ଭାଗ୍ୟ ଯେହ୍ନାର ଠାକୁରଂକର ହୋଇବ ବନିତା । ୭୫ ।
ପ୍ରୟାଗେ ଝାସି ସେ ଯାହା କରିବ ମନବାଞ୍ଛା
କୀଞ୍ଚକ ପ୍ରସନ୍ନେ ପ୍ରାପତ ହୋଇବ ଯେହ୍ନାର ଇଚ୍ଛା । ୭୬ ।
ଘୃତ ଭୋଜନ ପାଇଲେ କି ତେଜ୍ୟା କରନ୍ତି ବହ୍ନ
ଭାର ନିବାରଣ ହୋଇଲେ କି ବିସରଇ ମେଦନୀ । ୭୭ ।
ପ୍ରାପତ ନିଧି କେ ପୁଣ ପେଲଇବ ପାଦେ
ବିପୁଳ ଭୋଗ ଭୁଞ୍ଜିବ ସଇରନ୍ଧ୍ରୀ କୀଞ୍ଚକର ପରସାଦେ । ୭୮ ।
ବିରାଟେ ବୋଇଲେ କୋନ୍ତେ ଅତି ପୁଣ୍ୟ କଲେ ସୁନ୍ଦର ହୁଅନ୍ତି ଯୁବତୀ
ଅତି ପୁଣ୍ୟେଣ ସୁନ୍ଦର ପୁରୁଷ ପାବନ୍ତି । ୭୯ ।
ଅତିହିଂ ପୁଣ୍ୟେଣ ସେ ହୋଅନ୍ତି ଅତିସୁଲକ୍ଷଣୀ
ଅତି ପୁଣ୍ୟେ ସେ ଧନ ସନ୍ତାନ ହୁଅନ୍ତି ପୁଣି । ୮୦ ।
ଯେ ଯେ ସୁସ୍ତ୍ରୀ ପାଇଲା ସୁପୁରୁଷ
ପ୍ରଜାପତିର ଲେଖନ ପ୍ରାପତ ହୋଇଲା ଅବଶ୍ୟ । ୮୧ ।
ତିରୀଂକର ତନଦଶା କ୍ଷଣେକେ ଲେଉଟଇ
କୀଞ୍ଚକ ସଇରନ୍ଧ୍ରୀ ହୋଇଲା ଯେତେକାଳ ଭେଟଇ । ୮୨ ।

---

୭୪।୨ ଧର୍ମ ଲଂଘିଲେ ସଚରାଚର କି ବ୍ରତବେ ସମ୍ଭଲେ ।—କ, ଘ, ଙ, ଜ, ଫ
୭୫।୨ କେବଣ ଭାଗ୍ୟ ଯେହ୍ନାର କୀଞ୍ଚକର ହୋଇବ ବନିତା ।—କ, ଖ
୭୭।୨ ଭାର ନିବାରଣ ହୋଇଲେ କି ବରସ ହୋଅଇ ମେଦନୀ ।—କ, ଛ
୭୯।୧ ଅତି ପୁଣ୍ୟେ କରିଥିଲେ ସୁନ୍ଦର ପତି ପାବନ୍ତି ଯୁବତୀ ।—ପ, ଗ
୮୨।୨ "କୀଞ୍ଚକ ସଇରନ୍ଧ୍ରୀ ହୋଇଲା ଯେତେକାଳ ଭେଟଇ ।"
ପରେ 'ଝ' ପୋଥିରେ ଅଧିକ ପାଠ:—
ପ୍ରାପତ ହୋଇବ ଯେସନେକ କର୍ମଫଳ
ନିଅ ହୋ କୀଞ୍ଚକ ତୋତେ ଦେଲୁ ଅବଶ୍ୟ ନୁହଇ ବିଫଳ ।

ଗୋବିନ୍ଦ ନାମଗୋଟି ଧରି ମଜ୍ଜନବ୍ରତ କୋନ୍ତେ
ଭୋ ଦଇବ ବିହ୍ବଲୁ ଆଣି ସୈରେନ୍ଦ୍ରୀର ପରିଯନ୍ତେ । ୮୩ ।
ମହା ଅନଳ ବିଦାରି ଜାତ ସେବଣ ଜନ୍ମସେମା
ସୈରେନ୍ଦ୍ରୀର ପରିଯନ୍ତେ ତାହାକୁ କଲା ହୀନମାନ । ୮୪ ।
ସଇରନ୍ଧ୍ରୀ ବୋଇଲେ କ୍ଷଣେ ଅବଧାରିବା କୋନ୍ତେ
ସଭାରେ ନ୍ୟାୟ ବିଚାରେ ତୁମ୍ଭନ୍ତ ପ୍ରଶଂସନ୍ତି ଜଗତେ । ୮୫ ।
ବିରାଟ ରାଜ୍ୟରେ ଗୋସାଇଂ ମୁଂ ଅଟଇ ନରମାକ୍ଷୀ
ମୁହିଂ ଅନାଥୁଣୀ ମୋହୋର ପାଇଂ କ୍ଷଣେକ ହୁଅ ସାକ୍ଷୀ । ୮୬ ।
ଧର୍ମ ବିଚାରଣା ତୁମ୍ଭେ ସମସ୍ତ ଠାବେ କହ
ମୁହିଂ ଦୁଖୀ ପାଇଂ କିଂପେ କଥାଯେ ନ କହ । ୮୭ ।
ଧର୍ମକଇଂ ଚଳୟେ ଯେ କରିବାକ କ୍ଷଣେ
ତୁମ୍ଭେ ଥାଉଂ ହରିବ ମୋତେ କୀଚକ ମହାବଳେ । ୮୮ ।
ଯୁଧିଷ୍ଠିରଙ୍କ ସମାନେ ତୁମ୍ଭଂକୁ ବିରାଟ କରଇ ସେବା
କୀଚକର ହରଣୁ ଗୋସାଇଂ ମୋତେ ପାରି କରିଦେବା । ୮୯ ।
ବହୁତ ବିନୟେ ସଇରନ୍ଧ୍ରୀ ଅନେକ ସ୍ତୁତି ବୋଲି
କୋନ୍ତଂକର ମୁଖ ଚାହିଂ ଶୁଣିଲା ଗଡଶାଳି । ୯୦ ।
କୋନ୍ତେ ବୋଇଲେ ତୁ ଶୁଣସି ସଇରନ୍ଧ୍ରୀ
ରାଜା ହରିଲାର ତୁ କାହାକୁ କରିବୁ ଗୁହାରି । ୯୧ ।

---

୮୩।୨ "ଭୋ ଦଇବ ବିହ୍ବଳୁ ଆଣି ସୈରେନ୍ଦ୍ରୀର ପରିଯନ୍ତେ ।" ପାଦ ପରେ 'ଙ' ପୋଥିରେ ଅଧିକ ପାଠ:—

ସଭାତଳେ ଉଭା ସେ ହୋଇଛନ୍ତି ଦ୍ରୋପଦୀ
କର ଧରି ଓଟାରଇ କୀଚକ ସେନାପତି ।
ଭୋ ଦଇବ ପୁରୁଷ ସ୍ନେହା ଲିହିଅଛୁ ଯାହା
କେ ଆନ କରିବ ବିଧାତା ଲିହିଅଛୁ ସ୍ନେହା ।

୮୮।୧ ଧର୍ମକୁ କୋନ୍ତପଣ୍ଡିତେ ସାକ୍ଷୀହୁଅ ଭଲେ ।—ଖ, ଠ

୮୯।୨ କୀଚକ କପଟୁ ଗୋସାଇଂ ମୋତେ ପାରି କରିଦେବା ।—
ପ, ଡ, ଛ, ଘ

ତୋହୋର କୃତେଣି ତୁ ଯେ ଅନେକ ସହିଲୁ
କର ତୋହୋର କାର୍ଯ୍ୟ ଆମ୍ଭେ ପ୍ରତକ୍ଷେ ଦେଖିଲୁ । ୯୨ ।
ସଇରନ୍ଧ୍ରୀ ବୋଇଲେ ଗୋସାଇଂ ମୁଂ ନୋହୋଇ ଅନାଥୁଣୀ
ମୋତେ ରଖିବାକୁ ଅଛନ୍ତି ଚନ୍ଦ୍ର ସୂର୍ଯ୍ୟ ବେନି । ୯୩ ।
ପଞ୍ଚୁ ଗନ୍ଧର୍ବେ ଅଟନ୍ତି ମୋର ନିଜ ପତି
ମୋହୋର ଅଭିମାନ କ୍ଷଣେହେଂ ନ ସହନ୍ତି । ୯୪ ।
ନ ପୋଷନ୍ତି ନ ନାଶନ୍ତି ନ ସହନ୍ତି ପରହରଣ
ଯେ ମୋତେ ହରିବ ଅବଶ୍ୟେଂ ଘେନିବେ ତାର ପ୍ରାଣ । ୯୫ ।
ସଇରନ୍ଧ୍ରୀର ବଚନେ କୋନ୍ତଭୁଞ୍ଜେ ଯେ ବୋଇଲେ
ସେ ପଞ୍ଚୁ ଗନ୍ଧର୍ବେ ତୋର ଜୀଉଂ ଜୀଉଂ ମଲେ । ୯୬ ।
ସଇରନ୍ଧ୍ରୀ ବୋଇଲେ ସେ ଦେଖିଲ୍ଲବେଳେ ଜନା
କୋନ୍ତେ ହୋଇଲେ ସେ ତୋତେ ରକ୍ଷା କରନ୍ତୁ କନା । ୯୭ ।
ବିରାଟ ବୋଇଲେ ଶତେସିଂଘର ଯାହାର ପରାକ୍ରମ
ଯାହାର ନାମ ଧରିଲେ କାଳଦଣ୍ଡ ଛାଡଇ ଯେ ଯମ । ୯୮ ।
ଗନ୍ଧର୍ବେ ତୋହୋର ଛାର ଲେ କେତେକ ମାତ୍ର ବାଇ
କୀଚକଙ୍କୁ ବଳ ଯେ ଅଛନ୍ତି ଶତେଭାଇ । ୯୯ ।
ସଇରନ୍ଧ୍ରୀ ବୋଇଲେ ରାଯ୍ୟେ ଶୁଣିମା ମହାପତି
ପୁରୁଷ ମରାଇ ମୋତେ ନ ଦେବ ଅପଖ୍ୟାତି । ୧୦୦ ।
ବିରାଟ ବୋଇଲେ ମୋତେ ପ୍ରେମାନ ନ ଉବ୍ରି
ତହୁଂକ ଉରଇ କ କୀଚକ ମହାବୀର । ୧୦୧ ।
ସଇରନ୍ଧ୍ରୀ ବୋଇଲେ ତୁମ୍ଭେ ଶୁଣିମା ସଭାଜନେ
ଊର୍ଦ୍ଧ୍ୱକଇଂ ସାକ୍ଷୀ କରଇ ଦେଖ ବିକ୍ରମ ବଚନେ । ୧୦୨ ।
କଷା ବସନ ପରିହରଣେ ତାର ନ ଦିଶଇ ଅଙ୍ଗ
ସାକ୍ଷୀ କରନ୍ତେ ତହୁଂ ଦିଶିଲ୍ଲ ଅଷ୍ଟାଙ୍ଗ । ୧୦୩ ।
ଦେଖିଣ ଚକିତ ହୋଇଲେ ସଭାଜନ
ବୋଇଲେ ସାଧୁ ସାଧୁ କୀଚକ ରେ ଜୀବନ ତୋର ଧନ୍ୟ । ୧୦୪ ।

---

୯୨।୨ କର ତୋହୋର କାର୍ଯ୍ୟ ଆମ୍ଭେ ପ୍ରତକ୍ଷେ ଦେଖିଲୁ । - କ, ଙ
୯୫।୨ ଯେ ମୋତେ ହରିବ ଅବଶ୍ୟ ତାହାର ମରଣ ।— ଦ, କ, ଜ, ଟ
୧୦୨।୨ ଊର୍ଦ୍ଧ୍ୱମୁଖ ହୋଇ ସାକ୍ଷୀ କରଇ ତ୍ରିଂଶ ଦେବଗଣେ ।— ଙ, ଭ

ପୁଣ ସାକ୍ଷୀ କରନ୍ତେଣ ବଣିଲ୍ଲ କେନଭୁଜ
ମୃଣାଳ ନାଳ ସନ୍ଧରେ ଯେହ୍ନେ ବଣଇ ସୁରଙ୍ଗ ପଂକଜ । ୧୦୫ ।
ଦେଖିଣ ମୂର୍ଚ୍ଛାଗଲେ ସର୍ବଜନେ ଗୃହ୍ହଂ
ଯେହ୍ନେହେନ୍ତେକ ସୁଲକ୍ଷଣୀ ଦେଖିଲ୍ଲଚ ଆମ୍ଭର ନାହ୍ହଂ । ୧୦୬ ।
ଯେହ୍ନେହେନ୍ତେକ କରଣ ସେ ସ୍ତ୍ରି ଜଲ୍ଲ ବଧାତା
ଜଗୁଜନ ମୋହ୍ହମା ତୋତେ ପ୍ରାପତ ବନତା । ୧୦୭ ।
ତ୍ରଇଲ୍ଲେକ୍ୟ ମୋହ୍ହରେ ସାମରଥ ଯେକଣ ବ ଳୀ
ଯେତେକାଳେ ମିଳଲ୍ଲ ତୋହୋର ମନର ହ୍ୱଆଳୀ । ୧୦୮ ।
ନବସୃଷ୍ଟିର ଚନ୍ତା ଗ୍ଛଡଣ ପ୍ରଜାପତ
ତୋ ତେ ସେ ସ୍ତ୍ରି ଜଲ୍ଲ ଅଛୁ ଅମୂଲ୍ୟ ରତ୍ନକାନ୍ତ । ୧୦୯ ।
ସଇନ୍ଦ୍ରୀର କର ଧରଣ ଯେ କୀଟକ ବୋଇଲ୍ଲ
ଆସ୍ତାନକୁ ଅଇଲୁ ତୋତେ ବରାଟ କ ରକ୍ଷାକଲ୍ଲ । ୧୧୦ ।
ବରାଟ ବୋଇଲ୍ଲ ଆମ୍ଭି ନ ଜାଳ ଆନ କଛୁ
ବପୁଳ ଭୋଗ ଭୁଞ୍ଜ ଭଜଲ୍ଲ ତୋତେ ଲକ୍ଷ୍ମୀ । ୧୧୧ ।
ଚଳଇ କୀଟକ ଯେ ସଇନ୍ଦ୍ରୀ କର ଧର
ବଡ ଇଁସିହାଣୀଁକୁ ଅଟ୍ଟ ମୋ ଚତ୍ତୁସ୍ଥ । ୧୧୨ ।
ରେ ପ୍ରାଣ ବଲ୍ଲଭ୍ଭ ମୋହୋର ପୁରକୁ ଯିବା ଆସ
ଅନେକ ପ୍ରକାରେ ରଙ୍ଗରସ କରବା ଅଭିଳାଷ । ୧୧୩ ।
ସଇରନ୍ଧ୍ରୀ ବୋଇଲେ ହୋ ଶୁଣ ବୀରମଣି
ଆଜକ ମୃଛ ମୋତେ ପ୍ରସର ହୋଇ ରସ୍ତେଣୀ । ୧୧୪ ।
ବରର୍ଷ ପରସନ୍ତେ ମୋହୋର ନାହ୍ହଂ ପୁରୁଷର ମେଳ
କେତେବାସ ମଳଣ ଯେ କାସ୍ତେ ମୋ ଅପଖଳା । ୧୧୫ ।
କୀଚକ ବୋଇଲ୍ଲ ଯିବା ଗୋ ମୋହୋର ପୁରକୁ
ସହସ୍ରେ ମୃଦୁସୂଲ୍ଲ ମାଜଣା କରିବେ ଜାଣ ତୁକୁ । ୧୧୬ ।
ସଇରନ୍ଧ୍ରୀ ବୋଇଲେ ମୁଂ ହୋଇଛୁ ପାକାସ୍ୱଷ୍ଣ
ଆଜକୁ ହୋଇବ ସବେ ଚାରି ଦବସ ଚାରି ରାତ୍ର । ୧୧୭ ।
ସତ୍ୟଯୁଗେ ଚାରି ଦବସ ରଜ ମୁକତକ ସ୍ତ୍ରୀ
ତ୍ରେତାଯୁଗେ ପଞ୍ଚ ଦବସେ ରଜ ମୁକତ ହୋଅଇ ନାସ୍ତ୍ରୀ । ୧୧୮ ।

ଖଡ୍ଗେ ବୋଇଲେ ଦ୍ରୋଣେ ସଖଲ୍ଲ ଅମୃତ ସଧ
ତ୍ରିଗର୍ତ୍ତର ପ୍ରସାଦେ ଖାଇବା ଆମ୍ଭେ ବହୁତ ଦୁଧ । ୨୬ ।
ଭଗ୍ନବଳ ଘେନିଣ ଗଲେ ତ୍ରିଗର୍ତ୍ତେଶ୍ୱର ଆସି
ଧନୁ କୃଷ୍ଣ ତ୍ରୟୋଦଶୀ ଦିନରେ ଗଜେ ଆସି ପଶି । ୨୭ ।
ସାତ ଅକ୍ଷୌହିଣୀ ବଳ ଯେ ତ୍ରିଗର୍ତ୍ତ ଘେନିଗଲ୍ଲ
ଚାରି ଅକ୍ଷୌହିଣୀ ପଞ୍ଚ ପରଯୁଧ ସଇନ ପଡ଼ିଲ୍ଲ । ୨୮ ।
ଦୁଇ ଅକ୍ଷୌହିଣୀ ପଞ୍ଚ ପରଯୁଧ ଉବୁରି ଅଇଲ୍ଲ
ଯେତେକ ଘେନିଣ ତ୍ରିଗର୍ତ୍ତ କଟକେ ପଶିଲ୍ଲ । ୨୯ ।
ଗଜ ଅଶ୍ୱମାନେ ସମସ୍ତେହେଁ ଶ୍ରେଷ୍ଠ।
ରଥରେ ଅଧିକ ନାହିଁ ଆଡେ ଆଡ ପାଦାନ୍ତ ଶରପୃଷ୍ଠ। । ୩୦ ।
ଥାଠଯାକ ସର୍ବେ ବିଶନ୍ତି ଯେ ଶ୍ରୋଣିମଧ୍ୟେ
ସୁବିଧାନ ହୋଇନାହାଁନ୍ତି କାହାରିହିଁ କାଯ୍ୟେ । ୩୧ ।
ଅଶକତେ ଗୃହ କେହୁ ନୁଆରନ୍ତି ବିକଳେ
ସଇନ ଘେନିଣ ତ୍ରିଗର୍ତ୍ତ ଦ୍ରଶନ କଲ୍ଲ ଆସ୍ଥାନର ତଳେ । ୩୨ ।
ଦେଖିଣ ଆଶ୍ରିଜ ହେଲେ ସମସ୍ତ ସେନାପତି
କସ ଅର୍ଥେ ତ୍ରିଗର୍ତ୍ତ ତୋହୋର ଯେସନେକ ଗୀବତ । ୩୩ ।
ସାତ ଅକ୍ଷୌହିଣୀ ଥାଠ ଘେନ ଯେ ଯେଥୁଂ ଗଲୁ
ସଂଗ୍ରାମ ନ ଜିଣି ତୁ କେବଣ କୃତ୍ୟ କଲୁ । ୩୪ ।
ଶୁଣି ତ୍ରିଗର୍ତ୍ତେଶ୍ୱର ଆସ୍ଥାନ ତଳେ ପରଣାମି
ସଂଗ୍ରାମର ବାରତା ଅବଧାନେ ଶୁଣିମା ଦେବସ୍ୱାମୀ । ୩୫ ।
ସ୍ୱାମୀ ପ୍ରଥମ ଯୁଦ୍ଧେ ଦେବ ମୁଂ ଜିଣିଲି ବିରାଟ
ଅନେକ ସଇନ ମାରି ଭଗ୍ନକଲି ତାର ଥାଠ । ୩୬ ।

---

୩୧।୨ ଶସ୍ତ୍ରବନ୍ଧା ହୋଇଛନ୍ତି ସମସ୍ତଙ୍କ କାଯ୍ୟେ ।—ଝ
୩୩।୨ କସ ଅର୍ଥେ ତ୍ରିଗର୍ତ୍ତ ତୋର ଆଦର ଜୀବଢ ।—ଝ. ଫ

ପୁଣି ବଶିଷ୍ଠଙ୍କୁ ବନ୍ଧନ କରି ପକାଇଲି ରଥେ
ଷୋଡଶ ଅଇଲି ଦେବ ବଂଶ ଯୋଜନ ପରିଯନ୍ତେ । ୩୭ ।
ସ୍ୱାମୀ ତିନ ଦିବସ ପରିଯନ୍ତେ ଯେ ସମର ହୋଇଥିଲା
ସନ୍ୟ ଉପବାସେ ଦେବ ଅନ୍ନ ନ ପାଇଲା । ୩୮ ।
ସ୍ୱାମୀ ଯେତେବେଳେ ବନ୍ଦୀକରି ଆଣିଲି ବଶିଷ୍ଠ
ସୁଖେ ରନ୍ଧନ ଭୋଜନ କରୁଛନ୍ତି ଅମ୍ଭର ଥାଠ । ୩୯ ।
ଏକେ ରନ୍ଧନ କରଇ କେ କରୁଛଇ ସ୍ନାହାନ
କେ ଅନ୍ନ ଥୋକାଏ କରୁଛନ୍ତି ଭୋଜନ । ୪୦ ।
ଦେବ ବଲ୍ଲଭ ନାମେଣ ଯେ ସେବକଇ ବଶିଷ୍ଠର ବ୍ରାହ୍ମଣ
ସନ୍ଦେଶ ଦିଅନ୍ତେ କଲା ଆସି ମୋ ଥାଠରେଣ । ୪୧ ।
ସ୍ୱାମୀ ସେବକା ବ୍ରାହ୍ମଣେ ଧଇଲା ଶ୍ୱେତରୂପ
ଆକାଶେ ଶିର ଲଗିଲା ଧରଣୀ ମହାକମ୍ପ । ୪୨ ।
ସେବକା ଜଣକେ ଦେବ ବଧକଲା ମୋର ଥାଠ
ପଳାଇ ଆସିତେ ଦେବ ନ ପାଇଲୁ ବାଟ । ୪୩ ।
ଅନେକ ଶସ୍ତ୍ରାସ୍ତ୍ର ଦେବ ପ୍ରହାର କଲୁ ଧରି
ତାହାର ଶରୀରେ ପଡ଼ି ସମସ୍ତେ ଗଲେ ଚୂରି । ୪୪ ।
କହିତେ ଅସଂଖ୍ୟ ଦେବ ମହିମାଂ ତାହାର
କ ଅବା ଅନ୍ୟଭୂମି ଗ୍ଳାଡ଼ି ଅଇଲା ମେରୁଠାରେ । ୪୫ ।
ବଶିଷ୍ଠଙ୍କୁ ମୋତେ ଦୁହିଂଙ୍କ କେଶ ଧରି
ଅନ୍ତରୀକ୍ଷେ ନେଲା ପବନୁଂ ବେଗକରି । ୪୬ ।
ସ୍ୱାମୀ କୋଳିରଛି ପଣ୍ଡା ବୋଲଣ ସେ ସେବକଇ ହ ଜବର
ଦୁହିଂକନ୍ଧଂ ପକାଇଲା ନେଇ ତାହାଂଙ୍କ ପୟର । ୪୭ ।
ଅମ୍ଭର କେଶ ଧରି ତାହାର ପାଦତଳେ ଲୋଟାଇ
ଆପଣେ ଶୁଣିଲା ଦେବ ଦଣ୍ଡ ପ୍ରଳମ୍ବ ତ ହୋଇ । ୪୮ ।
ସ୍ୱାମୀ ବଞ୍ଚାଇ ମହତ ସେ କୋଳରଛି ବ୍ରାହ୍ମଣ
ମୋତେ ବନ୍ଦୀରୁ ଛଡ଼ାଇ ଦଲେ ସେ ତତକ୍ଷଣ । ୪୯ ।

ସେହୁ ଯେବେ ଆଗ୍ୟାଁ ଦିଅନ୍ତା କଣ୍ଠରେ
ଶରୀର ଧୂଳି ହୁଅନ୍ତା ମୋର ତାହାଂକ ମୁଖଘାତେ । ୫୦ ।
କହନ୍ତି ଉଗ୍ରବଳ ଲୋକେ ବିରାଟର କଥା
ସାଧୁ ସେ ମତ୍ସ୍ୟଦେଶ ରାଜା ସାମରଥା ବଳବନ୍ତା । ୫୧ ।
ବହଇ ଗଣ୍ଡୁକୀ ନଦୀ କାବେରୀ ସରସ୍ୱତୀ
ଉତ୍ତର ଦକ୍ଷିଣ ପଶ୍ଚିମ ନଗ୍ର ଚଉକଟ । ୫୨ ।
ଦୁହାଁଙ୍କ ଦୁଇପଦ୍ମ ବରଜ ବାଉଲକ୍ଷ ଗାଈ
ବେନିଖର୍ବ ବଚ୍ଛା ଅଣ୍ଡିର ପାଞ୍ଚଖର୍ବ ବଚ୍ଛା ମାଈ । ୫୩ ।
ସ୍ୱାମୀ କତଶ ଅନ୍ତଃପୁରେ ଖଟନ୍ତି ଗୋପାଳ
ତହିଁର ମୋକ୍ଷଦାନ ସରଚ୍ଛା ତନ୍ତ୍ରୀପାଳ । ୫୪ ।
ସ୍ୱାମୀ ପୃଥୁନା ବୋଲକର ଅଛଇ ସ୍ୱେତ ଗାଈ
କପିଳା ବଂଶରୁ ଉତପତ୍ତି ଦେବ ସେହି । ୫୫ ।
ସ୍ୱେତ ଗାଈର ଦୁଧ ଦୁହଁଇ ଗୋର ଲକ୍ଷେ
ଘୃତ ନୋହଇ ଦେବ ଦେଖିଲୁଂ ପ୍ରତକ୍ଷେ । ୫୬ ।
ପ୍ରଥମେ ଚରେଇ ଯେ ପକାନ୍ତି ବସୁମତୀ
ସାତଘଡ଼ ପରଯନ୍ତେ କଟକ ବେଢ଼ି ବହଇ କ୍ଷୀର ନଦୀ । ୫୭ ।

---

୫୦।୨ "ଶରୀର ଧୂଳି ହୁଅନ୍ତା ମୋର ତାହାଂକ ମୁଖଘାତେ ।"
ପାଦାନ୍ତ ପରେ 'କ' ପୋଥିରେ ଅଧିକ ପାଠ :—
ରନ୍ଧିବାର ନାମେ ଦେବ ସ୍ୱେତଇ ବାଣୀପାଳ
ଥନହେଁ ଉଗ୍ର ହୋଇଲେ ସେ ବଟିବୃକ୍ଷର ତଳ ।
ବୋଲନ୍ତେ ବଲ୍ଲଭ ଦେବ ଆନେ ଆନ ମୂର୍ତ୍ତି
କି ସେ ବ୍ରହ୍ମା ବିଷ୍ଣୁ ଦେବ ଉମାପତି ।
ବଡ଼ାଇ ମର୍ଯ୍ୟାଦା ସ୍ୱାମୀ ଦେଖିଲୁଂ ତାହାଂକର ।
ଆଜ୍ୟାଁ ପରମାଣେ ବେଣ ଛାଡ଼ିଲ ମୋହୋର ।
ତହୁଂଣ ଦେବ ମୁଂ ପଳାଇ ଆଇଲି
ବନସ୍ତର ଭିତରେ ଯାଇଂଣ ପଶିଲି ।
ହେ କଥାମାନ ମିଥ୍ୟା ନୋହୋଇ ହୋ ରାୟେ
ସନ୍ୟମାନଙ୍କୁ ରାଇ ପୁଚ୍ଛିବା ଯୁଦ୍ଧର ସମୟେ ।

ଅପୂର୍ବ ଭାରତ ସେ ଶୁଣିଣ କଉରବେ
ପ୍ରତ୍ୟେକ ସମ୍ପଦ ଯେବେ ବିରାଟ ରାଜ୍ୟେ ଅଛଇ ସମ୍ଭବେ । ୫୮ ।
ଦୁର୍ଯୋଧନ ବୋଲଇ ଶକୁନି ମୁଖ ଚାହିଁ
ମଘଦେଶ ମଚ୍ଛଦେଶ ମାମୁଁ ଯିବା କି ଆମ୍ଭେ ଶସ୍ତ୍ର ବାନ୍ଧି । ୫୯ ।
ବିରାଟକଇଁ ଜିଣି ସେ ତ୍ରିଗର୍ତ୍ତଙ୍କୁ ରାଜ୍ୟ ଦେବା
ଗୋଧନ ଘଲ ଘେନି ସେ ହସ୍ତିନାକୁ ଆସିବା । ୬୦ ।
ଭୀଷ୍ମେ ବୋଇଲେ ଏତେଣେ ଆମ୍ଭର ପ୍ରୟୋଜନ କିସ
ପର ସମ୍ପଦ ଦୃଷ୍ଟିଲେ ଆପଣା ଧର୍ମନାଶ । ୬୧ ।
ଏକା ଗାଈ ହରଣେ ଯେ ଦୋଷ ଅପ୍ରମିତା
ବହୁତ ଗୋଧନ ହରଣେ ନରକେ ଗମିତା । ୬୨ ।
ଶକୁନି ମନ୍ତ୍ରୀ ବୋଇଲା ହୋ ନ ଜାଣ ତୁମ୍ଭେ କିଛି
ସ୍ୱାମୀ ଆମ୍ଭର ସର୍ବ ସଇନ ବଧକଲା ବାଛି । ୬୩ ।
ଯେବେ ଶାସ୍ତ୍ରରେ ଥିବ କ୍ଷତ୍ରବୃତ୍ତି ପଣ
ମାନହାନେ ଭୁଞ୍ଜିବାର କେବଣ କାରଣ । ୬୪ ।
ତ୍ରିଗର୍ତ୍ତ ମହାତ୍ମା ଯେ ଆମ୍ଭଙ୍କୁ ଆଶ୍ରେକଲା
ରାଜ୍ୟହିଁ ନ ପାଇଲା ସୈନ୍ୟହିଁ ନାଶଗଲା । ୬୫ ।
ଯେ ସେ ମାନଗୋବିନ୍ଦ ଶରଣ ରକ୍ଷଣ ପର ଦୁଃଖେ ଦୁଖୀ
ଅନାଥ ଲୋକର କଷ୍ଟ ସେ ନୁଆରଇ ଦେଖି । ୬୬ ।
ଏସନେକ ବଚନ୍ତେ ହୋଇଲା ଆହ୍ନିକ ବେଳ
ଆସ୍ଥାନ ମଣ୍ଡଳଲା ଯେ ମୁଣ୍ଡୋହିଁର କାଳ । ୬୭ ।
ଭୀଷ୍ମ ଦ୍ରୋଣ ବିଦୁର ରହିଲେ ଗୋପ୍ୟସ୍ଥାନେ
କେମନ୍ତ ବିଚାର ହୋ ଭାରଦ୍ୱାଜଙ୍କର ଜାନେ । ୬୮ ।
ବିଦୁରେ ବୋଇଲେ ହୋ ଉଭୟ ସଂକଟେ
ନଚଦ୍ରେ ଯୋଦ୍ଧେ ରହିଅଛନ୍ତି ବିରାଟେ । ୬୯ ।

---

୫୮।୨ ସୁରଗଣେ କହିଲେ ଦେବ ଦେଖିଲୁ ପ୍ରତ୍ୟକ୍ଷେ ।—ଚ, କ, ଝ
୬୧।୨ ପର ସମ୍ପଦ ଦୃଷ୍ଟିଲେ ଆପଣେ ଯାଇ ନାଶ ।—ଚ, ଝ

ଅନ୍ନ ନିମନ୍ତେ ସେ ପାଣ୍ଡବ ବୃକୋଦର
ବଲ୍ଲଭ ନାମେଣ ସେ ହୋଇଲା ସୂପକାର । ୭୦ ।
ଦୋହରାଂକର ପ୍ରସନ୍ନେ ତାହାର ବଳବୁଦ୍ଧି
ନିତପ୍ରତି ରାନ୍ଧଣା ଜାଣଇ ଗଜଶ୍ୱ ଶଜଶ୍ୱ ନଳବିଧି । ୭୧ ।
ଦ୍ରୋଣେ ବୋଇଲେ ତ୍ରିଗର୍ତ୍ତ ବିରାଟକୁ ଯେତେବେଳେ ବାନ୍ଧିକଲା
ସର୍ବ ନୁଆରେ ଭୀମ ସାଂଗ୍ରାମେ ପଶିଲା । ୭୨ ।
ସଇନ ମାରି ବିରାଟ ତ୍ରିଗର୍ତ୍ତକୁ ନେଲା କେଶ ଧରି
ଯୁଧିଷ୍ଠିରଂକର ସମ୍ମୁଖରେ ନେଇଣ ପକାଇଲା ରୋଷଭରି । ୭୩ ।
ବାବୁ ମହତ ସେ ଯେ ଧର୍ମରାଯ୍ୟର ସୂତ
ଯେତେ କଷ୍ଟେ ନାହିଂ ତାର ଚିତ୍ତରେ ବିକୃତ । ୭୪ ।
ଭୀଷ୍ମେ ବୋଇଲେ ପରକାର୍ଯ୍ୟେ ସେ ନ ମାରଇ ବଇରି
ତେନ୍ୟାସ୍ତୁ ତ୍ରିଗର୍ତ୍ତକୁ ଦେଲା ଛାଡ଼ିକରି । ୭୫ ।
ଆହୋ ଦ୍ରୋଣେ କୋଇଲା ଯେ ତାଂକର ଅଟନ୍ତି ନିଜମାଯ୍ୟେ
ତେଣୁକରି ଯୁଧିଷ୍ଠିର ନାମ ବହିଲେ କୋନ୍ତ ଯେ ପଣ୍ଡାଯ୍ୟେ । ୭୬ ।
ଦ୍ରୋଣଂକର ଆଗରେ ଗାଙ୍ଗେବେ ପୁଣ ପୁଣ ପୁଚ୍ଛି
ଅଗ୍ୟାଂତବାଂସ ଆବର କେତେଦିନ ଅଛି । ୭୭ ।
ଦ୍ରୋଣ ବୋଇଲେ ଯେ ଯେକାଦଶ ମାସ ଗଲା
ବରଷକୁ ନିବଦିନ ଯେ ପ୍ରବେଶ ହୋଇଲା । ୭୮ ।
ଭୀଷ୍ମେ ବୋଇଲେ ହୋ ଗୋପ୍ୟାନ କର ଯେତ୍ତ କଥା
ମାନେଗୋବିନ୍ଦ ନ ଜାଣୁ ଯେସନେକ ବାରତା । ୭୯ ।
ବିଦୁର ବୋଇଲେ ହୋ ନ ବାର ଦୁର୍ଯୋଧନକୁ
ସମସ୍ତେହେଂ ଚଳି ଯିବା ଗୋଧନ ହରଣକୁ । ୮୦ ।
ପୂଅନ୍ତ ଦେଖିବାନା ଅଛନ୍ତିଟି କି ଭଲେ
ଦୋଷକୃତ ହରିବାନା ପାଣ୍ଡବଂକ ମୁଖ ଦେଖିଲେ । ୮୧ ।
ଅଳପ ଅଳପ କରି ଚଳାଇ ଯିହା ବାଟ
ଅଗ୍ୟାଂତବାସ ଗୋପ୍ୟ ଯେ ଆସି ହୋଇଲା ନିକଟ । ୮୨ ।
ଅଗ୍ୟାଂତବାସ ଆସି ଯେ ସମାପତ ହୋଇଲେ
ବାହୁଡାବେଳେ ପୁଅନ୍ତ ହେନଆସିବା ବନବାସ ସରିଲେ । ୮୩ ।

ଯେସନେକ ବର୍ତ୍ତରନ୍ତେ ପ୍ରସରଇ ରଯ୍ୟଣୀ
ସାଜନ୍ତି ସମଦଣ୍ଡ କର୍ଣ୍ଣ ଯେ ଶକୁନ । ୮୪ ।
ଅଷ୍ଟାଦଶ କ୍ଷଉଣୀ ସମଦଣ୍ଡ ସାଜ
ମଣ୍ଡନ୍ତି ରଥଗଜ ମହେସମନ୍ତ୍ର ବାଜୀ । ୮୫ ।
ନବପରଯୁଧ ରଥ ବାଆନ ପରଯୁଧ ମହେସମନ୍ତ୍ର
ଦନ୍ତୀ ମନ୍ତ୍ର ବାଘଡାନ୍ତ କେ କରୁ ଗଣିତା । ୮୬ ।
ମହାବାରୁ ତୁରଙ୍ଗମେ ଯେ ପବନୁ ବେଗେ ତେଜ
ଆକାଶ ଖେପିବାକୁ ସମାନ ଅଟନ୍ତି ସେହୁ ବାଜୀ । ୮୭ ।
ଅସ୍ତ୍ରରନ୍ଧ୍ରେ ଜଡ଼ ଯେ କଣସ୍ତ ରଥମାନ ମଣ୍ଡି
ଚ୍ଛେଲ ଚକ୍ର ନାରାଜ କୁନ୍ତ ପାଠି ଭୁଷଣ୍ଡି । ୮୮ ।
କୃପ ଆଚାର୍ଯ୍ୟ ଯେ ଗୁରୁସୁତ ଶଲ୍ୟ
ଆଗଆଣି ଥାଟେ ଚଳନ୍ତେ ଭାରଥେ ଭାଇଗଇ ମଲ୍ଲ । ୮୯ ।
ବଂଶକୋଟି ରଥ ଯେ ବତିଶକୋଟି ମାତାଙ୍ଗ
ପଞ୍ଚବଂଶ ମେଦଛୁ ଯେ ରେଖାର ତୁରଙ୍ଗ । ୯୦ ।
ବେଦଲକ୍ଷ ଆଲମ୍ବ ତୁର ମନ୍ତ୍ରିତ ପାଟଛଷ
ଜଦଣ୍ଡ ଯେକଲକ୍ଷ ପାଞ୍ଚ ଅନ୍ଧବ୍ରତ । ୯୧ ।
ରେଖାର ତୁରଙ୍ଗମ ରାଜତ ସମସ୍ତେ ଦିଶନ୍ତି କୃଷ୍ଣବର୍ଣ୍ଣ
ମୟୂର ଝାଲଶା ଛଷ ତରାସ କୃଷ୍ଣମେଘ ଯେସନ । ୯୨ ।
ଡାହାଣ ପଖାପ୍ୟେ କର୍ଣ୍ଣ ଭାରେଇ ମଲ୍ଲ ମହାରଥୀ
ତାହାର ତୁଳେ ଯେ ରଣରଂକା ତନ ମନ୍ତ୍ରିତ ଛତ୍ରୀ । ୯୩ ।
ପାଞ୍ଚ ମନ୍ତ୍ରିତ ଗଜ ଯେକାଦଶ ମନ୍ତ୍ରିତ ହୟେ
ରଥେ ପାତାଙ୍ଗ ଛତେ ଦିଶନ୍ତି ରଙ୍ଗବର୍ଣ୍ଣ ମଧ୍ୟେ । ୯୪ ।

---

୮୬।୨ ବାଘଡା— ବାହୁଡା ।

୯୩।୨ ତାହାର ତୁଲେ ଯେ ରଣରଂକା ଘନ ମନ୍ତ୍ରିତ ରଥୀ ।—ଠ, ଝ

୯୪।୨ ରଥ ପାତାଙ୍ଗ ଛତ୍ରେ ଦିଶନ୍ତି ବାଳ ଆଦିତ୍ୟ ପ୍ରାୟେ ।—କ, ଣ
ଢ, ଦ

ଡାଳମ୍ବା ନେତ ଗ୍ରମର ଢାଳନ୍ତି ପାଞ୍ଚଲକ୍ଷ
ଅମର ବୃନ୍ଦାଙ୍କର୍ଙ୍କ ଯେହ୍ନ କ ବଜାଏ ସହସ୍ରାକ୍ଷ । ୯୫ ।
ବାମେଣ ଶକୁନ ଯେ ଭୂରିସବା ଅଶ୍ୱତ୍ଥମା
ମାନଙ୍କେ ଗୋଚର କ ଯେହାଂକର ମହିମାଂ । ୯୬ ।
ରଥେ ଶ୍ୱେତବର୍ଣ୍ଣ ପାତାଙ୍ଗ ଆଲମ୍ବ ଶ୍ୱେତବର୍ଣ୍ଣ
ଶ୍ୱେତଗ୍ରମର ପାଞ୍ଚଲକ୍ଷ ପାଟଛତ୍ର ଶ୍ୱେତଚନ୍ଦ୍ର । ୯୭ ।
ଢାଳନ୍ତି ଶ୍ୱେତଗ୍ରମର ତିନ ତିନଲକ୍ଷ
ଶ୍ୱେତଶଙ୍ଖ ପୂରଇ ରାଜା ଗ୍ରମୁରେ ତିନ ଯେ ମେକଛ । ୯୮ ।
ଦଶ ମର୍ଭୁତ ରଥ ବଂଶମର୍ଭୁତ ଶ୍ୱେତହାଥୀ
ଶ୍ୱେତଅଶ୍ୱ ତିନ ସାଗର ଶକୁନ ଅଶ୍ୱତ୍ଥମା ପଛକତ । ୯୯ ।
ଭୀଷ୍ମ ଦ୍ରୋଣେ ମହାରଥୀ ଥାଠରେ ଆଗୟାଣି
ଯେସନେକ ସମ୍ଭବେ ଚଳନ୍ତି ସମଦଣ୍ଡ ଯେହ୍ନ । ୧୦୦ ।
ପାଞ୍ଚପରାୟୁଧ ରଥ ଦଶପରାୟୁଧ ଗଜ
ଅସଂଖ୍ୟ ଅଶ୍ୱ ପାଦାନ୍ତି ଯେଗାର କ୍ଷଉଣୀ ସଜ । ୧୦୧ ।
ବେଢିଣ ଆବୋରଲେ ସମସ୍ତ ମହାରଥୀ
ମଧ୍ୟେଣ ବଜେକଲ୍ଲ ରାଜା ମାନଚକ୍ରବର୍ତ୍ତୀ । ୧୦୨ ।
କଣଯୂମଯେ ରଥ ଅଷ୍ଟରତ୍ନେଣ ଜଡ
ଚଉଷଠିପନ୍ତି ହୀର ଜଡିତ ରଥର ଫେର ଗ୍ରର । ୧୦୩ ।
ଶୁଦ୍ଧ ସଷ୍ଟିକ ରଥରେ ଗ୍ରପେଣୀ କେଶରୀ ଲାଙ୍ଗୁଳ ଚିହ୍ନ
ଜୟନ୍ତକ ନାମେ ସାରଥି ରଥ ମଣ୍ଡଇ ବଦ୍ୟମାନ । ୧୦୪ ।
ପାଞ୍ଚଲକ୍ଷ ପାଟଛତ୍ର ଦାସୀନେତ ଝାଳ
ଶତେ ଶତେ ଫେର ଗଜ ମୁକୁତା ମାଳ ମାଳ । ୧୦୫ ।
କଣପୂ ବାଟଳ ଘଟଣ ଛିଦ୍ର ହୀରାଜଡ
ମୁକୁତା ମାଳକେ ଯେ ମାଣିକ୍ୟ ଗ୍ରର ଗ୍ରର । ୧୦୬ ।
ହୀର ମାଳା ପୋଏଲା ମଣି ମାଣିକ୍ୟ ଯେ ବଇଡୂର୍ଯ୍ୟ ମର୍କତ
ଉପର ବେଢାଏ ଶୋଭା ଦିଶନ୍ତି ଯେହ୍ନେ ମେଷ
ମାସର ଆଦିତ୍ୟ । ୧୦୭ ।

ଭଣ୍ଡାରକ ମୂଲ୍ୟ ଯେତେକ ଗାଣ୍ଟଛଣ ଯୋଡ଼ି
ସେପର ମାନଗୋବିନ୍ଦର ଭୂଲେ ଅଛି ଛଣ ପାଞ୍ଚକୋଟି । ୧୦୮ ।
ଅଶ୍ବରତ୍ନେ ଧାଡ଼ି ଆଲମ୍ବ ଗଂରହର
ହସ୍ତୀରେ ଜଡ଼ିତ କଣ୍ଠ ଡ଼ାଳମ୍ବ ଘୁମର ଉପର । ୧୦୯ ।
ଛନ ମର୍ଦ୍ଧିତ ଆଲମ୍ବ ନବ ମର୍ଦ୍ଧିତ ଗାଞ୍ଜଲଗି
ପଞ୍ଚବିଂଶଲକ୍ଷ ଶ୍ୱେତଛତ୍ର ମୟୂର ଝାଲ ପକ୍ଷୀ । ୧୧୦ ।
ବାମେ ବାଜୁ ଡ଼ାହାଣେ ବାଜୁ ମହା ମହା ସେଣ୍ଟା
ବଢ଼ଡ଼ନ୍ତ ଗଜରେ ସାହାସ ମଲ୍ଲ ଜେନା । ୧୧୧ ।
ନର୍ଭୟେ ବଳ ସେ ଯେ କାମପାଳଂକ ପ୍ରାସାଦେ
ସମଦଣ୍ଡ ଚଳାଇ ସେ ଯେ ରାଜା ମାନଗୋବିନ୍ଦେ । ୧୧୨ ।
ବେଦ ଆଧ୍ୟାନ କରନ୍ତି ମୁନିଗଣମାନେ
ହାକନ୍ତି ଚଣ୍ଡପୁଙ୍ଖେ କପେଶ୍ବର ବିଧାନେ । ୧୧୩ ।
ଶୁଭ ଅନକୂଳ କହନ୍ତି ଜଉତିଷ ଗ୍ରହକାସି
ମଙ୍ଗଳ ହୁଳହୁଳ ଦିଅନ୍ତି ସୁଲଭ କୁମାରୀ । ୧୧୪ ।
ମକରମାସ ଶୁକଳ ପକ୍ଷ ଦ୍ୱିତୀୟାର ତିଥି
ପୁଷ୍ୟା ନକ୍ଷତ୍ର ଭୋଗ ସେ ଦିନ ବାର ବୃହସ୍ପତି । ୧୧୫ ।
ବାୟୁବ ନାମେ କରଣ ଆୟୁଷ ନାମେ ଯୋଗ
ମକର ସଂକରାନ୍ତିକ ତିନଦିନ ଭୋଗ । ୧୧୬ ।
ସେ ଦିନ ଦଣ୍ଡ ଘେନଣ ମାନଚନ୍ଦ୍ରଗ୍ରାଣୀ
ମଚ୍ଛଦେଶକୁ ପୟାଣ ଦେବ ପଶ୍ଚିମ ମୁରତି । ୧୧୭ ।
ବିଦୁର ବିଜେକଲେ ପାରଦଣ୍ଡ ଘେନ
ଭଣ୍ଡାର ବହିଅଛନ୍ତି ଅନେକ ସଇନ । ୧୧୮ ।
ଗୁଣ୍ଠୁଣି ପଲାଣ କଲେ ବଇଲମାନ ଘଇ
ଯେତେକ ବଇଲକେ ଲକ୍ଷେରତ୍ନ ପୂରେଇ । ୧୧୯ ।
ଯେତେ ଦିଧିରେ ଦଶଲକ୍ଷ ପଲାଣ ବଇଲ
ମଇଂଷି ଲଦନେ ଚଳନ୍ତି ସର୍ବମଲ୍ଲ । ୧୨୦ ।
ରତ୍ନମଣି ମୁକୁଟ ସୀମନ୍ତିନୀ କର୍ଣ୍ଣାଞ୍ଜଳ ବାହୁଟି
ତାଡ଼ଙ୍କ ମୁଦ୍ରା ସରଳ ନୁପୂର ମେଖଳା କଟି । ୧୨୧ ।

ବିଦ ମୂର୍ଦ୍ଧ ଫଦକ ହୃଦେ ଭୂଷଣ ଅଲଂକାର
ସମସ୍ତ ଯୋଦ୍ଧାନ୍ତ ଦାନ ଯେ ସମ୍ଭାର । ୧୨୨ ।
ପ୍ରେତ୍ୟକ ପ୍ରେତ୍ୟକ ଯୋଦ୍ଧାକେ ଶତେ ଶତେ ପାଟଶାଢୀ
ଦିଅନ୍ତି ବିଦୁରେ ଯେ ଭଣ୍ଡାର ଅଧିକାରୀ । ୧୨୩ ।
ଦୁଷ୍ଟାସ୍ବାର ବଚନେ ଉଦେ କାଲ ଯୋଗିନୀ
ମାହେଶ୍ୱରୀ ଉତ୍ତର ଗମନେ ବୃଷଭ ବାହିନୀ । ୧୨୪ ।
ବିଦୁରେ ବୋଇଲେ ଶୁଣ ମାନଚକ୍ରବର୍ତ୍ତୀ
ମହା ପ୍ରତାପୀ ରାଜା ତୁ ମହୀତଳେ ପ୍ରେତ୍ୟକ୍ଷମୂର୍ତ୍ତି । ୧୨୫ ।
ମାନେ ମ ନଗୋବିନ୍ଦ ପନ୍ନଗା ନାରାୟଣ
ଅନୁବ୍ରତେ ବରବେଶ ଅସଂଖ୍ୟ ଅପ୍ରମାଣ । ୧୨୬ ।
ଅନୁବ୍ରତେ ବରବେଶ ଅସଂକ୍ଷେପ ଗାରିମା
ମାତାପିତା ଆଦିକରି କାହାକୁ ନାହିଁନା ମାନନା । ୧୨୭ ।
ବ୍ରହ୍ମା ବିଷ୍ଣୁ ରୁଦ୍ର ଦେବତା ବିପ୍ର ଆଦି
କାହାକୁହିଁ ନମସ୍କାର ତୋହୋର ନାହିଁଟି ସମ୍ପାଦି । ୧୨୮ ।
ଚଉଷଠି ଲକ୍ଷଣ ଯେ ଚଉରାଶି ଗୁଣବନ୍ତ
ଅଭୟେ ସୋମବଂଶୀ ସୋହୋଉ ଜଗତ୍ଵିତ । ୧୨୯ ।
ଶଙ୍ଖନିଧି ପଦ୍ମନିଧି ଯାହାର କରସ୍ଥଳେ
ପାଷାଣେ କର ଲଗନ୍ତେ ପାଣିଦ୍ରବ୍ୟ ହୋଅଇ ତତକାଳେ । ୧୩୦ ।
ଗୃଲନ୍ତେ ଚରଣେଂ ଅବେଷ୍ଟ ପଦ୍ମଫୁଟି
ନାହିଂ ନୋହିବନା ପ୍ରେତ୍ୟ ମେଦିନୀ ନବସୃଷ୍ଟି । ୧୩୧ ।
ଧାମକ ବିବେକ ଯେ କଇଛା ଜଗଜ୍ଜେଠି
ତ୍ରଇଲୋକ୍ୟ ଭାସଇ ଯେ ଯାହାର ନାମଗୋଟି । ୧୩୨ ।

---

୧୨୬।୨ ଅନୁବ୍ରତେ ବରବେଶ ଅସଂଖ୍ୟ ପ୍ରମାଣ ।—ଝ,ପ,କ,ଦ,ଟ

୧୨୭ { ଅନୁବ୍ରତେ ହୃଦରେ ଅସାରୁଆ ସୂତା ଥାଇ
ମାତାପିତା ଆଦିକରି କାହାକୁହିଂ ମାନ୍ୟ ନାହିଂ ।—ଟ

ଭୂତ ଭବିଷ୍ୟ ଜ୍ଞାନୀ ପଣ୍ଡିତ ଭୃଗୁବଂଶ ଦକ୍ଷ
କଥାଏ କହିବାକୁ କରଇ ସଂକୁଚ । ୧୩୩ ।
ଦରହସିତ ବଦନେ ବୋଲଇ ମାନବଶ୍ରେଷ୍ଠ
କହସି ପିତାମହ ତୋହୋର ବାକ୍ୟପ୍ରଷ୍ଠ । ୧୩୪ ।
ବିଦୁରେ ବୋଇଲେ ବାବୁ ସେ ମତ୍ସ୍ୟଦେଶର କଥା
ବାବୁ ଆମ୍ଭେ ତୁମନ୍ତ କହୁଂ ତଥ୍ୟ ଯେ ବାରତା । ୧୩୫ ।
ବାବୁ କୀଚକ ବଧକରି ଗନ୍ଧର୍ବ ପଞ୍ଚ ବୀରେ
ଗୁପତେ ରହିଣ ଅଛନ୍ତି ସେହି ବିରାଟ ନଗରେ । ୧୩୬ ।
ସେହି ଗନ୍ଧର୍ବେ ମାଇଲେଟି ତ୍ରିଗର୍ତ୍ତର ଥାଟ
ତାହାଂକର ଥିଲେ ନରେଖ ନୋହୋଇଟି ବିରାଟ । ୧୩୭ ।
ଅନମିତେ ଅକାରଣେ ଦଣ୍ଡ ନଡିଗଲେ
ଗନ୍ଧର୍ବେ ଯୁଦ୍ଧ ଅବଶ୍ୟ କରିବେଟି ଆମ୍ଭର ତୁଲେ । ୧୩୮ ।
ବିଦୁରେ କହିଲେ ଯହୁଂ ପରମ ଅର୍ଥ ବାଣୀ
ମତ୍ତ ଗରବେ ସେ କଥା କଉରବେ ନ ଶୁଣି । ୧୩୯ ।
ଅସୁର ସଭାରେ କାହିଂ ଧର୍ମ କଥା ବଖାଣି
ବଧିର ଶୁଣଇ କି କମ୍ବୁରସ ବାଣୀ । ୧୪୦ ।
ବିପଦ କାଳରେ ନ ଫୁରଇ ସଦବୁଦ୍ଧି
କୁମାର୍ଗ ବେଳେ କି ବିବାଦ ହୋଏ ସାଧି । ୧୪୧ ।
ବଇବସୁତ ମନୁ ପୁଚ୍ଛାକଲେ ଅଗସ୍ତିଂକ
ବିରାଟ କିସ ବାକ୍ୟ କହିଲା ଯୁଝେଷ୍ଟିଂକ । ୧୪୨ ।
ଶୁଣ ବଇବସୁତ ମନୁ ଅଗସ୍ତିଂକ ବାକ୍ୟ
ବିରାଟକୁ କେହୁ ସରି ମାଣ୍ଡବେ ଯାହାକୁ ସଂପକ୍ଷ । ୧୪୩ ।

---

୧୪୧।୨ କୁମାର ଗର୍ବବେଳେ କି ବିବାଦ ହୋଏ ସିଦ୍ଧି ।—ଘ,ଛ

୧୪୩ { ଶୁଣ ବଇବସୁତ ମନୁ ଅଗସ୍ତିଂକ ବାଣୀ
ଅସମ୍ଭେପ କଥା ଯେ କହିବା ପରିଣାମି ।—ଗ,ଚ,ଙ

ଯୁଦ୍ଧଦ୍ୟଟନ୍ତେ ତ୍ରିଗର୍ତ୍ତ ଯେ ସ୍ୱେଣେ ପଳାଇଲା
ପାଣ୍ଡବନ୍ତ ସଙ୍ଗେ ଘେନ ମତ୍ସ୍ୟାଧିପ ଗଲା । ୧୪୪ ।
ଆପଣା କଟକେ ଯାଇଁ ହୋଇଲେ ପ୍ରବେଶ
ରାଜ୍ୟ ପ୍ରଜା ଦେଖି ସର୍ବେ ହୋଇଲେ ଯେ ତୋଷ । ୧୪୫ ।
ସଭାପଣ୍ଡା ପଣେ କୋନ୍ତଭକ୍ତେ ବିଜେକଲେ
ରୋଷ୍ଅ ଘରକୁ ଯେ ବୃକୋଦର ଚଳିଗଲେ । ୧୪୬ ।
ଗ୍ରନ୍ଥିକାର ରହିଲେ ଯେ ଅଶ୍ୱଶାଳେ ଯାଇଁ
ସନ୍ୟବଳ ଯେ ଯାହାରେ ପ୍ରବେଶିଲେ ତହିଁ । ୧୪୭ ।
ଆସ୍ଥାନେ ବିଜୟେ ଯାଇଁ କଲା ମତ୍ସ୍ୟପତି
କୋନ୍ତଭକ୍ତେ ସଙ୍ଗେ ଘେନ କରେ ରାଜନୀତି । ୧୪୮ ।
। ୪୬୯୫ ।

———

## ବିରାଟ ବୀରବାହୁ ସହିତ ଯୁଦ୍ଧେ ଗମନ
## ଗୋଧନ ହରଣ ନିମନ୍ତେ କୁରୁସୈନ୍ୟ ବିରାଟ ରାଜ୍ୟରେ ପ୍ରବେଶ ଓ ପୃଥନାର ସହଦେବ ସହିତ ଯୁଦ୍ଧ

ଅଗସ୍ତି ବୋଇଲେ ଶୁଣ ମନୁ ନୃପବରେ
ଅପୂର୍ବ ରହସ୍ୟ ଶୁଣ କହୁଁ ବିନାନ୍ତରେ । ୧ ।
କାଳନଭ୍ରମୀ ବୋଲିକରି ମଘଦେଶେ ରାଜା
ବଳେ କୀଚକ ନାଶକଲା କଳପିବଳ ଗଞ୍ଜା । ୨ ।
କାଳନଭ୍ରମୀର ପୁତ୍ର ଅଟଇ ବୀରବାହୁ
ପିତାର ନିଧନେ ଯେ ପଳାଇଲା ସେହୁ । ୩ ।
କୀଚକର ଭୟେ ସେ ପଳାଇଲା ନିଜ ରାଜ୍ୟ ଛାଡି
ଗୃଦ୍ଧେଣ ବସିଲା ସେ କଳପି ରାଜ୍ୟ ମାଡି । ୪ ।
ମଚ୍ଛଦେଶର ରାଜା ନୃପତି ଧର୍ମଗତି
ବଳେଣ କୀଚକ ତାହାଙ୍କଇଂ କଲା ହତ । ୫ ।
ତାହାର ପୁତ୍ର ଯେ ପଳାଇଲା ତ୍ରିଗର୍ତ୍ତେ
ଶରଣ ପଶିଲା ଯାଇଂ ଇନ୍ଦ୍ର ଯେ ପ୍ରଶସ୍ତେ । ୬ ।
ସମଦଣ୍ଡ ଯେବେ ଆସି ପାଇଲା ଅପଚୟେ
ତାହାର ନିମନ୍ତେ ବାହିଲା କୁଞ୍ଜଗଳ ଦେଶରାୟେ । ୭ ।
ଯେବ୍ଣେ ତ୍ରିଗର୍ତ୍ତିକୁ ଜିଣି ରାଜା ଉଚ୍ଛବ କରାଇ
କଳପି ଦେଶ ରାଜା ବୀରବାହୁ ତେଣେ ବାହି । ୮ ।
ସାନନ୍ଦେଣ ବିରାଟ ଯେ ଆସ୍ଥାନେ ବିଜୟେ
ଦେଶାନ୍ତରମାନେ ବାରତା ଆସି କହେ । ୯ ।
ସ୍ୱାମୀ କଳପି ଦେଶର ରାଜା ଯେ ବୀରବାହୁ
ସମଦଣ୍ଡ ହାଦେ ସାଜିଲା ସେ ସାଂଗ୍ରାମେଣ ରହୁ । ୧୦ ।
ଶୁଣିଣ ମୋହମାନ ହୋଇଲା ବିରାଟ
ଆରେ ମୋହୋର କୀଚକ ବୋଲି କରି ତାଡଇ ଲଲାଟ । ୧୧ ।

ଦୁଇରାଜ୍ୟ ଭୋଗ ମୋତେ କରାଇଲୁ ପୂର୍ବେ
ଯେବେ ମୋତେ ରିପୁ କଲାଲ ରେ ତୋହୋର ଅଭାବେ । ୧୨ ।
ବାବୁ ମୋହୋର ପରାଯେ ବାନ୍ଧବ ତୋତେ ନୋହୁ
ତୋହୋର ପରାଯେ ବାନ୍ଧବ ମୋତେ ସର୍ବଦା ହୋଇଥାଉ । ୧୩ ।
ବିରାଟଙ୍କୁ ସମ୍ବୋଧନା କରନ୍ତି ଦେବ କୋନ୍ତେ
କର୍ମା ଅସାଷ୍ଟମ ହେଉଅଛୁ କାସ ଅର୍ଥେ । ୧୪ ।
ଦଣ୍ଡ ସାଜ ଯିବା ଗୃଳ ମଦ୍ରଦେଶ ମଣ୍ଡଳେ
ଜିଣିମା ବୀରବାହୁ ସମର ଧର୍ମବଳେ । ୧୫ ।
ଆପଣେ ଉଭାହୋଇ ଦଣ୍ଡ ସାଜଲେ ଦେବ କୋନ୍ତେ
ଗ୍ରନ୍ଥିକାର ବାଜୀପାଳ ବଲ୍ଲଭ ସୂପକାର ସହିତେ । ୧୬ ।
ଉତ୍ତର କୁମାର ବୋଲି ଯେ ବିରାଟର ଜ୍ୟେଷ୍ଠ ବତ୍ସା
ମଦ୍ରଦେଶେ ମଚ୍ଛଦେଶେ କଲେ କଟକେ ପରିଚ୍ଛା । ୧୭ ।
ରାଜ୍ୟଭାର ସିଂହାସନ ଉତ୍ତର କୁମାରଙ୍କୁ ସମର୍ପି
ଚଳଲେ ଦଣ୍ଡ ଘେନ ଉତ୍ତର ରାଜ୍ୟ କଳପି । ୧୮ ।
ବୀରବାହୁ ଦଣ୍ଡ ଘେନ ରହିଅଛୁ ନଇଷଧ ଦେଶେ
ଗୃଳଶ ଯୋଜନ ପରିଯନ୍ତେ କେହୁ ନ ରହନ୍ତି କଡପାଶେ । ୧୯ ।
ବୀରବାହୁର ଦଶ ମେବଚ୍ଛ ରଥ ବତିଶ ମେବଚ୍ଛ ହସ୍ତୀ
ଗଜ ଯୋଧା ନାହିଂ ଥାଠଯାକ ରାକ୍ଷସ ମଧ୍ୟେ । ୨୦ ।
ଗୋ ବ୍ରାହ୍ମଣେ ଭକ୍ଷନ୍ତି ହାଥୀ ଘୋଡା ଆଦିକର
ମେଷ ଛାଗଲ ବରେହା ଶ୍ରୀକାଳ ଘୂଷୁରୀ । ୨୧ ।
ଜୀବନ୍ତେ ଦେଖିଲେ ଅବଶ୍ୟ ତାହା ମାରି
ଋଷି ତପୋଧନ ସ୍ତ୍ରୀରୀଲଙ୍ଗ ନ ବର୍ଗୁରି । ୨୨ ।
ବିହରନ୍ତି ଦୁରାନ୍ତେକ ବଳେ ତେଜେଣ ଅନର୍ଗଳା
କାଦମ୍ବରୀ ପାନେ ମହାରସେ ହୋଇ ମତ୍ତଭୋଳା । ୨୩ ।
ପଞ୍ଚଦଶ ଯୋଜନ ଚଳଇ ଥାଠ ମାଡ
ମଦିରା ପାନ ରକତେ ସେ ଘୋଡାମାଂସ ଖେଡ । ୨୪ ।
କଡା ବଜଘୋଷ ଯେ ମର୍ଦ୍ଦଳ ଦାଉଣ୍ଡି
ଟମକ ନଶାଣ ଯେ ଘୁମୁରା ବାଦ୍ୟ ଖଣ୍ଡି । ୨୫ ।

ବିକଟ ଦଶନ ଯେ ଊର୍ଦ୍ଧ୍ୱ ଖାଂକର କେଶ
ପିଙ୍ଗଳ ବର୍ଣ୍ଣ ଶରୀର ବିକଟାଳ ବେଶ । ୨୬ ।
ଓଟ ଗଧ ଶାର୍ଦ୍ଦୂଳ ବ୍ୟାଘ୍ର ଭଲୁକ ଲାଗି
ସେହିମାନ୍ତ ଆରୋହଣ ଥାଟ ଚଳଇ ବେଗି ବେଗି । ୨୭ ।
ସେ ସନେକ ଚଳଇ ନିଶାଚର ବଳ ଥାଠ
ସରଜୂ ନଦୀ ତଟରେ ଓଟହା ଥାଟ ହୋଇଲେ ଯାଇଂ ଭେଟ । ୨୮ ।
ମାନେବ ବଳ ଦେଖି ଦୁର୍ବୃତ୍ତେକ ବଳ ବେଗି
ରେ ରେ କାର କରଣ ଡାକ ଦେଇ ବେଗେଣ ଲାଗି । ୨୯ ।
ସମଦଣ୍ଡ ଘେନ ବିରାଟ କଳପି ରାଜ୍ୟକୁ ଗଲା ତେଣେ
ଦଣ୍ଡ ଘେନ ଦୁଯୋଧନ ବାହାର ପୂର୍ବ ସେଣେ । ୩୦ ।
ପ୍ରଥମ ଦିନେ ସଇନ ଚଳିଲେ ଅତିବେଗେ
ସେ ଦିନ ରହିଲେ ଯାଇଂ କୁଣ୍ଡଳୀ ବନଭାଗେ । ୩୧ ।
ଆରେକ ଦିନ ଥାଠ ପଞ୍ଚାଶ ଯୋଜନ ଯାଇ
କୁରୁଣ୍ଡେକ ବନମାଠୋବେ ରହି । ୩୨ ।
ଆରେକ ଦିବସକେ ଥାଠ ସତେଇଶ ଯୋଜନ ଚଳି
ପୁଣ ଆରେକ ଦିନ ଅଣତିରିଶ ଯୋଜନ ଯାନ୍ତି ଅଗ୍ରଗଲେ । ୩୩ ।
ହସ୍ତିନାରୁ ବାହାର ଯେ ହୋଇଲେ ନବଦିନେ
ସେ ଦିନ ବିଜେକଲା ରାଜା ଅସକନ୍ଧା ନାମେ ବନେ । ୩୪ ।
ଦେଶାନ୍ତରେ ବାରତା ଯେ କହିବେ ଗୋପତେ
ସ୍ୱାମୀ ମଚ୍ଛଦେଶେ ମଦ୍ଧଦେଶେ ନାହିଂ ବିରାଟ ନୃପତ୍ୟେ । ୩୫ ।
ସ୍ୱାମୀ ବୀରବାହୁ ଦଣ୍ଡ ବାହାର ବିରାଟ ଉପରକୁ
ସମଦଣ୍ଡ ଘେନ ବିରାଟ ବାହାର ତାହାର ଥାଠକୁ । ୩୬ ।
ସ୍ୱାମୀ ଉତ୍ତର କୁମାର ବୋଲି ବିରାଟର ଜ୍ୟେଷ୍ଠବହ୍ନା
ତାହାକୁ ସେକା ଥୋଇଗଲେ କଟକେ ପରିଚ୍ଛା । ୩୭ ।
କଳପି ରାଜ୍ୟକୁ ବିରାଟ ଗଲା ଦଣ୍ଡ ଚାଳି
ପାଞ୍ଚ ଅମନାତ୍ୟ ଯୋଦ୍ଧା ବାଦ୍ୟକାର ଆଦିକରି । ୩୮ ।

---

୩୧।୨ ସେ ଦିନ ରହିଲେ ଯାଇଂ କୁରୁଣ୍ଡେକ ବନମାର୍ଗେ ।—ଙ,ଡ,ଥ

ଖ୍ରିଷ୍ଟେ ବୋଇଲେ ବାବୁ କର ହୋ ଉପେକ୍ଷା
ଯାଇଁ କସ କରିବା ନଗ୍ର ଯେବେ ଇଚ୍ଛା । ୩୯ ।
ତ୍ରିଗର୍ତ୍ତକୁ ହକାରଣ ପରୁଶିଲେ ମହାମଲ୍ଲ
ଅଇଲୁଣି ଯେବେ ରାଜ୍ୟକୁ ଯିବା ଚାଲ । ୪୦ ।
ତ୍ରିଗର୍ତ୍ତର ରାଜ୍ୟସୀମା ଆବୋରକରି
ନିଜ ରାଜ୍ୟେ ସୈହାକୁ କରିବା ଦଣ୍ଡଧାରୀ । ୪୧ ।
ଖ୍ରିଷ୍ଟେ ବୋଇଲେ ବିରାଟକୁ ନ ଜିଣିଲେ
ରାଜ୍ୟ ମାତ୍ର ବସିବ କି ସୈହା ଗ୍ରର ବୋଲେ । ୪୨ ।
ଖ୍ରିଷ୍ଟଂକର ବଚନେ ପ୍ରତିବାକ୍ୟ ଦିଅଇ ତ୍ରିଗର୍ତ୍ତ
ବିରାଟକୁ ନ ଜିଣିଲେ ରାଜ୍ୟ ମୋତେ ନୋହୋଇ ପରାପତ । ୪୩ ।
ଶକୁନି ବୋଇଲେ ସୈବେ ଯିବା କି ବାହୁଡ଼
ସୈତେକ ଆରମ୍ଭେ ଆମ୍ଭେ ଅଇଲୁ ଦଣ୍ଡ ଚଢ଼ି । ୪୪ ।
ଶକୁନି ବୋଇଲା ତ୍ରିଗର୍ତ୍ତ ଗୋଧନ ପଲ ଅଛି କାହିଂ
ସୁରଭି ପଲ ସୁବିଧାନେ ପାଇଲେ ଘେନିଯିବା ଅଡ଼େଇ । ୪୫ ।
ମନ୍ତ୍ରୀର ବଚନେ ସେ ତ୍ରିଗର୍ତ୍ତ ମହୀପତେ
ଗୋଗୋଷ୍ଠକୁ ଥାଠ ଯେ କଡ଼ାଇଲା ଗୋପତେ । ୪୬ ।
ବାରାହୀ ନଦୀତଟରେ ଭର୍ଗବୀ ନାମେ ବନ
ତହିଂର ଉପରେ ଯେ ଗୋଧନ ପଲ ହୋଉଛନ୍ତି ଦୋହନ । ୪୭ ।
ଦୁହାଳ ଦୁଇପଦ୍ମ ବରଡ଼ ବାରଲକ୍ଷ ଗଣିତା
ଅଣ୍ଡିର ବଛା ତିନିଲକ୍ଷ ମାଈ ପାଞ୍ଚମଭୁଁତା । ୪୮ ।
ସୈକା ଗୋଷ୍ଠକେ ଯେ ସୈତେକ ଗାଈ ଅଛି
କୋଟିଏ ନବଲକ୍ଷ ଗୋପାଳ ତାହା ରଖି । ୪୯ ।
ସୈକା ଗୋଷ୍ଠକେ ମାତ୍ର ଅଛଇ ବେନି ଯୋଜନ ସ୍ଥଳୀ
ଅମାପତ ଗୋପାଳେ ସେ ମହା ମହାବଳୀ । ୫୦ ।
ଧବଳ କମଳ ସେ ସୁସଙ୍ଗ ଗୋକୁଳ
ତହିଂର ପରିଛା ଯେ ଗୋପାଳ ତନ୍ତ୍ରୀପାଳ । ୫୧ ।

---

୩୯।୧ ଖ୍ରିଷ୍ଟେ ବୋଇଲେ ବାବୁ ନ କର କଇଛା ।—ଘ,ଛ,ଥ

ସମଦଣ୍ଡ ଘେନାଣ ଯେ କଉରବ ଚନ୍ଦ୍ରଗ୍ରାଷ୍ଟି
ଗୋଗୋଷ୍ଠେ ବେଢ଼ିଲେ ଯାଇଂ ରଘୁଣୀ ପାହାନ୍ତ । ୫୨ ।
ମକର ମାସ ଶୁକଳପକ୍ଷ ଦୁଷ୍ଟାଗ୍ରାର ଦିନ ରାଜା ଚଳଲ ହସ୍ତିନାଇଂ
ନବଦ୍ଦିନେ ଭେଟିଲି ମଚ୍ଛଦେଶେ ଗ୍ରହଦବା ଚଳାଉଂ । ୫୩ ।
ମକରମାସ ଶୁକଳପକ୍ଷ ଦଶମୀର ଦିନ
ଭୃଗୁବାର ଆରଦ୍ରା ନକ୍ଷତ୍ର ବିଦ୍ୟମାନ । ୫୪ ।
ବଷ୍ଟି ନାମେ କରଣ ଯେ ବିଷକୁମ୍ଭ ଯୋଗ
ଅଷ୍ଟମରେ ଶନଶ୍ଚର ରାହୁ ତୃତୀୟ ଘରେ ଭୋଗ । ୫୫ ।
ସେ ଦିନ ରାତ୍ର ଚାରିଘଡ଼ି ଥାଉଂ କଉରବେ ମହାମଲ୍ଲ
ଲକ୍ଷେପୁର କଶ ସେ ବେଢ଼ିଲେ ଗୋଧନପଲ । ୫୬ ।
ବଜାବନ୍ତ ବାଜିଘୋଷ ଢମକ ନିଶାଣ
ବୀରଭୂର ଦମା ଦାଉଣ୍ଡି ଯେ ନର୍ଘାତ ବଜ୍ରବାଣ । ୫୭ ।
ଭେରୀ ଦୋସରୀ ମର୍ଦ୍ଦଳ ମହୁରୀ ବୀର ଯେ କାହାଳୀ
ଧର ଧର ମାର ମାର ଶବଦେ କୁରୁମ ଉଚ୍ଛୁଳ । ୫୮ ।
ହାଥୀଂକର ଗରଜନ ଘଣ୍ଟାରବ ବାଣୀ
ଛତ୍ରୀଂକର ଗୁଣ ଟଂକାର ଅଶ୍ବଂକର ଖୁରଷାଣୀ । ୫୯ ।
ଘଣ୍ଟି ଘାଗୁଡ଼ି ଯେ ବୀର ଘଣ୍ଟମାନ ବାଜି
ଶବଦେ ମନ୍ଦର କି ପଡ଼ୁଅଛି ଭାଜି । ୬୦ ।
ମହୀ ମନ୍ଥନ କରଇ କି ଅଭୟେ ବାରିନିଧି
ପୃଥୀ ହେଲ ଘେନି କି କମ୍ପଇ ଜଳଧି । ୬୧ ।
ଶୁଣ ହୋ ବଇବସ୍ବତ ମନୁ ତ୍ରଇଲୋକ୍ୟ କମ୍ପମାନ
ଦିଗାମ୍ବର ପୁରୁଷମାନେ ଆସ୍ଥାନ ଛାଡ଼ୁଛନ୍ତି ଶୂନ୍ୟ । ୬୨ ।

---

୫୮।୨ ଧର ଧର ମାର ମାର ଶବଦେ ଗଗନ ଉଚ୍ଛୁଳ ।—ଘ,ଙ,ଛ,ଦ

୫୮।୨ କୁରୁମ—ପାତାଳ ।

୬୧ { କ୍ଷୀରସିନ୍ଧୁ ମନ୍ଥନେ ଯେସନ୍ତେ ପ୍ରଳୟ ବାରାନିଧି
ପୃଥିବୀ ହେଲ ଘେନୁଛନ୍ତି କୁରୁସାଗର ହାଦେ ଯୋଧୀ ।—ତ,ଅ

ପ୍ରେତେକ ଆରମ୍ଭେ ମହାଥାଠ ଗୋଗୋଷ୍ଟେ ଯାଇଂ ବେଢି
ଗୋପାଳେ ନ ଜାଣନ୍ତି ଗାଈଂକର ହମ୍ବାରଡ । ୬୩ ।
ଗାଈଂକର ହେମ୍ବାରବ ବଛାଂକର ବୋବ
ଗୋପାଳଂକର ସୁସୁକାର ନଉଡ ପଗ୍ରଭବ । ୬୪ ।
ବାପ୍ୟେଂଶୀର ଶବଦ ଘଣ୍ଟଂକର ଗରଜନ
ଗାଈଂକର ବେକେ ଘଣ୍ଟି ବାଜଇ ଟୁଣ୍ଟୁଣ । ୬୫ ।
ଧବଳୀ କମଳୀ ଯେ କାଳୀ କସୁରୀ ଶ୍ୟାମଳୀ
ବଛାନ୍ତ ଦେଖାଇ ଡାକନ୍ତି ଗାଈଂକ ନାମ ତୋଳ । ୬୬ ।
ପ୍ରେତେକ ଆରମ୍ଭେ ବେଢି ଅଛଇ କୁରୁପତି
ତାହାଂକ ବେଢିବା ହାଦେ ଗୋପାଳେ ନ ଜାଣନ୍ତି । ୬୭ ।
ଶୁଣ ହେ। ଚଇତନ ଗୋପାଳଂକର ବଡମାପଣ
ଦୋହନେ ବନ୍ଧନେ ଲାଗିଅଛନ୍ତି ଅପ୍ରମାଣ । ୬୮ ।
ବିଶେଷେ ମକରମାସ କୁହୁଡ ଆଚ୍ଛନ୍ନ
କଛୁହିଂ ନ ଦିଶଇ ପୂରିତ ଗଗନ । ୬୯ ।
ରଯୂଣୀ ପାହିଣ ବେଳ ପ୍ରହରେ ହୋଇଲା
କୁହୁଡ ଫିଟନ୍ତେ କଉରବ ଥାଠ ଯେ ଦିଶିଲା । ୭୦ ।
ଗଉଡେ କହିଲେ ଗୋସାଇଂ ଅବଧାନ ତନ୍ତ୍ରୀପାଳ
କେବଣ ରାଜାଟି ତୋହୋର ବେଢିଛି ଗୋକୁଳ । ୭୧ ।
ଶୁଣିଣ ସହଦେବ ବଇଲ ପିଠିରେ ଉଠି
ଦେଖିଲାକ ସମଦଣ୍ଡ ଥାଠ ଧୃତରାଷ୍ଟ୍ରି । ୭୨ ।
କଣସ୍ୟମଧ୍ୟେ ରଥେ ଦାସୀନେତ ପାତାଙ୍ଗ
କେଶରୀ ଲାଙ୍ଗୁଡ ଚନ୍ଦ୍ର ଫରହର ଉଚ୍ଛର୍ଗ । ୭୩ ।
ସହଦେବ ଦେଖିଲା ଯେ କଉରେବ ସଇନ
ଦ୍ରିଯୋଧନ ବଳେକଲା ନଜ ବଳ ଘେନ । ୭୪ ।

---

୬୪।୨ ଗୋପାଳଂକର ଡାକହାକ ସୁସ୍ୱର ଶବଦ ଶୁଭ ।—ଡ,ଥ
୬୬।୨ ବଛାନ୍ତ ଦେଖାଇ ଗାଈଂକ ହମ୍ବାରବ ତୋଳ ।—କ,ଠ
୬୯।୨ କଛୁହିଂ ନ ଦିଶଇ ପୁରିତ ଗହନ ।—ଚ,ଝ,ଣ,ଖ,ଛ

ବଇଲ ପିଠିରୁ ଯେ ତେଜ୍ୟା କଶଣ ତନ୍ତ୍ରୀପାଳ
ଧାଡିକାରେ ପ୍ରଣିପତ୍ୟ ପୃଥୁନା ପାଦତଳ । ୭୫ ।
ନେତ୍ରେ ମାତ୍ର ସମଦଣ୍ଡ ଘେନଣ ଯେ ବଗ୍ନଟେ
କଲପି ଗ୍ନଜ୍ୟେ ଗଲେ ସଙ୍ଗତେ ବଲ୍ଲଭ କୋନ୍ତଭଟେ । ୭୬ ।
ବେନରାଜ୍ୟ ଭୁଞ୍ଜା ଗଜ ଅଶ୍ୱ ସନ୍ୟ ନାହିଁ
ହିଗର୍ଭିର ଅଭିମାନେ ଯେ ମାନଗୋବିନ୍ଦ ଅଇଲ ବାନ୍ଧି । ୭୭ ।
ମାଗୋ ବୈରାଟ ସମ୍ପଦ ବୁଡିଲା ନୋହିଲ କିଛି ଭଲ
ସମ୍ଭରେ କୁରୁପତି ଯେ ବେଢିଲ ଗୋରୁପଲ । ୭୮ ।
ଯଦ୍ୟପି ଗୋରୁ ପଲ ଘେନି ସେ ଯିବ ହରି
ସମ୍ପୋତେ ନାଶଗଲ ବୈରାଟର ହାଦେ ଶିରି । ୭୯ ।
ମାଗୋ ତୋହୋର ଥାଆନ୍ତେ ବୈରାଟ ଅନାଥ ହୋଉଅଛି
କହ ଗୋ ଜଗତମାତା କେମନ୍ତେ ସ୍ୱେ ହୋଇ ରଷି । ୮୦ ।
ତୁ ଦେବୀ ଗୋ ସଫୂଲ ଜନ ଚିନ୍ତାମଣି
ଭୂତ ଭବିଷ୍ୟ ବ୍ରତମାନ ଜାଣୁ ଗୋ ଗୋସାମଣି । ୮୧ ।
ମାଗୋ ଗୋଧନ ପଲ ମୋହୋର ହରଣ ହେବ କି ତୋହୋର ଥିଲେ
ମୁଂ ଆଉ ବ୍ରତିବି କି ଖିମସେନ ଠାକୁରଂକର ଅଇଲେ । ୮୨ ।
ତୁ ମହାମାୟୀ ରକ୍ଷାକର ଗୋ ମୋହୋର ଅପାଦ
ଯେମନ୍ତେ ନ ପଡଇ ଗୋଧନ ପଲକୁ ପରମାଦ । ୮୩ ।
ସହଦେବର ବିନୟ ଶୁଣିଣ ପୃଥୁନା
ବାବୁ ମୁହିଂ ତୋହୋର ଦାସର ଦାସ ଭୃତ୍ୟର ଭୃତ୍ୟ ସିନା ।୮୪।
ଯେସନେକ ଚଣ୍ଡୀ ଯେ ସିଂଜଇ ମାଟି ଲୋଚ
ତୁ ଯେତିକି ଯିବୁ ମୁଂ ତେତିକି ଯାଉଅଛି । ୮୫ ।
ପ୍ରୋଥନା ବୋଇଲ ବାବୁ ତୁ ଲଖ ମାସ ହୋଇ ମୋହୋର ସଙ୍ଗେ ଚଲ
ସ୍ୱେହିକ୍ଷଣି ମରହିବ ମୁଂ ସମସ୍ତ କଉରେବ ବଳ । ୮୬ ।
ପ୍ରୋଥନା ବୋଇଲ ତୁ ସ୍ୱେଥକୁ ନ କର କିଛି ଭୟେ
ମୁଂ ସ୍ୱେହାନ୍ତ ବୁଝାଇ ଶ୍ରିକାଳପୂଥ ପ୍ରାସ୍ୱେ । ୮୭ ।
ହୋଉକନା ଗଜ ଅଶ୍ୱ ହୋଉକନା ରଥ
ସ୍ୱେହିକ୍ଷଣି ମାରଣ କରିବ ଭଗନସ୍ତ । ୮୮ ।

କ୍ଷୀରୋଦ ଲଂଘିଲେ କି ରହଇ ମେଦନୀ
ବାସୁକି ଟଳିଲେ କେ ଧାରଇ ଧରା ଧେନ । ୮୯ ।
ମୁହିଂ ଯେବେ ସଙ୍ଗ୍ରେ ଲଂଘିବି ସୈନ୍ୟବଳ
ରଥ ଗଜ ଅଶ୍ୱ ଭାଂଗି କରିବି ନଭସ୍ଥଳ । ୯୦ ।
ତୁହି ମାତ୍ର ମୋହୋର ତୁଲେ ହୋଇଥିବୁ ସାଖୀ
କାହିଂ ସମର କରିବି ଗୃଳ ମୋତେ ଦେଖା । ୯୧ ।
ପ୍ରାର୍ଥନା ବାକ୍ୟ ଶୁଣିଣ ତନ୍ତ୍ରୀପାଳ
ଧାଆଂରେ ନଉଡ଼ି ଘେନି ସମସ୍ତ ଗୋପାଳ । ୯୨ ।
ଯାହାଂକର ସପକ୍ଷ ଜଗତମାତା ପ୍ରାର୍ଥନା
ରଥ ଗଜ ଅଶ୍ୱ ସେ ମାରି କରୁ ଚନା । ୯୩ ।
ବାସବର ବଚନେ ଯେହ୍ନେ ଚଳନ୍ତି ଦିଗପାଳେ
ସେହି ସାରକ୍ଷେ ବୀରେ ଧାଅନ୍ତି ସମରେ । ୯୪ ।
କଟିରେ ପାଉଣୀ ବାଳ ଛନ୍ଦଣୀ କାଛଟାନ୍ତି ଭିଡ଼ି
କରେଣ ଧରିଛନ୍ତି କେନ୍ଦୁସର ଲଉଡ଼ି । ୯୫ ।
ଆରେକ କରେ ବଳବନ୍ତା ଚାଳର ମୁଷଣ୍ଡି
ଲୋହବନ୍ଧ ତଉସମ ବିବର୍ଣ୍ଣ କାଉଂସା ବାଡ଼ି । ୯୬ ।
ଶିରରେ ଗୁଞ୍ଜିରା ମାଳୀ ଲଲଟେ ସୀମନ୍ତିନୀ
କରେ ବାବନ୍ତି ବାଏଂଶୀ ମଧୁର ରସଧୁନି । ୯୭ ।
ପାଦେଣ ନେପୁର ଧ୍ୱନି ଘାଗୁଡ଼ି ଶବଦେ
ମହୀ ହେଲ ଘେନୁଅଚ୍ଛି ଗମନ୍ତେଣ ପାଦେ । ୯୮ ।
କାହା ମର୍ଦ୍ଦଳ ମୃଦଙ୍ଗ ବଜଘୋଷ ଧୁମୁକା
ସୁର ମଉଆଳେ ନାଚନ୍ତି ଗୋପାଳେ ମହାବୀର । ୯୯ ।

---

୯୦।୨ ତରଣ ରଶ୍ମି ଯେହ୍ନେ ଦହଇ ଅନଳ ।—ଗ,ଙ,ଟ

୯୦।୨ ନବସ୍ଥଳ—ନଭସ୍ଥଳ

୯୭।୧ ମଥାରେ ଖୋଲିର ଲଲଟେ ସୀନ୍ଥାନୀ ।—କ,ଝ

୯୮।୨ ମେଦନୀ ହେଲ ଘେନୁଛି ପୃଥ୍ୱୀନାର ହମ୍ବାରବ ନାଦେ ।—ତ, ଥ

ଡାହୁରେ ଚୂଳ କାହାର ସାଙ୍ଗ ପାଞ୍ଚ ବେଣୀ
ହୃଦରେ ମନ୍ଦାରମାଳ ଜାମୁଡାଳ ଶିରେ ଝଞ୍ଜଣୀ । ୧୦୦ ।
ବଜାବନ୍ତ ଖରତୂର କଂସାଳ ଝଞ୍ଜାଳ ଗୁଡୁଗୁଡି
ବାଦନ୍ତ ଗାବନ୍ତ ନାଚନ୍ତ ଖେମଟା ନାଟଖଣ୍ଡି । ୧୦୧ ।
ଆଗେ ଆଗେ ବୋଲ ହଲେକ ଘୋରରଡି
ଶବ୍ଦର ନ ଦଶଇ ବୁଲ୍ବନ୍ତେ ନଉଡ । ୧୦୨ ।
କ୍ଷେପନ୍ତ ପାଦଗଣ୍ଡ ଯେ ମଲୁଆଳ ବଳ
ଆଗେଣ ଧାମନ୍ତ ସେ ପରଛା ଚନ୍ଦ୍ରୀପାଳ । ୧୦୩ ।
ଲକ୍ଷେକ ଅଣ୍ଡିରା ବସ୍ତ୍ର ଘେନଣ ପ୍ରୋଥନା
ହୁହଡନ୍ତ ମାତାଙ୍ଗୀ ବକଟାଳ ଘୋର ଗର୍ଜନା । ୧୦୪ ।
ପ୍ରୋଥନାର ଆଗମ ସେ ଦେଖିଣ ସର୍ବଗାଈ
ହେମ୍ବାରବ କରଣ ପଡିଲେ ସବେ ଧାଇଂ । ୧୦୫ ।
ଗୋପାଳଂକ ମତ୍ତଭାବ ସେ ଦେଖିଣ କଉରବେ
ଦ୍ରୋଣଂକର ବଦନ ଗୃହ୍ବଂ ହସିଲେ ଗାଙ୍ଗେବେ । ୧୦୬ ।
କର୍ଣ୍ଣ ଶକୁନ ଯେ ଧୃଶାସନ ସହିତେ,
ଉପହାସ କରନ୍ତ ସମସ୍ତ ଅନନାତେ୍ୟ । ୧୦୭ ।
ଦେଖ ହୋ ଗୋପାଳଂକର ଅଗ୍ୟାନ ମୂର୍ଖପଣ
ଜାଣିଲୁ ଚଢନ୍ତ ସ୍ନେହାଂକ ଇଚ୍ଛାସ୍ତେ ମରଣ । ୧୦୮ ।
କାଦେମ୍ବଷ ପାନେ ବାସ୍ନେଂଶୀ ମତ୍ତୁଆଳେ
ନ ଚହ୍ନନ୍ତ ପରାପର ଦନ୍ଦୁରେ ଗୋପାଳେ । ୧୦୯ ।
ଗାଲଭୂଷ ମାରଣ ପାଡନ୍ତ ଯେ ବୋବ
କଳକଳା ଶବଦେ କମ୍ପଇ ମହୀଦେବୀ । ୧୧୦ ।
ସହଦେବ ବୋଇଲା ମାଗୋ ଶୁଣିମା ପୃଥୁନା
ଉପହାସ୍ୟ କରନ୍ତ ଗୋ କଉରବେ ସର୍ବସେନା । ୧୧୧ ।

---

୧୦୪।୨ ବହଡନ୍ତ ମାତାଙ୍ଗୀ ବକଟାଳ ଘୋର ସେନା ।—ଛ,ଣ,ଘ
୧୦୮।୨ ଗର୍ଜିତ ସ୍ନେହାଂକର ଇଚ୍ଛାସ୍ତେ ଲୋଡନ୍ତ ମରଣ ।—ଛ,ଣ,ଘ
୧୦୯।୨ ନ ଚେତନ୍ତ ପରାପର ଦୁରୁଦୁର ଗୋପାଳେ ।—କ,ପ,ଛ

ପ୍ରୋଥନା ବୋଇଲ ନଖମୀଷ ମୋତେ ହୋଇଥାଅ ସଙ୍ଗେ
ମାରିବ କଉରବେ ବଳ ତୋହୋର ବଇରାଗେ । ୧୧୨ ।
ଅଛନ୍ତି କଉରବେ ବଳ ମହା ମହା ରଥୀ
କାହାର ରଥେ ଶିଂଗ ମାରିବ କହ ତତକ୍ଷଣାନ୍ତି । ୧୧୩ ।
ସହଦେବ ବୋଇଲ ଯଦ୍ୟପି ସେନାମାନେ
ବର୍ଣ୍ୟପଣେ ଆସିଛନ୍ତି ଅବା ରାଜାର ବଚନେ । ୧୧୪ ।
ଦେଖ ଦେଖ ମହାସମୂରେ ଶଜେ କରନ୍ତି ମାନଗୋବିନ୍ଦ
ତାହାର ତୁଲେ ଆମ୍ଭର ନଚଯୂଚି ଦ୍ୱନ୍ଦ । ୧୧୫ ।
ଉପହାସ କରୁଛନ୍ତି ସେ କଉରବେ ଖାରେ
ଧାଇଂଣ ସହଦେବ ମିଳିଲ ରାଜାର ସ୍ରୁମୁରେ । ୧୧୬ ।
ସ୍ରୁର ବୋଲି ତାହାକଇଂ କଲେ ସର୍ବେ ହେଳା
ରାଜାର ଛାମୁରେ ପ୍ରବେଶ ଗୋପାଳ ମହାବୀରା । ୧୧୭ ।
ବାମ ଡାହାଣେ ବେନି ଲଉଡ ବୁଲାଇ
ଦ୍ରିଯୋଧନ ରଥେ ସେ ପ୍ରହାର କଲ ନେଇ । ୧୧୮ ।
ଶୁଣ ହୋ ଚଇତନ ଗୋପାଳଂକର ଚରିତ
ଆକାଶୁ ଗରଜ ଯେହ୍ନେ ପଡଇ ନିରଘାତ । ୧୧୯ ।
ସେହ୍ନମନ୍ତ ପଡିଲ ସେ ସହଦେବର ଯାଠି
ବେନିଫାଳ ହୋଇ ଦ୍ରିଯୋଧନର ରଥ ଗଲ ଫାଟି । ୧୨୦ ।
ପୁଣ କୋପେ ସେ ପ୍ରହାର କଲ ଅତିବେଗେ
ମୁଧୂନା ଫାଟି ପଡଲେ ଘୂର ଯେ ତୁରଙ୍ଗେ । ୧୨୧ ।
ବିଜେକେତନ ବୋଲି ଯେ ଦ୍ରିଯୋଧନର ସାରଥି
ଲଲାଟ ଫାଟି ସେ ପଡିଲ ତତକ୍ଷଣାନ୍ତି । ୧୨୨ ।
ବିରଥୀ ହୋଇଣ ସେ ରାଜା ମାନ ଯେ ଗୋବିନ୍ଦ
ଗଜେକ ଆରୋହିଲ ସେ କଉରବେ ନରେନ୍ଦ୍ର । ୧୨୩ ।
ସହଦେବ ପ୍ରହାରେ ଧାମଇ ପୃଥୁନା
ଶିଂଗ ମାରି ସେ ଗାଈମାନେ ରଥ କଲେ ଚୂନା । ୧୨୪ ।
ଅଧର ବିକାଶିଣ ସେ ଧାମନ୍ତି ଗଳଗାଜି
ଶିଂଗ ପ୍ରହାର କରନ୍ତେ ସର୍ବ ରଥ ଗଲ ଭାଜି । ୧୨୫ ।

ଗୋପାଳେ ପ୍ରହାର କଲେ ଲଉଡ଼ ଶରଘାତେ
ଅସାଷ୍ଟମେ ଅଶ୍ବେ ପଡ଼ିଲେ ମୋହଗତେ । ୧୨୬ ।
ମଧ୍ୟାନାଗ ଆରୋହଣ ମାନଚନ୍ଦ୍ରବୃଷ୍ଟି
ସଭୁସ୍ମ ସଭୁସ୍ମ ଭାର ବେଷ୍ଟନଗଦା ଘେନିଣ କୋପମୂର୍ତ୍ତି । ୧୨୭ ।
ଧୂଶାସନ ଦୁଜସ୍ବ ଦୃଢ଼ବନ୍ଧ ଦୁର୍ବାକର୍ଣ୍ଣି
ଦୁର୍ବାନ୍ତେକ ଦୁର୍ମିନ ଦୃଢ଼ମତ ଦୁର୍ବାସନ । ୧୨୮ ।
ଦୁର୍ଗତ ଦୃନକ ସେ ଦୃଢ଼ବଳ ଦୃଢ଼ଦକ୍ଷ
ଦୁର୍ଭିସ୍ନେ ଦୁର୍ବାର୍ଣ୍ଣେକ ଦୁର୍ବାର ଦୁର୍ମୁଖ । ୧୨୯ ।
ଦୃଢ଼କାଳ ଦୁର୍ବାପକ୍ଷ ଦୃଢ଼ମଦ ଦୃଢ଼ଶସ୍ନେ
ଦୃଢ଼ଶତ ଦୃଢ଼ପଦ ସେ ସଭସ୍ନେ ସ୍ନେକଠାସ୍ନେ । ୧୩୦ ।
ରାଜାକୁ କଷ୍ଟ ସେ ଦେଖିଣ ଧନ୍ଦୋଦରେ
ରେ ରେ କାର କରି ସଭସ୍ନେଂ ଓଗାଳିଲେ ସହଦେବ ସ୍ମୁରେ ।୧୩୧।
କହେ ମୂର୍ଖ ପାମର ଅଗ୍ୟାଂନ ମୂଢ଼ ଗୋପାଳ
ଆରେ ସହୁର ସ୍ମୁରେ କ ଚନ୍ଦ୍ରର କୋପାନଳ । ୧୩୨ ।
ମଦ୍ଦରା ରସପାନେ ମତ୍ତାରଙ୍ଗ ଭୋଳହୋଇ
ମରଣ ଭୁବରେ ନ ଚିହ୍ନି କସପାଇଂ । ୧୩୩ ।
ଆମ୍ଭେ ସେ ମାନଗୋବନ୍ଦ ଗୋଧନ ହରଣେ ଆସୁ
ଗୋରୁନ୍ତ ଅଡ଼ାଇ ଗୃହରେ ତୁମ୍ଭନ୍ତ କେମନ୍ତ କରି ପୋଷୁ ।୧୩୪।
ଆରେ ମୂଢ଼ ଗୋପାଳକୁ ତୁମ୍ଭର ମହାପାପ ପଣେ ଶାସ୍ତି ଦେବୁ
ମୁକୁଟ ଯୋଦ୍ଧା ସମାନେ ତାହାକୁ ପାଳିବୁ । ୧୩୫ ।
ମୁକୁଟ କର୍ଣ୍ଣାଞ୍ଚଳ ସେ ବାହୁଟି ସରଳ
ସବୁନ୍ତ ଆଭରଣ ଦେବୁ ଆମ୍ଭର ହୁଅ ରେ ଗୋପାଳ । ୧୩୬ ।
ଶଲଘ୍ୟ ବଚନ ଶୁଣି ଧୂଶାସନ ବୀର
କୋପେ ସହଦେବ ଯଷ୍ଟି କଲାକ ପ୍ରହାର । ୧୩୭ ।
ଧୂଶାସନ ରଥ ଭଞ୍ଜି ସବୁ ହେଲା ଚୂନା
ଆଡ଼େଣି ଫୁଟିଲା ସେ ତୁଟିଲା ବଜ୍ରସେହ୍ଲା । ୧୩୮ ।

---

୧୨୬।୨ ଅପାଷ୍ଟମେ ରାଉତେ ପଡ଼ିଲେ ଭୂମିଗତେ ।—ତ, ଥ

ଅଶ୍ୱ ସାରଥିଙ୍କ ଯେ ପିଟିଲେ ଗୋପାଳେ
ବିରଥ ଧୃଷ୍ଟାସନ ପଡ଼ିଲା ମହୀତଳେ । ୧୩୯ ।
ଧୃଷ୍ଟାସନର ବିରଥୀ ଦେଖିଣ ସୁଷେଵ
ଆଗେ ରଥ ଠେକନ୍ତେ ସେ ଦେଖିଲା ସହଦେବ । ୧୪୦ ।
ଆରେ ଗୋପାଳ ବୋଲି ଶ୍ରୀକରେ ଧନୁ ଧରି
ଗୋପାଳଙ୍କ ଉପରକୁ ପେଷିଲା ନାରାଚ ଶରି । ୧୪୧ ।
ନଉଡ଼ି ବୁଲନ୍ତେଣ ଗୋପାଳ ତନ୍ତ୍ରୀପାଳ ଜେନା
କର୍ଣ୍ଣର ଶହସ୍ରମାନ ଭାଙ୍ଗି କଲା ଚୂନା । ୧୪୨ ।
ସହଦେବକଇଂ କଟାଇଲା ଯେ କର୍ଣ୍ଣ ମହାରଥୀ
ଶତେକ ନାରାଚ ବିନ୍ଧିଲା ତତକ୍ଷଣାନ୍ତି । ୧୪୩ ।
ଅଗ୍ନି ସାକ୍ଷେ ସେ ଦଶଇ ଖାଖମୁନା
ସହଦେବ ଲଉଡ଼ି ବୁଲନ୍ତେ ସର୍ବ ହେଲା ଚୂନା । ୧୪୪ ।
ଦେଖିଣ ପୃଥୁନା ଯେ ଧାଇଁଲା ଗଳଗାଜି
ଶିଂଗ ମାରନ୍ତେ କର୍ଣ୍ଣର ରଥ ଗଲା ଭାଙ୍ଗି । ୧୪୫ ।
କର୍ଣ୍ଣ ବିରଥୀ ଯେ ହୋଇଣ ଅପସରି
ଧାଇଁଲେ ଗୋପାଳେ ଯେ ବୁଲାଇ ନଉଡ଼ି । ୧୪୬ ।
ଘୋରରଡ଼ି କରିଣ ସେ ଗୋପାଳ ବୀରେ ଉଠି
ଯୋଦ୍ଧାଙ୍କ ଉପରେ ସେ ପ୍ରହାର କଲେ ଯଠି । ୧୪୭ ।
ବହୁତ ଯୋଦ୍ଧା ବାଣ ବିନ୍ଧନ୍ତି ଅବଜ୍ଞନେ
ଗୋପାଳନ୍ତ ଆବୋରି ରହିଲେ ଗାଈମାନେ । ୧୪୮ ।
ଗୋରୁଙ୍କର ହମ୍ବାରବ ଶବଦ ପ୍ରଚଣ୍ଡ
ପ୍ରୋଥନାର ଭୁଲେ ଛନ୍ତି ପାଞ୍ଚଲକ୍ଷ ଷଣ୍ଢ । ୧୪୯ ।
ଷଣ୍ଢଙ୍କର ଶିଂଗ କ ପରଘ ଖାକ୍ଷମୁନା
ବିନ୍ଧନ୍ତେ ଅଶ୍ୱ ନଉଡଙ୍କର ଫୁଟିଇ ବକ୍ରସେହ୍ଣା । ୧୫୦ ।
ଗୋରୁଙ୍କର ସମର ଦେଖି ଭାଜିଲେ ସର୍ବେ ରଣେ
ଅମଳାଣ ସୁରଖପଲ ଦେଖି ଭାଙ୍ଗିଲେ ଭୀଷ୍ମ ଦ୍ରୋଣେ । ୧୫୧ ।
ଭୂରିଶ୍ରବା କୃପ ଆଚାର୍ଯ୍ୟ ଶଲ୍ୟ ଅଶ୍ୱତ୍ଥମା
ବାହ୍ଲିକ ସୋମଦତ୍ତ ଆବର କୃତବର୍ମା । ୧୫୨ ।

ସମସ୍ତେହେଂ ଭାଙ୍ଗିଲେ ଗୋହତ୍ୟା ଦୋଷ ବୋଲି
ମାଡଣ ଗୋଧନ ଫଳ ପଶନ୍ତ ଥାଟେ ପେଲି । ୧୫୩ ।
ମାରନ୍ତ ଗୋମାତାସ୍ୱେ ଶିଂଗ ହାଥୀଂକର ପଛଗୁଦେ
ପାଦାନ୍ତ ବଳ ମର୍ଦ୍ଦି ହୋଇଲେ ଗୋଚୁଂକ ଖୁରେ ହାଦେ । ୧୫୪ ।
ଶିଂଗ ମାରନ୍ତେଣ ଫୁଟନ୍ତ ଗଜ ହସ୍ତେ
ଗଂଣ୍ଡଶିଂଗ ଦଶନ୍ତ ରକ୍ତବର୍ଣ୍ଣ ପ୍ରାପ୍ତେ । ୧୫୫ ।
ଅନବାରଣ ସମର ହୋଇଲା ମହାଯୁଦ୍ଧ
ଅନେକ ସଇନ ଯେ ପଡ଼ିଲେ ରଣମଧ୍ୟ । ୧୫୬ ।
ଅସମ୍ଭାଳ ହୋଇଣ ସେ ପଳାବନ୍ତ ଥାଟ
ପଡ଼ିଲା ବହୁତ ପସ୍ୱେଡ ନ ପାଇଲେ ବାଟ । ୧୫୭ ।
ସନ୍ୟ ପଳାବନ୍ତେ ବନକନ୍ଦରମାନେ
ଚ୍ୟୁର ହୋଇ ଯାଉ ଅଛୁ ସେ ସଇନଂକର ଗହନେ । ୧୫୮ ।
ପଞ୍ଚଦଶ ଜୂଷ ଯାସ୍ୱେ ସେ ପାସ୍ୱେଡା ପଡ଼ିଲା
ଅନେକ ସନ୍ୟ ସେ ଖୁରଘାତେ ଚୂରଗଲା । ୧୫୯ ।
ଦଶ ସହସ୍ର ରଥ ଅନ୍ବୁଦେକ ହାଥୀ
ବେନଲକ୍ଷ ତୁରଙ୍ଗମ ତିନ ପଦ୍ମଯୁଧ ପାଦାନ୍ତ । ୧୬୦ ।
ସ୍ୱେତକ ସଇନ ପଡ଼ିଲା ଗୋଧନ ସମରେ
ଭଗ୍ନବଳ ଘେନ ରହିଲା ରାଜା ବାରହି ନଘର ଫିରେ । ୧୬୧ ।
ସହଦେବ ମୁଂଖ ଗୃହ୍ବଂ ବୋଲଇ ପ୍ରୋଥନା
ବାବୁ କଟାଳ ନ କର ସ୍ୱେହୁ ଭଗ୍ନବଳ ସିନା ୧୬୨ ।
ଗୋପାଳନ୍ତ ଡଆଣ ଗୋଧନ ଫଳ ଗୃଳ ଘେନପିବା
ପୁଣ ଦ୍ରିଯୋଧନ ବାହୁଡ଼ିଲେ ଲେଉଟି ସମର କରିବା । ୧୬୩ ।
ଆବତ୍ୟ ଅସ୍ତ୍ର ସନ୍ଧ୍ୟଂ ହୋଇଲା ରଯ୍ୟଣୀ
ବାହୁଡ଼ଇ ଚନ୍ଦ୍ରୀପାଳ ସୁରଖି ଫଳ ଘେନ । ୧୬୪ ।
ବରସେ କଉରବେ ବଳ ରହିଲେ ଗଙ୍ଗାକୂଳେ
ପାଆ ମଡା ସନ୍ୟମାନେ ରୋବନ୍ତ ବକଳେ । ୧୬୫ ।
ଦ୍ରିଯୋଧନ ସନ୍ତାପିଲା ଭୀଷ୍ମ ଦ୍ରୋଣ ମୁଖ ଗୃହ୍ବଂ
ଆସନ୍ତେ ବାରିଲ ତୁମ୍ଭେ ବୋଲ ନ କଲଇ ମୁହ୍ବଂ । ୧୬୬ ।

ତହ୍ନଂର ରାଗ ମୋତେ କଲ କି ଗୁରୁ ହେ
ସମର ନ କର ତୁମ୍ଭେ ଧୁଞ୍ଜିଲ କି ପତନେହେଂ । ୧୬୭ ।
ବହୁତ ଝିଂଧାସି ସେ ବୋଇଲା କୁରୁଦେବ
ଶୁଣିଣ ପ୍ରତିବାକ୍ୟ ଯେ ବଲେକ ଗାଙ୍ଗେବ । ୧୬୮ ।

ବାବୁ ଦେଖୁଂ ଦେଖୁଂ ଗୋଧନ ପଲ ହେଲା ବଡ ହତ୍ୟା
ମାଇଲେ ତୋତେ ଦୋଷ ହୋଇବ ଅପ୍ରମିତା । ୧୬୯ ।

ବାବୁ ଆମ୍ଭେ ଶହସ୍ତ୍ର ଧରବା ବାହ୍ମା ଆମ୍ଭର ଶୁଦ୍ଧି
ସମରେ ମାଇଲେ ଆମ୍ଭଂକୁ ଦୋଷ ନାହ୍ନଂଟି ବିଧି । ୧୭୦ ।

ତୁ ଯେ ନରେନ୍ଦ୍ର ପୃଥୀ ପାଳକ ଅଧିକାରୀ
ସମସ୍ତ ଦୋଷମାନ ତୋତେହେଂ ଆବୋର । ୧୭୧ ।

ବାବୁ ପାପକଲେ ତୋର ପୁଣ୍ୟକଲେ ଆମ୍ଭର
ନ ମାର ଅପସରିଲୁ ଯେବେ ନିମନ୍ତେ ଦୁଖ ତୋହୋର । ୧୭୨ ।

ଦୁର୍ଯୋଧନ ବୋଇଲା ଯୁଦ୍ଧେଣ ପଶିଲେ
ହତ୍ୟା ନ ଲାଗଇଟି ଗୋ ବ୍ରାହ୍ମଣ ମାଇଲେ । ୧୭୩ ।

ଯଦ୍ୟପି ଗୋହତ୍ୟା ଟହା ମଣ୍ଡିବ ଆଜର ଯୁଦ୍ଧେ
ଲାଗୁ ପଛେ ହତ୍ୟା ମୋତେ ଗୋରୁ ପଡିଲେ ରଣ ମଧ୍ୟେ । ୧୭୪ ।

କୃତବର୍ମା ବୋଇଲେ ବାବୁ ଶୁଣ ପୂର୍ବର କଥା
ଆକାଶ ଗଙ୍ଗାରେ ସ୍ନାହାନ କରନ୍ତେ ଈଶ୍ୱର ଦେବତା । ୧୭୫ ।

ନିତ୍ୟକର୍ମ ବିଧାନ ନିମନ୍ତେ କୁଶବିଡା ଥୋଇଲେ ନଦୀକୂଳେ
ଆକ୍ରେଷିଣ ହର ଯେ ପଶିଲେ ମହାଜଳେ । ୧୭୬ ।

କର ଚରଣ ଅଙ୍ଗଷ୍ଟି ଶଙ୍ଖଚକ୍ର ଧାପନ
ଆଷ୍ଟାଙ୍ଗଯାକ ମାଜଣା କରନ୍ତି ଦେବ ତ୍ରିଲୋଚନ । ୧୭୭ ।

ସୁରଭୀ ଦୁହିତା ନନ୍ଦିନୀ ଆକାଶୁଂ ଆସଇ ଯେ ଚରି
ଆଧାର ନିମନ୍ତେ ଖାଇଲା ସେ ଈଶ୍ୱରଂକ କୁଶବିଡି । ୧୭୮ ।

ଜଳରୁ ବାହାର ଦେବ ହୋଇଲେ ଅତି ବେଗେ
ଗାଈକି ତ୍ରିଶୂଳ ଯେ ମାଇଲେ ଅତି ରାଗେ । ୧୭୯ ।

ବକ୍ଷସ୍ଥଳେ ପଡ଼ିଲା ଯେ ରୁଦ୍ରଙ୍କର ଖାଖଦଣ୍ଡ
ତତକ୍ଷଣେ ଛୁଡ଼ି ପଡ଼ିଲା ନନ୍ଦମାର ମୁଣ୍ଡ । ୧୮୦ ।
ଛୁଡ଼ିଲା ଗୋ ମୁଣ୍ଡଗୋଟି ଉଠିଲ ଧାଡ଼କାରେ
ଗୋମୁଣ୍ଡ ଲାଗିଲା ଯାଇଂ ରୁଦ୍ର ଦେବତାଙ୍କ କରେ । ୧୮୧ ।
ଅନେକ ତୀର୍ଥେ ଧର୍ମ କଲେକ ବିଶ୍ୱନାଥେ
ତଦ୍ୟାପି ନ ଛୁଡ଼ିଲା ମୁଣ୍ଡ ଈଶ୍ୱରଙ୍କର ହାଥେ । ୧୮୨ ।
କୃତବର୍ମାସ୍ୱେ ବୋଇଲେ ଶୁଣ ହୋ କୁରୁପତି
ଭଇରବ ରୂପେ ସେ ମୁଣ୍ଡ ବହିଲେ ପଶୁପତି । ୧୮୩ ।
ସମସ୍ତ ଦୋଷ ହରଇ ବ୍ରହ୍ମହତ୍ୟା ସ୍ତ୍ରୀହତ୍ୟା ଆଦିକରି
କଦାଶ୍ଚିତେ ଗୋହତ୍ୟା ଦୋଷ ନ ଯାଇ ଅପସରି । ୧୮୪ ।
ଇନ୍ଦ୍ର ଯେ ହତ୍ୟା କଲେକ ଅନମିତେ
ସେ ଦୋଷ ଛାଡ଼ିଲା ଯେ ମଣିକର୍ଣ୍ଣିକାର ତୀର୍ଥେ । ୧୮୫ ।
ଗୋହତ୍ୟା ଦୋଷ ଯେ ନ ଯାଇ କହଣା
ତୁ ଯେ ପରମ ପଣ୍ଡିତ ହୋଇଅଛୁ ବଣା । ୧୮୬ ।
ଦୁର୍ଯୋଧନ ବୋଇଲା ମୁଂ ଯେହା ନ ଶୁଣଇ
ମୋହୋର ବେଳେ ସେ କଥା ନୁଆରଇ ସହି । ୧୮୭ ।
ମୋଠାରେ ଯାହାର ଅଛୁଟି ହୋ ଆଶ
ମାର ଗୋଧନ ଫଲ ମୁଂ ପଛେ ଯାଇ ନାଶ । ୧୮୮ ।
ମହାମନ୍ତ୍ର ନାଗେକ ଚଢ଼ିଣ କୁରୁପତି
ନେଇଛନ୍ତି ବଜେକଲା ରାଜା ମାନତହିବ୍ରାନ୍ତି । ୧୮୯ ।
ରାଜାର ହବପକ୍ଷ ଆଚାର୍ଯ୍ୟାଂସ୍ୱେ ଭୀଷ୍ମ ଦ୍ରୋଣେ
ମାର ମାର ବୋଲି ଘାରେ ବାହୁଡ଼ିଲେ ତତକ୍ଷଣେ । ୧୯୦ ।
ମହାଗୋଳ ଗହଳ ଶୁଭଇ ଅପ୍ରମିତା
ସହଦେବ ବୋଇଲେ ସଇନ ବାହୁଡ଼ିଲେ ମାତା । ୧୯୧ ।

---

୧୮୦।୧ ବକ୍ଷସ୍ଥଳେ ପଡ଼ିଲା ଯେ ରୁଦ୍ରଙ୍କର ତ୍ରିଦଣ୍ଡ ।—କ, ଖ, ଚ, ଝ
୧୮୩।୨ ଭଇରବ ରୂପେ ସେ ଖପରେ ବହିଲେ ପଶୁପତି ।—କ, ଚ
୧୯୧।୧ କେମନ୍ତେ କଉରବର ସମ୍ପଦ ହୋଇବ ରକ୍ଷିତା ।—ଖ, ଘ, ଛ

ଶରଣ ପଞ୍ଜର ରାଜା କହିଛୁ। ଜଗଜ୍ଜେଠୀ
ଗୋହତ୍ୟା ଦୋଷ ନ ବାଛୁ ବାହୁଡ଼ିଲେ ସର୍ବ ଘୋଟି । ୧୯୨ ।
ପ୍ରାର୍ଥନା ହୋଇଲ ସେ ଆସୁ ଆପଣେ ଗୋଗୋଷ୍ଠକୁ
ସୈନ୍ଯ ଘାନ୍ତ ପର୍ଯ୍ୟନ୍ତ ଜଣେ ନ ଥୋଇବ କାହାକୁ । ୧୯୩ ।
ତୋହୋର ସୋଦର ବୋଲି ମୋହୋର ଉପ୍ରୋଧ
ତେଣୁକରି ମୁହିଂ କଲଇ ଅଳପ ହେଲ ଯୁଦ୍ଧ । ୧୯୪ ।
ବାବୁ ପରକ ଯେଁ ତୁମ୍ଭେ ଶସ୍ଯ ନ ନାଶ ବୋଲି
ବାବୁ ତୋହୋ ନିମନ୍ତେ ମୁଂ ହେଲଯୁଦ୍ଧ କଲି । ୧୯୫ ।
ସୈନ୍ଯଘାନ୍ତ ପ୍ରଚଣ୍ଡ୍ୟାଂ ସମର ମୋହୋର ଦେଖୁ
ବୁଡ଼ିଲ ବଂଶ ତାହାର କେ ପୁଣ ଆଜ ରଖୁ । ୧୯୬ ।
ପବନୁଂ ବେଗହୋଇ ଆସନ୍ତ ଗୋକୁଳ
ଦଣ୍ଡ ଘେନ କଉରେବେ କଲେକ କଣ୍ଟାଳ । ୧୯୭ ।
ଆଗେଣ ଗୋଧନ ପଲ ପଛେ ଚନ୍ଦ୍ରୀପାଳ
ନେଉଟି ଜଗାଇଲେ କୁରୁସାଗର ବଳ । ୧୯୮ ।
ନଉଡ଼ିଂକର ପଡ଼ିତାଳ ବାଜଇ ଚଡ଼ବଡ଼ି
ପୃଥୀ ଡିଙ୍ଗର ଉଚ୍ଛୁଳିଲ ଗୋପାଳଂକର ଘେ'ରରଡ଼ି । ୧୯୯ ।
ସମଦଣ୍ଡ ଘେନ ରହିଲେ ଥମ୍ଭୀଭୂତ ହୋଇ
ଶ୍ରୀକୃଷ୍ଣ ପ୍ରଶଂସା କରନ୍ତ ଗୋପାଳନ୍ତ ଗୃହିଂ । ୨୦୦।
ଶ୍ରୀକୃଷ୍ଣ ବୋଇଲେ ରେ ଗୋପାଳ ଧନ୍ୟ ତୋ ଜୀବନଗୋଟି
ଦ୍ରୋଣେ ବୋଇଲେ ଶ୍ରୀକୃଷ୍ଣ ସହଦେବ ସୈନ୍ଯ ହିଟି । ୨୦୧ ।
ଶ୍ରୀକୃଷ୍ଣ ବୋଇଲେ ହୋ ସୁଫଳ ଆଜଦିନ
ଧନ୍ୟ ଶୁଭବେଳ ହୋଇଲ ଦେଖିଲୁଂ ପୁତ୍ରଂକ ବଦନ । ୨୦୨ ।
ବନସ୍ତର ଭିତରେ ଅନେକ ବିଦ୍ୟା ସାଧି
ହୋଇଲେ ବୀରବର ମହାମନ୍ତ୍ର ପ୍ରବୋଧି । ୨୦୩ ।

---

୧୯୫।୨ ବାବୁ ସେ ନିମନ୍ତେ ମୁଂ ଲଘବ ଯୁଦ୍ଧ କଲି ।—ଗ, ଚ, ଓ

୨୦୩।୨ ହୋଇଲେ ବୀରବର ମହାମାଲ ଯୋଧୀ ।—କ, ଖ, ଗ, ଓ

ସମର ସମ୍ମୁଖେ ଯେ ଗୋପାଳ ରହିଲା
ଗୋଧନ ଫଳ ସେନ ପ୍ରୋଥନା ଚଳଗଲା । ୨୦୪ ।
ଗୋପାଳମାନେ ଗଲେ ଗାଈନ୍ତ ଅଡ଼ାଇ
ସହଦେବ ଯେତେକାଳେ ରହିଲେ ରଣଭୂଇଂ । ୨୦୫ ।
ରସୁଣୀ ପ୍ରଭାତେ ଜଡେ ଗଗନ ବହାଶ
ଲକ୍ଷେପୂର କର ଥାଠ ସହଦେବକୁ ବେଢ଼ି । ୨୦୬ ।
ଧୁରେ ଥାଇ ହାକ ଦଅଇ କଳ୍ପରେବ ଶିରୋମଣି
ପ୍ରାଣେ ନ ମ ର ଗୋପାଳକୁ ଜୀବନ୍ତା ଧର ଯେତୁକ୍ଷଣି । ୨୦୭ ।
ଯେହାକୁ ହୋଇଲେ ମୋର ସମସ୍ତ କାର୍ଯ୍ୟ ଭଲ
ତେବେ ସେ ପ୍ରାପତ ମୋତେ ହୋଇବ ଗୋଧନ ଫଳ । ୨୦୮ ।
ମଘ ମଚ୍ଛଦେଶ ରାଜ୍ୟର ପାଇବ ସବଂଭେଦ
ଯେ ଗୋପାଳକୁ ଧଇଲେ ମୋହୋର ହୋଇବ ସକଳ ସମ୍ପଦ ।୨୦୯।
ଅସଂଖ୍ୟ ସାଗର ଯେ କୁରୁବଳ ସଇନ
ଖେଳନ୍ତା ସିଂଘ ଯେହ୍ନେ ସହଦେବ ତେସନ । ୨୧୦ ।
ଯଦ୍ୟପି କଲ୍ପରେବ ସନ୍ୟ ଅନନ୍ତ ମତ୍ତନାଗ
ଅଜାଯୂଥ ରହଇ କ କେଶରୀର ଆଗ । ୨୧୧ ।
ମହାବିକ୍ରମ ଯେ ଅଭଯେ ବାରନିଧି
କତକ କେହ୍ନ ଭରସି ନୁଆରନ୍ତ ସବଂଯୋଧୀ । ୨୧୨ ।
ଜାଣି ଭୀଷ୍ମ ଦ୍ରୋଣ ହୋଇଲେକ ହେଳା
ବିହରଇ ଗୋପାଳ ସେ ତେଜ ଅନର୍ଗଳା । ୨୧୩ ।
ପୁଣି ଆଗ୍ୟାଂହଳା ରାଜାମାନ ଯେ ଗୋବିନ୍ଦ
ଧରି ଯେବେ ନୁଆରିଲ ସମସ୍ତ ବେଢ଼ି ବନ୍ଧ । ୨୧୪ ।
ରାଜାର ବଚନେ ସଭହେଂ ପୂରେଇଣ ବାଣ
ବେଢ଼ି ଯୋଦ୍ଧାଯେ ନାରାଜ ବନ୍ଧିଲେ ତତକ୍ଷଣ । ୨୧୫ ।
କେ ଶତେ କେ ସହସ୍ରେକ କେ ଅବା ଅଯୁତେ
କେହୁ ଲକ୍ଷେ ନ ରାଜ ବନ୍ଧିଲେ ଅପ୍ରମିତେ । ୨୧୬ ।

---

୨୧୬।୨ ଛେଲ ଚନ୍ଦ ନାରାଜ ବନ୍ଧନ୍ତ ଅପ୍ରମିତେ ।—ଚ, ଜ, ଣ

ଯେସନେକେ କକଡା ମାସେ ବରଷେ ଜଳଧାର
ତେସନେକ ଯୋଦ୍ଧାସ୍ତେ ବନ୍ଧନ୍ତ ଅନିବାର । ୨୧୭ ।
କରେ ନଉଡି ଘେନଣ ଗୋପାଳ ଚୂଡାମଣି
ନଉଡରେ ଜଗଜ୍ଜିତା ମଣାଇ ଅଛନ୍ତି ଚକ୍ରପାଣି । ୨୧୮ ।
ଯେତେକ ଶସ୍ତ୍ର ଯୋଦ୍ଧାସ୍ତେ ବନ୍ଧୁଛନ୍ତି ତୋଳ
ସହଦେବ ନଉଡରେ ସମସ୍ତ ହୋଯ୍ସେ ଧୂଳ । ୨୧୯ ।
କୁମ୍ଭାର ଚକ୍ର ଯେହ୍ନେ ଭ୍ରମଇ ଅନ୍ତରୀକ୍ଷେ
ବାମ ଡାହାଣେ ନଉଡ ବୁଲଇ ସେହି ସାଉକ୍ଷେ । ୨୨୦ ।
ଶୁଣ ହୋ ମନୁ ପୁରୁଷ ଶ୍ରୀଜଗନ୍ନାଥଂକର ମାୟା
କନ୍ଧରୁ ସହଦେବର ବାହାରିଲା ବେଣୁବାହା । ୨୨୧ ।
ସଙ୍କଟବେଳେ ପ୍ରସନ୍ନ ହୋଇଲେ ଦେବରାଜ
ସମରେ ସହଦେବ ହୋଇଲା ଚତୁର୍ଭୁଜ । ୨୨୨ ।
ବେଣୁଭୁଜରେ ସହଦେବ ବାସ୍ତେଂଶୀ ଗୋଟିସ୍ତେ ଘେନ
ପ୍ରୋଥନା ନାମ ଧରି ସେ ଉଚ୍ଚେ କଲା ଧୁନ । ୨୨୩ ।
ନାଗସ୍ତୁଣଂକର ହଲାର ଯେ ମଧୁର ସୁସ୍ୱର
ଭେଦନ୍ତେ ଛଟୀମାନେ ଶସ୍ତ୍ର ଧରି ନୁଆଉନ୍ତି କର । ୨୨୪ ।
ଅନଙ୍ଗ ବାଣେ ଯେହ୍ନେ ଅସାଷ୍ଟମ ହୁଅନ୍ତି ପ୍ରାଣୀ
ସମସ୍ତ ବଶ ହୋଇଲେ କୃଷ୍ଣର ବଂଶୀ ଶୁଣି । ୨୨୫ ।
ଯେବଣ ବେଣୁଭୁଜ ସେ ହୋଇଅଛି ସମ୍ଭୂତ
ପ୍ରତକ୍ଷେ ଅଟଇ ସେ ଶ୍ରୀଜଗନ୍ନାଥଂକର ବେଣୁହାଥ । ୨୨୬ ।
ଯେବଣ ବେଣୁସ୍ୱନେ କୃଷ୍ଣ ମୋହିଲେ ଗୋପୀମନ
ସବୁରିଂକର ଶରୀରେ ପୀଡିଲା ମଦନ । ୨୨୭ ।
ଦୁନେଶ୍ୱର ସମ୍ଭାଇଲା ଯାଇଂ ପ୍ରୋଥନାର କର୍ଣ୍ଣେ
ସହଦେବକଇଂ ଗୁଡି ଯାଇଥିଲା ପାଞ୍ଚ ଯେ ଯୋଜନ । ୨୨୮ ।

---

୨୨୨।୧ ବଡୋର ପ୍ରସନ୍ନ ହୋଇଲେ ଦେବରାଜ ।—ଖ, ଦ, ଙ, ଣ
ଛ, ଝ

୨୨୩।୨ ସମସ୍ତ ବଶ ହୋଇଲେ ସହଦେବର ବଂଶୀସ୍ୱନ ଶୁଣି ।—
ଙ, ଓ ଗ, ଛ

ଗୋଧନ ଘଲ ଘେନଣ ପ୍ରୋଥନା ଗୃହ୍ବାଂକ୍କ ଲେଉଟି
ମୁଣ୍ଡନ୍ତ ଘୋଡ଼ୁ ମୋର ହଘଇଲ ପୁଷ୍କଗୋଟି । ୨୨୯ ।
ଧାମନ୍ତ ଗୋଧନ ଘଲ ବାସ୍ପେଂଶୀ ସ୍ୱନ ହେଜ
କଉରବେକ ଥାଠରେ ପ୍ରବେଶ ଗଲଗାଜ । ୨୩୦ ।
ହେମ୍ବାଶ୍ୱକ ଶବଦେ ଘଡଲେ ଆସି ମାଡ଼ି
ଭାଜଲେ ସମଦଣ୍ଡ ଘଳାଇଲେ ସବୁ ଗୁଡ଼ି । ୨୩୧ ।
ଯେତେବେଳେ ସଇନ ହୋଇଲେ ବେନଭାଗ
ପ୍ରୋଥନା ପ୍ରବେଶ ଯାଇ ସହଦେବର ଆଗ । ୨୩୨ ।
ବାଜନ୍ତ ଢକା ଯେ ମର୍ଦ୍ଦଳ ଘୁମୁର
ମଉରଙ୍ଗେ ନାଚନ୍ତ ଯେ ଗୋପାଳ ମହାବୀର ।୨୩୩ ।
ହାସେ ଘୁଞ୍ଚଣ ସେ ରହିଲେ କଉରବେକ
ଗୋଧନ ଘଲ ଘେନ ଚଳନ୍ତ ସହଦେବ । ୨୩୪ ।
ସାନନ୍ଦେଣ ଗୋପାଳେ ଯେ ପ୍ରବେଶ ନିଜ ଗୋଷ୍ଠେ
ପୁଣି ଗୋଧନପଲ ବେଢ଼ିଲେ ଥାଇଂ ଥାଠେ । ୨୩୫ ।
ଅଲଜୁକ କଉରବେ ଲଜ ପ୍ୟେହାଂକ ମୁଖେ ନାହିଂ
ପ୍ୟେସନକ ବଚନ ବୋଇଲେ ପ୍ରୋଥନା ସହଦେବ ମୁଖ ଗୃହ୍ବିଂ ।୨୩୬।
ମୋତେ ବେଢ଼ିଣ ପ୍ୟେ ଥାନ୍ତୁ ପ୍ୟେହ୍ବଠାଟକ
ବଳାତ୍କାରେ ମୋତେ ନେଇ ନୁଆରବେ କଉରବେ । ୨୩୭ ।
ଯୁଗତେ ମୁହିଂ ତ ନ ଯିବ ପ୍ୟେହାଂକର ପୁଣ
ହଇଲେକେ ସାମରଥ କେ ମୋତେ ବଳେ ନେଇଘାର । ୨୩୮ ।
ତୁ ବହନ ହୋଇଣ ଯାଅ ଯା ମଚ୍ଛଦେଶକୁ
ଅର୍ଜୁନ ଘେନ ଆସୁ ଉତ୍ତର କୁମରକୁ । ୨୩୯ ।
ଅର୍ଜୁନ ଆସି କଉରବେକ ବଳମାନ ଗଞ୍ଜୁ
ନ ମାଶ ଅରଜୁନ ସବୁଶ ଦର୍ପ ଭାଞ୍ଜୁ । ୨୪୦ ।

---

୨୩୮।୨ ହଇଲେକେ ସାମରଥ କେ ମୋତେ ପାରଇ ହର ।—ଚ, ଣ, ଭ, ଥ, ଝ

ମୁହିଂ ଗୋଧନ ଫଲ ଘେନଥାଇଂ ଯେତ୍ତେଥେ ରହି
ବହନ ଅର୍ଜୁନକୁ ଘେନଆସ ଭୁହି । ୨୪୧ ।

ଅଗ୍ୟାଂତବାସ ହାଦେ ସରିଲନ ତିନଦାନ
ଉତ୍ତର କୁମରନ୍ତ ଘେନ ଯେ ବିଜେକରୁ ଅରଜୁନ । ୨୪୨ ।

ପ୍ରୋଥନା କରନେ ଯେ ମନ୍ତ୍ରୀ ଚୂଡ଼ାମଣି
ଚଳଇ ମହାବେଶ ସେ ବିକ୍ରମ ସିଂଘ ଜାଣି । ୨୪୩ ।

। ୪୯୩ ।

———

## ବୃହନ୍ନଳାରୀଙ୍କୁ ସାରଥି କରି ଉତ୍ତରର ଯୁଦ୍ଧଯାତ୍ରା

ବସୁଦେବଙ୍କ ନନ୍ଦନ ଯେ ବଚନେ ଆସ୍ଥାନେ
ସନ୍ଧ୍ୟେ ଉତ୍ତର ଅଛନ୍ତି ଯାବନ୍ତ ସଇନମାନେ । ୧ ।
ଝାଳ ରୁଧିର ଏ ପଣ୍ଡ ତନ୍ତୀପାଳ ଗୋଆଳର କାୟେ
ଶରୀର ଦିଶଇ ତାର ପାଟଳ ପୁଷ୍ପ ପ୍ରାୟେ । ୨ ।
ସମ୍ମୁଖରେ ତନ୍ତୀପାଳ କରଇ ଗୁହାରି
ସୁରବର ସୁନ୍ଦର ସୋହନ୍ତ କୁମାରମଣି ହୋଇବ ଅବଧାରି । ୩ ।
କୁଞ୍ଜଗଳ ଦେଶ ରାଜା ମାନଚକ୍ରବର୍ତ୍ତୀ
ଗୋଧନ ପଲ ହରି ସେ ନେଉଛନ୍ତି ଆଜ ରାତି । ୪ ।
ଅନେକ ଗୋଳ ସମରେ ସେ କଲେ ଆମ୍ଭର ତୁଲେ
ଅନେକ ସନ୍ୟ ମାଇଲୁ ତଦ୍ୟାପି ନ ଘୁଞ୍ଚିଲେ । ୫ ।
ଗୋପାଳ ଅତ୍ରମୁଖେ ଯେସନେକ ବାକ୍ୟ ଶୁଣି
ଅଧର ପୃଷ୍ଟ କରି ଉଠିଲା ଶିରଝୁଣି । ୬ ।
କଦଳୀ ପତ୍ର ଜାଣି କମ୍ପଇ ତାର ଅଙ୍ଗ
ହିରଣ୍ୟ ଦେଖି ଯେହ୍ନେ ଗର୍ଜଇ ନରସିଂହ । ୭ ।
ବାହାସ୍ଫୋଟ ଦେଇ ମାଡିପଡିଲା ବେନିଜାନୁ
ତାମ୍ରବର୍ଣ୍ଣ ପ୍ରାୟେ ଦିଶଇ ତାହାର ତନୁ । ୮ ।
ଯଷ୍ଟି ବଧାତେ ଯେହ୍ନେ ଗର୍ଜଇ କାଳସର୍ପ
ମୋହୋ ଗୋଧନ ପଲ ହରିବାକୁ କାହାର ଯେତେ ଦର୍ପ । ୯ ।
କାଳଚକ୍ର ଜାଣି ବୁଲାଇ ବେନିତୋଳା
କେ ରେ ଭାଙ୍ଗିଲେ ସେ ସମର ଅରଗଳା । ୧୦ ।

---

୮।୨ ତାମ୍ରଲୋଚନ ପ୍ରାୟେ ଦିଶେ କ କୁରୁସାନୁ ।—ଘ, ଙ

କସ ଅର୍ଥେ ଦୁର୍ଯୋଧନର ସ୍ନେହେକ ଉପେକ୍ଷା
ନ ଜାଣଇ କି ଉତ୍ତରକୁମର କରଇ କଟକ ରକ୍ଷା । ୧୧ ।
ପୁଣ ପୁଣ ବସର ବଚ୍ଚରଇ ହୃଦଗତେ
ସାରଥି ଜଣେକର ନେମି କାହାକୁ ମୋର ରଥେ । ୧୨ ।
ପିତାର ଅବବେକ ପଣ ଦେଖ ହୋ ଚନ୍ଦ୍ରୀପାଳ
ରାଜ୍ୟପାଳ ଭୁଲ୍ଲାକର ଶେନଗଲେ ସର୍ବବଳ । ୧୩ ।
ଗୋକୁଳ କୁଳକୁ ତୁ ମୁଂ ଯେ ରାଜ୍ୟକୁ କାରେଣି
ଅନ୍ତେଶ୍ୱର ପୁରେ ଚରନ୍ତି କରଇ ବୃହନ୍ନଳା ପୁଣି । ୧୪ ।
ସଇରନ୍ଧ୍ରୀକ ଲାଗଇ ତ ଆମ୍ଭ ସବୁଂକର କଥା
ଯାଅ ଲୋ ମୃଦୁସ୍ୱନ୍ନା ଭିତରେ କର ଯା ବାରତା । ୧୫ ।
ବୋଲ ଗୋଧନ ପଲ ହର ନେଉଛୁ କୁରୁପତ
ସଇରନ୍ଧ୍ରୀ ଠାକୁରାଣୀ ସ୍ନେହକୁ କସ ଆଗ୍ୟାଂ ବଅନ୍ତ । ୧୬ ।
ଚଳଣ ମୃଦୁସ୍ୱନ୍ନା ଗଲା ଅତବେଗେ
ବାରତା ଜଣାଇଲା ଯାଇଂ ଶ୍ରୀକୃଷ୍ଣାଂକର ଆଗେ । ୧୭ ।
ଶ୍ରୀକୃଷ୍ଣା ପ୍ରବେଶ ଯେ ସଇରନ୍ଧ୍ରୀର କତ
ଶୋ ଦେବୀ ଗୋଧନ ପଲ ହର ନେଉଛୁ କୁରୁପତ । ୧୮ ।
ଶ୍ରୀକୃଷ୍ଣା ସଇରନ୍ଧ୍ରୀ ବଜେ ପଶ୍ଚିମ ଯେ ଦ୍ୱାରେ
ଉତ୍ତର କୁମର ଯାଇଂ ପ୍ରଣପତ୍ୟ କସ୍ୱରେ । ୧୯ ।
ଚନ୍ଦ୍ରୀପାଳ କହଲା ଯେ ଗୋଧନ ହରଣ କଥା
ସଞ୍ଚପି କହଲା ସେ ସମସ୍ତ ବ ରତା । ୨୦ ।
ଉତ୍ତର କୁମର ବୋଇଲା ଗୋପ ଳ ମାନଙ୍କେ ତାହାର ବଳ ଭାଞ୍ଜଇ
ମୋହୋର ଗଲେ ତାହାନ୍ତ ପ୍ରାଣ ପାଆନ୍ତା ନାହିଂ । ୨୧ ।
ମୁହିଂ ହୀନକାର୍ଯ୍ୟ ହୋଇଲ ପିତାର ଅବବେକପଣେ
ବାହୁକ କର ଗୁଡ ନ ଗଲେ ଜଣେ । ୨୨ ।
ଧନୁଗୁଣ ଟଂକାର ଉଠିଲା ଶିରଫୁଣି
ଅଧରେ ଦନ୍ତ ସେ ଘୃଷଇ ପୁଣ ଘୁଣି । ୨୩ ।

---

୧୧।୨ ନ ଜାଣଇ କ ଉତ୍ତର କୁମର କରଇ କଟକ ପରଛା ।—କ, ପ, ଟ

ବଇବ ସୁମର ସେ ଲଲାଟେ ତାଡଇ ହାଥ
ସ୍ତ୍ରୀକା ଯିବ କେମନ୍ତେ କେ ବାହିବ ମୋର ରଥ । ୨୪ ।
ସହଦେବର ବଚନ ଶୁଣିଂଲେ ସଇରନ୍ଧ୍ରୀ
ଅର୍ଜୁନ ଠାକୁରେ ଯାଆନ୍ତୁ ବୋଲି ସହଦେବଂକୁ ଦଲେ ଠାର । ୨୫ ।
ସଇରିନ୍ଧ୍ରୀ ବୋଇଲେ ତୁ ଯେବେ ଲୋଡୁ ହୋ ସାରଥି
ଜଣେ ଅଛି ସାରଥି ତୁହି ପାରବୁ କି ଅଭ୍ୟର୍ଥୀ । ୨୬ ।
ଉତ୍ତର କୁମର ବୋଇଲା ସମସ୍ତେ ଯେବେ ବାହିବ ମୋର ରଥ
ରାଜ୍ୟକୁ ଠାକୁର ମୋହୋର ସେହି ସେ ଯଥାର୍ଥ । ୨୭ ।
ଅଭ୍ୟର୍ଥୀ କମ୍ପେ ବୋଲବ ଚରଣେ କରିବ ବଇନ
ପୂଜା କରିବ ତାକୁ ଲକ୍ଷେକ ସୁବର୍ଣ୍ଣ ଧେନ । ୨୮ ।
ସଇରିନ୍ଧ୍ରୀ ବୋଇଲେ ବୃହନ୍ନଳାକୁ ଆଣ ତୁ ହକାରି
ବଡାଇ ସୁସଙ୍ଗେ ସେ ତୋର ରଥ ନେମଟି ବାହି । ୨୯ ।
ଶୁଣି ହସିଲା ସେ ଉତ୍ତରର ତନୁ
ବେନକରେ ଛୁଇଂଲା ସେ ଆପଣା ଶ୍ରବଣୁ । ୩୦ ।
ଉତ୍ତର ବୋଇଲା ତୁ ଯେ ପରେ ଉଚ୍ଚ୍ୟପଣେ ଖଣ୍ଟୁ
ଆପଣାର ଅନରୂପେ ବଚନ ପ୍ରକଟୁ । ୩୧ ।
କେଟୀଚେଟୀ ସ୍ତ୍ରୀରଂକର ଅଟଇ କସ ବୁଦ୍ଧ
ଅହର୍ନିଶି କେଶ ବଲଗ୍ନ କାର୍ଯ୍ୟନ୍ତ୍ରଂ ଅସିଦ୍ଧି । ୩୨ ।
ଲେଞ୍ଚସ୍ତ୍ରୀ ସ୍ତ୍ରୀ ଲେଞ୍ଚ ପୁରୁଷ ନପୁଂସକ ହୀନଜାତି
ତାହା ସ୍ତ୍ରୀରକୁ କେମନ୍ତେ କରିବ ସାରଥି । ୩୩ ।
ଯାହାଯୋଗେ ଅଯାତ୍ରିକ ଲୋକକୁ ଦେଖିଲେ
ଦିନକର ସୁକୃତ ହରଇ ତାହାର ମୁଖ ଚାହିଂଲେ । ୩୪ ।
ସ୍ତ୍ରୀ ଶୀଳଙ୍କ ସରୂପେ ସେ ବସିବ ମୋର ରଥେ
ଦେଖନ୍ତୁ ଦେଖନ୍ତୁ ଅଯାତ୍ରିକ ଅପୁଂସେକ ଲୋକ ମୁଂ
ନେମଇ କେମନ୍ତେ । ୩୫ ।

---

୨୮।୨ ପାଦାର୍ଘ୍ୟ କରିବ ତାକୁ ଲକ୍ଷେକ ସୁବର୍ଣ୍ଣ ଧେନ ।—ଚ, ଣ, ଡ

ଶ୍ରୀକୃଷ୍ଣ ବୋଇଲେ ତୁ ମୂର୍ଖରେ ଚନୁଜ
ଗନ୍ଧର୍ବଙ୍କ ବଚନ କଦାଚତେ ନ ଭଞ୍ଜ । ୩୬ ।
ଆରେ କୀଚକ ନାଶଗଲ୍ଲ ଯହାର କଞ୍ଚକ କୋପେ
ତ୍ରିଗର୍ତ୍ତର ବନ୍ଧନରୁ ଯେ ଉଦ୍ଧରିଲେ ତୋହୋର ବାପେ । ୩୭ ।
ମହା ବ୍ରହ୍ମବାକ୍ୟ ସେ ଯେବଣି ମହାତ୍ମାଣୀ
ସେହୁଙ୍କର ଆଗ୍ୟାଂ ବାବୁ ଥିବୁରେ ପରମାଣି । ୩୮ ।
ଉତ୍ତର ବୋଇଲ୍ଲ ତନ୍ତ୍ରୀପାଳ ତୁ ଯେ ଥିଲୁ ସହଦେବଙ୍କ ତହିଂ
ତୋହୋର ଦେଖନ୍ତେ ବୃହନ୍ନଳା ଅଛୁଟିକ ରଥ ବାହି । ୩୯ ।
ଗୋପାଳ ବୋଇଲ୍ଲ ଯାହା ମୁଂ ଦେଖିଅଛଇ ଯୁଗତେ
ଗବନ କାଳେ ବସିଥାସ୍ତେ ନନ୍ଦଘୋଷ ରଥେ । ୪୦ ।
ସେହୁର ବାହିଲେ ସେ ଚଳଇ ନନ୍ଦଘୋଷ
ଯହିଁଙ୍କ ଯିବ ତହିଂ ହୋଅଇ କାର୍ଯ୍ୟଯଶ । ୪୧ ।
ଆହୋ ଉତ୍ତର ସେହେନେକ କର ସେ ମହାତମା କରଇ ସହସ୍ତେ
ଯେ ସେ ବୃହନ୍ନଳା ପ୍ରତକ୍ଷେ ଧନୁର୍ଜୟେ । ୪୨ ।
ସେହେନେକ କର ସେ ସେହାକୁ ନର୍ଭାକଲ୍ଲ ମହାତ୍ମା
ଯେ ସେ ବୃହନ୍ନଳା ସେ ପ୍ରତକ୍ଷେ ଅର୍ଜୁନର ପଞ୍ଚୁଆତ୍ମା । ୪୩ ।
ବୃହନ୍ନଳା ଅର୍ଜୁନ ହୋ ନୁହନ୍ତ ଭନ୍ନାଭନ୍ନ
ସେ ଯେବେ ଯାଇ ତୋହୋର କାର୍ଯ୍ୟ ସୁବଧାନ । ୪୪ ।
ସଇରନ୍ଧ୍ରୀଙ୍କ ବଚନେ ସେ ଉପହାସ୍ୟ କରୁଥିଲ
ତନ୍ତ୍ରୀପ ଳ ବଚନେ ସେ ସନମତ କଲ୍ଲ । ୪୫ ।
ଯାଅ ହେ ତନ୍ତ୍ରୀପାଳ ନାଟପା ମନ୍ଦରେ
ବୃହନ୍ନଳାକ ଘେନଆସ ମୋହୋର ଗ୍ରାମୁରେ । ୪୬ ।
ଧାମଇ ସହଦେବ ନଉଡ ବୁଲଇ
ସୁଖେ ବହଉନ୍ତ ସେ ରାଜ୍ୟରେ କେହି ନାହିଂ । ୪୭ ।
ନାଟପା ମନ୍ଦରେ ଯାଇ ଗୋପାଳ ପରଣାମି
ଉତ୍ତର କୁମର ଆଗ୍ୟାଂସେ ଆସିବ ସେହିକ୍ଷଣି । ୪୮ ।
ବୃହନ୍ନଳା ବୋଇଲ୍ଲ ମୁଂ ଉତ୍ତର କୁମରର ନୁହଇଂ ବଶ୍ୟବୃତ୍ତ
ତାହାର ଆଗ୍ୟାଂକୁ ମୋହୋର କମ୍ପେ ସନମତ । ୪୯ ।

ଶୁଣିଣ ବୋଇଲା ସେ ଗୋପାଳ ଚୂଡ଼ାମଣି
ପ୍ରଥମେ ଆସ୍ୟାଂହିଲେ ସଇରନ୍ଧ୍ରୀ ଠାକୁରାଣୀ । ୫୦ ।
ଉତ୍ତର କୁମର ବଚନେ ଉପହାସ୍ୟ କରୁଥିଲା
ସଇରନ୍ଧ୍ରୀଙ୍କ ବଚନେ ସେ ବାହାର ହୋଇଲା । ୫୧ ।
ଆଗେଣ ସହଦେବ ପଚ୍ଛେଣ ଫାଲଗୁନ
ପଚୃରନ୍ତେ ସହଦେବ କହଇ ଚୂନ ଚୂନ । ୫୨ ।
ଦୁର୍ଯୋଧନ ବେଢ଼ିଲା ଗୋଧନ ପଲ ଆସି
ମୂହଂ ସମର କର ତାହାର ଅନେକ ବଳ ନାଶି । ୫୩ ।
ନ ଭାଙ୍ଗି ଦ୍ୱନ୍ଦ ସେ କଲେ ପୁଣ ପୁଣ
ଆମ୍ଭର ଥାଆନ୍ତେ ଗୋଧନ କି ହୋଇବ ହରଣ । ୫୪ ।
ଉତ୍ତର କୁମରକୁ ଘେନଣ ତୁମ୍ଭେ ଯିବା
କଉରବେ ବଳ ଜିଣି ଗୋଧନ ଆଣିବା । ୫୫ ।
ସହଦେବର ବଚନେ ଅର୍ଜୁନ ବାକ୍ୟ ପୃଚ୍ଛି
ଅଗ୍ୟାଂତ ବାସ ଲେଖନ୍ତେ ବାବୁ କେତେଦିନ ଅଛି । ୫୬ ।
କରଯୋଡ଼ ଯୋଡ଼ିଣ ସେ ସହଦେବ ବୋଇଲା
ତିନଶ ସତାବନ ଦିନ ସଂପୂର୍ଣ୍ଣ ହୋଇଲା । ୫୭ ।
ଆଉର ତିନ ଦିବସ ହୋଇବ ଲେଖନ୍ତେ
ଆଉର କସ ଦୋଷ ହୋଇବ ଜାଣନ୍ତେ । ୫୮ ।
ସହଦେବ ବୋଇଲା ସ୍ୱାମୀ ଶୁଣିମା ଧନୁର୍ଜୟେ
ବରଷକେ ଦଶଦିନ ବଢ଼ଇ ଚନ୍ଦ୍ରଂକ ନାହିଂ ଭୟେ । ୫୯ ।
ଏମନ୍ତେ କହନ୍ତେ ଗ୍ରୁମୁରେଣ ଯାଇଂ ଭେଟି
ଦେଖିଣ ହେଟମାଥ ହୋଇ ବଇଗଟି । ୬୦ ।
ଉତ୍ତର ବଚୃରଇ କବେଶ ଭାର ଖୋଷା କରେଣ ବେଣିବାନ୍ଧୀ
ସ୍ତ୍ରୀବେଶ ଅଳଂକାର ମୂରତି ଗୁଣଗ୍ରାହୀ । ୬୧ ।
ପ୍ରଥମେ ଉପହାସ ଉପୁଜିବନା ମୋତେ
କେମନ୍ତେ ନପୁଂସେକ ବସିବନା ରଥେ । ୬୨ ।
ପ୍ରଭାତେ ବନ୍ଦନ ଗୃହାନ୍ତେ ଯେତ୍ହାର
ଶତେ ବ୍ରାହ୍ମଣ ଭୋଜନ ଦିଲେ ସେ ଦୋଷ ଯାଇ ପାର । ୬୩ ।

ପୁଣି ବୋଇଲା ଦେଖି କଣ୍ଟବା ସନ୍ତୋଷ
ଜୟ ଉତ୍ତର କହଇ କେତେମାନ ସାହସେ । ୬୪ ।
ଭରସା ନ କଲେ ସେହିଙ୍କୁ ମୁଂ ନେମଇ କେମନ୍ତେ
ଦେଖିତେ ଅନ୍ୟାକାର ଆବର ସ୍ତ୍ରୀସ୍ୱଚ୍ଛ୍ୟା ଦେଷ ମୋତେ । ୬୫ ।
ଉତ୍ତର କୁମର ବୋଇଲା ଆହୋ ବୃହନ୍ନଳା
ମାନଗୋବନ୍ଦ ରାଜା ନେଇଅଛୁ ମୋର ଗୋଧନ ପଲ ହରି । ୬୬ ।
କଳପି ରାଜ୍ୟକୁ ଦଣ୍ଡ ଚଢ଼ି ଗଲେକ ବିରାଟେ
ବଲ୍ଲଭ ସହିତେ ସେ ଗଲେ କୋନ୍ତଭଟ୍ଟେ । ୬୭ ।
ମତ୍ସଦେଶ ମଲ୍ଲଦେଶ ରକ୍ଷାପାଳକ ମୁହିଂ ଯେବକା
ସାରଥି ପଣକୁ ମେତେ କେହି ନାହିଂ ସାଖୀ । ୬୮ ।
ଲଖ ମାଷ ହୋଇ ବାହି ପାରନ୍ତୁ କ ମୋର ରଥ
ମାରି ଭଗନସ୍ତ କରିବ କଉରେବନ୍ତ । ୬୯ ।
ଯେବକା ସେବକାକେ ମୁହିଂ କରିପାରଇ ଯୁଦ୍ଧ
ସାରଥି ଜଣେ ନ ଥିଲେ ଜୟ ହୋଇବାକ ସାଧ୍ୟ । ୭୦ ।
ବୃହନ୍ନଳା ବୋଇଲା ମୁଂ କହଇ କନା ତୋତେ
ସେହିତେ ବଡ ଧାର୍ମିକ ତୁ ବାତୁଳ ହୋଇଲୁ କେମନ୍ତେ । ୭୧ ।
ଆହୋ ବଧମଙ୍ଗଳ ଅନକୂଳ ସାଂଗ୍ରାମକୁ ସଞ୍ଚ
ନପୁଂସେକ ଦେଖନ୍ତେଣ ତୋତେ ହଇଲୋକ୍ୟ ବାଞ୍ଛ । ୭୨ ।
ଯାତ୍ରାବେଳେ ଦେଖିଲେ ହୋ ଅଯାଚିକ ଜନ
କାର୍ଯ୍ୟକୁ ଅସାଧା ହୋ ଅନକୂଳକୁ ହୋଯେ ହୀନ । ୭୩ ।
ଅମଗଳ ବାକ୍ୟ ଛଡ଼ୁଂ କହିଲା ଫାଲଗୁନ
ବିରାଟ ନନ୍ଦନ ଶୁଣି ହୋଇଲାକ ତୁନ । ୭୪ ।
ସଇରିନ୍ଧ୍ରୀ ବୋଇଲେ ରାଜ୍ୟେ ନାହିଂନା ବିରାଟେ
ସେମନ୍ତର ସମଯେ ଯେ ଘଡଲା ପରଥାଠେ । ୭୫ ।
ବିରାଟର ସମ୍ପଦ ଯେ ନେଇଅଛୁ ହରି
ଯାହାର ଅନ୍ନ ଭୁଞ୍ଜି ତାହାର କାର୍ଯ୍ୟକର । ୭୬ ।

---

୭୩।୨ କାର୍ଯ୍ୟକୁ ଅକାର୍ଯ୍ୟ ଭୂଲକୁ ହୋଯେ ସ୍ଥାନ । —କ, ଜ, ଙ

ଆପଣାର ପରାକ୍ରମ ଥାଉଂ ହୋଇଲେ ହୀନସାର୍ଥ
ଆରଜନ୍ମେ ପରକୁ ଖଟନ୍ତି ଯେ ହୀନ ହୋଏ୍ ତେଜ । ୭୭ ।
ଅପଚୟବେଳେ ଯେବେ ପ୍ରାଣୀଂକ ହୋଏ୍ ସାହା
ମହେଶ୍ୱର ସମାନେ ଦେଖିବାନା ତାହା । ୭୮ ।
ଆହୋ ବୃହନ୍ନଳା ତୁ ତ ପ୍ରତକ୍ଷେ ଅଟୁ ଅର୍ଜୁନର ପଞ୍ଚୁଆତ୍ମା
ଉତ୍ତର କୁମାରେ ଦୟାକର ହୋ ମହାତମା । ୭୯ ।
ଉତ୍ତର ବଚନେ ନାସ୍ତି କରୁଥିଲା ପାର୍ଥ
ସଇରନ୍ଧ୍ରୀଂକ ବଚନେ ସେ କଲାକ ସନମତ । ୮୦ ।
ତତକ୍ଷଣେ ପଣ୍ଡବେଶ ହୋଇଲା କଣ୍ଡାଟୀ
ତତକ୍ଷଣେ ମଣ୍ଡିଲା ସେ ଉତ୍ତର କୁମାର ରଥଗୋଟି । ୮୧ ।
ସସ୍ତିକର ସ୍ତମ୍ଭ ଯେ ମାରଗ ମଣ୍ଡିଣି
ଶତେ ଶତେ ପୋଏ୍ଲା ହୀର ପାକଛେ ଖଞ୍ଜିଣି । ୮୨ ।
ମର୍କତର ତୁଲେ ସେ ମାଣିକ୍ୟ ପୁଞ୍ଜି ପୁଞ୍ଜି
ଗଜ ମୁକୁତାର ତୁଲେ ପାଟଡୋର ଖଞ୍ଜି । ୮୩ ।
ପଞ୍ଚୁ ବହନ ହିରଣ୍ୟେ ରଥର ଗୁରକାଣ୍ଡ
ମାଳା ମାଗରେ ଯେ ମଣ୍ଡିଲା ରଥଦଣ୍ଡ । ୮୪ ।
ଉପରେ କଣପୁର କଳସ ନରବାଣି
ଚନ୍ଦ୍ରଂର ଉପରେ ଯେ ଅଷ୍ଟ ରତନର ଖଞ୍ଜିଣି । ୮୫ ।
ବଧିବାମନ ଲେଖନ ଆଲମ୍ବ ଶତ ଶତ
ରଥର ଗୁରକୋଣେ ଉଡନ୍ତି ଗୁଣନେତ । ୮୬ ।
ଡାଳମ୍ବ ବସନ ଯେ ପାତାଙ୍କ ପେଣ୍ଡି ଫୁଲ
ଉପରେ ଉଡନ୍ତି ଯେ ମୁକୁତାର ଫୁଲ । ୮୭ ।
ଲମ୍ବନ୍ତି ଗଜମୁକୁତାମାନେ ତଳସର
ଲମ୍ବନ୍ତି ହୀର ମାଣିକ୍ୟ କେଶ କେଶ । ୮୮ ।
ସପତ ସୂର୍ଯ୍ୟ ଉଦୟ ପରଏ୍ଣ ଜାଣି
ଚନ୍ଦ୍ରଂର ସଙ୍ଗେ ରୁଅ ମାରଗ ଖଞ୍ଜିଣି । ୮୯ ।

---

୮୪।୧ ଶୁକ୍ଳହୀର ମଣିରେ ରଥର ଗୁରକାଣ୍ଡ ।—ଣ

ଅଷ୍ଟଖୁଣ୍ଟେ ଅର୍ଦ୍ଧଚନ୍ଦ୍ର ଦର୍ପଣ ରଥେ ଅଛୁ ମଣ୍ଡି
ଚନ୍ଦ୍ରାଂର ଉପରେ ଝଲମିଲ ହୀରାଖଣ୍ଡି । ୯୦ ।
ଡାଳମ୍ବା ଚାମର ଗୋଟିଏ ଶ୍ୱେତ ଚାମର ଗୋଟିଏ
ରଥର ଚାରିପାଖେ ଲମ୍ବନ୍ତି ଶଏ ଶଏ । ୯୧ ।
ହୀରାମାଳା ପୋଏଲା ମୁକୁତାର ଝୋଣାମାଳା
କେତେ କେତେ ଲମ୍ବନ୍ତି ରଥର ଚଉପାଶେ ମେଖଳା । ୯୨
ଦେବାଙ୍ଗ ବସନ ନେତ ପଟମ୍ବ ମାଳରଙ୍ଗ ପାଟ
ଘନ କାଙ୍ଗୁନି କରିଣ ରଥରେ ମଣ୍ଡିଲେ ଚାରିତଟ । ୯୩ ।
ମଲ୍ଲୀ ମାଳତୀ ଯାଇ ଜୂଈ ଚମ୍ପା ରଙ୍ଗଣୀ ରେଖ ରେଖ
ସୁଗନ୍ଧ ପୁଷ୍ପମାନ ଲମ୍ବନ୍ତି ଚଉପାଖ । ୯୪ ।
ଗନ୍ଧ ଚନ୍ଦନ ଯେ କର୍ପୂର କସ୍ତୁରୀ
ଠାବ ଠାବ କରି ଯେ ରଥରେ ଲେପନ କରି । ୯୫ ।
ରଥଯାକ ମଣ୍ଡିଲ ହୀରା ମାଣିକ୍ୟମଏ
ସରୂପ ଦିଶିଲା ଯେ ଆଦିତ୍ୟ ରଥ ପ୍ରାଏ । ୯୬ ।
ଅନ୍ଧାର ନିଶାକାଳେ ଯେବେ ଚଳୁଥିବ ସେ ରଥ
ଦିବସ ପ୍ରାଏ ଦିଶିବ ଚଳନ୍ତେ ଯୋଜନ ସାତ । । ୯୭ ।
ରଥଚଳ ଚକ ଯେ କଣଏ ପିଙ୍ଗୁଳୀ
ଆକର୍ଷଣ ସିଂହ କଲେ କି ଗଗନ ପବନଙ୍କୁ ଉଗୁଳି । ୯୮ ।
ନିମିଷକେ ମହୀ ଲଂଘିବ କି ଶୋଷିବ ବାରିନିଧି
ସପତ ଦୀପ ଲଂଘିବ କି ସପତ ପୟୋଧି । ୯୯ ।
ପ୍ରେସନଙ୍କ ଘଟଣ ସେ ରଥ କଣଏ ଚାରି ସାହା
ରଥରେ ଆପଣେ ଖଞ୍ଜିଲା ସୁଭଦ୍ରାର ନାହା । ୧୦୦ ।
କଣଏ କୁନ୍ଦଫୁଲ ମାଳା ରେଖ ରେଖ
ଅଷ୍ଟରତ୍ନେ ବାକୁଲ ସେ ହସ୍ତଂକର ପାଖ । ୧୦୧ ।
ବଣାଣରେ ପାବଛ ପନ୍ତ ହୀରା କମ
ମର୍କତ ମାଳା ସେ ଗୋଟି ଗୋଟି ଚଉସମ । ୧୦୨ ।
ରଙ୍ଗପାଟ ଦଉଡ ଡାଳମ୍ବପାଟ ଝୁମ୍ପା
ଛନ୍ଦିଲା ଷୁଦ୍ର ମୋଡ଼ି ବଳିତ ସର୍ବରୂପା । ୧୦୩ ।

ଯେବଣ ରଥ ମଣ୍ଡ ଅଛୁ ଦୁଷ୍ଟ ବାସୁଦେବ
ଲେଖନ୍ତେ ପ୍ରାନ୍ତକର କେହ୍ନ ସେ କହିବ । ୧୦୪ ।
ପଞ୍ଚଷଠି ରଜାର ଭଣ୍ଡାର ଯେବଣ ଅମୂଲ୍ୟ ଧନ
ସେହିକା ରଥକେ ତାହା ମଣ୍ଡିଲେ ବୀର ଫାଲଗୁନ୍ୟ । ୧୦୫ ।
ଶ୍ୱେତାର ତୁରଙ୍ଗମ ଶ୍ୱେତ ବ୍ୟୂର ବାଜୀ
ପବନହୁଂ ବେଗ ହାଦେ ବାହସ ମହାତେଜ । ୧୦୬ ।
ହୀରା ମାଳା ବଇଡୁର୍ଯ୍ୟ ପୋସ୍ୟେଲା ମର୍କତ
ମୁକୁତା ମଣି ମାଣିକ୍ୟ ଗୁନ୍ଥ ଲ ବାଖର ଅପ୍ରମିତ । ୧୦୭ ।
ପାଟର ବନ୍ଧନ ତହିଂ ଅଷ୍ଟରନ୍ଧ୍ରେଣ ଖଞ୍ଜି
ଖଞ୍ଜଣି ଜଡଆଳ ମାଣିକ୍ୟ ପୁଞ୍ଜି ପୁଞ୍ଜି । ୧୦୮ ।
ଅଷ୍ଟ ରତନେ ସେ ମଣ୍ଡିଲ୍ଲ ବୃହଦ୍ୱ୍ୟେ
ସୂତମୁନେ ନ ଦଶଇ ଅଶ୍ୱଂକର କାୟେ । ୧୦୯ ।
ମଣ୍ଡଣି କଣପ୍ଲ ଯେ ଖଞ୍ଜିତ ବିମାନ
ନାରଜ ନ ଫୁଟିବାକୁ ହୋଇଛୁ ବଜ୍ରସେହ୍ନ । ୧୧୦ ।
ଶଙ୍ଖ ଶାର୍ଙ୍ଗ ଲ ଚନ୍ଦ୍ର ଶଙ୍ଖଚକ୍ର ପକ୍ଷୀ
ହୋଣଂକର ଭିତରେ ଥୋଇଲ୍ଲ ନାରଜ ପାଞ୍ଚଲକ୍ଷ । ୧୧୧ ।
ଗଦା ଶକତ ଯେ ମୁଦୁଗର ପାଠି
କୋନ୍ତ ଅସିପତ୍ର ଯେ ଭୂଷଣ୍ଡି ଶରଗୋଟି । ୧୧୨ ।
ରକ୍ଷମୁନା ଖଗମୁନା କଂକମୁନା ପଞ୍ଚୁ ରେଖା
ଶିବକର ଫୁଟନ୍ତି ପଡନ୍ତେ ତାର ଶିଖା । ୧୧୩ ।
ଫାଶି ପରଶୁ ଗୁରୁଜ ବଜ୍ରଶର
ଅଧାଚନ୍ଦ୍ର ପଶୁପତ ଆବର ବାବଲ ଖଗଶର । ୧୧୪ ।
ଲଞ୍ଜା ଦଣ୍ଡବନ୍ତ ଯେ ଡାହାଣେ ବଡ ଭୂଷା
ନବନକ୍ଷି କୁନ୍ତ ଯେ ଆବର ଅଂକୁଶା । ୧୧୫ ।
ରଥର ଉପରେ ନେଇ ଥୋଇଲ୍ଲ ଫାଲଗୁନ
ରଥ ଚଳାନ୍ତେଣ ଶୁଭିଲ୍ଲ ଘୋରଧ୍ୱନ । ୧୧୬ ।

---

୧୧୬।୨ ଚଳଇ ରଥ ଯେ ସନ୍ଧୁ ଘୋଷ ଜାଣି ।—କ, ଟ, ଣ

ଆକାଶ ଦେଖାଇ ସେ କ୍ଷେପଇ ଗୃଧ୍ରରୂପେ
ପୁଣି ଭୂମିକି ଦେଖାଇଲା ସେ ଶେଣାପକ୍ଷୀ ପ୍ରାପ୍ତେ । ୧୧୭ ।
ଆକ ଶୁ ଅଶ୍ୱ ସେ ପଡୁଛନ୍ତି ଖସି
କପ୍ରେ ଅଙ୍ଗାରପର୍ଣ୍ଣଙ୍କ ବଜେକଲେ ଆସି । ୧୧୮ ।
ଗଗନୁଂ ଖସାଇ ରଥ ଆଣିଲ୍ଲେ ବେଗେ
ଧାଡିକାରେ ନେଲା ନେଇ ଉତ୍ତର କୁମର ଆଗେ । ୧୧୯ ।
ଚରଚରେ ଅଶ୍ୱ ସେ ସେ ନ ରହୁଛନ୍ତି ଭୂମି
ଯାଅ ଯାଅ ବୋଇଲେ ସେ କ୍ଷେପିବେ ଆକାଶ ଭୁବନ ଭ୍ରମି । ୧୨୦ ।
ଫୁ ଫୁ କାରେ ତୁରଙ୍ଗମେ ସେ ତେଜେ ଅନର୍ଗଳ
ଦେଖିଣ ଆଶ୍ଚର୍ଯ୍ୟ ସେ ଶ୍ରୀକୃଷ୍ଣଙ୍କର କଳା । ୧୨୧ ।
ଉତ୍ତର କୁମର ବୋଇଲା ତୁମ୍ଭେ ଅଇଲ ସେ କାହୁଂ
କେଉଁଣ ମହାତମା ଗୋପ୍ୟମାନ ତୁ ନପୁଂସେକ ନୋହୁ । ୧୨୨ ।
ମାନବ ମାଧବ କେହୁ ସ୍ୱେହୁ ରଥ ପାରେ ସାଜ
ନାହିଂ ନୋହିବ ନଥିବ ସ୍ୱେ ତ୍ରିଭୁବନ ମଝି । ୧୨୩ ।
ନପୁଂସକ ବୋଲଣ ଯାହା ମୁଂ କହିଲଇ ତୋତେ
ତହିଂକ ଅନୁଗ୍ରହ ଦାନ ଦେବାକ ହାଦେ ମୋତେ । ୧୨୪ ।
ବୀରବେଶେ ଅଳଂକାର ହୋଇଲା ଉତ୍ତର କୁମର
ରତ୍ନମଣି ମୁକୁଟ ସୀମନ୍ତିମା ଲଲାଟର । ୧୨୫ ।
ମୁକୁତା ମଣି ମାଣିକ୍ୟ ହୀରା ଚଉସର ରେଖା
ଖଞ୍ଜି ତ ରତ୍ନଜାଲ ସେ ଯାହାର ଶୀଖା । ୧୨୬ ।
ବେନ କର୍ଣ୍ଣେ କର୍ଣ୍ଣାଞ୍ଜଳ ତଡକାରୁ ବୋସର
କଣ୍ଠତଟେ ଚଉସରମାଳ ଗୁପସର । ୧୨୭ ।
ନଆଳରେ ପୁଣ ବଗଜନ୍ତି ଶିକୁଳ
ହୃଦରେ ପଦକ ସେ ଭୂଷଣମାନ ପ୍ରଜ୍ୱଳ । ୧୨୮ ।

---

୧୨୩।୨ ନାହିଂ ନୋହିବ ଦେଖିଲା ତ୍ରିଭୁବନ ମଝି ।—ଟ, ଦ. ପ
୧୨୮।୧ ନାଆଳ ଫୁଲେ ଚନ୍ଦ ପୁଣ ଶିକୁଳ ।—ଜ

ଛାଡ଼ ଚୋଡ଼ାଏ ଯେ ବାହୁଟି ସରଳ
ବଳଦମୁଦ କଂକଣ ମୁକୁତା ମାଳ ମାଳ । ୧୨୯ ।
କଟିରେ ରତ୍ନ ମେଖଳା କଣ୍ଠ୍ୟ ଘାଗୁଡ଼
ନେପୁର ଘଣ୍ଟଣ ଯେ ହୀରା କମେଣ ଜଡ଼ । ୧୩୦ ।
ବାସନେତରେ ମୁକୁତା ଖଞ୍ଜିତ ମେଖଳ
ସୁବର୍ଣ୍ଣର ସୀନ୍ଥି ମା ଶିରେ କଣ୍ଠେ ଜାତ ପୁଷ୍ପମାଳୀ । ୧୩୧ ।
ବାମେ ଦକ୍ଷିଣେ ଯେ ବେନକୋଣ ଖସି
ବଧ୍ବାବନ ସୁମରଣ ରଥରେ ଯାଇ ବସି । ୧୩୨ ।
ଯାତ୍ରାର ମଙ୍ଗଳେ ଯେ କଘ୍ନେବାର କରି
ଲକ୍ଷେ ବିପ୍ର ମିଳଲେ ଯେ ବେଦ ଧ୍ୱନ ଉଚ୍ଚାରି । ୧୩୩ ।
ସୁଲଭ ସୁଲକ୍ଷଣୀଯ୍ୟେ ଅର୍ଘ୍ୟ ବଲେ ତୋଳ
ମାଣିକ୍ୟର ଦୀପ ଘେନ ଦ୍ୟନ୍ତି ତୁଳତୁଳ । ୧୩୪ ।
ଶ୍ରୀକରେ ବୃହନ୍ନଳାଙ୍କ କୋମଳ ପାଟ ରଜ୍ଜୁ
ଆକାଶେ ଧ୍ୱନ ଶୁଭିଲା ଅର୍ଜୁନର ରଥ ସଜୁ । ୧୩୫ ।
ଶ୍ରୀକୃଷ୍ଣା ବୋଇଲେ ମାଗୋ ଶୁଣ ସଇରନ୍ଧ୍ରୀ
ପୁଷ୍ପକଇଂ ଅର୍ଘ୍ୟ ଦେବା ଗୋ ଶୁଭ ଅବଧାରି । ୧୩୬ ।
ଶ୍ରୀକୃଷ୍ଣା ସଇରନ୍ଧ୍ରୀ କରେ ଅର୍ଘ୍ୟ ଘେନ
ପ୍ରଥମେ ବନ୍ଦଇଲେ ସାରଥି ଫାଲଗୁନ । ୧୩୭ ।
ଦୁଇଜଣ ବନ୍ଦାଇଲେ ଉତ୍ତର କୁମରକୁ
ଧର୍ମ ଆଶ୍ରେକରି ବାବୁ ଜପ୍ୟେ ହେଉ ଯେ ଭୂମ୍ୟଂକୁ । ୧୩୮ ।
ଶ୍ରୀକୃଷ୍ଣା ବୋଇଲେ ବୃହନ୍ନଳାଙ୍କ କଥାସ୍ୟେ ମାଗଇ
ସ୍ୟେ ମୋହୋର ପୁଅ କଥା ତୋତେ ସେ ଲାଗଇ । ୧୩୯ ।
ଶ୍ରୀକୃଷ୍ଣା ବୋଇଲେ ବାବୁ ସଇରନ୍ଧ୍ରୀଂକ ତୁଅ ପ୍ରଳମ୍ବିତ
ସ୍ୟେତାଂକର କଲ୍ୟାଣେ ତୋତେ ସର୍ବଶୁଭ ହୋଉ ପ୍ରାପତ । ୧୪୦ ।
ଉତ୍ତର କୁମର ସଇରନ୍ଧ୍ରୀ ଶ୍ରୀକୃଷ୍ଣ ଚରଣ ତଳେ ସେବ
ପରମ ଅଇଶ୍ୱର୍ଯ୍ୟ ତୋତେ ପ୍ରାପତ ହୋଉ ବୋଇଲେ ଗାନ୍ଧର୍ବୀ ।୧୪୧।

---

୧୨୯।୨ ବଦ ମୁଦ ପଦ୍ଦେକ ରୂପା କଡିଆଳ ।—ଜ, ଦ

ଶତ୍ରୁ ମାରକର ଉଦ୍ଧ ହୁଅସି ରେ ବଳା
ବୃହନ୍ନଳା ସହପ୍ୱେ ତୋତେ ସାଧୁ ଅନର୍ଗଳା । ୧୪୨ ।
ଉତ୍ତର କୁମାର ବୋଇଲା ସାଧୁ ସାଧୁ ବୃହନ୍ନଳା
ଅନେକେ କେତେ ଦୂର ରଥକୁ ବାହିପାର । ୧୪୩ ।
ବୃହନ୍ନଳା ବୋଲେ ତୁ ଯେ ମୋତେ କଲୁ ପୃଚ୍ଛା
ପ୍ୱେତ୍ୱକ୍ଷଣି ରଥ ବାହିପାରଇ ହୋଇ ସନ୍ତଂକ ତୋହୋର ଇଚ୍ଛା । ୧୪୪ ।
ସ୍ୱର୍ଗ ମର୍ତ୍ତ ପାତାଳ ଯେ ସୁତଳ ତଳାତଳ
ନିତଳ ଭୂତଳ ଯେ ରସାତଳ ଅତଳ । ୧୪୫ ।
ନିର୍ଭପ୍ୱେ ହୋଇ ଯେବେ ଆଜ୍ଞାଂ ଦେବୁ ମୋତେ
ଘଡିକ ଭିତରେ ମୁଂ ରଥ ବାହିପାରେ ଚଉଦ ଭୁବନକୁ । ୧୪୬ ।
ଜମ୍ବୁଦ୍ୱୀପ କ୍ରୌଞ୍ଚ ଦ୍ୱୀପ ଇନ୍ଦ୍ରଦ୍ୱୀପ ଶ୍ୱେତଦ୍ୱୀପ
ଚନ୍ଦ୍ରଦ୍ୱୀପ ପଦ୍ମଦ୍ୱୀପ କୁଶଦ୍ୱୀପ ଶାକଲ୍ୟ ଦ୍ୱୀପ ରତ୍ନେକ ଦ୍ୱୀପ । ୧୪୭ ।
କ୍ଷୀର ସମୁଦ୍ର ଇକ୍ଷୁ ସମୁଦ୍ର ସୁରା ସମୁଦ୍ର ସର୍ପି ସମୁଦ୍ର ଧବଳାଙ୍ଗୀ
ଦଧି ସମୁଦ୍ର ଦୁଗ୍ଧ ସମୁଦ୍ର ମହାଜଳ ସମୁଦ୍ର ସଙ୍ଗସାରୀ । ୧୪୮ ।
ବାଜା ସମୁଦ୍ର ଅନ୍ତରେ ବାସ ସେ ସମୁଦ୍ରର
ପ୍ୱେ ବିଧାନେ ଅଛଇ ଯେ ନବଦ୍ୱୀପ ସପତ ସାଗର । ୧୪୯ ।
ସନ୍ତଂକ ଇଚ୍ଛା ତୁ କରିବୁ ବରଷି
କ୍ଷଣକର ମଧ୍ୟେ ମୁଂ ଯେ ସେ ପୁରେ ପାରଇ ଭେଟି । ୧୫୦ ।
ଆହୋ ଅର୍ଜୁନର ପ୍ରତିଜ୍ଞାଂମାନ ମୁଂ କହଇ ସମସ୍ତ
ସମରେ ନ ଜିଣିଲେ ମୁଂ ନ ବାହୁଡାଇ ରଥ । ୧୫୧ ।
ଉତ୍ତର କୁମର ହସିଲା ବୃହନ୍ନଳା କରେ କରତାଳ ଦେଇ
ପ୍ୱେତେକାଳେ ମନଇଚ୍ଛାପ୍ୱେ ସାରଥି ପାଇଲଇ ମୁହିଂ । ୧୫୨ ।
ଯେହ୍ନେକ ରଥୀ ତୁହି ତେହ୍ନେକ ସାରଥି
ଆଜର କ ସମରେ ଜିଣିମ କୁରୁପତି । ୧୫୩ ।

---

୧୪୨    ଅତ୍ରୁଟ ଅଜୟ ହୋଇ ଆସରେ ବଳା
        ରଣ ଭୂମିରେ ତୋତେ ରଖନ୍ତୁ ସର୍ବ ଯେ ମଙ୍ଗଳା ।—ଦ, ଜ

ଅର୍ଜୁନ ବୋଇଲେ ହୋ ବ୍ରହ୍ମା ବିଷ୍ଣୁ ମହେଶ୍ୱର କୁବେର
ଚନ୍ଦ୍ର ସୂର୍ଯ୍ୟ ମେଘ ମରୁତ ପର୍ବତ ନିଶାଚର । ୧୫୪ ।
ଯାହାର ଆଗକୁ ବୋଲି ଆଗ୍ୟାଂଦେବୁ ମୁକୁ
ସ୍ୱେଚ୍ଛାକ୍ଷଣି ଗ୍ରମୁରେ ଭେଟାଇ ପାରଇ ତାକୁ । ୧୫୫ ।
ଉତ୍ତର ବୋଇଲେ ତାହାନ୍ତ ଜାଣିମାନା ଯଛେ
ମାନଗୋବନ୍ଦ କୋଟି ଗୋଧନ ହରଇ ପ୍ରତକ୍ଷେ । ୧୫୬ ।
କଉଟେବନ୍ତ ଜଣିଣ ଯେ ଆଣିମା ଗୋରୁପଲ
ଅର୍ଜୁନ ବୋଇଲେ ପାଣ୍ଡବଂକର ଅଟଇ ସେ ସଲ । ୧୫୭ ।
ମକର ଶୁକଳ ପକ୍ଷ ତ୍ରୟୋଦଶୀ ଶନିବାର
ପୁନର୍ବସୁ ଋକ୍ଷ ଭୋଗ ହେଲା ସେ ଦିନର । ୧୫୮ ।
ପ୍ରୀତିନାମେ ଯୋଗ ପୂର୍ଣ୍ଣି କଉଳବ କରଣ
ମାଘ ସଂକ୍ରାନ୍ତିକୁ ଭୋଗ ସପ୍ତବିଂଶ ଦିନ । ୧୫୯ ।
ଦ୍ୱାଦଶ ଦଣ୍ଡ ଅଟଇ ଭୋଗ ଚନ୍ଦ୍ର କଳା
ଦେଢ଼ ପ୍ରହରେ ପ୍ରବେଶ ବୃହସ୍ପତି ବେଳା । ୧୬୦ ।
ବାମେଣ ପବନ ବହଇ ମଳୟା
ଚଳଇ ରଥ ଯେ ଇଶାନ୍ୟ କୋଣିଆ । ୧୬୧ ।
ନଇରୁତ କୋଣେ ଯୋଗ୍ନୀ ଯେ ନାରାୟଣୀ ମୂରତି
ମଗର ବାହାନେ ସେ ଚଳଇ ଦେବୀ ଧାତି । ୧୬୨ ।
ରଥ ଚଳନ୍ତେ ସେ ବୋଇଲେ ଉତ୍ତରା ବାଳୀ
ଛତୀବର ଶିରଭୂଷା ଆଣିମୁଂଟି ବୃହନ୍ନଳା । ୧୬୩ ।
କନ୍ୟାଂକର ତୁଲେ ମୁଂ ଖେଳିବାର ବେଳେ
କୁଣ୍ଢାଇ ବିଭା ମୁଂ କରିବି କୁତୂହଳେ । ୧୬୪ ।
ରଥରୁ ନେତ ପାତାଙ୍ଗ ଆଣିବୁଟି ଚୁନାଇ
ଗୋଧନ ପଲ ଆଣିମୁଟି ତୋତ କୋନ୍ତଂକର ହାବୁ । ୧୬୫ ।

(୧୬୪) କୁଣ୍ଢାଇକ ବସ୍ତ୍ର ମୁଂ ସରିବ ସର୍ବକାଳେ ।—ଙ, ଘ, ଛ, ଅ

ଶୁଣିଣ ସାନନ୍ଦ ଯେ ବ୍ୟାସଂକର ନାତି
ମଙ୍ଗଳ ଭାଷିଲେ ଯେ ଅଜ୍ଞାଅ ଯୁବତୀ । ୧୬୬ ।
ଉତ୍ତର ବୋଇଲା ସମସ୍ତ ନଗର ବୃହନ୍ନଳା
ଦୁର୍ଯ୍ୟୋଧନକଇଂ ଜିଣି ଗୋଧନ ଆଣ ଭାଇକ ମୋହୋର ତାର । ୧୬୭ ।
ବାହୁଇ ଭୁବନେ ପାଣ୍ଡବ ଶୁଭ ଅନୁକୂଳେ
ଯେସନେକେ ହଂସଯୂଥ କ୍ରୀଡନ୍ତି ମହାଜଳେ । ୧୬୮ ।
ଧବଳ କମଳ ସେ ଅଟନ୍ତି ଶୁଭ୍ରହସ୍ତେ
ଖେଳନ୍ତି ଆକାଶେ ଦିଶନ୍ତି ସେ ଶୋଣାପକ୍ଷୀ ପ୍ରାୟେ । ୧୬୯ ।
କହନ୍ତି ବିରାଟେ ଯେହ୍ନେ ଖେଳନ୍ତି ହରିଣ
କ୍ଷୁଦ୍ର ଘଣ୍ଟି ଘାଘୁଡ଼ି ଯେ ବାଜଇ ଝୁଣଝୁଣ । ୧୭୦ ।
ତିନି ଯୋଜନ ଅନ୍ତରେ ରହିଛି କୁରୁସାଗର ବଳ
ଲକ୍ଷେପୁର କରି ବେଢିଛି ଗୋଧନ ପଲ । ୧୭୧ ।
ରମଣୀ ପ୍ରଭାତେ ସେ ଯେ ଗୋଧନ ପଲ ନେଲନ୍ତି ଅଡ଼ାଇ
ଅଡ଼ାବନ୍ତେ ବହୁଡ଼ନ୍ତି ସେ ଅଭୟେ ଦୁଷ୍ଟ ଗାଈ । ୧୭୨ ।
ରଥ ଗମନ୍ତେ ସେ ବିଚାରଇ କିରୀଟୀ
ହୃଦଗତେ ସ୍ମରଇ ସେ ପୁରୁଷୋତ୍ତମ ନାମକୋଟି । ୧୭୩ ।
ଜୟତୁ ଜୟ କେଶବ କେଶୀ ଦର୍ପଗଞ୍ଜା
ଶ୍ରୀରାମ ଅବତାରେ ତାଡ଼କା ଦର୍ପଭଞ୍ଜା । ୧୭୪ ।
ଦକ୍ଷିଣ ବାରାନିଧି ମହୋଦଧିର ଉତ୍ତର କୂଳେ
ବିଜେ ଜଗତମୋହନ କଳ୍ପବଟ ତଳେ । ୧୭୫ ।

---

୧୬୯।୨ ଖେଳନ୍ତି ଆକାଶେ ଦିଶନ୍ତି ସେ ଶ୍ୟାମଳ ପକ୍ଷୀ ପ୍ରାୟେ ।— କ, ଛ, ଘ, ଟ, ଓ

୧୭୧ { ତିନି ଯୋଜନ ଅନ୍ତରେ ରହିଛି ମହାମଲ
ଲକ୍ଷେପୁର କରି ବେଢିଛି ଗୋରୁପଲ ।— ଛ, ଣ, କ, ଙ, ଘ, ଠ, ଝ

ଅଢାଇ ତାଳ ଆପ୍ତନେ ଅଣଦହନ ଭୂମି ଅଛି
ତଦ ହମନ୍ତେ ରାମ ନର୍ମଳ ଭୂଇଂ ବାଛି । ୧୭୬ ।
ମଳୟ ପବନ ବସନ୍ତ ତାପ ନାଶକର ବଧି
ସକୁଟୁମ୍ବ ସେନ ଦେଖ ଖଟଇ ଜଳଧି । ୧୭୭ ।
ବାମେ ମାରକଣ୍ଡ ଯେ ଡାହାଣେ ଯମେଶ୍ୱର
ପରମାନନ୍ଦ ପୁରୁଷ ଆସନ ଯୋଗ ସିଦ୍ଧେଶ୍ୱର । ୧୭୮ ।
ମହା ବଉଦ ରୂପ କଳକାଳ ଧ୍ୱଂସି
ଦୁରିପଦ ପାତକ ଯାହାର ଦ୍ରଶନେ ବନାଶି । ୧୭୯ ।
ଅଣାକାର ସୋହୋଦ୍ର ଯାହାର ଡାହାଣେ ରାମଚନ୍ଦ୍ରେ
ବୋଷ ଉପେକ୍ଷି ସାନନ୍ଦେ ପିତାମହ ସଉଭଦ୍ରେ । ୧୮୦ ।
ସ୍ୱାମୀ ଅଭୟେ ବାରିନିଧି ପ୍ରତକ୍ଷେ ଦଅ ମୋତେ ବୁଦ୍ଧ
ବଚନ୍ତ ମହାଭାରଥ ଯେ ଅମୂଲ୍ୟ ବାରିନିଧି । ୧୮୧ ।
ଶୁଣ ଆହେ ଚଇତନ ମହାଭାରଥ ଯେ ସଂସାର ଜନ ହିତା
ଜନ୍ମେ ଜନ୍ମେ ଭାବଇ ମୁଂ ନାରାୟଣ ସଂଗତା । ୧୮୨ ।
ଧବଳ କମଳ କୁଂକୁମ ମାଳ ଉପୃକ ବର୍ଣ୍ଣଗୋଟି
ମମହୃଦେ ବଦନ୍ତୁ ସୁରଭି ପଦ୍ମ ଫୁଟି । ୧୮୩ ।
ଭୂକୁସାର ବଲ୍ଲଭ ପ୍ରିୟବକ୍ଷର ପ୍ରାଣନାହା
ଶୂଦ୍ରମୁନ ସାରୋଳ ଦାସ ହୃଦଗତେ ଭାବଇ ତାହା । ୧୮୪ ।
ଅଗସ୍ତ ନାମେଣ ସେ ସେବଣ ମହରଷି
ପବନ୍ତ ବାଲଖିଲ୍ୟା ସେ ପିତାମହର ଶିଷି । ୧୮୫ ।

---

୧୭୬।୨ ତଦ ହମନ୍ତେ ହର ନର୍ମଳ ଆସନ ବାଛି ।—କ, ଣ, ଠ, ଖ
୧୮୦।୧ ଅନ୍ୟାଗତ ସହୋଦ୍ର ଡାହାଣେ ବଳଭଦ୍ର ।—ଦ, ଫ, ଣ, ଢ
୧୮୦।୨ ମଧ୍ୟେଣ ପିତାମହ ଯେ ଅଟନ୍ତି ସଉଭଦ୍ରେ ।—କ, ଦ, ଖ

ଅନାଗତ ପୁରୁଷ ଅବ୍ୟକତ ଅସଙ୍ଗ
ନିରାକାର ପୁରୁଷ ତୁ ଅନନ୍ତ କାଳ ବଙ୍ଗ । ୧୮୬ ।

ପରମ ଯୋଗେଶ୍ୱର ମହାଭାଗ୍ୟଂ ଅଟଇ
ପ୍ରେକାଲପ୍ରେ ଯାହାର ମନୁକଳ୍ପ ଲୁଟଇ । ୧୮୭ ।

ଦ୍ୱିବା ରବ ଅପରଚେକ ଯେବଣ ମହର୍ଷି
ସେ ମୁନିଂକର ତଲପ୍ରେ ମୁଂ ହୃଦଗତେ ଭାଷେ । ୧୮୮ ।

ସେ ବ୍ରହ୍ମବେତ୍ତା ମହର୍ଷି ଅଗସ୍ତିଂକର ପାଦତଳେ
ବାରିନିଧି ଗଣ୍ଡୂଷ କଲେ ଯେ ଖେଡରର କୁତୂହଳେ । ୧୮୯ ।

ଜନ୍ମେ ଜନ୍ମେ ଦାସ ମୁଂ ସେ ମୁନିଂକ ଚରଣେ
ଶୂଦ୍ରମୁନି ସାରଳ ଦାସ ହୃଦେ ଭାବନ୍ତି ଅନୁକ୍ଷଣେ । ୧୯୦ ।

। ୫୧୮ ।

---

୧୮୬।୧ ଅନାଗତ—ଅଣାକାର, ଆକାରଶୂନ୍ୟ ।

## କୁରୁସୈନ୍ୟ ଦେଖି ଉତ୍ତରର ପଳାୟନ, ଅର୍ଜ୍ଜୁନଙ୍କ ପଶ୍ଚାତ୍‌ଧାବନ ଓ ନାନାବିଧ ଉପଦେଶ ଏବଂ କୁରୁବୀରଙ୍କର ଅନୁମାନ

ଅଗସ୍ତି ଋଷି ନାମେଣ ସେହୁଂ ବ୍ରହ୍ମବେତ୍ତା
ସେ ମୁନି ବକତା ବଇବସ୍ୱତ ମନୁ ଶ୍ରୋତା । ୧ ।
ମନୁ ପଚାରିଲେ ଶୁଣିମା ଅଗସ୍ତି ହେ
ଯେତିକି ଶ୍ରୀ ମହାଭାରଥ ଚେତନା ସନ୍ଦେହେ । ୨ ।
ଉତ୍ତରକଇଂ ଯେ ବୃହନ୍ନଳା ଘେନିଗଲା
କହିବା ମହାତମା ସେ କେମନ୍ତ ହୋଇଲା । ୩ ।
ଅଗସ୍ତି ବୋଇଲେ ଅରୁଣ ପ୍ରକାଶେ ଯେ ରଜଣୀ ପାହାନ୍ତି
ଅଳପ କୁହୁଡ଼ି ଯେ ଧୂମ୍ର ପ୍ରାୟେ ବିଧଂସନ୍ତି । ୪ ।
ଅଡ଼ାଅ ରେ ଅଡ଼ାଅ ରେ ବୋଲି ଶୁଭଇ ମହାଗୋଳ
ହେମାରବ ନାଦେ ଯେ ଗୋରୁଂକର ଚହଳ । ୫ ।
ରଥଂକର ଢଡ଼ବଡ଼ି ହାଥୀଂକର ଘଣ୍ଟାରବେ
ଘଣ୍ଟା ରବ ଶବଦେ ଯେ ବହଉନ୍ତି ଗାବେ । ୬ ।
ଅଶ୍ୱଂକର ହ୍ରେଷାରବ କୁହୁ କୁହୁ ଶବଦେ
ସିନ୍ଧୁ ଘୋଷ ଜାଣି ଶୁଭଇ ଘୋରନାଦେ । ୭ ।
ଉତ୍ତର କୁମାର ବୋଇଲା ରଥ ରୁହା ବୃହନ୍ନଳା
ବଣା ହୋଇଲୁକି ଦିଗ ବାରିତ ନୁଆର । ୮ ।

୨।୨ ଇତି ଶ୍ରୀ ମହାଭାରଥ ଯେ ଚେତନା ସନ୍ଦେହେ । — ଘ, ଣ
୨।୨ ସେହୁ ଯେ ମହାଭାରଥ ଅଟେ ବଡ଼ାଇ ସନ୍ଦେହେ । — କ
୪।୨ ଧବଳ କମଳ ସୁରଭି ପଲ ଚନ୍ଦ୍ରମା ପ୍ରାୟେକ ଦିଶନ୍ତି । - ଚ, ଥ

କଳାତ ନୁଆରଲୁ ଯେ ରପୁଣୀର କାଳେ
ନଯୂତ୍ତେ ପ୍ରବେଶ ଯେ ଆସି ହୋଇଲୁ ସିନ୍ଧୁକୂଳେ । ୯ ।
ଆମ୍ଭେ ବହନ ହୋଇ ଯିବା ହୋ କୁରୁବଳ ଥାଠକୁ
ଭୁଞ୍ଜିତ ରଥ ବାହିଲୁ ସିନ୍ଧୁ ଉତରକୁ । ୧୦ ।
ଶୁଣି ହସିଲେ ଯେ ପାଣ୍ଡବ ବୃହନ୍ନଳା
ସେହା ସ୍ଥିର ବୋଲେ କମ୍ପା ମୁଂ ଅଇଲି ରଥ ଚଢି । ୧୧ ।
ସନ୍ୟ କ ସମୋଦ୍ର ବୋଲି ଯେବେ ସେ ନ ଚାହିଁଲ ଭଲେ
କିସ ଯୁଦ୍ଧ କରିବ ସେ ଭୀଷ୍ମ ଦ୍ରୋଣଂକର ଭୁଲେ । ୧୨ ।
ଚମ୍ପାଇ ରଥ ଯେ ବାହଇ ସବ୍ୟସାଚି
ଉତ୍ତର କୁମାର ତନ୍ତ୍ରଂ ବନ୍ଧୁତ କରଇ ବାଚି । ୧୩ ।
ନଯୂତ୍ତେ ପ୍ରବେଶ ଯନ୍ତ୍ରଂ ହୋଇଲାକ ରଥ
ଆକାଶୁ ଖସାଇଲା ମାତଲି ପୁଷ୍ପକ ଯେମନ୍ତ । ୧୪ ।
ସେକଦୃଷ୍ଟା କରି ଯେ ବୃହାନ୍ତ କଉରବେ
କର୍ଣ୍ଣ ବୋଇଲା ରଥ ସେକ ଆସଇ ଗାଙ୍ଗେବ । ୧୫ ।
ଅମର ବାରସ୍ୱସ୍ତିକ କରଣ ସେହ୍ନ ତେଜ୍ୟା
କ ଅବା କଉତୁକେ ହିଣ୍ଡଇ ଦେବରାଜା । ୧୬ ।
ମାନଗୋବିନ୍ଦ ବୋଇଲା ସେ ନୋହଇ ମଘବା
ଅଇରାବତ ଆରୋହି ଯେ ଚଳଇ ସୁରଦେବା । ୧୭ ।
ଶକୁନି ବୋଇଲା ସେ ଅଟଇ କୋବେର
ଶଲ୍ୟ ବୋଇଲେ ସଞ୍ଜେକୁ ହବାନ ନାହିଁ ତ ସେହାର । ୧୮ ।
ଧୃଶାସନ ବୋଇଲା ସେ ଦେବ ତ୍ରିଲୋଚନ
ମହେଶ୍ୱର ରୂପେ ସେ ଯେ କରନ୍ତି ଗମନ । ୧୯ ।
ଅଶ୍ୱତ୍ଥମା ବୋଇଲେ ସେ ନୋହନ୍ତି ମହାଦେବ
ରୁଦ୍ର ଦେବତା ହୋଇଥିଲେ ସଙ୍ଗେ ଥାନ୍ତାଟି ବୃଷଭ । ୨୦ ।
ଦୁର୍ଯୋଧନ ବୋଇଲା ସେ ଅଟଇ ଦ୍ୱିଯୋନ
ମରୁତ ବାହାନ ନାହିଂ ବୋଲି ନାସ୍ତି କଲା ଶକୁନି । ୨୧ ।

---

୧୦।୨ ଭୁଜ୍ଜିତ ରଥ ବାହିଲୁ ସିନ୍ଧୁ ଉତ୍ତର କୂଳକୁ ।—ଣ, କ, ଜ, ଦ, ଟ, ଡ, ଠ

ଦ୍ରୋଣେ ବୋଇଲେ ଇନ୍ଦ୍ର କି ଗୋବିନ୍ଦ କି ଅର୍ଜୁନ ଯେ ତିନି
ଆନ କେ ଆସନ୍ତା କି ଯେମନ୍ତ ରଥ ଘେନି । ୨୨ ।
ମାନଗୋବିନ୍ଦ ବୋଇଲା ମୁଂ ଇନ୍ଦ୍ର ଦେବତାରେ ନେ'ହଇ ହିଂସା
ସେ ମୋର ସମରେ କମ୍ପେ ଆସିବେ ଜମ୍ବୁଭେଦୀ । ୨୩ ।
ବାସୁଦେବଂକର ବାନ୍ଧବ ମୁଂ ବଳରାମଂକର ଦେଖନ୍ତେ
ସର୍ବଦା ଅନୁଗ୍ରହ ସେ କରନ୍ତି ହରି ମୋତେ । ୨୪ ।

ପାଣ୍ଡବେ ମଲେ ଯେ କେବଣ ବନସ୍ତରେ ପଡ଼ି
ଆନ କେ ଆସଇ ଯେ ଯେତିକା ରଥ ଚଢ଼ି । ୨୫ ।

ଯେସନେକ ହୃଗ୍ୱିର କରନ୍ତି ସେ କଉରବେ ସଇନ
ରଥ ଘେନି ସନ୍ନାଘେ ହଜ ଯେ ଫାଲଗୁନ । ୨୬ ।

ଉତ୍ତର ବୋଇଲା ତୁ ବଧୀର କରେ ସଖୀ
ଅଗାଧ ସମୋଦ୍ର ତୁ ହମର୍ଥେ ନ ଦେଖି । ୨୭ ।

ବୃହନ୍ନଳା ବୋଇଲା ତୋହୋର ଅବଳ କି ବେନିଚକ୍ଷୁ
ଯେତେକ ନୟନେ କାହିଂ ସମୋଦ୍ର ଦେଖୁଅଛୁ । ୨୮ ।

ଉତ୍ତର ବୋଇଲା ରଥ ରୁହାଇ ଦେଖ ବୃହନ୍ନଳା
କୂଳକୁ ଆକ୍ରୋଷଇ ଯେ ସମୋଦ୍ର ଲହରୀ । ୨୯ ।
ଦେଖ ହାଦେ ସମୋଦ୍ରେ ଯେ ବୋଇତ ଅପାର
ମଚ୍ଛ କଚ୍ଛପମାନେ ଦେଖ ଚରନ୍ତି ସାହେର । ୩୦ ।

ଭିତ୍ତରକଇଂ ଦେଖୁଥିର ଜଳପାଣି
ଛିଦ୍ରେଦ୍ର ଘୋଷ ଶୁଭଇ ପ୍ରଳୟାନ୍ତକ ଜାଣି । ୩୧ ।
ହୃଗ୍ୱିରଇ ଧନୁର୍ଜ୍ୟେ ମୁଂ ଅଚଳଇ ଅନମିତେ
ଯେତ୍ତେଷଣି ପଳାଇବ ଯେ କଉରବେ ବଳ ଦେଖନ୍ତେ । ୩୨ ।
ଥାଠକୁ ସମୋଦ୍ର ଯେ ବୋଲଇ ଦୃଷ୍ଟିମାହେ
ଆବର ସମର ଯେ କରିବ କେମନ୍ତେ । ୩୩ ।

ଶୁଣ ହୋ ଉତ୍ତର ବୋଲଇ ବୃହନ୍ନଳା
ସାଗର ସତ ଯେ ତୋହୋର ବଚନ କେତ୍ଥ ନାସ୍ତି କରିପାର । ୩୪ ।

ନଚସ୍ତେ କ୍ରୁର ସାଗର ସ୍ତେ ଅଟଇ ସଇନ
ସିନ୍ଧୁ ଘୋଷ ପ୍ରାୟେ ଶୁଭଇ ମୁଖଧୁନ । ୩୫ ।
ବାବୁ ବୋଇଡ ବୋଲ ତୁ ବୋଇଲୁ ଯହିଁଙ୍କ
ଭଥମାନେ ସେତୁହି ତୁ କମ୍ପାଇ ନ ଦେଖ । ୩୬ ।
ମଚ୍ଛ କଚ୍ଛପ ତୁ ଯାହା ବଗୁରୁ ହୃଦଗତେ
ଗଜ ଅଶ୍ୱମାନେ ତ ସେ ଅଟନ୍ତି ଯୁଗତେ । ୩୭ ।
ତୁ ଯେ ବୋଇଲୁ ଭିତରେ ଥିରପାଣି ଭଲ
ଥାଠ ବେଢ଼ି ଛନ୍ତି ଚୌଦୋର ଗୋରୁପଲ । ୩୮ ।
ଧବଳ କମଳ ସେ ଯେ ଅଟନ୍ତି ଗୋଧନ
ଥିରଜଳ ପ୍ରାୟେ ସେ ବଶନ୍ତି ବଦ୍ୟମାନ । ୩୯ ।
ଲହଡ଼ି ବୋଲ ତୁ ଯାହା ବୋଇଲୁ ହୃଦଗତେ
ରଥଂକର ଉପରେ ଯେ ଉଡ଼ନ୍ତି ପାତାଙ୍ଗ ନେତେ । ୪୦ ।
ଧୃତରାଷ୍ଟ୍ରର ନନ୍ଦନ ସେ ଅଭୟେ ଚୂଡ଼ାମଣି
ଅପ୍ରମିତ ଥାଠ ତାହାର ଅଷ୍ଟାଦଶ କ୍ଷେହିଣୀ । ୪୧ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଭୂରିଶ୍ରବା ସୋମଦତ୍ତ ବାଲମ୍ବିକ
ଇନ୍ଦ୍ର ଗୋବିନ୍ଦ ଜଣିମାକୁ ସାମରଥ ସ୍ତେକୁସ୍ତେକ । ୪୨ ।
ଉତ୍ତର ବୋଇଲ ରହ ରହ ବୃହନ୍ନାଳୀ
ସ୍ତେ ସେ ମାନଗୋବିନ୍ଦ କଉଁରେବ ଅଧିକାଶ୍ରୀ । ୪୩ ।
ତନ୍ତ୍ରୀପାଳ ଗୋପାଳ ସ୍ତେମନ୍ତ ବୋଲ କହିଲ କ ମୋତେ
ମୁଛିଂ ବଗୁଭଲ ଅବା ଅଇଲେ ଜଣ ଗୃହ ପାଞ୍ଚ ସାତେ । ୪୪ ।
ଗୋଧନ ପଲକୁ ଯେ ନେଉଛନ୍ତି ଉଡ଼ାଇ
ତେମନ୍ତ ପ୍ରାୟେ ବୁଝି ଅଇଲଇଂ ବେଗେ ମୁହିଂ । ୪୫ ।

---

୪୩।୨ "ସ୍ତେ ସେ ମାନଗୋବିନ୍ଦ କହିରେବ ଅଧିକାଶ୍ରୀ" ।
ପାଠପରେ 'ଛ, ଅ' ରେ ଅଧିକା ପାଠ :—
ପଞ୍ଚୁକଟକର ଠାକୁର ସ୍ତେହାଂକର ଂଶତେ ଭ୍ରାଅ
ଯାହାର ପସ୍ଥାଣ କରନ୍ତେ କମ୍ପଇ ମେରୁଗିର ସହିତ ।
୪୫।୨ ତେମନ୍ତ ପ୍ରାୟେ ବୃଝି ଉଦ୍ଯୋଗ କଲି ମୁହିଂ ।—ଛ, ଘ, ଟ, ଫ

ସେତେ ବଳ ଧରି ଯେବେ ବାହୁଳ କୁରୁପତି
ସେକା କଇବ୍ରତକେ କାହିଁ ସମୋହ ହୋଏ ମତି । ୪୬ ।
ନବଜଣମାଡ଼ି ରହିଅଛୁ ଯେବଣ ଥାଠ
ମୁହିଁ କେମନ୍ତେ ସେକା ସମର କରିବଇଁ ବାଳଗୃହ । ୪୭ ।
ଅର୍ଜୁନ ବୋଇଲା ଶୁଣସି ସେକା ଜଣଂକର ମହିମାଂ
ସେକା ସପତ ସାଗର ଗଣ୍ଡୂଷ କଲେ ଯେ ଅଗସ୍ତି ମହାତମା । ୪୮ ।
ସେକା ଜୟନ୍ତକ ତୋଳିଲା ଅଚଳ
ସେକା କ ଳୀ ଯେ ମନ୍ଥିଲା ସପତ ସିନ୍ଧୁ ଜଳ । ୪୯ ।
ସେକା ଶ୍ରୀମସେନକେ ଯେ ନାଶଗଲା ଜାଗ
ସେକା ପରଶୁରାମେକ ସେକେ ଇଶି ବାର ପୃଥୀ ନିକ୍ଷତ୍ର କଲା । ୫୦ ।
ହେତୟା ଯୁଗରେ ପୁଣ ମହାବଳୀ ହନୁ
ରାକ୍ଷସ ବଳ ଧଂସିଲା ସେକା ପବନର ତନୁ । ୫୧ ।
ସେକା ଗରୁଡକେ ଯେ ଜଡଙ୍ଗ ବଳ ଧଂସି
ସେକାସେ ଅନେକ ବଳ ନାଶିଲେ ଦେବକାଶୀ । ୫୨ ।
ବୃହନ୍ନାଗର ବଚନେ ଯେ ଉତ୍ତର ବୋଇଲା
ସେହାଂକର ଭୁଲେ କସେ ସେଥେ ବଳବନ୍ତ ହୋଇଲା । ୫୩ ।
ଶୁଣିକରି କୋପବାକ୍ୟ ଯେ କହଇ ବୃହନ୍ନାଗ
ରାଜାର କୁମାର ତୋତେ ବୋଲ ତ ନୁଆରେ । ୫୪ ।
ସେତେକ ବଚନେ ଯେବେ ନାହିଁ ପରାକ୍ରମ
କଉରେବ ବଳକୁ କମା ଇଚ୍ଛାକଲୁ ସଂଗ୍ରାମ । ୫୫ ।
ଚବଳ ଚୂର ହୋଅନ୍ତି ଯାହାର ପଣିଲେ ଥାଠ
ନଉସହସ୍ର ରାଜା ଜିଣି ଯେ କଲା ସେକପାଟ । ୫୬ ।
ମାତା ପିତାକୁ ଯେ ନ କରଇ ନମସ୍କାର
ମାନଗୋବିନ୍ଦ ବରିଧୂ ବାନା ଅଟଇ ଅନୁବ୍ରତେ ଯାହାର । ୫୭ ।

---

୪୮।୨ ସେକା ଛିରେଦ୍ର ଗଣ୍ଡୂଷ କଲେଟି ଅଗସ୍ତ ମହାତମା ।—
ଦ, ଛ, ଙ୍, ପ, ଘ

ଉତ୍ତର ବୋଇଲା ମୁଂ ଅଜ୍ଞାନ ତୁ ଯେବେ ଯୋଦ୍ଧା ଜାଣୁ
ଅଗାଧ ସମୋଦ୍ର ଭିତରକୁ କମ୍ପେ ମୋତେ ଆଣୁ । ୫୮ ।
ରାଜାର କୁମାର ମୁଂ ବୟସେ ବାଳୁତ
ମୋତେ ପ୍ରମାଦ ପଡ଼ିଲେ ତୋତେ ବାତ ହେବ ଉକତ । ୫୯ ।
ମସଦେଶ ମଚ୍ଛଦେଶର ଯେତେକ ସମ୍ପତ୍ତି
ବିରାଟ ଅନ୍ତରେ ମୁଂ ହୋଇବି ଆଧିପତି । ୬୦ ।
ଯେତେବଡ଼ ସମ୍ପଦ ମୁଂ ଗୁଡ଼ିମି କେମନ୍ତେ
ତୁ ସଖୀ ବୃହନ୍ନଳା ଗୋ କଟାଳ ନ କରସି ମୋତେ । ୬୧ ।
ନଅନ୍ତୁ ଗୋଧନ ମୋହୋର ପ୍ରିୟଜନ ନାହିଂ ତେଣେ
ବାହା ମୋହୋର ରଥ ପିଅର ଅଛନ୍ତି ଯେଣେ । ୬୨ ।
ବୃହନ୍ନଳା ବୋଇଲେ ତୁ ଜୀବନକୁ କଲୁ ଇଚ୍ଛା
ଅସ୍ତାନେ ଶାଢ଼ୀ ଘେନ ଯେ ହୋଇଲୁ କଟକ ରକ୍ଷା । ୬୩ ।
ଆହେ। ଉତ୍ତର କନ୍ୟାଂକର ପୁରେ ତୁ ପ୍ରତଗ୍ୟାଂ କଲୁ ଯେତେ
ମହା ସାର୍ଥିକୁ ଛତ୍ରୀପ୍ରାୟେ ମଣିଥିଲ ତେତେ । ୬୪ ।
ଛତ୍ରୀକୁଳେ ବାକୁ ତୁ ଯେ ହୋଇଅଛୁ ଜାୟେ
ଅନ୍ତେ ଦେଖିଲି ତୋତେ ମୁଂ ଅଜାଯୂଥ ପ୍ରାୟେ । ୬୫ ।
ମୁହିଂ ତୋତେ ଯେ ଦୃଢ଼ କରାଇଲି ବହୁତ
ବୋଇଲି ଶତ୍ରୁକୁ ନ ଜିଣିଲେ ନ ବାହୁଡ଼ଇ ମୋର ରଥ । ୬୬ ।
ସିଂହ ପ୍ରାୟେ ହୋଇ ଯେ ମିଳିଲୁ ଅ.ଠ କତ
ଯୁଦ୍ଧ ଗୋଟାପ୍ୟେ ଯୁଝିକେନା ବାହୁଡ଼ି ଲେଉଟୁ ଖ୍ୟାତ । ୬୭ ।
ସାରଥି ପଣେ ମୋହୋର ଯେସନେକ ବୁଦ୍ଧି ଅଛି
ମୋହୋର ଥିଲେ ତୋତେ ପ୍ରମାଦ ନାହିଂ କଛି । ୬୮ ।
ଉତ୍ତର କୁମାର ବୋଇଲା ତୋତେ ପଶିଲଇଂ ଶରଣ
ମୋତେ ତାରିଲେ ତୋତେ ଅଛି ଅପାର କାରଣ । ୬୯ ।
ଅପ୍ରମାଦେ ଯେବେ ମୋତେ ନେଇ ପିତାକଇଂ କରାଇପ ରୁ ଭେଟି
ଶିରେ ଅଭିଷେକ ତୋତେ କରାଇବ ରତ୍ନକୋଟି । ୭୦ ।

---

୬୩।୧ ଆସ୍ତାନେ ଶାଢ଼ୀ ଘେନ ହୋଇଲୁ କଟକ ପରିଛା ।—ଟ, ଅ, ଡ, ପ

ଲକ୍ଷେ ଗୋଧନ ତୋତେ ଦେବଇଂ ଗାଣ୍ଡ ଧେନୁ
ଲକ୍ଷେକ ଗଜ ଦେବ ତୋତେ ଭଗନ୍ତ କର୍ମେ ନ ଯେନୁ । ୭୧ ।
ଲକ୍ଷେକ ଘୋଡ଼ାର ତୋତେ ଦେବଇଂ ତୁରଙ୍ଗ
ପ୍ରବାଳ ଚନ୍ଦ୍ରମଣ୍ଡେ କରବ ତୋର ଅଙ୍ଗ । ୭୨ ।
ଆହୋ ବୃହନ୍ନଳା ଅସମୟ କାଳେ ତାରନ୍ତ ଯେବଣ ପ୍ରାଣୀ
ପରମ ପୁରୁଷ ତୁଲେ ତାହାନ୍ତେହିଂ ଗଣି । ୭୩ ।
ବନ୍ଦେ ଚରଣ ଯେନ ତୋତେ ଧରଇ ବୃହନ୍ନଳା
ଏବେ ଦୁସହ କଷଣୁ ମୋତେ ଯେନହାଅ ତାର । ୭୪ ।
ବୃହନ୍ନଳା ବୋଇଲା ଯେବେ ଅଇଲୁନ ଏତେ ଧୂର
ଯାନ୍ତଏ ହାବୋଡ଼ା ହାବୋଡ଼ି ହେଉକନା ରଜାଂକ ଗ୍ରାମୁର । ୭୫ ।
ଆହୋ ଉତ୍ତର ପନ୍ନଗା ନାରାୟଣ ଏ ମାନଚକ୍ରବର୍ତ୍ତି
ଉଭୟେ ଦ୍ରଶନେ ତୋହୋର ଫିଟିବ ଦୁର୍ଗତି । ୭୬ ।
ଉତ୍ତର କୁମାର ବୋଇଲା ମୁଂ ମନ୍ଦକୃତ୍ୟ କଲ
ଦେଖି ଦେଖୁ ମୁହିଂ ଜଳପ୍ରଭ ପିଠିରେ ଭେଳା ଚଢ଼ିଲି । ୭୭ ।
କେଉଁର ତୁଲେ ପୀରନ୍ତ ସେ ବଢ଼ାଇଲି ମୁହିଂ
ଧର୍ମ ବୁଡ଼ାଇଲି ମୁହିଂ ନିର୍ଲଜେ ମରଣ ହୋଇ । ୭୮ ।
ଦେଖୁ ଦେଖୁ ନପୁଂସେକ ମୁଂ ଅଇଲଇଂ ତୁଲେ
ଅଜାଣିକ ମେଳେ ଆସି ଯିବଇଂ କ ଆଉ ଭଲେ । ୭୯ ।
ବୃହନ୍ନଳା ବୋଇଲା ଶୁଣ ହୋ ମହାରଥୀ
ସଂଗ୍ରାମେ ଓହୋଳଲ ଭେଟେ ଅଶ୍ୱମେଧ ଯଗ୍ୟଂ ଫଳଶ୍ରୁତି । ୮୦ ।
ବଳୀବେଣୁ ମାନଧାତା ଜାନୁଘଣ୍ଟ ପୁରୁରବା ପରଶୁରାମ ଛଡ଼ ଚକ୍ରବର୍ତ୍ତି
ଏମାନେହେଂ ଗଲେ ଏବେ ରହିଅଛଇ କୀର୍ତ୍ତି । ୮୧ ।
ଏତେ ବୋଲି ରଥ ଯେ ବାହିଲା ଚମ୍ପାଇ
ଉଭୟେ ଉତ୍ତର କୁମାର ରଥଂ ପଡ଼ନ୍ତିକ ତେଇଂ । ୮୨ ।

---

୭୨। ସର୍ବାଙ୍ଗେ ରତ୍ନ ଆଭରଣ କରବ ତୋର ଅଙ୍ଗ ।—ତ, ଥ, ଣ
୭୭। ଦେଖୁ ଦେଖୁ ଜଳପ୍ରଭ ପିଠରେ ବସିଲି ।—ଣ, ଡ, ଖ, କ

ପାଞ୍ଚଭେଣ୍ଡା ପ୍ରେକ ଭେଡ଼ାପ୍ରେ କରି ପଳାଇଲ କୁମରମଣି
ଦେଖିଣ ହସଇ ସେ ବୃହନ୍ନଳା ମନେ ଗୁଣି । ୮୩ ।
ନିର୍ଲଜ ପାମର ପ୍ରେ ପ୍ରେଦାର ପାପପୁଣ୍ୟକୁ ନାହିଁ ଗ୍ୟାନ
ଉଭୟ ସଙ୍କଟ ପଡ଼ ମୁଁ ହୋଇଲ ପ୍ରତିଗ୍ୟା ହାନ । ୮୪ ।
ମୋହୋର ଦେଖନ୍ତେ ଯେବେ ଗୋଧନ ହରଣ ହୋଇବ
ଆମ୍ଭନ୍ତ ଆଶ୍ରେକର ବିରାଟ ସଂପଦ ନାଶଯିବ । ୮୫ ।
ମୁହିଁ ଯେବେ ରାଜ୍ୟହୁଂ ନ ଆସନ୍ତି ଅଥବା
ଗ୍ୟାନେ ଅଗ୍ୟାନେ ମୋହୋର କର୍ମେ ଦୋଷ ହୋଇଅନ୍ତା ଟି ଅବା । ୮୬ ।
ପ୍ରତିଗ୍ୟା ସାମର୍ଥ୍ୟ ଦେଖିଲ ଧର୍ମ୍ମଜ ପଣେ
କାଳେ ହାନିବାର୍ଥ ହୋଇ ନ ଟେକିଲ ବଡ଼ପଣେ । ୮୭ ।
ମୁଂ ଯେବେ ବାହୁଡ଼ଣ କରିବି ଗବନ
ଠାକୁରେ କୋପ କରିବେ ଛତ୍ରୀକୁଳକୁ ଦୂଷଣ । ୮୮ ।
ସହଦେବ କହିଲ ଅଗ୍ୟାତବାସ ଅଛି ଦିନ ଯେ ଅଳପ
ବହୁତ ଗଣନ ଆଉ ଅଛଇ କଣେକଳ୍ପ । ୮୯ ।
କରିବି ସମର ମୁହିଁ କଉରବଂକର ଭୁଲେ
ଧର୍ମ ଉଦ୍ଧତ ହୋଇବନା ଗୋଧନ ଛଡ଼ାଇଲେ । ୯୦ ।
ମୁହିଁ ଅବା ପ୍ରେଥୁଂ ଆଜ ବାହୁଡ଼ ଯିବି ଘୁଞ୍ଚି
ଭୀମସେନ ଠାକୁରଂକ କୋପକୁ ଜୀବନ କାହାର ଅଛି । ୯୧ ।
ପ୍ରେତେକ ବିଚାରି ଯେ ପାଣ୍ଡବ ହିବଞ୍ଚ
ଉତ୍ତର କୁମାର ପଳାବନ୍ତେ ବୃହନ୍ନଳା ଗୋଡ଼ାଇ ପଛେ ପଛ । ୯୨ ।
ଛତ୍ରୀ ବେଶ ଅଳଂକାର କବରୀ ଭାର ଖୋଷା
ପଯୁନରେ ନେପୁର ଗମନେଣ ମନ୍ମରୁପା । ୯୩ ।
କର୍ଣ୍ଣର ହାଥେ ମାନଗୋବନ୍ଦ କରତାଳ ଦେଇ
ଉପହାସ କରିଣ ଯେ ପୁଛିଲ କୁରୁସାଇଁ । ୯୪ ।
ଛତ୍ରୀ ଗୋଟିପ୍ରେ ଗୋଡ଼ାଇ ଅଛି ଅଡ଼ପ୍ରେ ସୁବେଶ
ବିଦ୍ୟାଧର ପରିପ୍ରେ ତ ପଳାଇ ପୁରୁଷ । ୯୫ ।

---

୮୯।୨ ବହୁତ ଦିନ ଚଳନ ଉନଦିନ ଅଛଇ ଛଣେକଳ୍ପ ।—କ, ଖ, ପ

ଶୁଣି ପ୍ରଶ୍ନ ଉତ୍ତର ହଲକ ମାତୁଳ ଶକୁନ
ବିରାଟ ଆସୁଥିଲେ ଶରଣ ନିମନ୍ତେ ଶ୍ରୀକୃଷ୍ଣଙ୍କୁ ଘେନ । ୯୬ ।
ଭୟେଣ ଘୁଞ୍ଚିଲ ସେ ଦୁହାର ବଳ ଦେଖି
ପଳାଇ ବିରାଟ ଯେ ଯାନ ବାହାନ ଉପେକ୍ଷ । ୯୭ ।
ନିର୍ଭୟେ ସ୍ଥିଶି ସେ ଯେ ପ୍ରକୃତ ମହାଦୁଷ୍ଟା
ଚେଣ୍ଡ଼କର ବିରାଟଙ୍କୁ ଗୋଡ଼ାଇ ଶ୍ରୀକୃଷ୍ଣା । ୯୮ ।
ଶ୍ରୀକୃଷ୍ଣ ବୋଇଲେ ଯେ ଦ୍ରୋଣଙ୍କର ସନ୍ନିଧିର
ପଳାନ୍ତାକୁ ଗୋଡ଼ାନ୍ତା କେ ତୁମ୍ଭେ କେମନ୍ତେ ବୀର । ୯୯ ।
ଶୁଣିଣ ପ୍ରଶ୍ନବାକ୍ୟ ଯେ ଭରଦ୍ୱାଜଙ୍କର ତନୁ
ପଳାନ୍ତା ଲୋକ କେତି ଆମ୍ଭେ ତ ନଜାଣୁ । ୧୦୦ ।
ଗୋଡ଼ାନ୍ତା ଲୋକ ତ ସରୂପ ଯୁବତି
ପ୍ରତ୍ୟକ୍ଷେ ଦିଶଇ ତ ଅର୍ଜୁନର ପାଦଗତି । ୧୦୧ ।
ଶ୍ରୀକୃଷ୍ଣ ବୋଇଲେ ହୋ ସରୂପ ପ୍ରେତ୍ତ କଥା
ଗୁରୁଙ୍କର ବଚନ କେ କରିବ ଅନ୍ୟଥା । ୧୦୨ ।
ଶ୍ରୀକୃଷ୍ଣ ଦ୍ରୋଣଙ୍କର ବଚନେ କଉରେବ ଉପହାସି
ଗୋଧନ ହରଣେ କେ ବୋଇଲ ତୁମ୍ଭନ୍ତ ଆସି । ୧୦୩ ।
ପ୍ରେତେ ବଡ଼ ଛନ୍ଦୀ ହୋଇ ଗ୍ୟାନ ଯେ ଉପେଖି
ହିବସେ ପାଣ୍ଡବନ୍ତ ସପନେ ତୁମ୍ଭେ ଦେଖ । ୧୦୪ ।
ଅଗ୍ୟାନ ଅପଣ୍ଡିତ ଅଭାଗୀ ଅମର୍ଯ୍ୟାଦା
ଅନୁବ୍ରତେ କରୁଥାଅ ତୁମ୍ଭେ ପାଣ୍ଡବଙ୍କର ଚିନ୍ତା । ୧୦୫ ।
ଗୃହିଦିଗର ବାରତା ଡଗରେ ଗୁପତେ କହିଲେ
ପାଣ୍ଡବଙ୍କର ବର୍ତ୍ତିଚହ୍ନ ଖୋଜି ନ ପାଇଲେ । ୧୦୬ ।
ବନସ୍ତେଣ ପାଣ୍ଡବେ ମଲେ ଅନ୍ନ ଶାନ୍ତି
ଅର୍ଜୁନଙ୍କୁ ମାରଣ ଦାନବେ ନେଲେକ ଦ୍ରୋପଦୀ । ୧୦୭ ।
ନକୁଳ ସହଦେବ ମଲେ କେଣେ ପଡ଼ି
ଅର୍ଜୁନ ଅର୍ଜୁନ ବୋଲିଣ ତୁମ୍ଭେ ଅହର୍ନିଶି ଲୋଡ଼ି । ୧୦୮ ।

---

୧୦୫।୨ କଉରେବଙ୍କ ବଚନ ଶୁଣି ପାଣ୍ଡବେ କର ଚିନ୍ତା ।—କ, ଦ, ପ, ଢ

ଅଥବା ପାଣ୍ଡବେ ଥିବେ ଯେବେ ବ୍ରତି
ଅଜ୍ଞାତବାସ ଅଛି ତିନଦିନ ଲାଗନ୍ତି । ୧୦୯ ।
ବିଚେତ କହିଲେ ଯେ ନୋହିଲା ତାହାନ୍ତ ଭଲ
ଗୃଣଗ୍ରାହୀ ନାଥ ହୋଇ ଯୋଦ୍ଧାନ୍ତ ନାଶକଲ । ୧୧୦ ।
ପାଣ୍ଡବ ପାଣ୍ଡବ ବୋଲି ପାଉଥାଅ ବୋଦ
ପୃଣିହିଂ ପାଣ୍ଡବେ ଯେ ମରନ୍ତୁ ବନେ ସେବ । ୧୧୧ ।
ଭୀଷ୍ମେ ବୋଇଲେ ବରଷେ ତେରଦିନ ଅଜ୍ଞାତବାସ
ବରଷେ ସମାପତ ହୋଇଲାନି ବଳିଲା ଦଶ ଯେ ଦିବସ । ୧୧୨ ।
ଯୁଗତେ ସାତଦିନ ହାଦେ ଗଲାନି ବଳି
ତୁମ୍ଭର ଲେଖାରେ ଯେ ତିନଦିନ ଲାଗନ୍ତି କରି । ୧୧୩ ।
ଭୀଷ୍ମେ ବୋଇଲେ କିଛି ନ ବୋଲନ୍ତି ଦ୍ରୋଣେ
ଅଥବା ଅର୍ଜୁନ ହୋଇଲେ ଜାଣି ସିନା ପ୍ରେକ୍ଷଣେ । ୧୧୪ ।
ବହୁତ ଉପହାସେ ଦ୍ରୋଣ ହୋଇଲେ ତୁନ୍ନି
ଉତ୍ତର କୁମରକଇ ଗୋଡାଇ ଧଇଲା ଫାଲଗୁନ । ୧୧୫ ।
କୋଳ କରିଣ ଅର୍ଜୁନ ଧଇଲା ଆକ୍ରୋଷ
ଶିରେଣ କର ତାଡ଼ି ଉତ୍ତର କୁମର ବସି । ୧୧୬ ।
ଛାଡ ଛାଡ ବୃହନ୍ନଳା ଦଇନ କରଇ ତୋତେ
ମହାଭୟ ଲାଗିଲା ମୋତେ ଧରୁଛୁ କିସ ଅର୍ଥେ । ୧୧୭ ।

---

୧୧୭।୨ 'ଧରୁ ଛୁ କିସ ଅର୍ଥେ' ଏହି ପାଦାନ୍ତ ପରେ 'ଦ' ପୋଥିରେ ପାଠ :-
ଭଗତ କରୁଛୁ ସଖି ମୋତେ କର ରକ୍ଷା
ନ ଧର ନ ଧର ସଖି ନ କର ମୋତେ କକ୍ଷା
ନପୁଂସକ ଲକ୍ଷଣ ତୋର ମଲେ ସିନା ଯାଇ
ଯୁଦ୍ଧ କରିବୁ ସମରେ ମରିବାର ପାଇଁ ।
ମୁହିଂ ରାଜପୁତ୍ର ମତ୍ସ୍ୟଦେଶ ଆଧିପତି
କମାଇ ଛାଡ଼ିବ ମୋର ସ୍ନେହେକ ସମ୍ପତ୍ତି ।

ଭକତ ଘେନଣ ମୋତେ କରବା ଉପେକ୍ଷା
ଭର୍ଗବ ଗୋତ୍ର ମୋହୋର ସଖି କରୁ କନା ରକ୍ଷା । ୧୧୮ ।
ଆହୋ ରେଜୁ ଲଗାଇ ଶ୍ୱାନକୁ ହୋ ନେଉଁଠାଇ ପକାଇଲେ
ଜୀବନ୍ତା ଜୀବ ଧର ହୋଇବ କ ତାହା ବେଳେ । ୧୧୯ ।
ବୃହନ୍ନାମ୍ୱ ବେ ଇନ୍ଦ୍ର ତୁ ଯେ ହୋଇଲୁ ନପତ
ଜୀର୍ଣ୍ଣକୂପେ ପଡ଼ିଲା ତୋହୋର ଧର୍ମ ଯେ ସୁକୃତ । ୧୨୦ ।
ସଂଗ୍ରାମ କର ଯେବେ ଜଣିଲ୍ଲ କୁରୁଥାଠ
ଜୀବନ୍ତେ ସାଧୁ ଧୁନ ମଲେଣ ବଇକୁଣ୍ଠ । ୧୨୧ ।
ବାବୁ ସମର କର ଯେବେ ପଡ଼ବୁ ରଣଯଜ୍ଞେ
ବୈକୁଣ୍ଠ ବେହକେ ଆନ ଅଛଇ କ ସ୍ୱର୍ଗେ । ୧୨୨ ।
ବାବୁ ଛୁର୍ବୀବୃତ୍ତପଣ ହାଦେ ବଡ଼ାଇ ଦୁର୍ଲଭ
କସ ଅର୍ଥେ ଉପେଖୁଅଛୁ ତୁ ପ୍ରେତ୍ୟେକ ସୁଲଭ । ୧୨୩ ।

---

## ଶୁଦ୍ଧ ମହାରାଜାଙ୍କର ଉପାଖ୍ୟାନ

ଶୁଣ ହୋ ଉତ୍ତର ହରହର ବଂଶେ ଶୁଦ୍ଧ ବୋଲ ମହାରାଜା
ଆଦ୍ୟ ମୀନ ଗୋରେଖ ବୁଧ ବୋଲ ଗୃର ଯେ ଆତ୍ମଜା । ୧ ।
ବଡ଼ାଇ ପ୍ରତାପୀ ରାଜା ଜଗତେ ବଖ୍ୟାତ
ବଇଦର୍ଭ ଦେଶର ସେ ଅଟଇ ଆଧିପତ । ୨ ।

---

୧୧୮।୨ "କରୁ କ ନା ରକ୍ଷା" ଏହି ପାଦାନ୍ତ ପରେ—ଖ ଓ ଠ ରେ ପାଠ :—
ଅନେକ ବନସ୍ତି ତୋତେ ହୋଇଅଛୁ ସଖି
ମୁହିଂ ମରଣ ଗଲେ ତୁ ହୋଇବୁ କ ସୁଖୀ ।
୧୧୯।୧ ରେଜ୍ଜୁ ଲଗାଇ ଶ୍ୱାନ ଅଟବ୍ୟାକୁ ମେଲଲେ । (ଉ, ଛ, ଙ)
୧୨୦।୨ ଜୀର୍ଣ୍ଣକୂପେ ପଡ଼ିଲା ତୋହୋର ଛୁର୍ବିବୃତ୍ତ । (ଙ, କ)

ଦାନେଣ ସୁରବନ୍ତା ସେ ସାଂଗ୍ରାମେ ସୁରବନ୍ତା
ଅହର୍ନିଶି ପରଥାଠେ ପରବ୍ରହ୍ମେ ଜଗୁଜଚା । ୩ ।
ଲକ୍ଷେକ ବହୁତ୍ତ ସେ ବବସେ ଲଗାଇ
ପୃଥ୍ବୀରେ ଯେତୁକାଙ୍ଗ ଠାକୁର ବୋଲ ବରଧୁ ଭଣାଇଂ । ୪ ।
ଆହୋ ଉତ୍ତର ସେ ଗୃଶକୁମରେ ଯେ ତଆଗଲେ ପିତାକୁ
ହେ ପିତା ଦଣ୍ଡ ନକର ଆଜ ପରବ୍ରହ୍ମକୁ । ୫ ।
ଅପାର ହୋ'ଇଲୁନ ହତ୍ୟାରେ ବବାଦ
ବହୁତ ଛେଦନ ଦୋଷେ ତପ ନୋହୋଇ ସାଧି । ୬ ।
ପୁତ୍ରଙ୍କର ବଚନ ରାଯେ ନ ଶୁଣିଲ୍ଲ କର୍ଣ୍ଣେ
ଅରବନ୍ଦ ଦେଶକୁ ଦଣ୍ଡ ଘେନ ଚଳଲ୍ଲ କୋପମନେ । ୭ ।
ପୁତ୍ରେ ଅପସରଲେ ଯେ ପିତାର ଅତ ପାପେ
ପ୍ରାଚୀ କପାଳେଶ୍ବରେ ବସିଲେ ଯାଇଂ ତପେ । ୮ ।
ଅରବନ୍ଦ ଦେଶକୁ ଶୁକ୍ରରାଜା ଦଣ୍ଡ ଚଳାଇଲେ ଯେତେବେଳେ
ତାହାର ଦେଶକୁ ବାହିଲ୍ଲ ମଗଧ ଆଖଣ୍ଡଳେ । ୯ ।
ଭୁଞ୍ଜା କଟକେ ସେ ମଗଧେଶ୍ବର ପଶି
ଧନଭଣ୍ଡାର ଜର କଲ୍ଲ ଅନେକ ଜନ ଧ୍ବଂସି ! ୧୦ ।
ନବରତନ ଯୁବାସ୍ତ୍ରିମାନନ୍ତ ଯେ ଧର
ରୂପେଣ ଧର ଘେନଗଲ୍ଲ ସୁନ୍ଦର ପୁଅନ୍ତ ଆଦକର । ୧୧ ।
ଗୃଶ କୁମାରେ ସେ ତପ କରୁଥିଲେ
ରାଜ୍ୟରେ ବପତ୍ତି ବୋଲ ତାଙ୍କୁ ନାରଦେ କହିଲେ । ୧୨ ।
ନାରଦଙ୍କ ବଚନ ଶୁଣି ଶୁକ୍ର ରାଜାର ପୁତ୍ର ଗୃଶ
ରାଜା ରାଜ୍ୟରେ ନାହିଂ କେମନ୍ତେ ଲଂଘିଲ୍ଲ ଦଣ୍ଡଧାରୀ । ୧୩ ।
କୁଟୁମ୍ବ ବନାଶନେ ସେ ଗୃଶ ଯେ ଆତ୍ମଜା
ହୋଇଲେ ଶହସ୍ତ୍ରଧାରୀ ତପଧର୍ମି କଲେ ତେଜ୍ୟା । ୧୪ ।
ଅଜଙ୍ଗ କୋଦଣ୍ଡ ଯେ ପିନାକ ଆଦ୍ୟାବଳୀ
କରେ ଶହସ୍ତ୍ର ଧର ଗୃଶହୋଂ ଆଖଣ୍ଡଳ ରାଜାଙ୍କୁ ଓଗାଳ । ୧୫ ।

ବହୁତ ରଣଗୋଳ ଯେ ହୋଇଲା ସମର
ଅନେକ ରଥ ଗଜ ଅଶ୍ବ ପାଦାନ୍ତ ପଡ଼ିଲେ ତାହାର । ୧୬ ।
ସଇନ ପଡ଼ନ୍ତେ ଯୋଦ୍ଧାପ୍ରେ ବେଢ଼ିଲେ ଶସ୍ତ୍ର ଘେନ
ବୃଧ ଗୋରେଖ ସେ ଯେ ପଡ଼ିଲେ ପୁତ୍ରବେନ । ୧୭ ।
ଆଦ ମୀନ ଦୁହେଂ ଅନେକ ସମର କଲେ
ଅନେକ ପ୍ରସ୍ତେ କରି ତାହାର ସଇନ ମାରିଲେ । ୧୮ ।

ରଜାକଇଂ ସମରେ ଆଣିଲେ ବନ୍ଦୀକରି
ପୁଣି ଛାଡ଼ିଦେଲେ ଧର୍ମ ଯେ ସୁମରି । ୧୯ ।
ସମସ୍ତ ଧନ ଭଣ୍ଡାର କୁଟୁମ୍ବ କାମେମା
ସବୁନ୍ତହିଂ ଛଡ଼ାଇ ଆଣିଲେ ପୁତ୍ର ବେନ । ୨୦ ।
ଯେବଣ ପୁତ୍ର ବେନ ପଡ଼ିଲେ ରଣଭୂମି
ଅମର ସିଂହାସନେ ତାଙ୍କୁ ବସାଇଲେ ସସ୍ତ୍ରଯୋନ । ୨୧ ।

ପୁଣ ସମସ୍ତେକେ ଯେ ମଲେ ସେ ପୁତ୍ର ବେନ
ଗୃହ ପୁତ୍ରନ୍ତ ରଇ ଆଜ୍ଞାଂ ଦେଲେ ପଦ୍ମଯୋନ । ୨୨ ।
ରଜାର କୁମର ହୋଇ ତୁମ୍ଭେ ପ୍ରତ୍ୟେକ ଜ୍ଞାନବନ୍ତ
ମହା ପଣ୍ଡିତ ରୂପେ ତୁମ୍ଭେ ଗୃହହେଂ ହୋଅ ଜାତ । ୨୩ ।

କରତା ନାଥର ଆଜ୍ଞାଂ ପରମାଣ କରି
ମହାପଣ୍ଡିତ ହୋଇ ଜନ୍ମିଲେ ଶୁଦ୍ରର ପୁତ୍ର ଗୃହ । ୨୪ ।
ସାର ପିକ ଦ୍ରୋଣ ଶୁକ ଗୃହପକ୍ଷୀ ହୋଇ
ପରମ ନକୁଳ ସେ ଧନପକ୍ଷୀ ଅଛନ୍ତି ସ୍ବଂସ୍ବେ । ୨୫ ।

ସୋମପାଳ ନାମେ ବଟ ମେରୁ ପଶ୍ଚିମ ପାଶୁଶେ
ଆକାଶକଇଂ ଡାଳ ଉଚ୍ଚ ଗ ଯେ ଯୋଜନ ପଞ୍ଚାଶେ । ୨୬ ।
ଶତେ ଶତେ ପୁଣ ତହିଂର ଗୃହଡାଳ
ଶତେ ପୁଣ ଆଯ୍ତନ ଅଛଇ ତହିଂର ମୂଳ । ୨୭ ।
ସେ ବଟର ଡାଳରେ ଗୃହହେଂ ଛନ୍ତି ହାଦେ ବସି
ଆକାଶ ଡାଳେଣ ସେ ଭୁଷଣ୍ଡ କାକ ସ୍ବର୍ଗବାସୀ । ୨୮ ।

ପ୍ରଳୟ ଉଦ୍ଧାରଣ ସେ ଅଟନ୍ତି ଗୃଦ୍ରପକ୍ଷୀ
ମାରକଣ୍ଡ ପୁରାଣ ଗତ ଆଗତ ସେ କହନ୍ତି ବସି । ୨୯ ।
ଷାଠିଏ ସହସ ଚେଲା ଯେ ବେଦବ୍ୟାସଂକର ଅଟଇ
ସର୍ବୁଂକର ମଧେ ଯେ ଜୟମୁନି ଶ୍ରେଷ୍ଠ ହୋଇ । ୩୦ ।
ସେ ଜୟମୁନି ଶ୍ରୋତା ଯେ ଧର୍ମପକ୍ଷୀ ବକତା
ସେ ସେ କହୁ ଅଛନ୍ତି ଚୃଣ ଯୁଗର ପ୍ରସନ୍ନ ବାରତା । ୩୧ ।
ଶୁଣ ହୋ ଉତ୍ତର କୁମର ବଦସ୍ତୁନ୍ତି ବୃହନ୍ନାରି
ପରମଗତି ପାଇଲେଟି ସମରାଜ୍ୟ କାରଣ କରି । ୩୨ ।
ଯେହେନ୍ନେକ କାରଣଟି ପିତାର କାର୍ଯ୍ୟ କଥା
ଇହଲୋକେ ପରଲୋକେ ତାରଇ ସର୍ବସ୍ଥା । ୩୩ ।
ବାହୁଡ଼ କରି ରଥେ ବସ ହୋ ବିରାଟି
ପରମ ଗତି ପାଇବୁଟି ତୁ ମାନଗୋବିନ୍ଦ ଖିଷ୍ମ ଦ୍ରୋଣ ଭେଟି ।୩୪।
ଉତ୍ତର ବୋଇଲା ମୋତେ କହିଲୁ ପୁରାଣର ବାଗେ
ଶାସ୍ତ୍ର ଶୁଣାଇଲେ କିସ ବା ହୋଇବ ବଧୀରଜନ ଆଗେ । ୩୫ ।
ବୃହନାରି ବୋଇଲା ଯେ ପୂର୍ବେ ଶାହାସ୍ତ୍ର ନ ଶୁଣିଲା
ଆହୋ ଉତ୍ତର ତହିଂର ଦୋଷେ ସେ ବଧିର ହୋଇଲା । ୩୬ ।
ଆହୋ ବୃହନାରି ବଧିର ଆଗେ ଫେଇଲେ ଶାସ୍ତ୍ରପୋଥି
ପୂର୍ବଜନ୍ମକୁ ସୁମରି ସେ ପାଇବାନା ସଦଗତି । ୩୭ ।
ଉତ୍ତର କୁମର ବୋଇଲା ମୁଂ ନ ଶୁଣଇ ତୋହର ବାଣୀ
ପଳାଇବା କଥା ମୋତେ ଅମୃତରସ ଜାଣି । ୩୮ ।
ଶୁଣିଣ ବୃହନାରି ହୋଇଲା ଅମ୍ବୀଭୂତ
ଜାତ ହୋଇଲେ ମୃତ୍ୟୁ ଯେ ହୋଅଇ ନିଯୁତ । ୩୯ ।
ଆହୋ ଉତ୍ତର ବ୍ରାହ୍ମଣ ହୋଇ ଯେବେ ଜଳକୁ କରଇ ଭୟେ
ସ୍ତ୍ରି ହୋଇ ଯେବେ ଅଗ୍ନିରେ ନ ଦିଅଇ କାୟେ । ୪୦ ।
କ୍ଷତ୍ରୀ ହୋଇ ଯେବେ ଡରଇ ସାଂଗ୍ରାମେ
ଅନେକ ଅବସ୍ଥା କରି ତାକୁ ଦଣ୍ଡ ଦିଅଇ ଯମେ । ୪୧ ।

ଉତ୍ତର ବୋଇଲା ତୁ ଯେ ଅଟୁ ନପୁଂସକ
ରଣେ ମଲେ ତୁ ପାଇବୁ ଆନନ୍ଦେ ସୁଖ । ୪୨ ।
ତୁ ଯେ ବୃହନ୍ନଳା ମରଣକୁ ପଡ଼ିଅଛୁ ମାଡ଼
ମୁଂ କଂପା ନାଶଯିବ ଯେତେକ ସମ୍ପଦ ଗୁଡ଼ । ୪୩ ।
ବୃହନ୍ନଳା ବୋଇଲା ତୁ ଯେତେକ ନସଚ
ସାରଥି ହୋଇ ବାହି ପାରିବୁ କି ମୋର ରଥ । ୪୪ ।
ଉତ୍ତର କୁମାର ବୋଇଲା ମୁହିଂ ତୋର ସାରଥି ହୋଇଲେ
କେତେ ଲୋକେ କେ ଅଛୁ ରଥୀ ମୋହୋର ରଥ ବାହିଲେ । ୪୫ ।
ସାରଥିପଣକୁ ମୁଂ ଯେତେକ ସ ମରଥ
ବ୍ରହ୍ମାର ଘୁମୁକୁ ମୁଂ ବାହି ପାରଇ ରଥ । ୪୬ ।
ମୁହିଂ ଯାହାର ରଥେ ହୋଇବି ସାରଥି
ଇନ୍ଦ୍ର ଗୋବନ୍ଦ ହୋଇଲେ ସମରେ କାହାକୁହିଂ ନାହିଂ ଖିତି ।୪୭।
ଆସ ଆସ ଉତ୍ତର ବାହା ଯେବେ ମୋହୋର ରଥ
ରଥୀପଣକୁ ଯେମନ୍ତ ସାରଥିପଣକୁ ତେମନ୍ତ । ୪୮ ।
ଉତ୍ତର ବୋଇଲା ମୁଂ ଯେବେ ସାରଥି ହୋଇବି
ରଥୀ କେ ହୋଇବ ମୁଂ ତାହାର ମୁଖ ଗୁହିଂବି । ୪୯ ।
ବୃହନ୍ନଳା ବୋଇଲା ମୁଂ ହୋଇବଇଂ ରଥୀ
ନାସାରେ ହସ୍ତ ଦେଇ ହସିଲା ସଂକୋଚନର ରାଜାର ନାତି ।୫୦।
ସଖି ଯେ ମଣ୍ଡମଣ୍ଡଳେ ମୁଂ ଯେ ଅଟଇ ମହାଯୋଧୀ
ମୋହୋର ଭଲ ଭଙ୍ଗିଲା ସମରେ ନିରୋଧି । ୫୧ ।
ତୁହି ଜାତିହୀନ ପାମର ଅଟୁ ନପୁଂସେକ କାଯେ
କୌରବ ଥାଟକୁ ତୋହୋର ଯେତେକ ନିର୍ଭଯେ । ୫୨ ।
ଥାଟ ଦେଖି ହାସ କଲା ଯେ ଯେ ମୋହୋର ଭଲ
ତୁ ଘୁର କସ ସମର କରିବୁ ନପୁଂସକେ ବୃହନ୍ନଳା । ୫୩ ।

---

୪୩।୧ ତୁମେ ବୃହନ୍ନଳା ସାଂଗ୍ରାମକୁ ପଡ଼ୁଅଛ ମାଡ଼ି । ( ତ, ଥ )

ଉତ୍ତର ବୋଇଲା ତୁ ଯେ ପାପକଲୁ ପୂର୍ବେ
ତଦଦୋଷେ ନପୁଂସେକ ଲକ୍ଷଣ ଜାତ ଯେବେ । ୫୪ ।
ସୁବେଳ ପାଇଲୁ ଯେବେ ରଣଯାଗ୍ୟଂ କଲୁ ଇଛା
ଓହୋବଳ ମୁଖେ ପଡ଼ଲେ ପୂରିବ ମନବାଞ୍ଛା । ୫୫ ।
ଉତ୍ତର ବୋଇଲା ବୃହନ୍ନାଷ୍ଟ ମୁଂ ଜାଣିଲି ତୋହୋର ମନ ଆଶ
ସଞ୍ଚଯ୍ୟେ ସମରେ ତୁ ଦେଲୁ ଆଜ ଝାସ । ୫୬ ।
ବୃହନାଷ୍ଟ ବୋଇଲା ରେ ପ୍ରତଗ୍ୟାଂ ମୋହୋର ଦେଖ
ତୋହୋର ପ୍ରାସ୍ୟେ ମଣିଲୁ କ ଲୋଡ଼ୁ ଭୋଗ ସୁଖ । ୫୭ ।
ବରେଣ ଉତ୍ତର କୁମାର ବଢ଼ାଇଦଲା ଧନୁ
ଜାଣିମା ତୋହୋର ପର୍ବକ୍ରମ ଧନୁ ଆମଞ୍ଚନୁ । ୫୮ ।
ଧନୁ ଧରି ବୃହନାଷ୍ଟ ଆମଞ୍ଚନ କଲା
କଞ୍ଚିତ ଆକର୍ଷିନ୍ତେ ଧନୁ ବେନଖଣ୍ଡ ହୋଇଲା । ୫୯ ।
ବୃହନାଷ୍ଟ ବୋଇଲା ଯେ ଜୀର୍ଣ୍ଣ ତୋହୋର ଧନୁ
ଯେ ଧନୁ ଧରିଣ କୁରୁସାଗରକୁ କରୁଚୁ ଆଗମନୁ । ୬୦ ।
ଅହୋ ଉତ୍ତର ଖେସ୍ତେ ଧନୁ ବହନ୍ତି ପଞ୍ଚାଣୋଇ ସହସ୍ରବଳ
ନଉସହସ୍ର ବଳ ଧନୁ ବହନ୍ତି ଭରଦ୍ୱାଦଶଙ୍କର ବାଳ । ୬୧ ।
ବସ୍ତାଣୋଇ ସହସ୍ର ବଳ ଧନୁ ବହନ୍ତି ଅଶ୍ୱଥାମା
ଅଶୀସହସ୍ର ବଳ ଧନୁ ବହନ୍ତି କୃପବ୍ରହ୍ମା । ୬୨ ।
ପଞ୍ଚାଶୀ ସହସ୍ର ବଳ ଧନୁ ଯେ ବହନ୍ତି ଭୂରିଶ୍ରବା
ଅଠାଶୀ ସହସ୍ର ବଳ ଧନୁ ବହନ୍ତି କର୍ଣ୍ଣ ଯେ ରାଧେବା । ୬୩ ।
ଅଶୀ ସହସ୍ର ବଳ ଧନୁ ବହଇ ସୋମଦତ୍ତ
ବସ୍ତାଅଶୀ ଶସ୍ତ୍ର ବଳ ଧନୁ ବହନ୍ତି ବାହ୍ଲିକ ତାର ସୁତ । ୬୪ ।
ଦୁର୍ଯ୍ୟୋଧନର ମଇତ୍ର ଅଲମ୍ବୁଷ ରାକ୍ଷସ
ତାହାର ଧନୁର ବଳ ସହସ୍ର ଅଶୀଂଯେ ପଞ୍ଚଦଶ । ୬୫ ।

---

୫୫।୧   ସୁବେଳ ପାଇଲୁ ତୁ ମରଣକୁ କଲୁ ଇଚ୍ଛା     (ଙ, ଞ, ଗ)

ଅଳମ୍ବୁଷର ପୁତ୍ର ଅଳାୟୁଧ ବୋଲି
ସତାଶୋଇ ସହସ୍ର ବଳ ଧନୁ ତାହାର ଦେଖିଲି । ୬୬ ।
ଆହୋ କର୍ଣ୍ଣର ନନ୍ଦନ ବଣିକେଶନ ମହାବୀର
ସତାଇଶି ସହସ୍ର ବଳର ଧନୁ ତାହାର ମହାଭାର । ୬୭ ।
ଗାନ୍ଧାର ଦେଶର ରାଜା ମାତୁଳ ଶକୁନ
ଅଣାଅଶୀ ସହସ୍ର ବଳ ଧନୁ ଥାଇ ସେହୁ ଘେନ । ୬୮ ।
ଶାକଲ୍ୟ ଦେଶର ରାଜା ଯେ ମହାରଥୀ ଶଲ୍ୟ
ପଞ୍ଚାଶୋଇ ସହସ୍ର ବଳ ଧନୁ ଧରଇ ମହାମଲ୍ଲ । ୬୯ ।
ଆହୋ ଉତ୍ତର ସର୍ବେ ପଞ୍ଚାଉନ ବଳ ତୋହୋର ଧନୁଟଗୋଟି
ଯେ ଧନୁରେ ଶର ବନ୍ଧିବେ ରଥ ଗଜ ଅଶ୍ୱ ନ ଫୁଟି । ୭୦ ।
ଦ୍ରୁିଯୋଧନ ବହଇ ଧନୁ ଷାଠିଏ ସହସ୍ର ବଳ
ଅପ୍ରମିତ ନାରାଜ ବନ୍ଧଇ ସେ ଦୁଇହସ୍ତେ ପ୍ରବଳ । ୭୧ ।
ଛୟାଶୋଇ ସହସ୍ର ବଳ ଧନୁ ବହଇ ଧୁଶାସନ
ରଣରେ ତାହାକୁ କେହୁ ନାହାଁନ୍ତି ସମାନ । ୭୨ ।
ଦୁର୍ଜୟ ଦୁର୍ଗୁଣ ଯେ ଦୁର୍ବନ୍ଧ ଦୁର୍ବାଳ
ଯେ ଶତେଭାଇ ଧନୁ ଧରନ୍ତି ଲକ୍ଷ ଲକ୍ଷ ବଳ । ୭୩ ।
ଆହୋ ଉତ୍ତର ଯେବଣ ଯେବଣ ଯୋଦ୍ଧାଏ ଅଛନ୍ତି କଉରବେ
ପର୍ବତେ ପଡ଼ ଅଙ୍ଗେ ଚୂର ହେଉଥାନ୍ତି ସର୍ବେ । ୭୪ ।
ବାଳୁତ ଅଗ୍ୟାନ ତୁ ଯେ କହୁଅଛୁ ନ ବୁଝୁ
ଯେତେହି ଧନୁ ଘେନ କି ତୁ ଖିଷ୍ମ ଦ୍ରୋଣ ତୁଲେ ଯୁଝୁ । ୭୫ ।
ଉତ୍ତର ବୋଇଲା ବୃହନ୍ନଳାଗି ଯେତେବେ ତୁ ମୋତେ କେତେ କହୁ
ଯେକଥା ସଞ୍ଚପି ମୋତେ କର୍ମା ଅନ୍ତପୁରେ ନ କହୁଂ । ୭୬ ।
ଯେତେକ ଉଦନ୍ତ ଯେବେ ମୁଂ ପାଆନ୍ତି ସେହିଠାରୁ
ନର୍ମଳ ଶରୀରଗୋଟି କର୍ମେ କରନ୍ତି ମୁଂ ଗରୁ । ୭୭ ।
ଯେସନେକ ବରୁରନନ୍ତ ଆଦର୍ଯ୍ୟ ଅସ୍ତ୍ର ଗଲା
ଅର୍ଜୁନ ରଥୀ ହୋଇ ରଥରେ ବଜେ କଲା । ୭୮

———

୭୬।୨ ପ୍ରଥମେ ମୋତେ ଯେମାନ କହିଥିଲେ ଆସନ୍ତି ମୁହିଂ କାହୁଂ ।
( ଦ, ଜ )

# ଅର୍ଜୁନଙ୍କର ଆଦେଶରେ ଉତ୍ତରର ଶମୀ ବୃକ୍ଷରୁ ଅସ୍ତ୍ର ଆଣିବା ନିମିତ୍ତ ଗମନ ଓ ଶୋଷକ ସର୍ପ ଦଂଶନ

ଉତ୍ତର କୁମାର ଯେ ହୋଇଲା ସାରଥି
ବୃହନ୍ନଳା ବୋଇଲା ରଥ ମୋର ବାହା ଶମୀବୃକ୍ଷ ତଳକୁ
ତତକ୍ଷଣାନ୍ତ । ୧ ।
ବାସବର ଆଗ୍ୟାଂ ଯେସନ୍ତେ ମାତଳି ପ୍ରତିପାଳି
ଉତ୍ତର କୁମରଙ୍କୁ ତେସନେ ବୃହନ୍ନଳା । ୨ ।
ବାହାଇ ତୁରଙ୍ଗ ସେ ଶ୍ରୀକୃଷ୍ଣାର ବନ୍ଧା
ବନସ୍ତେ ପଶନ୍ତେ ଉତ୍ତର ବୃହନ୍ନଳାଙ୍କ କଲା ପୁଚ୍ଛା । ୩ ।
ଉତ୍ତର ବୋଇଲା ଯେତେହେନେକ ଭୟେ ଉପୁଜଇଟି ରଥୀପଣକୁ
ତୁ ଯେବେ ବୋଇଲୁ ରଥ ବାହାସି ବନସ୍ତ ଭିତରକୁ । ୪ ।
ବୃହନ୍ନଳା ବୋଇଲା ହୋ ଉତ୍ତର ଧନୁ ଯେ ଆମ୍ଭର ନାହିଂ
ଧନୁ ଗୋଟିଏ ଆଣିମା ଠାବକର ଯହିଂ ପାଇ । ୫ ।
ଚଳନ୍ତି ତୁରଙ୍ଗ ଯେ ମହା ନଶାକାଳେ
ପ୍ରବେଶ ହୋଇଲେ ଯାଇଂ କୃଷ୍ଣ ଭଦ୍ରା ନଦୀକୂଳେ । ୬ ।
ତହିଂର ଉତ୍ତର ପାର୍ଶ୍ୱେ ଶମୀବୃକ୍ଷ ଅଛି
ଅଦଭୁତେ ଅଦଭୂତ ବନ୍ଧନେ ତାହା ମୃତ୍ୟୁପିଣ୍ଡ ରଖିଅଛି । ୭ ।
ଊର୍ଦ୍ଧ କରିଂ ଋହିଂ ଜାକେକ ଗ୍ରୁଡିଲା ମହାବୋଝ
ରଥର ଉପରୁ ଉତ୍ତର କୁମର ପଡିଲାକ ଭୂଇ । ୮ ।

---

୪।୨ ତୁ ଯେବେ ରଥ ବାହୁ କେଉନ୍ତେ ବନସ୍ତ ଭିତରକୁ । ( ଛ, ଝ )
୬।୨ ପ୍ରବେଶ ହୋଇଲେ ଯାଇ କୃଷ୍ଣଭଦ୍ରା ନଦୀକୂଳେ ।
( କ, ଫ, ଝ, ପ, ଜ୍ଞ )
୭।୧ ଶମୀ ଶିଶୁପା ବୃକ୍ଷ ଅଛି । ( ଦ, ଜ, ଫ )

ରଥରୁ ଡେଇଁପଡ଼ି ସେ ଧଇଲ ବୃହନ୍ନାଗ
ମୁଖେ ଜଳ ସିଞ୍ଚଣ ସାଷ୍ଟାମ ତାକୁ କରେ । ୯ ।
ସାଷ୍ଟାମ ହୋଇଣ ସେ ପୁଚ୍ଛିଲ କୁମର ଚୂଡ଼ାମଣି
କର୍ଷାତ ଶବଦ ପ୍ରାୟେ ଶୁଭିଲ କସ ବାଣୀ । ୧୦ ।
ବୃହନାଗ ସେ ମୃତପିଣ୍ଡକୁ ଯୁକ୍ତ ଭଷି
ସ୍ୱାମି ଉତ୍ତର ଉଦୟେ କରବ ତ୍ରୁ କ୍ଷଣେ ଥନ୍ତର ହୁଅସି । ୧୧ ।
ପାର୍ଥର ବଚନେ ହୋ ଉତ୍ତଳକ ଶୂନ୍ୟେ
ଉତ୍ତରଙ୍କୁ ପ୍ରତିବାକ୍ୟ ପୁଚ୍ଛଇ ଫାଲଗୁନେ । ୧୨
ଆଉ ଉତ୍ତର ପ୍ରେ ବୃକ୍ଷ ଉପରକୁ ଫାଲ୍‌ଗୁନିକ ବାବୁ ଉଠି
ଶୁଣି ଉପରକୁ ଦୃଷ୍ଟିପାତ କଲକ ବହିଟି । ୧୩ ।
ଉତ୍ତର ବୋଇଲ ବଡ଼ାଇ ଉଚ୍ଛର୍ଗ ନଅଟେ ନାନ୍ଦଂ ଶାଖା
କ ରୂପେ ଉଠିବ କାର୍ଯ୍ୟ ସ୍ୱରୂପ ମୋତେ ଦେଖା । ୧୪ ।
ବୃହନ୍ନାଗ ବୋଇଲ ଶୁଣ ହୋ ଉତ୍ତର
ଧନୁ ଗୋଟିଏ ଆଣ ଅଛୁ କୋଠର ଭିତର । ୧୫ ।
ବୃକ୍ଷକଇଂ ପ୍ରଣପତ୍ୟ ହୋଇଲ ବୃହନ୍ନାଗ
ଆହୋ ଉତ୍ତର ବେଳନଚଢ଼ୁ ବୁଜ ବୃକ୍ଷକୁ କୋଳକରି । ୧୬ ।
ପନଙ୍ଗର ପୀଡ଼ାପ୍ରେ ସେ ଗାରେଡ଼ ଯେସନ
ବୃହନ୍ନାଗ ବଚନ ଉତ୍ତରକୁ ତେସନ । ୧୭ ।
ବୃକ୍ଷକୁ କୋଳକରି ଉତ୍ତର ଯେ ବୁଜଲ ବେଳଚଢ଼ୁ
ଡାଳେ ଉତ୍ତର କୁମର ଯାଇ ନାଗିଲ ପ୍ରତକ୍ଷୁ । ୧୮ ।
ଦେଖଇ ଉତ୍ତର ଗୃହୋବଗକୁ ଗୃହ ଡାଳ
ଯୋଜନେ ଯୋଜନେ ସେ ଅଟଇ ବୃକ୍ଷାଳ ୧୯ ।
ଶମୀ ଶିଶୁପାବୃକ୍ଷ ହରହର ବେଳମୂଳ
ଭୀମ ଅର୍ଜୁନ ନକୁଳ ସହଦେବ ଗୃହଡ଼ାଳ । ୨୦ ।
ଉପରର ଉଚ୍ଛର୍ଗ ଶାଖା ଧର୍ମରାଜ୍ୟେ ଯୁଧିଷ୍ଠିର
ପାଞ୍ଚାଳଦେଶ ରାଜାର ନନ୍ଦନୀ ତନ୍ତ୍ରଂର ଯେ ପୁଷ୍ପଗୋଟି । ୨୧ ।

ବେନକୋଶ ଆୟେତନ ତହିଁ ମଧ୍ୟେଣ ଅଛି ଝୋଟ
ବନକର ନାଥ ତହିଁ ନତ୍ୟେ ହୋଇ ଭେଟ । ୨୨ ।

ବିରାଟର ନନ୍ଦନ ଯେ ଗୃହଙ୍କ ଝୋଟକୁ
ବୋଇଲା ସଙ୍କଟ ପଡ଼ିଲ କି ଆଦର୍ଯ୍ୟ ଦେବତ କୁ । ୨୩ ।

ସିଂହକାର ନନ୍ଦନ କି କଟାଇଲା ଗଛୁ
ଦୁରନ୍ତେକ ଭୟେ ଅବା ଲୁଚିଅଛି ସେଥୁ । ୨୪ ।
ଆକାଶକୁ ନଦେଖଇ ବିରାଟର ତନୟେ
ଝୋଟହିଁ ତ ନିଶାକାଳେ ଦିଶଇ ଦିବସର ପ୍ରାୟେ । ୨୫ ।

ବୃହନ୍ନଳା ବୋଇଲା ହେ ଝୋଟରେ ହାଥ ଭର
କସ କସ ଶସ୍ତ୍ର ଅଛି ବେଗେ କାଢ଼ିଦିଅ ମୋର କର । ୨୬ ।

ଉତ୍ତର କୁମର ସେ ଝୋଟରେ ମାଇଲାକ କର
କାଳସର୍ପ ଡଂସିଲ ଯେ ହାତରେ ତାହାର । ୨୭ ।
ଉତଙ୍ଗର କ୍ଷ୍ୟାତେଣ ଶରୀରେ କ୍ଷଷ ଘେଟି
ଡାକେଣ ଶୋଇ ଅସମ୍ଭ୍ରମ ଯେ ହୋଇଲ ବିରାଟି । ୨୮ ।

ଉତ୍ତର ଉତ୍ତର ବୋଲି ଡାକଇ ଫାଲଗୁନ
ବଦନ ଓହ୍ଲାଇ ଆସ ହେ ଧନୁ ଗୋଟିଏକ ଘେନ । ୨୯ ।

ଡାକଦେଇ ସମ୍ମୁଖ ହୋଇଲ ସବ୍ୟସାଚୀ
କଦାଚିତେ ନ ଫୁରଇ ଉତ୍ତର କୁମାର ବାଚ । ୩୦ ।

ବୃକ୍ଷର ଉପରକୁ ଯେ ଉଠିଲ ଧନଞ୍ଜୟେ
ଦେଖିଲ ଉତ୍ତର ଶରୀର ଗରଳମୟେ । ୩୧ ।

---

୩୧।୧ ଶରୀର ବସର୍ଜି ଅସାଷ୍ଟମେ ପଡ଼ିଅଛି ଶ୍ରୀକୃଷ୍ଣାର ବଳା ।
କ, ଫ, ଓ ଝ, ପ ଣ, ଙ
“ଉତ୍ତର କୁମର ଦର୍ପ ପାଦାନ୍ତ” ପରେ
ସେସନେକ ବୃକ୍ଷରଇ ବୀର ସବ୍ୟଶାଚୀ
ଉତ୍ତର ଅସାଷ୍ଟମ ଦେଖି ହୃଦଗତେ ପାର୍ଥି ।

ମୁଖରୁ ଗଳଇ ତାର କାଳ ଯେ ଗରଳଜାଳ
ଅସାଷ୍ଟମେ ପଡିଲା ସେ ଶ୍ରୀକୃଷ୍ଣାର ବାଳା । ୩୨ ।
ଉତ୍ତର କୁମରଙ୍କଇଂ ଯେ କୋଳ କଲାକ ବୃହନ୍ନଳା
ସର୍ପବଧାତ ହୋଇଲା କାଳ ଗରଳ ଯେହ୍ନହାଁ । ୩୩ ।
ଝୋଟେଣ ପଶିଥିଲା ଯେବଣ କାଳସର୍ପ
ବଧାତେ ହରିଲ ସେ ଉତ୍ତର କୁମାର ଦର୍ପ । ୩୪ ।
ମହାପଣ୍ଡିତ ଅର୍ଜୁନ ଜାଣଇ ମହାଗାରଡ ବଦ୍ୟା
ଗୋରେଖ ପ୍ରସନ୍ନେ ସେ ପରମ ଯୋଗସିଦ୍ଧା । ୩୫ ।
ଅର୍ଜୁନ ପଢନ୍ତି ଯେ ଗାରଡମନ୍ତ୍ରଗୋଟି
ବ୍ରହ୍ମା ବଷ୍ଣୁ ମହେଶ୍ୱର ଦୁର୍ଗାଂକୁ ହୃଦେ ଲୟ କଲା କରଣୀ । ୩୬ ।
ଗାରେଡମନ୍ତ୍ର ଗୋଟିଏ ଚନ୍ଦ୍ରସୂର୍ଯ୍ୟ ଛାଆନ୍ତି ରଥେ
ମୁଂ ବଷ ମାରଇ ନ ଛୁଂଅଇ ହାଥେ । ୩୭ ।
ସପ୍ତଋଷି ମୋତେ ଦେଇଥିଲେ ବର
ଆରେ ଆରେ ବଷ ଘା ମୁଖେ ଅନ୍ତରୀକ୍ଷେ ମର । ୩୮ ।
ଝଡନ୍ତେ ଝଡ ନ ଝଡ଼ୁଂ ବୋଲ କାହାର ଆଣ
ଶ୍ରୀ ଗୋରେଖନାଥ ସ୍ୱାମୀଂକର କୋଟି କୋଟି ଆଣ । ୩୯ ।
ଆହୋ ଚଇତନ ଅର୍ଜୁନ ମନ୍ତ୍ରେ ଯେ ଗୁଡଗଲାକ ଗରଳ
ସାଷ୍ଟାମ ହୋଇ ବସିଲା ଶ୍ରୀକୃଷ୍ଣାର ବାଳ । ୪୦ ।
ବୃହନ୍ନଳା ମୁଖ ଗୃହ୍ବଂ ଉତ୍ତରକୁମାର କଲା ପୁଚ୍ଛା
କାଳସର୍ପ ବଧାତେ ହୋଇଲ ମୁହ୍ବଂ ମୂର୍ଚ୍ଛା । । ୪୧ ।
ସରିଲାର ପିଣ୍ଡଗୋଟି ତାରିଲୁ କେମନ୍ତେ
ଯେତ୍ନଥିର ଅର୍ଥଗୋଟି କହୁକନା ସଂଘାତେ । ୪୨ ।
ବୃହନ୍ନଳା ବୋଇଲା ଶୁଣରେ ଉତ୍ତର
ସଦଗତ ଶରୀରୁ ଲଗିଲା ଉଜାଣିର ଧାର । ୪୩ ।
ଯେତ୍ନମନ୍ତେ ଅଚେତ ତୁ ହୋଇଲୁ ଉତ୍ତର
ଘୋଟିଲା ଶ୍ରୀହଟ ନାହ୍ବଂନା ବସ୍ତାର । ୪୪ ।

ତପନ ସଙ୍ଗତେ ଘୋଟଇ ହେଲୁ ହେଲୁ
ପଦର ଅର୍ଦ୍ଧକେ ବିଷ ଘୋଟିଲାକ ତାଳୁ । ୪୫ ।
ପଡିଲାକ ବିଷ ଯେ ଚନ୍ଦ୍ର ଘରେ ବେଳା
ଘୋଟିଲାକ ବିଷ ଯେ ବିଷମଦ୍ୱାରେ ଖେଳା । ୪୬ ।
ତନ ଉଦ୍ଧତ ଚମ୍ପାଇ ଚନ୍ଦ୍ରେଣ ଯେ ବନ୍ଧ
ତାଙ୍କେ ଲେଉଟି ଗରଳ ପଡଇ କନ୍ଧ । ୪୭ ।
ଧରଣ ଧାରଣ ସ୍ନେହ ଅକାଟଣ ଘଟ
ଜଳ ଉଜାଣି ଯିବାକୁ ପାବଇ ବାଟ । ୪୮ ।
ରୁନ୍ଧିଲାକ ପବନ ବୁଡାଇଲା କବାଟ
ଉଜାଣିରେ ଅଇଲାକ ବିଷ ସର୍ପର ବିଘାତ । ୪୯ ।
ମହାବ୍ରହ୍ମ ମନ୍ତ୍ର ବୃହନ୍ନାଣ୍ଟ ତହୁଂ ଶୁଣି
କାଳସର୍ପ ପଳାଇଲା ବିହାର ଧରଣୀ । ୫୦ ।
ଆବର ବ୍ରତବନ୍ତ ଅର୍ଜୁନ ଶରଘାତେ
ଶରଣ ପଶିଲା ଯାଇଂ ରାଧେୟ କର୍ଣ୍ଣ ରଥେ । ୫୧ ।
ସର୍ପ ବୋଇଲା ହେ କର୍ଣ୍ଣ, ରକ୍ଷା ମୋତେ କର
ଆହେ। ରାଧେଇ ମଲ୍ଲି ଶରଣ ପଶିଲି ତୋହୋର । ୫୨ ।
କର୍ଣ୍ଣ ବୋଇଲା ସର୍ପ କାହାକଇଂ ସ୍ନେହେ ଡର
ଆଦ୍ୟହୁଂ କହିନାହିଂ କ ତୋହୋର ଆଗର । ୫୩ ।
ଖାଣ୍ଡବ ବନରେ ଥିଲେ ମୋର ଯେତେ ବଂଶ
ବନ ଦହନ କାଳେ ସବୁ ଅର୍ଜୁନ କଲା ଧ୍ୱଂସ । ୫୪ ।
ବଇଶତା ବଶରେ ଯେ ଅଇର ହୋଇଅଛି
ସମସ୍ତ ବଂଶ ମୋହୋର ନାଶକଲା ବିବର୍ଚ୍ଛି । ୫୫ ।

---

୪୮।୨ ରୁନ୍ଧିଲା ତପନ ଯେ ବୁଡାବଇ ଗୋଲହାଟ । ( ଛ, ଙ )

୫୫।୨ "ବଇଶତା ବଶରେ ଯେ ଅଇର ହୋଇଅଛି......ପଦ ସ୍ଥାନରେ ଭିନ୍ନ ପାଠ—
କଇ କରାଳ ଆଦ୍ରାବଳୀ ଆବର ଯେ ବଜୁ
ପାବକ ଧାରକ ଲେଲଶର ସମରଜୁ । (ଣ)

( ଅବଶିଷ୍ଟାଂଶ ପର ପୃଷ୍ଠାରେ)

ବଇରିକ ବଗ୍ରଳସର୍ପ ଆଦ୍ରାବଳୀ ବନ୍ଧୁ
ଯାବନ କଦ୍ରୁରେ ଯେ ଆବର ପରନ୍ଧୁ । ୫୬ ।
ସ୍ନେହ ବଧ ଅର୍ଜୁନରେ ଶରଣ ସ୍ନେହ ପଶିଲେ ବନକେ
ମାରଣ ଅର୍ଜୁନ ତାହା ପକାଇଲ ଅନଳେ । ୫୭ ।
ଆହୋ କର୍ଣ୍ଣ ବାମ୍ପି ଭିତରେ ମୁହଁ ପଡଥିଲ ଉଡ
ନବ ଦିବସ ପରଯନ୍ତେ ମୁଂ ପଡଥିଲ ବୁଡ । ୫୮ ।
ଖାଣ୍ଡବ ବନ ଦହନ ଯହୁଂ ହେଲ ସମାପତ
ଶୋଷେକ ନାମେ କାଳସର୍ପ ମୁଂ ବଗ୍ରଳର ସୁତ । ୫୯ ।
ଆହୋ କର୍ଣ୍ଣ ଅର୍ଜୁନ ମୋହୋର ଯେ ପିତାର ବଇରି
ତାହାକଇଂ ନାଶକଲେ ମୋହୋର ପିତୃଲୋକେ ତରି । ୬୦ ।

---

( ପୂର୍ବ ପୃଷ୍ଠାର ପାଠାନ୍ତର )

ବୈରିକା ବଗ୍ରଜ ପୁଣି ଆଦ୍ରାବଳୀ ରକ୍ଷୁ
କାରବନ୍ଧା ଲୋକଙ୍କର ଅଟେ ସମବନ୍ଧୁ । (ଖ, ଠ,)
କାଳ ବିକଗ୍ରଳ ମହାକାଳ ଆଦ ଦକ୍ଷ
ଉଲ୍ଲୋଳ ବ୍ୟାକୁଳ ମହାପଦ୍ମ ତକ୍ଷ । (ଙ)

୫୭।୨ "ମାରଣ ଅର୍ଜୁନ ତାହା ପକାଇଲ ଅନଳେ ।" ପାଦାନ୍ତ ପରେ
ଜ ଓ ଦ ପୋଥିରେ ଅଧିକା ପଦ—
ପାଦୁକା ଗଙ୍ଗା ନାମେ ଯେ ସ୍ୱେକଇ ନଦୀଗୋଟି
ଖାଣ୍ଡବ ବନ ବେଢ଼ି ସେ ମେଖଳେ ଧାରେ ଫୁଟି ।
ସେ ନଦୀ ଖର୍ଣ୍ଣି ଯେ ଖାଣ୍ଡବ ବନକୁ
ଅଣୀ ସାଗର କୁମ୍ଭ ସେ ବୁଡଇ ପାଣି ଦେବାକୁ ।
ଅର୍ଜୁନ ଶର ପବନ ଲଗି ଯେ ପଡଲ ମୁହିଂ ଉଡ
ନବ ଦିନ ପରଯନ୍ତେ ଥିଲ ମୁହି ବୁଡ । (ଜ, ଦ,)

୫୮।୧ ଶୋଷେକ ନାମେ କାଳସର୍ପ ମୁଂ କଗ୍ରଳର ସୁତ । (ଚ ଛ,ଦ,ଘ)

୫୮।୨ ଖାଣ୍ଡବବନ ଦହନେ ବଂଶ ମୋହୋର ହୋଇଲ ସମାପତ ।
( ଗ, ଞ )

ପୁତ୍ର ହୋଇ ପିତାକୁ ନ କଲେ ତାରଣ
ସେ ପୁତ୍ର ପଡ଼ଇ ଯେ ରଉରୌଦ୍ର ନର୍କେଣ । ୬୧ ।
ହେ କର୍ଣ୍ଣ ସମୀବୃକ୍ଷ କୋଟରେ ହାତେ ଥିଲି
ସେ କୋଟରୁଂ ଅର୍ଜୁନ ଶସ୍ତ୍ର ନେଲେ ତାକୁ ଡଂସିବ ବୋଲି । ୬୨ ।
ଯେତେ ଛିଦ୍ର ପାଞ୍ଚ ରହିଥିଲି ମୁହିଂ
ଆଜଯାଏ ଅର୍ଜୁନ ନ ମିଳିଲେକ ତହିଂ । ୬୩ ।
ବିରାଟର ନନ୍ଦନ ଯେ କୋଟରେ ହାଥ ଭରି
ମୁହିଂ ଅଇଲି ଉତ୍ତରକୁମାରକୁ ଡଂସିକରି । ୬୪ ।
ପଳାଇ ଅଇଲି ତରେ ରଖ ତୁ ଶରଣ
ଯେତେ ବଡ ବିଘାତ ମୋର ହୋଇଲା ଅକାରଣ । ୬୫ ।
ସିଂଘକଇଂ ମୁହିଂ ଯେ ପାଡ଼ିଲିଇଂ ଫାନ୍ଦ
କାଲେଣ ଶ୍ରିକାଳ ଆସି ହୋଇଲା ଫାଶି ବନ୍ଧ । ୬୬ ।
ଯେତେକ୍ଷଣି ଅର୍ଜୁନ ଯେ ଆସିବ ସମରେ
ମୋତେ ପେଷିବୁଟି ତୁହି ତାହାର ଉପରେ । ୬୭ ।
ଯେତେ ବୋଲି ଶୋଷେକ କାଳସର୍ପ କର୍ଣ୍ଣ ରଥେ ରହିଲା
ଦୁିଯୋଧନ ଅଗ୍ରତେ ଯାଇଂ କର୍ଣ୍ଣ ଯେ କହିଲା । ୬୮ ।
ହେ ମଇତ୍ର ସନ୍ଦେଶ ବାରତା ମୁଂ ପାଇଲି ଯେତେକ୍ଷଣି
ଅର୍ଜୁନ ସମରେ ଆସିବ କହିଲା ମୋତେ ଫଣୀ । ୬୯ ।
ମାନଗୋବିନ୍ଦ ବୋଇଲା ଉତ୍ତଙ୍ଗ ସର୍ପଙ୍କର
କେମନ୍ତେ ସତ କରିବା ବଚନ ତାହାର । ୭୦ ।

———

# ବୃହନ୍ନଳାରୀ କର୍ତ୍ତୃକ
# ଉତ୍ତର ନିକଟରେ ପଞ୍ଚପାଣ୍ଡବଙ୍କ ପରିଚୟ ଓ
# ଅର୍ଜ୍ଜୁନର ଦଶନାମ କଥନ

ଶୁଣ ଚଇତନ ଉତ୍ତର ବୃକ୍ଷର ଉପରେ, ତଳେ ବୃହନ୍ନଳାସ୍ତ୍ରୀ
ଉତ୍ତରକୁମାର ଧନୁ ଶସ୍ତ୍ରମାନ ଦିଅଇ କାଢ଼ିକରି । ୧ ।
ପାଞ୍ଚ ଧନୁ ଦଶ ତୋଣ ବଢାଇଣ ଦେଲି
ଭୀମସେନର ଗଦାଗୋଟି ଟେକିତ ନୁଆରିଲି । ୨ ।
ଉତ୍ତର କୁମାର ବୃକ୍ଷରୁ ଓହ୍ଲାଇ ତଳକୁ
ସତେ ସହସ୍ର ଥର ପ୍ରଲମ୍ବ କଲି ଧନୁଶସ୍ତ୍ରମାନଙ୍କୁ । ୩ ।
ଉତ୍ତରକୁମାର ବୋଇଲି ଶୁଣିମା ସଂଘାରୁଣୀ
ଏତେ ଧନୁ ତୋଣମାନ କେ ଥୋଇଲି ଏଥେ ଆଣି । ୪ ।
ବୃହନ୍ନଳାସ୍ତ୍ରୀ ବୋଇଲି ତୁ ଶୁଣ ବିରାଟର ତନୁ
ପାଣ୍ଡବ ପଞ୍ଚାଳଂକର ଏତେ ଦଶତୋଣ ପାଞ୍ଚଧନୁ । ୫ ।
ଶୁଣିଣ ସାନନ୍ଦେ ସେ ପଚାରଇ ଉତ୍ତର କୁମର
ଶୁଣିମାକୁ ଇଚ୍ଛା ମୋର କେଉଁଣ ଧନୁ ଅଟଇ କାହାର । ୬ ।
ବାବୁ ପ୍ରଥମେଣ ଅର୍ଜୁନ ଧନୁଗୋଟି ଧରି
କ୍ଷୁଦ୍ର ହୀରା ପୁଂଜ ପୁଂଜ ଲଗିଛୁ ଶସ୍ତ୍ର ଗୃହ । ୭ ।
ଶଙ୍ଖ ସାର୍ଦ୍ଦୂଳ ଧନୁ ଧବଳ ବର୍ଣ୍ଣ ଗୁଣ
ଶୁଦ୍ଧ ସ୍ଫଟିକ ଜାଣି ଧବଳ ଦଶେ ବେନ ତୋଣ । ୮ ।
ଧନୁ ପିଠିରେ ଯେ ମର୍କତ ପଦ୍ମମୟେ
ନିଶାକାଳେ ବିରାଜଇ ଆଦିତ୍ୟ ତେଜ ପ୍ରାୟେ । ୯ ।
ପଞ୍ଚାଶ ସହସ୍ର ବାବୁ ଏତେ ଧନୁର ବଳ
ଏତେ ଧନୁ ବହନ୍ତି ଯେ ଯୁଧିଷ୍ଠିର ମହୀପାଳ । ୧୦ ।
ଶତେ ସହସ୍ରେକ ଶର ଶ୍ୱେତ ଶଙ୍ଖଚିଲ ପକ୍ଷୀ
ଦୁଇ ତୋଣେ ନାରାଚ ଦୁଇ ସହସ୍ର ଅଛୁ । ୧୧ ।

ବ୍ରହ୍ମାର ସଙ୍କଳ୍ପ ଯେ ଅଜଗଂ ନାମେ ଧନୁ
ସମରେ ଅନିବାରଣ ଯେ ବନ୍ଦଇ ଧର୍ମରାଜାଂକର ତନୁ । ୧୨ ।
ସେ ଧନୁ ଥୋଇଣ ଯେ ଆରେକ ଧନୁ ଧରି
ବାମକରେ ଧରିଣ ଯେ ଡାହାଣ କରେ ଖଡ଼ଗ କରି । ୧୩ ।
କଟପ୍ପ ଘଟିଣ ଯେ ପ୍ରବନ୍ଧ ବେଣିଦୋଳ
ଧନୁର ଉପରେ ଶାର୍ଦ୍ଦୂଳ ଚର୍ମ ଯେ ମେଖଳ । ୧୪ ।
ଝଳକନ୍ତ ହୀରା କରିଣ ଯେ ଶତଚନ୍ଦ୍ର ଜ୍ୟୋତି
ଦୁଇ କୋଣେ ଖଞ୍ଜିଲା ଅଛି ମାରାଗ ପାଞ୍ଚକୋଟି । ୧୫ ।
ଯେକାଦଶ ପଂକ୍ତି ମାଣିକ୍ୟ ତିନି ପଂକ୍ତି ହୀରା
ଉଙ୍ଗରେ ନ ସହନ୍ତି ଯେବଣ ଧନୁଭରା । ୧୬ ।
ଧରିଣ ଧାରିଣ ଧନୁ ସେ ନାମ ଆଭ୍ରାବଳୀ
ତିନିପଦ୍ମ ହୀରା ଯେ ଖଞ୍ଜିତ ମେଖଳ । ୧୭ ।
ଝଳକନ୍ତ ମାଣିକ୍ୟ ଯେ ହୀରାଂକର କାଛେ
ଅବନ୍ଧା ମୁକୁତା ଗୁନ୍ଥିଲା ଅଛଇ ବେଣିପାଖେ । ୧୮ ।
ରୁଦ୍ର ପାବଚ୍ଛେ ପରମ ପଦକୁ ବକାଣି
ଯେ ଧନୁର ଦର୍ପେ ଅନେକ ବଦାଇଲେ ଦେବକାଶୀ । ୧୯ ।
ଗାଣ୍ଡୀବର ନାମ ହେଲେ ବଂଶପ୍ପ କୋଦଣ୍ଡ ଯେ ଧନୁ
ଷାଠିଯେ ସହସ୍ର ବଳ ଯେ ଧନୁର କୁଳଶାନୁ । ୨୦ ।
କଂକ ପକ୍ଷୀ ନାରାଜ ସବୁହିଂ ଚକ୍ରଶର
ଦୁଇକୋଣ ଉତରେ ଅଛଇ ନାରାଜ ସହସ୍ର ପନ୍ଦର । ୨୧ ।
ପାଣ୍ଡବ ସୁନ୍ଦର ସେ ପବନର ବଳ
ଯୋଦ୍ଧୋଡ ସୁନ୍ଦର ସେ ଛନ୍ଦିପ୍ପ ଅନର୍ଗଳ । ୨୨ ।
ଷଠିଯେ ସହସ୍ର ବଳ ଧନୁ ଭୀମସେନ ବହଇ
ଯେ ଧନୁର ଘାତେ ଛଣୀ ହୋଇ ରହିବେ ନୁଆରଇ । ୨୩ ।

---

୧୮।୨   ଚନ୍ଦ୍ରଧାର ମର୍କତ ଯେ ଗୁନ୍ଥିଲା ପାବଚ୍ଛେ ।— ଛ, ଣ, ଜ

୧୯।୧   ରୁଦ୍ରର ଦାଲ ଧନୁ ଯେ ତେଜ ଯେ ବକାଣି—ଦ, ଜ

୧୯।୧   ରୁଦ୍ରର କପୋଳେ କ ପ୍ରମଦା ବକାଣିଲା ଶଶୀ ।—ତ, ଅ

ସେ ଧନୁ ଥୋଇଣ ଯେ ଘେନନ୍ତି ଆନ ଧନୁଗୋଟି
ସେହି ଧନୁର ମହିମାଂ ଶୁଣସି ବଇଷ୍ଟି । ୨୪ ।
ସେହି ଧନୁର ପିଠିରେ ସହସ୍ର କଣୟ ସୁଚାଡ
ହୀରା ମାଳାର ଝଞ୍ଜଣୀ ପ୍ରବନ୍ଧ କ୍ଷୁଦ୍ର ମୋଡ । ୨୫ ।
ଗଜ ପରପାଟ ଉପରେ କଣୟ ପବ୍ନ ଗୁନ୍ଥା
ନିରନ୍ତରେ ମର୍କତ ନବାଣ ପଞ୍ଚ ସୀମନ୍ଥା । ୨୬ ।
ସପତମୀ ଚନ୍ଦ୍ର ଯେହ୍ନେ ଉଦିତ ଆକାଶେ
ଗଜ ମୁକୁତା ବେନିଲକ୍ଷ ଗୁନ୍ଥିଲ୍ଲି ଅଛି ଚଉପାଶେ । ୨୭ ।
ମାଣିକ୍ୟର ଜଲ୍ଲାଳ ଯେ ମାଳାର ଝଞ୍ଜଣୀ
ଝଲକନ୍ତ ଧନୁ ଯେ ନିର୍ଧୂମ ଅଗ୍ନି ଜାଣି । ୨୮ ।
କୁସଣ୍ଡେକ ନଗର ଦହନ କଲ୍ଲ ଯେଣେ
କାମେମା ମନସିଜ ସେହିଟା ବହଇ ମହ୍ମାଣେ । ୨୯ ।
ପଞ୍ଚତୃଳଶ ସହସ୍ର ସେହି ଧନୁର ବଳ
ମାଦ୍ରୀର ନନ୍ଦନ ସେହିଟା ବହଇ ନକୁଳ । ୩୦ ।
ସାରଙ୍ଗ ପକ୍ଷୀ ଶର ଅଧାଚନ୍ଦ୍ର ବାଣ
ପଞ୍ଚ ଅହିବ୍ରତ ଶର ପୂରିତ ବେନିହୋଣ । ୩୧ ।
ଅନୁବ୍ରତେ ଥାଇ ସେହି ନକୁଳର ହାଥେ
ଦକ୍ଷଣ ଦିଗ ସାଧିଲ୍ଲ ସେହି ଧନୁ ଧରନ୍ତେ । ୩୨ ।
ସେ ଧନୁ ଥୋଇଣ ଯେ ଘେନନ୍ତି ଆର ଧନୁ
ଶୁଣ ହୋ ସାବଧାନେ ଶ୍ରୀକୃଷ୍ଣର ତନୁ । ୩୩ ।
ମଳୟ ବସନ୍ତ ରଞ୍ଜନା ଝଞ୍ଜିତ ହେମ ଝଳ
ଅକ୍ଷୟ ଅମଳ କି ତେଜେଣ ଅଶ୍ମମାଳୀ । ୩୪ ।

---

୨୭।୨ ନିର୍ମଳ ମୁକୁତା ଯେ ନବାଣ ପାଟସୂତା ।—ଦ, ଜ, ପ
୨୯।୧ କୁଳାମ୍ବେକ ଗଡ଼ ଦହନ କଲ୍ଲ ଯେଣେ ।—ଙ୍ଗ, ଖ
୩୨।୨ ଦକ୍ଷିଣ ଦିଗ ସାଧିଲ୍ଲ ସେହି ରଜସ୍ୱୀ ଯାଗ ନିମନ୍ତେ ।—ଣ, ପ
୩୨।୨ ଦକ୍ଷିଣ ଦିଗ ସାଧିଲ୍ଲ ସେ କାର୍ଯ୍ୟ ଅନୁଗତେ ।—ଗ, ଙ୍ଗ, ଟ
୩୪।୨ ଗଗନେ ଉଦୟେ କି ସେହି ତେଜେଣ ଅଶ୍ମମାଳୀ ।—ଗ, ଙ୍ଗ, କ

ମତ ମାତାଙ୍ଗ ବହୁତନ୍ତ ଯେ କୁଣ୍ଡଳିନା
ଶୁଦ୍ଧ ସ୍ଫଟିକ ବର୍ଣ୍ଣ ମଧ୍ୟେ କ ପୋଏଲା । ୩୫ ।
ହୀରା ନୀଳା ମାଣିକ୍ୟ ଯେ ବଇଡ଼ୁର୍ଯ୍ୟ
ମାରଗ କଣପୂ କ ବିରାଜଇ ତେଜ । ୩୬ ।
ଶବଶ ନାରାୟଣ ଦେହା ବହଇ ବେଣ୍ଟକାଳେ
ଯେକଇ ଶରକେ ଜୟେ କରିପାରଇ ନବ ମହୀମଣ୍ଡଳେ । ୩୭ ।
ମହାଶର ଗୁଣ ଗଜମୁକୁତାରେ ଖଞ୍ଜି
ଧନୁହୋଳ ପୃଷ୍ଠରେ ଖଞ୍ଜିଲା ମାଣିକ୍ୟ ପୁଞ୍ଜି ପୁଞ୍ଜ । ୩୮ ।
ମାଣିକ୍ୟ ପୁଞ୍ଜିକେ ହୀରା ପଦ୍ମ ଗୋଟିଏ ଗୋଟିଏ
ମାରଗ ପାଖୁଡ଼ା ମୁକୁତା ଶଏ ଶଏ । ୩୯ ।
ତାରେକ ବିଦାରଣ କାଳେ ଯେ ଧନୁ କଲେ ଶତମନୁ
କୁମାର ସମ୍ଭବେ ସେ ପାର୍ବତୀର ତନୁ । ୪୦ ।
ଶରଦ ହେମ ଶିଶିର ବସନ୍ତ ଗ୍ରୀଷ୍ମ ବରଷା ଛଅଋତୁ
ଯେ ଧନୁ ଗୁଣ ନ ଯାଇ ମାନଧାତା ହାଥୁଂ । ୪୧ ।
ପୂର୍ବ ଦିଗବିଜୟ କାଳେ ପ୍ରସନ୍ନ ହୋଇଲେ ସୂର୍ଯ୍ୟବଂଶୀ
ପୂଜାବିଧି କରିଣ ସହଦେବ ତୋଷି । ୪୨ ।
ମଦନାର ନନ୍ଦନ ଯେ କଇଲା ଜଗଜ୍ଜେଠୀ
ନାରାୟଣ ଭବଙ୍କ ଅନୁବ୍ରତେ ଯାହାର ନାମଗୋଟି । ୪୩ ।
ଗୃଳଶସହସ୍ର ବଳ ଯେ ଧନୁ ଅଟଇ
ମନ୍ତ୍ରୀ ଚୂଡ଼ାମଣି ସହଦେବ ଯେହାକୁ ବହଇ । ୪୪ ।
ମିଥୁନମାସେ ଯେହ୍ନେ ଝଟକନ୍ତ ବିଜୁଳୀ
ରତ୍ନମାନଂକର ତେଜ ଧନୁରେ ସେହିରୂପେ ଝଳି । ୪୫ ।
ନାରାଜ ଗୁପ୍ତୟେଣୀ ଯେ ଅନକୂଳ ଭଦ୍ରା ପଛୀ
ଯେକା ନାରାଜକେ ମୂନ ପଞ୍ଚଲକ୍ଷି । ୪୬ ।
ଅଶୀ ସହସ୍ର ନାରାଜ ପୂରିତ ବେନହୋଣେ
ମାତାଙ୍ଗସୁର ସମରେ ନାଶଗଲା ଯେଣେ । ୪୭ ।

---

୦୧।୧. ଶରଦ ଶିଶିର ହେମନ୍ତ ଛନଋତୁ ।—ଗ, ଙ, ଚ, ଟ, ଝ

ମନ୍ତ୍ରୀ ଚୂଡ଼ାମଣି ସହଦେବର ଯେ ଧନୁ
ବୃଳଶି ସହସ୍ର ବଳ ଯେ ଧନୁ ବହଇ କୁରୁଶାନୁ । ୪୮ ।
ବୃଶଧନୁର ମହିମାଂ ଯେ କହିଲେ କଶ୍ୱଠୀ
ଶୁଣିଣ ସାନନ୍ଦ ଯେ ହୋଇଲା ବଗ୍ରଟି । ୪୯ ।
ଶ୍ରୀଭୂଜେଣ ହେନ ପାଥ ଆପଣାର ଧନୁ
ଆନନ୍ଦେ ଅଶ୍ରୁଜଳ ଗଳତ ହେନ ନୟନୁ । ୫୦ ।
ଶୁଣ ବାବୁ ଉତ୍ତର ତୁ ଯେ ଧନୁର ମହିମାଂ
ସମନକ ସତ୍ୟଯୁଗେ କୁଶକେତୁ ନାମେ ବ୍ରହ୍ମା । ୫୧ ।
ଶତମନୁ ପରଯନ୍ତେ ବ୍ରହ୍ମା ଯାଗକଲା
ସେ ଯଗ୍ୟଂକୁଣ୍ଡ ମଧ୍ୟରୁ ଯେ ବାଂଶେକ ଉପୁଜିଲା । ୫୨ ।
ନାଭିମଣ୍ଡଳ ନାହିଁ ପୂରିତ 'କରମୁଷ୍ଟି
ଛତିଶ ପର୍ବ ସେ ପିଙ୍ଗଳ ବାଂଶ ଗୋଟି । ୫୩ ।
ବଜ୍ରକଣ୍ଠକଠାର ଯେ ହେନଣ ଚଉମୁଣ୍ଡ
ସେ ବାଂଶ ଗୋଟିକ ପିତାମହ କଲେକ ପାଞ୍ଚଖଣ୍ଡ । ୫୪ ।
ପ୍ରଥମ ଖଣ୍ଡକ ଯେ ଏକାଦଶ ପର୍ବ କଲା
ମନଏକ ବସି ବ୍ରହ୍ମା ଧନୁ ଯେ ସିଜିଲା । ୫୫ ।
ସେହି ଧନୁର ବଳ ଯେ ହୋଇଲା ତିନକୋଟି
ପିନାକ ନାମ ଦିଲେ ତାହା ବହିଲେ ଧୂର୍ଜଟି । ୫୬ ।
ଦୁତିୟ ଖଣ୍ଡ ଯେ ନବପର୍ବ କରି ହେନ
ଅର୍ଦ୍ଧ ମନୁକେ ତାହା ସିଜିଲା ପଦ୍ମଯୋନ । ୫୭ ।
ବେନକୋଟି ବଳ ସେ ସାରଙ୍ଗ ନାମେ ଧନୁ
ଇନ୍ଦ୍ର ଦେବତା ବହିଲେ ତାହା ଅମର ଭୁବନୁ । ୫୮ ।

---

୫୩। { ନାହିଂ ଗଣ୍ଠି ନାହିଂ ପର୍ବ ନାହିଂ କରେ ମୁଷ୍ଟି
ନାଭି ମଣ୍ଡଳ ନାହିଁ ପୂରନ୍ତ ବେନମୁଷ୍ଟି ।—ଣ, ଝ, ଗ

୫୪। ବଜ୍ରକଣ୍ଠକଠାର ଯେ ଯେନଣ ଘଣ୍ଟମୁଣ୍ଡ ।—ଢ, ଫ, ଣ

ଭୃତୀୟ ଖଣ୍ଡ ଯେ ହୋଇଲା ପର୍ବ ସାତ
ମନୁଷ୍ୟେକ ବସି ଧନୁ ଯେ ସୃଜିଲା ବିଧାତା । ୫୯ ।
କୋଟିଏକ ବଳ ସେ ଯେ ଅଜଗ ନାମେ ଧନୁ
ସତ୍ୟଯୁଗେ ତାହା ବହିଲେ ପ୍ରଶୁରାମ ଜମଦଗ୍ନିର ତନୁ । ୬୦ ।
ଆରେକ ଖଣ୍ଡ ଯେ ପାଞ୍ଚପର୍ବ ଗଣି
ପଞ୍ଚବଂଶ ଗଣ୍ଡା ଯୁଗେ ସେ ଧନୁ ନିର୍ବାଣି । ୬୧ ।
ନବଲକ୍ଷ ବଳ ସେ ଯେ କୋଦଣ୍ଡ ଧନୁ ନାମ
ତ୍ରେତୟା ଯୁଗେ ଭୂଭାର ନିବାରଣ ଅର୍ଥେ ତାହା
ବହିଲେ ଶ୍ରୀରାମ । ୬୨ ।
ଆର ଏକଖଣ୍ଡ ଯେ ହୋଇଲା ପର୍ବ ତିନ
ପାଞ୍ଚଯୁଗେ ଧନୁ ଯେ ସୃଜିଲା ପଦ୍ମଯୋନି । ୬୩ ।
ତାକୁ ଯେ ଧନୁର ନାମ ଯେ ଅଟଇ ଗାଣ୍ଡିମ
ଦ୍ୱାପର ଯୁଗେ ଅର୍ଜୁନକୁ ଯେହୁ ଦେଲେ ଶ୍ରୀପୁରୁଷୋତ୍ତମ । ୬୪ ।
ଲକ୍ଷେକ ଧନୁ ଯେ ଯେ ବହଇ ପାଲଗୁନ
ଯେ ଧନୁର ନାରଜ ସହନ୍ତା ନାହିଂ ମେଦିନୀ । ୬୫ ।
ଅଗ୍ନି ଦେବତାଂକର ଯେ ଲୁଦୁବୁଦୁ ବ୍ୟାଧି
ଖାଣ୍ଡବ ବନ ଦହଣ ଦେଲେକ ମଉଷଧି । ୬୬ ।
ଆରୋଗ୍ୟ ହୋଇଲେ ସେ ଲୋହିତ ପିଙ୍ଗଳ
ପ୍ରତିଗ୍ରହ କରି ଅର୍ଜୁନକୁ ଦେଲେକ ସକଳ । ୬୭ ।
ପଞ୍ଚତିରିଶ ପର୍ବ ଯେ ପାଞ୍ଚଧନୁ ହୋଇଲା
ପିନାକ ସାରଙ୍ଗ ଅଜଗ କୋଦଣ୍ଡ ଗାଣ୍ଡିମ ନାମ ଦିଲା । ୬୮ ।
ଆହୋ ଉତ୍ତର ଅଗ୍ରଚ୍ଛେଦ ହୋଇ ଯେ ଉବୁରିଲା ଏକପର୍ବ
ବାଇଶୀ କୋଟିଏ କଲା ତାହା ପିତାମହ ଦେବ । ୬୯ ।
ସତ୍ୟ ତ୍ରେତା ଯୁଗେ ତାହା ଥୋଇଲା ଯତ୍ନକରି
ଦ୍ୱାପର ଯୁଗେ ନାରାୟଣ କହ୍ନା ଅବତାରେ ଜନ୍ମିଲେ ଗୋପପୁରୀ ।୭୦।

---

୬୫।୨ ଯେ ଧନୁରେ ଶରହସ୍ତ ସନ୍ଧିଲେ ସମ୍ଭାଳନ୍ତା ନାହିଂ ନାହିଂ
ପୁର ଦିନ ।—ତ, ଅ

ରଙ୍ଗା ଅବଛାରେ ସେ ଗୋପୀଂକର ଅର୍ଥେ
ମନ୍ଦର ଧଇଲେ କହ୍ନା ଗୋପୀ ଗୋପାଳ ନିମନ୍ତେ । ୭୧ ।
କାଳୀକି ଦଳିଲେ ସେ କଂସର ଦବାଦେ
ପୂର୍ଣ୍ଣେକ ନନ୍ଦମା ରାଧାକୁ ଇଚ୍ଛିଲେ କୃଷ୍ଣ ହୃଦେ । ୭୨ ।
ଦୂତିକା ପେଷି ଅନେକ ଧନ ଦିଲେ ହରି
ପାଦେ ପେଲି ରାଧା ତାହା ପକାଇଲା ଦୂରକରି । ୭୩ ।
ରାଧାର ବିରହେ ସେ ନିରାଶ ଉପବାସେ
ନିଆଣ୍ଡି ବସିଲେ ହରି ରାସ ଯେ ଦିବସେ । ୭୪ ।
ଛାଡିବଇଂ ସବୁ ଚିନ୍ତା ବୋଇଲେ ନ ମାରିବି କଂସ
ମନୁଷ୍ୟ କାୟା ଛାଡିବ ଯିବି ନିଜ ବାସ । ୭୫ ।
ହରିଂକ ନିସ୍ପଣ ଦେଖି ବ୍ରଜସ୍ଥେ ଦେବବ୍ରହ୍ମା
ନାରାୟଣକଇଂ ପ୍ରସନ୍ନ ଯେ ହୋଇଲେ ମହାତମ । ୭୬ ।
ସ୍ନେସନେକ ନିରାଶ ଅବସ୍ଥା ହରି ହୋଇଲୁ କିମର୍ଥେ
ପୂର୍ଣ୍ଣେକ ନନ୍ଦମା ରାଧା ଲେଚ୍ଛିଲ କି ତୋତେ । ୭୭ ।
ବଦନ୍ତ୍ୟନ୍ତ କେଶବ ଯେ ପିତାମହର ବଚନେ
ମାରିବି କଂସକୁ ଯେବେ ରସିବେ ଗୋପସ୍ତ୍ରୀମାନେ । ୭୮ ।
ସେ ରାଧା ନିରାଶ କଲା ଯତ୍ନଂ ମୋତେ
ମହାଭବ ଉଚ୍ଛ୍ୱାସ ମୁଂ କରିବଇଂ କେମନ୍ତେ । ୭୯ ।
ବଦନ୍ତ୍ୟନ୍ତ ପିତାମହ ଶୁଣିମା ହୃଷିକେଶୀ
ମୁହିଂ ତୋତେ ଦେବଇଂ ଅନେକ କାଳର ବରହ ବାଯ୍ୱଂଶୀ । ୮୦ ।
ସ୍ତମ୍ଭନ ମୋହୋନ ବଶ୍ୟ ଉଚ୍ଚାଟନ ଅଞ୍ଜନ ଯେ ପଞ୍ଚ ସ୍ୱର
ନାମ ଧରି ବାଇଲେ ଗୋପୀସ୍ତେ ଆସିବେ ତୋହୋର ଛାମୁର । ୮୧ ।
ବଂସ୍ୱଂଶୀ ଧରି ବାଇବୁ ରାଧାନାମ ଧରି
ସେ ତୋତେ ବଇନ କରିବଟି ନିଜବାସ ସ୍ନେଡକରି । ୮୨ ।

---

୭୨।୨ ପୂର୍ଣ୍ଣେକ ନନ୍ଦମା ରାଧା ନ ମଜ୍ଜିଲା କୃଷ୍ଣପାଦେ ।—ଦ
୭୨।୨ ବୃଷଭାନୁ ସୁତା ରାଧା ନ ଚଳନ୍ତେ ହୃଦେ ।—ଠ
୭୮।୧ ନମାରିବ କଂସ ସ୍ନେ ଗୋପୀଂକ କାରଣେ ।—ଶ

ଆହେ। ଉତ୍ତର ଯେବଣ ବଇଂଶୀଗୋଟି ଦେଇଗଲେ ହାଦେ ପିତା
ଚେଣ୍ଡ଼ୁକର ଗୋପୀମାନଙ୍କ ହରି ରମିଲେ ଅପ୍ରମିତା । ୮୩ ।
ଉତ୍ତର ବୋଇଲା ହୋ ଜୀବନ ତୋର ଧନ୍ୟ ଧନ୍ୟ
ସାଧୁ ସାଧୁ ତୋହୋର ପିଅର ଜନନୀ । ୮୪ ।
ତୁ ଅବା ନପୁଂସେକ ମୁଂ ତୋତେ ଶୁଦ୍ଧବେଳେ ଭେଟି
ତୋହୋର ଜୀବନ ଧନ୍ୟ ଧନ୍ୟ ସାଧୁ ମୋହୋର ଜୀବନଗୋଟି । ୮୫
ଶୁଣ ହୋ ଉତ୍ତର କୁମାର ଯେ ଗାଣ୍ଡିମ ଧନୁ କଥା
ଯେଣେ ସେ ହରି ନବ୍ରରଣ ହୋଇବ ସର୍ବଥା । ୮୬ ।
ଉତ୍ତର ବୋଇଲା ଆଶ୍ଚର୍ଯ୍ୟ ହୋଇଲ ବୃହନ୍ନଳା
ତୁ ଏହା କେମନ୍ତେ ହୋ ଜାଣିଲୁ ତଦନ୍ତ କର । ୮୭ ।
ବୃହନ୍ନଳା ବୋଇଲା ତୁ ଶୁଣସି ଉତ୍ତର
ମୁହିଂ ଯେ ଅଭେଦ ଅଟଇ ପାଣ୍ଡବଙ୍କର । ୮୮ ।
ଏହେନ୍ତେକ କରି ମହାତମା ଆମ୍ଭନ୍ତ କରନ୍ତି ସଦୟେ
ଯେ ସେ ବୃହନ୍ନଳା ସେ ପ୍ରତକ୍ଷେ ଧନୁର୍ଜୟେ । ୮୯ ।
ଉତ୍ତର ବୋଇଲା ତୁ ସମସ୍ତ ଭେଦ ଜାଣୁ ଯେବେ
ଏ ଶସ୍ତ୍ରନ୍ତ ଥୋଇ ପାଣ୍ଡବ ଗଲେ କେଉଂଣ ଠାବେ । ୯୦ ।
ବୃହନ୍ନଳା ବୋଇଲା ସେ ପଶାର କୁତୂହୋଳେ
ରାଜ୍ୟଭାର ଥାଠ ସର୍ବ ପରଜା କଲେ ଏକାବେଳେ । ୯୧ ।
ଯେ ପଶାରେ ହାରଇ ସେ ଦ୍ୱାଦଶ ବରଷ ବନେ ସେବ
ଅଗ୍ୟାଂତବାସ ବରଷେ ତେରହିନ ଭୋଗି । ୯୨ ।
ବରଷେ ତେର ଦିବସ ଯେବେ ହୋଇବ ଜାଣନ୍ତା
ପୁଣ ଦ୍ୱାଦଶ ବରଷ ବନେ ସେ ଯିବ ଏସନେକ କଥା । ୯୩ ।

---

୯୧।୧ ବୃହନ୍ନଳା ବୋଇଲା ସେ କଥାର କୁତୂହୋଳେ ।—ଟ, ଠ, ପ, ଘ, ଙ୍ଗ, ଗ, ଡ, ଅ, ଷ, ଛ

୯୩।୨ ପୁଣ ଦ୍ୱାଦଶ ବରଷ ବନେ ସେ ଯିବ ଏହେନ୍ତେକ ସତ୍ୟବନ୍ତା ।—ଷ, ଷ

ଆହୋ ଉତ୍ତର ତଇକ ପୁରୁଷମାନେ କଲେ ଧର୍ମରେ କଷଣ
ସୂର୍ଯ୍ୟେଷ୍ଟି ବନବାସେ ହୋଇକ ମହାଭୟ ନିବାରଣ । ୯୪ ।
ବନେ ପଶିଣ ଯେ ଅନେକ ଦଇତ ମାରି
ପ୍ରଥମ ବନବାସେ କୁମ୍ଭିର କନ୍ୟା ନିବାରି । ୯୫ ।
ହିଡମ୍ବେକ ବନେ ପଶି ହିଡମ୍ବେକ ଦଇତ ମାରି
ହିରଣ୍ୟପୁରେ ଷାଣ୍ଡବାସୁରକୁ ନିବାରି । ୯୬ ।
ଦୁଜ ବନବାସେ ଯେ ନିବାତକପଟ
ହିରଣ୍ୟକପଟ ଆବର ବଜ୍ର ଯେ କପଟ । ୯୭ ।
ଗୋସିଂହ ରଣସିଂହ ଜପାସୁର ତାରକ ତ୍ରିପୁରା
ମଧୁ ମେରୁଶୂଳ କାଳାନଳ କାଳନଜମୀ ଆବର ଅଙ୍ଗିରା । ୯୮ ।
ଅନେକ ଦାନବ ସେ ନାଶକଲେ ବନେ
ଅଗ୍ୟାଂତବାସେ ସେ ରହିଲେ ଗୋପ୍ୟାନେ । ୯୯ ।
ଧର୍ମ ନ ଲଂଘନ୍ତି ସେ ମହତ କୁଳଶୀଳ
ଅଗ୍ୟାଂତବାସେଣ ସେ ବାଞ୍ଛାଇଛନ୍ତି ଦିନକାଳ । ୧୦୦ ।
ଆବର ତନଦନ ଅଛଇ ଲେଖନ୍ତେ
ତାହା ତୁ ଗୋପ୍ୟକରି ପାରିବୁ କି ହୃଦଗତେ । ୧୦୧ ।
ଉତ୍ତର ବୋଇଲା ସତ୍ୟ କହଇଂ ଯେ ମୁହିଂ
ସାତଦିନ ପରଯନ୍ତେ ମୁଂ ନ କହିବ କାହିଂ । ୧୦୨ ।
ଧର୍ମ ଲଂଘଇ ମୁହିଂ କରତାରେ ଦ୍ରୋହ କରଇ
ନିରଞ୍ଜନ ଥାଳେ ମୁଂ ହିଷ ଯେ ଭରଇ । ୧୦୩ ।
ଜଳେ ଉଲଗ୍ନ ହୋଇ ସ୍ନାହାନେ ଯେତେ ଦୋଷ
ସେ ଦୋଷ ଲଭିବ ମୁଂ କଲେଟି ପ୍ରକାଶ । ୧୦୪ ।
ବୃହନ୍ନଳା ବୋଇଲା ତୁ ଶୁଣ ହୋ ବରାଟି
ଏବେ ତୋହୋର ରାଜ୍ୟରେ ଯେ ଅଛନ୍ତି ପାଣ୍ଡବ ପାଞ୍ଚଗୋଟି । ୧୦୫ ।
ଉତ୍ତର କୁମାର ଆଶ୍ର ଜ ଯେ ବୃହନ୍ନଳା ବଚନେ
ଏକଥା ସଂପ୍ରତେ ମୁଂ କରିବ କେସନେ । ୧୦୬ ।

ଆହୋ ବୃହନ୍ନଳା ରାଜପୁରୀ ଯାଗ ଯୁଧିଷ୍ଠିର ଠାକୁରେ କଲେ
ପଞ୍ଚଉତ୍ତର ଶତେ ରଥ ସୁବର୍ଣ୍ଣ ଦେଖା ଦରଶନ ସେନଣ ବିରାଟ ଯେ
ଗଲେ । ୧୦୭ ।
ସାତଦିନ ପର୍ଯ୍ୟନ୍ତେ ଛତ୍ରଶାଳେ ଅନ୍ନ ଖାଇ
ଷୋଳଦିନ ରହିଲେ ଭୁଶନ ନ ପାଇ । ୧୦୮ ।
ଭୀମସେନ ଠାକୁର ଯୁଧିଷ୍ଠିରଙ୍କ ସାନଭ୍ରାଥ
ଅନ୍ତରୀକ୍ଷ ବିରାଟକୁ ଘେନଗଲେ ଗଣ୍ଡସ୍ଥଳେ ଦେଇ ହାଥ । ୧୦୯ ।
ଯୁଧିଷ୍ଠିର ଦେବଙ୍କସେ ପାଦତଳେ ପକାଇଲେ ନେଇ
ପଦ୍ମପାଦଗୋଟି ମାତ୍ର ପିତା ମୋର ଦେଖିଲକ ତହିଁ । ୧୧୦ ।
ଆବର ଦେଖିଲେ ଶ୍ରୀହସ୍ତର ମଚ୍ଛମୁଦ୍ର ଗୋଟିଏ
ଦିଶଇ ବିଜୁଳୀ ତେଜ ଆଦିତ୍ୟର ପରିଯେ । ୧୧୧ ।
ଲକ୍ଷେକ ନୃପତି ଯାହାର ଚରଣ ତଳେ ଲୋଟି
ବାସୁଦେବ ପଡିହାରୀ ପଣେ ଯାହାର ଚରଣ ତଳେ ଖଟି । ୧୧୨ ।
ଲକ୍ଷେ ନୃପତି ଯେ ସବୁଙ୍କର ମୁକୁଟେ
ଯୁଧିଷ୍ଠିର ଦେବଙ୍କର ପାଦ ଅଙ୍ଗୁଷ୍ଠି ବସିଲା ସବୁର ଲଲାଟେ । ୧୧୩ ।
କେତେ ପୁଣ୍ୟ କାହିଁ ହୋଇବ ବିରାଟର ବଂଶେ
ଯୁଧିଷ୍ଠିର ଦେବଙ୍କର ପାଦରଜ ପଡିବ କି ମୋହୋର ଦେଶେ ।୧୧୪।
ଶୁଣି ଉତ୍ତର ପ୍ରତିବାକ୍ୟ ଦିଅଇ ବୃହନ୍ନଳା
ଅବଦେ ହୋଇଲାନ ତୋହୋର ରାଜ୍ୟ ଠାକୁରେ ଅଛନ୍ତି
ବିଜେକରି । ୧୧୫ ।
ଆହୋ ଉତ୍ତର ଯାହାର ଭୁଲେ ପଣ ଖେଳନ୍ତି ବିରାଟେ
ସଭାପଣ୍ଡା ନାମ ବହନ୍ତି କୌନ୍ତଭଟ୍ଟେ । ୧୧୬ ।
ଅମାତ ବଚନ ହୋ ନ ଆସଇ ଯାହାର ମୁଖେ
ସେହି ସେ ଯୁଧିଷ୍ଠିର ଉତ୍ତର ବୁଝିସି ପ୍ରତକ୍ଷେ । ୧୧୭ ।
ଉତ୍ତର କୁମାର ଆଶ୍ରିଜ ଯେ ହୋଇଲା ତାହା ଶୁଣି
ଦେଖି ତଦନ୍ତ କରି ବୁଝି ବୃହନ୍ନଳା ପୁଣି । ୧୧୮ ।

---

୧୧୩।୨ ଯୁଧିଷ୍ଠିର ଦେବଙ୍କ ପାଦରଜ ଲାଗଇ ସବୁର ଲଲାଟେ ।—ଜ, ଦ

ଗନ୍ଧମାଦ୍ଧନ ପର୍ବତ ଜାଣି ଭୀମସେନର କାଯେ୍ୟ
ସେ ଗୋପ୍ୟମାନ ହୋଇଲେ ପୁଣ କେବଣ ଉପାୟେ । ୧୧୯ ।
ଛନ୍ନଷାଠି ପଙ୍କ୍ତି ଅନ୍ନକେ ଯେ ବେଳକେ ଅର୍ପିତ
ପ୍ରେତେକ କେମନ୍ତେ ତାକୁ ହଅଇ ମହୀପତ । ୧୨୦ ।
ସ୍ୱେ ତୋହୋର ବଚନ ଯେବେ ମୁହିଂ କରିବଇଂ ସତ୍ୟ
ଅଥବା ସରୁପ କର ମୋତେ କହନ ସଂଘାତ । ୧୨୧ ।
ଶୁଣ ବାବୁ ଉତ୍ତର କହଇ ଫାଲଗୁନ
ଇଦଂ ବାକ୍ୟ ହୃଦଗତେ ବଗୃରଲେ ସରୁପ ଲୟେ ଘେନ । ୧୨୨ ।
ଶୁଣ ହୋ ଉତ୍ତର ତ୍ରଇଲୋକ୍ୟ ମଧ୍ୟେ ଯାହାର ମହିମାଂ ଦୁର୍ଲଭ
ଜାଳର ଅବଳେ ସେ ସୂପକାର ବଲ୍ଲଭ । ୧୨୩ ।
ମତ୍ତପ୍ରମତ୍ତ ବାଘ ଯେ ବଧିକଲା ଯୁଦ୍ଧେ
ପ୍ରଚଣ୍ଡ ମାଲ ଯେ ମାଇଲା କଉତୁକ ଶଧେ । ୧୨୪ ।
ସଇରନ୍ଧ୍ରୀକି ବେଢିଲା ଯେ କୀଚକ ସେନାପତି
ଗୁପତ ଯୁଦ୍ଧେ ତାହାନ୍ତ ବିନାଶିଲା ମାରୁତି । ୧୨୫ ।
ତ୍ରିଗର୍ତ୍ତ ତୋହୋର ପିତାକୁ ଯେ ବାନ୍ଧ ନେଉଥିଲା
ଆଠ ତାହାର ସହର ବଗଂଟକୁ ବନ୍ଦନୁ ଆଣିଲା । ୧୨୬ ।
ପାଣ୍ଡବ ସୂନ୍ଦର ସେ ଅମାପ ବଳବନ୍ତା
ସେ ସେ ବୃକୋଦର ସମରେ ଜଗୁଜତା । ୧୨୭ ।
ଉତ୍ତର କୁମାର ବୋଇଲା ଶୁଣ ବୃହନ୍ନାଳୀ
ତଦ୍ୟାପି ମନଭ୍ରାନ୍ତି ନହାଇ ଫିଟଇ ମୋହୋର । ୧୨୮ ।
ବୃହନ୍ନାଳୀ ବୋଇଲା ରେ ଶୁଣସି ଉତ୍ତର
ଅଗ୍ନି ବଦାର ବାହାର ଯେବଣ ଶରୀର । ୧୨୯ ।

---

୧୨୯।୨ "ଅଗ୍ନି ବଦାର ବାହାର ଯେବଣ ଶରୀର"
ପଠ ପରେ 'ଝ, ଘ' ପୋଥିରେ ଅଧିକା ପାଠ:—
ମୋତେ ଯେ ପୂଜିଲୁ ହୋ ଶୁଣସି ଜନକର
ଯାଗରୁ ଜାତଭଲେ ବଳ୍ଲ ମଇଷ ମୂନବର ।

ସଇରନ୍ଧ୍ରୀ ରୂପେଣ ମୁକୁଳିତ ଯାର କେଶ
ତାହାର ଲୁବ୍ଧେ କୀଚକ ଗଲେ ପ୍ରାଣନାଶ । ୧୩୦ ।
ପଞ୍ଚାଳ ଦେଶ ନୃପତି ଦ୍ରୁପଦ ରାଜାର ଅବଳା
ପ୍ରତଗ୍ୟାଂ ସାଧିବା ସେ କେଶ ଯାହାର ମୁକୁଳା । ୧୩୧ ।
ଗୋପ୍ୟାନ ନିମନ୍ତେ ସେ ସଇରନ୍ଧ୍ରୀ ନାମ ବହି
ଧନ ହରଣ ନିମନ୍ତେ ସେ ଗୋପ୍ୟେ ଛନ୍ତି ରହି । ୧୩୨ ।
ନକୁଳକୁମାର ଯେ ସୁନ୍ଦର ସୁକୁମାର ଅଟଇ
ଅଶ୍ୱିନୀକୁମାର ମୁଖେ ଯାହାଙ୍କୁ ପାଟ ଅଛଇ । ୧୩୩ ।
ହେମବନ୍ତ ବିବାଦେ ଯେ ପୃଥ୍ୱୀ ଧଇଲେ କୋନ୍ତମୁନେ
ଛଳ ପ୍ରାପ୍ତେ କରି ବହିଲେ ଅଭିମାନେ । ୧୩୪ ।
ସୁନ୍ଦର ସୁକୁମାର ସେ ପଣ୍ଡିତ ମହାସିଦ୍ଧା
ରେହନ୍ତର ପ୍ରସାଦେ ସେ ଜାଣଇ ଅଶ୍ୱ ଲକ୍ଷଣ ବିଦ୍ୟା । ୧୩୫ ।
ଗୋପ୍ୟାନ ନିମନ୍ତେ ସେ ଗ୍ରନ୍ଥିକାର ବାଜୀପାଳ
ସର୍ବଗୁଣେ ସୁଲକ୍ଷଣ ସେ କୁମାର ନକୁଳ । ୧୩୬ ।
ଆହୋ ଉତ୍ତର ଯାହାର ଅଶ୍ୱ ସାଜିଲେ ଜିଣଇ ପରଥାଠଇ
ନ ଜିଣିଲେ ନ ଲେଉଟଇ ସରୂପ ଜାଣ ଅଟଇ । ୧୩୭ ।
ଆହୋ ଉତ୍ତର କହନ୍ତେ ନ ସରଇ ସେହାଂକର ମହିମାଂ
ଆକାଶରେ ପଡୁଥାଇ ଯାହାର ଗାରିମା । ୧୩୮ ।
ନାମ ସଂକେତ ନାଶକର ସକଳ ଦର୍ପ ଗଞ୍ଜା
କାଳଦଣ୍ଡ ଗୁଡଇ ତାକୁ କୃତାନ୍ତେକ ଦେବରାଜା । ୧୩୯ ।
ବୃହନ୍ନଳା ବୋଇଲା ଶୁଣ ହୋ ବିରାଟର ବଛା
ମନ୍ତ୍ରୀ ଚୂଡ଼ାମଣି ସହଦେବ ଗୋରୁଙ୍କର ପରିଛା । ୧୪୦ ।
ପିତାଙ୍କୁ ଅବାଧ ଯେବଣ ପ୍ରୋଥନା
ଲକ୍ଷେ ରାଜାକଇଂ ଯେ ନପାଇ ଗଣନା । ୧୪୧ ।
ସାତକ୍ଷଉଣୀ ବଳ ଯେନ ବାହିଲା ବିରାଟ
ପ୍ରୋଥନା ଶିଂଗଘାତେ ନିମଞ୍ଜିଲା ଥାଠ । ୧୪୨ ।
କେନକ୍ଷଉଣୀ ବଳ ମରାଇ ଗଲା ମଲ୍ଲକେଶେ
ସେ ପ୍ରୋଥନା ସାଧି ହୋଇଲା ଯାହାର କେନୁସୋଷେ । ୧୪୩ ।

ଉତ୍ତର ଯାହାର ନାମ ଧରନ୍ତେ ସର୍ବ ବେଗ ଭୁଟି
ଭୂତ ଭବିଷ୍ୟ ଗର୍ଯ୍ୟଂତା ବାବୁ ଯାହାର ନାମଗୋଟି । ୧୪୪।
ଗୋରୁନ୍ତ ତାଉବାକୁ ଯାହାର ମନ୍ତ୍ରବୁଦ୍ଧି
ତେଣୁ ସେ ତନ୍ତ୍ରୀପାଳ ଗୋପାଳ ନାମ ପରସିଦ୍ଧି । ୧୪୫ ।
ଉତ୍ତର ବୋଇଲା ବୃହନାଗ୍ଧ ମୁଖ ଗ୍ଧହୁଂ
ଯେମାନଂକ ବାରତା ପାଇଲ ଅର୍ଜୁନ ଠାକୁରେ ଗଲେ କାହୁଂ ।୧୪୬।
ବୃହନ୍ନଗ୍ଧ ହସିଲେ ଯେ ଉତ୍ତର ବଚନେ
ମୁହିଂ ସେ ପାର୍ଥିବ ହାଦେ ବାସେବ ନନ୍ଦନେ । ୧୪୭ ।
ଉପହାସେ ଉତ୍ତର ନାସିକାଯେ ଦେଇ ହାଥ
ବାବୁ କ ପାତକେ ଅର୍ଜିଲୁ ହୋ ବାସେବର ସୁତ । ୧୪୮ ।
ବାବୁ ହରହର ଆତ୍ମାଗୋଟି ଯେବଣ ପୁରୁଷ
ନପୁଂଷେକ ଲକ୍ଷଣ ହେଲୁ କେବଣହୁଂ ଦୋଷ । ୧୪୯ ।
ମୁହିଂ ଯାହା ଶୁଣିଅଛୁ ଦେଶାନ୍ତର ମୁଖେ
ଗ୍ରମକୃଷ୍ଣ ଜିଣିବାକୁ ଯେ ସାମର୍ଥ ଅଟଇ ଯେକେ । ୧୫୦ ।
ବୃହନ୍ନାଗ୍ଧ ବୋଇଲା ସତ୍ୟ ମୋର ବାଣୀ
ପୁରୁଷ ବେଶ ମୋହୋର ଦେଖ ଯେହ୍ନକ୍ଷଣି । ୧୫୧ ।
ଉତ୍ତର କୁମର ବୋଇଲା କେବଣ ତୋର ପାପ
ଯେହେନ୍ତେକ ଅଲକ୍ଷଣ ତୋହୋର କାହାର ଅଭିଶାପ । ୧୫୨ ।
ଯେ ମୋହୋର ଇତମ୍ ବାକ୍ୟ ଶୁଣ ରେ ବଗ୍ଧଟି
ନର୍ବାତକପଟେ ବଧକର ମୁଂ ଅମଗ୍ଧଧି ନାଥେ ଭେଟି । ୧୫୩ ।
ଯେବଣ ବେଳେ ଦାନେବ ଧାଉଁଥିଲେ ଅମର ମଣ୍ଡଳେ
ହାଞ୍ଜିଣ ଜୂର କରଇ ସର୍ଗ ମଣ୍ଡଳ ସର୍ବକାଳେ । ୧୫୪ ।
ମୁଂ ତାହାକଇଂ ନିଧନ ହାଦେ କଲଇଂ ସମରେ
ଅନେକ ଉତ୍ସବ ଇନ୍ଦ୍ର ଦେବତା କଲେକ ଅମରେ । ୧୫୫ ।

---

୧୪୮।୨ ବାବୁ କେଉଁରୂପେ ରୁହ ବାସେବର ସୁତ ।--ଘ, ଠ, ଡ, ଗ
୧୪୯।୧ ନାରାୟଣ ଅର୍ଦ୍ଧଅଙ୍ଗ ଯେବଣ ପୁରୁଷ ।—ଦ, ଜ

ଆସ୍ତାନେ ପିତାମହ ବସାଇଲେ ମୋତେ କୋଳେ
ଅପଚ୍ଛରାସ୍ୱେ ମୋତେ ବେଢଲେ ହର୍ଷ ହେଲେ । ୧୫୬ ।
ଆଶା ଜାଣିମା ନମନ୍ତେ ବାସେବ ଦେବତା ବଲେ ପେଷି
ଅନେକ ବନୋଦ୍ୟୀ ରମଣ ମୋତେ ମାଗିଲା ଉର୍ବଶୀ । ୧୫୭ ।
ଶୁଣ ହୋ ସତ୍ୟଯୁଗେ ଅମରେ ପୁରରବା ନାମେ ରାଜା
କାଳେ ସେ ଉର୍ବଶୀ ହୋଏ ତାହାଂକର ଘରଜା । ୧୫୮ ।
ପୁରରବା ଅନ୍ତେ ଇନ୍ଦ୍ର ହୋଇଲେ ନହୋଷ
ତାହାଂକରେ ଉର୍ବଶୀ କରାଇଲା ଅଭିଳାଷ । ୧୫୯ ।
ପୁଣ ଇନ୍ଦ୍ରପଦେ ବସିଲା ଯଯାତି
ତାହାଂକର ଉର୍ବଶୀ ହୋଇଲା ପ୍ରିୟବନ୍ତି । ୧୬୦ ।
ପୁଣ ଇନ୍ଦ୍ରପଣେ ସ୍ୱର୍ଗେ ବସିଲେ ଦୁଷ୍ମନ୍ତ
ତାହାଂକର ଉର୍ବଶୀ ହୋଇଲା ପ୍ରିୟମତ । ୧୬୧ ।
ଏବେକେ ଇନ୍ଦ୍ରପଦେ ଯେ ଅମର ମଣ୍ଡଳେ
ଏ ମୋହୋର ପିଅର ଅଟଇ ଆଖଣ୍ଡଳେ । ୧୬୨ ।
ଏବେ ସେ ଉର୍ବଶୀ ଅଟେ ତାହାଂକର ଯୁବତୀ
ମୁହିଂ ପାମର ତାହାକଇଂ କେମନ୍ତେ କରିବଇଂ ସୁରତ । ୧୬୩ ।
ବଂଶ ଗୁରୁପତ୍ନୀ ବୋଲି ନାସ୍ତି ମୁହିଂ କଲି
ରାଗେ ଉର୍ବଶୀ ବୋଇଲା ନପୁଂସେକ ହୋଅ ବୋଲି । ୧୬୪ ।
ବରହିତା ବାମା ମୁଂ ମୋତେ କଲୁ ତୁ ନରାଶ
ଅନ୍ୟସ୍ତିରୀ ମେଳେ ତୋହୋର ନୋହୁ ଅଭିଳାଷ । ୧୬୫ ।
ଶୁଣ ବାବୁ ଉତ୍ତର ଏହା ଜାଣିଲେ ସହସ୍ରଯୋନ
ସାଧୁ ସାଧୁ ପୁତ୍ର ବୋଲି ମୋତେ କଲେ ଧନ ଧନ । ୧୬୬ ।
ଉର୍ବଶୀକି ବାସବ ଦେବତାଏ କଲେ କୋପ
ନକଳଂକ ପୁତ୍ର ଗୋଟିକି ମୋର ଦେଲୁ ଏତେକ ଶାପ । ୧୬୭ ।
ବାସେବ ଦେବତାଂକ କୋପେ ମୋତେ ସେ କଲାକ ସଦଏ
ଯାଅ ଯା ଶାପ ମୋହୋର ତୋତେ ହିତ ହୋଉ ଧନୁର୍ଜଏ । ୧୬୮ ।

---

୧୫୬।୨ ଉର୍ବଶୀ ଖାଇଲେ ମୋତେ ମଦନ ରସଶ୍ଳେଷେ ।—ଦ

ଗୁପତେ ବନବାସ ଯେ ହୋଇବ ଅଗ୍ୟାଂତ
ଆନ ଆନ ରୂପେ ତୁମ୍ଭେ ଗୁପତେ ରହିବ ପଞ୍ଚୁଭ୍ରାଥ । ୧୬୯ ।
ବେନଭୁଜେ ତୋହୋର ଯେ ଫଳତ ଗୁଣଘୃଷ୍ଟେ
ବାନ୍ଧ ବାନ୍ଧ ତାହା ଲୁଚ୍ଛଇବୁ ସଙ୍କଟେ । ୧୭୦ ।
ବାବୁ ପରମ ସାଧଙ୍ଗ ମୋତେ ଯାହା କୋପେଣ ବୋଇଲା
ମହତଂକର କୋପ ମୋତେ ପରମହିତ ହୋଇଲା । ୧୭୧ ।
ମୋହୋର ଲକ୍ଷଣ ଯେ ଯେସନେ ଜବଂଶୀ
ଅମରେ ବସିଅଛୁ ଯେ ହୋଇଣ ପୁରୁଷବେଶୀ । ୧୭୨ ।
ତୁ ଯେ ପୁଚ୍ଛାକଲୁ ବାବୁ ମୋହୋର ଚରିତ
ନପୁଂସେକ ଲକ୍ଷଣ ମୋତେ ହୋଇଲା ଯେମନ୍ତ । ୧୭୩ ।
ଉତ୍ତର ବୋଇଲା ଅର୍ଜୁନ ଠାକୁରେ ବହନ୍ତି ଦଶନାମ
ତାହା କହିଲେ ମୁଂ ହୋଇବି ପରଣାମ । ୧୭୪ ।
ଅର୍ଜୁନ ବୋଇଲେ ଉତ୍ତର ବହୁତ ଗହନ ଯେ କଥା
ତୁ ଯେ ପୁଚ୍ଛାକଲୁ କହିବାନା ତାହାର ବାରତା । ୧୭୫ ।
ଧୃତରାଷ୍ଟ୍ର ଅନ୍ଧ ଯେ ରାଜ୍ୟକୁ ନୋହିଲା ଯୋଗ୍ୟ
ସୋଦର ଅର୍ଥେ ପଣ୍ଡୁର ତାହାଂକୁ ବଡ ଭାଗ । ୧୭୬ ।
ଧୃତରାଷ୍ଟ୍ରକୁ ପଣ୍ଡୁ ରାଜ୍ୟଭାର ଦେଇ
ଦୁଷ୍ଟଂକ ନିବାରଣେ ସେ ବନଗାମୀ ହୋଇ । ୧୭୭ ।
ପଣ୍ଡୁଂକର ତୁଲେ କୋଇନ୍ତା ମାଦ୍ରୀ ବେନରାଣୀ
ଶତଶୀଂଗ ପର୍ବତରେ ଯେ ଆଶ୍ରମ କଲେ ପୁଣି । ୧୭୮ ।
ସେ ସୁରନଦୀ ସ୍ଥାରେ ଅର୍ଜୁନ ନାମେ ବନ
ତହିଂ ଜନମିଲି ମୁଂ ମିଥୁନ କୃଷ୍ଣ ଦୁଷ୍ଟଦ୍ୱାର ଦନ । ୧୭୯ ।
ବୃହସ୍ପତି ବାର ନକ୍ଷତ୍ର ଯେ ଉତ୍ତରା ଫାଲଗୁନ
ରଷେଣ କୋଳେ ମୋତେ କୋଇନ୍ତାଏ ଛନ୍ତି ଘେନ । ୧୮୦ ।
ସ୍ନାନରେ ଅର୍ଘ୍ୟ ଘେନ ପଣ୍ଡୁ ଯେ ରାଜନ
ପ୍ରଥମେ ନାମ ମୋର ଦିଲେକ ଅରଜନ । ୧୮୧ ।

---

୧୬୯।୨ ଆନ ରୂପେ ରହିବ ଗୋପତେ ସୃଣ ଭ୍ରାଥ ।—
ଗ, ଠ, ଖ, ଡ, ଣ, ଥ

ବୃହସ୍ପତି ରାଇ ଗଣାଇଲେ ସପ୍ତ ଯୋନ
ବୃହସ୍ପତି ନାମ ମୋତେ ହେଲେ ଫାଲଗୁନ । ୧୮୨ ।
ଆହେ। ଉତ୍ତର ରଇବ୍ରତ ପର୍ବତେ ଗୋବର୍ଦ୍ଧନେ ଫଗୁ ଖେଳ
ସ୍ୟେମନ୍ତର ସମସ୍ତେ ବନେ ଶୁଭିଲା ହୁଲହୁଳ । ୧୮୩ ।
ଅଦଭୁତ ଶବଦ ଶୁଣିଣ ଦେବରାଜେ
ତତକ୍ଷଣେ କେଶବ ବଇନେଇ ପିଠରେ କଲେ ବିଜେ । ୧୮୪ ।
ଭ୍ରମନ୍ତେ ଦେଖିଲେ ସେ ମୋହୋର ବର୍ଣ୍ଣଚିହ୍ନ
ସରୁପ ଦେଖି ମୋତେ କୋଳେ ଧଇଲେ ଜନାର୍ଦ୍ଦନ । ୧୮୫ ।
ଅନେକ ରତ୍ନ ଆଭରଣ କଲେକ ବନମାଳୀ
ଆପଣେ ଦୋଳରେ ବସାଇ ଦୁଷ୍ଟକୃଷ୍ଣ ନାମ ତୋଳ । ୧୮୬ ।
ବାବୁ ଅମର ନାଶ କଲା ଯେ ବଜ୍ରକପଟର ସୁତ
ବାସେବର ବଚନେ ମୁଂ ମାଇଲି ନିବାତକପଟ । ୧୮୭ ।
ଅନେକ ଉଛବ ଯେ ଅମରେ କଲେକ ଦେବରାଜା
କରେଟୀ ମୁକୁଟ ବାନ୍ଧି କରୀଟ ନାମ ହେଲେକ ବିଡୋଜା । ୧୮୮ ।
ବାବୁ ବିଶ୍ୱାବସୁ ଭାରିଯା ନାମ ଚନ୍ଦ୍ରକାନ୍ତି
ତାହାକୁହିଂ ହରନେଲା ବଜ୍ରକପଟର ନାତି । ୧୮୯ ।
ହିରଣ୍ୟକପଟ ମାରି ଆଣିଲି ତାର ପ୍ରିୟା
ଅନେକ ବିନୋପ୍ସୀ ମୋତେ କହିଲେ ଗନ୍ଧର୍ବ କୁଳ ଶ୍ରିୟା । ୧୯୦ ।
ହିରଣ୍ୟ ଅନଳ ଭଳେ ପଦ୍ମରାଜ
ପ୍ୟେ ଗୃହଦ୍ୱପ୍ୟେ ଶୁଦ୍ଧ ସସ୍ତ୍ରକ ଜାଣି ତେଜ । ୧୯୧ ।
ବିଶ୍ୱାବସୁ ପୂଜାକଲେ ମୋତେ ଶ୍ୱେତ ବାରସ ଘେନ
ତେଣୁକରି ନାମ ମୋର ହେଲେ ଶ୍ୱେତ ଯେ ବାହନ । ୧୯୨ ।
ଶୁଣ ବାବୁ ଉତ୍ତର ଶ୍ରୀକୃଷ୍ଣାର ତନୁ
ଯେତେବେଳେ ଖାଣ୍ଡବ ବନ ମୁଂ କଲଇଂ ଦହନୁ । ୧୯୩ ।
ଅଗ୍ନି ଦେବତାଂକର ଯେ ଲୁଦୁବୁଦୁ ବ୍ୟାଧି
ଖାଣ୍ଡବ ବନ ଦହଣ ହେଲା ମଉଷଧି । ୧୯୪ ।
ଅଗ୍ନି ଦେବତାପ୍ୟେ ଅନେକ ସନ୍ତୁଷ୍ଟ ହୋଇଲେ
ବିଷ୍ଣୁନାଥଂକ ଚତୁଂ ମୋତେ ଗାଣ୍ଡିମ ଧନୁ ହେଲେ । ୧୯୫ ।

ଅଭୟେ ବର ତୋତେ ପ୍ରାପତ ହୋଇ ବୋଲ ଅଗ୍ନି ଦେବତାଏ
ବୋଇଲେ
ସଇନ୍ଦ୍ରେକେ ଜୟୀହୁଅ ଯେ ଧନୁ କରେ ଥିଲେ । ୧୯୬ ।
ବାବୁ ଯେ ଧନୁ କରେ ଥିଲେ ହୋଅଇ ସର୍ବ ଜୟେ
ତେଣୁକରି ଅଗ୍ନି ଦେବତାଏ ନାମ ଦଲେ ଧନୁର୍ଜୟେ । ୧୯୭ ।
ବାବୁ ସୁଗନ୍ଧକା ହରଣେ ମୁଂ ହନୁମନ୍ତେ ଦବାଦ
ଶରେ ଶରେ ସାଗର ମୁହିଂ ସେତୁବନ୍ଧ ବାନ୍ଧ । ୧୯୮ ।
ବାଣନଧି ଭିତରେ ସେ ଚଉଦ୍ଦଂଶ ଜୂଣ ଦୀର୍ଘପ୍ରସ୍ତ
ଯେତେବେଳେ ବନ୍ଧ ମୁହିଂ ବାନ୍ଧିଲଇଂ ଦକ୍ଷିଣ ମୂରନ୍ତ । ୧୯୯ ।
ଅନେକ ପ୍ରଶଂସା ମୋତେ କଲ୍ଲକ ହନୁମନ୍ତ
ତେଣୁକରି ନାମ ମୋର ଦ୍ଦଲେକ ସେ ପାର୍ଥ । ୨୦୦ ।
ବାବୁ ଯାଗନ୍ଦ ତୀର୍ଥ ଯେ ଗଙ୍ଗା ସ୍ନାହାନ କାଳେ
ସର୍ବେଶ୍ଵର ବୋଲଣ ସେ ଯେକଇ ଗୃଣ୍ଡାଳେ । ୨୦୧ ।
ନିଶାଚର ଦୁରନ୍ତେକ ଦେବସ୍ତ୍ରି ଗ୍ରାସ୍ତ ଦେଖି
ବଳାତ୍କାରେ ହରିଲ ଯେ ଶଚୀ ଯେ ଦେବୀଂକ । ୨୦୨ ।
ଅନେକ ସମର ସେ ହୋଇଲ ମେରୁପୃଷ୍ଠେ
ବୃନ୍ଦାଅର୍କମାନନ୍ତ ସେ ଜିଣିଲ ଦ୍ରୁପିଷ୍ଟେ । ୨୦୩ ।
ମୁହିଂ ବସିଅଛୁ ସେ ଅସକନ୍ଦ ନାମେ ବନେ
ଶଚୀଦେବୀଂକ ଘେନଣ ସେ ଚଳଇ ଯାଭୁଧାନେ । ୨୦୪ ।
ଶଚୀଦେବୀ ଡାକଦଲେ ଅର୍ଜୁନ ମୋତେ ରଖ
ତୋହୋର ପରଯେ ପୁତ୍ର ଥାଉଂ ମୁଂ ହୋଇଲ ନରେଖ । ୨୦୫ ।
ଇଦମ୍ ବାକ୍ୟ ଶଚୀଦେବୀ ବୋଲନ୍ତ ଝକଳେ
ଦୁରନ୍ତେକ ବଳ ମୁହିଂ ଧ୍ୱଂସିଲଇଂ ରୋଳେ । ୨୦୬ ।
ସର୍ବେଶ୍ଵର ବୃଣ୍ଡାଳ ଆଦକରି ସର୍ବବଧି
ଦେବ ଭୁବନେ ମୁହିଂ କାର୍ଯ୍ୟକଲ ସିଦ୍ଧି । ୨୦୭ ।
ସେ ଅପସ୍ତ୍ରାମାନେ ବୋଇଲେ ଖଣ୍ଡିଲୁ ସର୍ବ ଅରିଷ୍ଟ
ସର୍ବସାଚୀ ନାମ ତୋହୋର ଦେଲୁ ରେ ପୁତ୍ରଗୋଷ୍ଟି । ୨୦୮ ।

ବାବୁ ସଂଗ୍ରାମେ ଜିଣିତ ହୋଇଅଛୁ ଯେବଣଙ୍କୁ ଛଳୀ
କେଶ ମୁକୁଳିତ ବିବସ୍ତ୍ର ଶସ୍ତ୍ରହସ୍ତ ବିରଥୀ । ୨୦୯ ।
ମୁଖେ ଅଙ୍ଗୁଳି ଲାଇ ବସିଲେ ଦ୍ୟନ୍ତ ପିଠ
ବିବଚ୍ଛ କର୍ମେ ମୁଚ୍ଛ୍ୟିଂ ନ ପେଷିଲ ଶରଗୋଟି । ୨୧୦ ।
ସମସ୍ତ ଯୋଦ୍ଧାଙ୍କୁ କୋଇଲେ ପ୍ରତଗ୍ୟାଂ ତୋହୋର ସାଚ
ଯେ ମହାମଣ୍ଡଳେ ନାମ ତୋହୋର ବିବଚ୍ଛ । ୨୧୧ ।
ବାବୁ ରାଜସୂୀ ଯାଗରେ ଯେ ଦିଗ ବିଜୟ କାଳେ
କାହାକୁହିଂ ନ ମାର ସାଧିଲ ସ୍ତ୍ର ସ୍ୱବଳେ । ୨୧୨ ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଲକ୍ଷେକ ନୃପତ
ବିଜୟ ନାମ ଦେଇଣ ସଭ୍ୟେଂ କଲେ ସ୍ତୁତି । ୨୧୩ ।
ମୋର ଦଶନାମ ବାବୁ ଶୁଣିମାତ୍ର ସାବଧାନ ହୋଇଲୁ ବିରାଟି
ଯେ ମହାମଣ୍ଡଳେ ସାଧୁ ତୋହୋର ଜୀବନଗୋଟି । ୨୧୪ ।
ଆହେ। ଉତ୍ତର ଯେ ଦଶନାମ ଯେ ପଢ଼ନ୍ତି ଶୁଣନ୍ତି
ପ୍ରାତ ସନ୍ଧ୍ୟାଙ୍କୁ ଯେ ହୃଦୟେ ଘୋଷନ୍ତି । ୨୧୫ ।
ହରନ୍ତି ପାତେକ ସେ ଖଣ୍ଡନ୍ତି ଦୁର୍ଗତି
ଅପୁତ୍ରିକେ ପୁତ୍ର ପାନ୍ତି ଧନ ସନ୍ତତି ବର୍ଦ୍ଧନ୍ତି । ୨୧୬ ।
ରାଜଦଣ୍ଡ ଯମଦଣ୍ଡ ଅପଯଶ ଖଣ୍ଡଇ ସର୍ବକାଳେ
ଇହଲୋକେ ଭୋଗପାନ୍ତି ପରଲୋକେ ବସନ୍ତି ସର୍ବମେଘ୍ନଲେ । ୨୧୭ ।
ପ୍ରତକ୍ଷେ ଦେଖ ତୁହେ କୁମାର ବିରାଟି
ନପୁଂସକ ଲକ୍ଷଣ ମୋର ଗଲାଟି ସ୍ୱେବେ ଫିଟି । ୨୧୮ ।
ଯେ ମୋହୋର ଦଶନାମ ଶୁଣିଲୁ ବିରାଟି
ଆହୁଂ ଦୁର୍ଗତମାନ ଗଲା ତୋହୋର ଫିଟି । ୨୧୯ ।
ଶୁଣିଣ ଉତ୍ତର କୁମାର ଶତେ ସହସ୍ର ଦଣ୍ଡ ପରଣାମି
ତୁମ୍ଭେ ସେ ବୀରବର ପୁରୁଷଂକ ଉତ୍ତମି । ୨୨୦ ।
ଜୟତୁ ପାଣ୍ଡବ ଶୁଦ୍ଧ ଗୁଣରାଶି
ଭରତେ ଭାରତଇଲ୍ଲ ଅଭୟେ ସୋମବଂଶୀ । ୨୨୧ ।

ଅନେକ ପୁଣ୍ୟ ସ୍ୱାମୀ ମୁଂ କରିଥିଲି ପୂର୍ବେ
ଦେଖିଲି ଦୁଷ୍ଟନାଶପୂଣ ସରୁପ ଭଗତଭାବେ । ୨୨୨ ।
ଜଗୁଜନ ସୋଦର ପ୍ରଭୁ ଶରଣ ପଞ୍ଜର ନାଥେ
ଶ୍ରୀକୃଷ୍ଣ ସାରଥି ପଣେ କାହାନ୍ତି ପାର୍ଥ ରଥେ । ୨୨୩ ।
ସାଧୁ ସାଧୁ ସୁଲଭ ଯେ ମଘଦେଶ ମଚ୍ଛପୁଗ୍ମ
ସାଧୁ ସୁଲଭ ଯେ ନଗର ନରନାଗ୍ମ । ୨୨୪ ।
ସାଧୁ ସାଧୁ ସୁଲଭ ଯେ ବିରାଟର ବଂଶ
ମମ ଭୁବନେ ପ୍ରବେଶ ପରମାନନ୍ଦ ପୁରୁଷ । ୨୨୫ ।
ସୋଦୋଦ୍ୱାର ପ୍ରାଣନାଥ ଦୁଷ୍ଟକୃଷ୍ଣ କାଯ଼େ
ଶୂଦ୍ରମୁନ ସାରଳ ଦାସ ହୃଦଗତେ ନଚ୍ୟେ ଧ୍ୟାୟେ । ୨୨୬ ।
। ୫୬୨୫ ।

— —

## ଶିବପିଣ୍ଡ ଓ ଦେବଦତ୍ତ ଶଙ୍ଖ ବିବରଣ
## ଏବଂ
## ଅମ୍ବାସୁର ବଧ

ଇଦମ୍ ବାଚ ଯେ ଉତ୍ତର କୁମାର କଥୋପି
ଜଗବନ୍ଦନ ପୁରୁଷ କାଳ ବ୍ରତେକ ଅନରୂପୀ । ୧ ।
ଯତ୍ନଂ ସେ ସଂପକ୍ଷ ମୋତେ ଦୁଃଖ ନାରାୟଣ
ଉତ୍ତର କୁମାର ବିନୋଦ୍ୟୀ ପଗ୍ଚରଇ ବଯ୍ୟାଣ । ୬ ।
ଅର୍ଜୁନ ବୋଇଲେ ଉତ୍ତର ଯେବେ ବୃକ୍ଷକୁ ବେଗେ ଉଠ
ଗୃଶଧନୁ ଆଠତ୍ରୋଣ ଥୋଅ ନେଇ କ୍ରୋଡ଼ । ୩ ।
ନଯ୍ୱନ ବୁଜ ଉତ୍ତର ବୃକ୍ଷକଇଂ କଲା କୋଳ
ଧାଇଁକାରେ ଉତ୍ତର ଯାଇଂ ଲଗିଲେକ ଡାଳ । ୪ ।
ଗୃଶଧନୁ ଆଠକୋଣ ଅର୍ଜୁନ ଦିଲ୍ଲ ବଢାଇ
ଉତ୍ତର କୁମାର ଧଇଲା ତାହା ଚରୁଡାଳେ ଥାଇ । ୫ ।
ଧନୁ କୋଣମାନ ସେ ଥୋଇଲା କ୍ରୋଡ଼ରେ
ଧାଇଁକାରେ ଓହ୍ଲାଇଲା ବିରାଟ କୁମାରେ । ୬ ।
ମୃତପିଣ୍ଡକୁ ବୋଇଲା ଲାଗଯାଇଂ ବୃକ୍ଷେ
ଆଗ୍ୟାଂ ପ୍ରମାଣେ ସେ ଯାଇଂ ଲଗିଲା ପ୍ରତକ୍ଷେ । ୭ ।
ଉତ୍ତର ପଗ୍ଚରଇ ଶୁଣିମା ଫାଲଗୁନ
ଯେ ମୃତ୍ତୁପିଣ୍ଡର ମହିମାଂ ଅଟଇ କେସନ । ୮ ।
କର ଚରଣ ଶିର କଚ୍ଛନ୍ତିଂ ଯେହାର ନାହିଂ
ବଦନ ବିହୁନେ ଯେ ଯେ ବୋଲ ଯେକ ଦେଇ । ୯ ।
ଘୋର ରଡଘାତେ ସେ ଯେ କଂପଇ ବ୍ରହ୍ମାଣ୍ଡ
ଅଦଉଜି ବନ୍ଧନେ ଯେ କଂପା ଯେତେକ ପରଚଣ୍ଡ । ୧୦ ।
ଅର୍ଜୁନ ବୋଇଲା ଶୁଣ ଭୁ ହୋ ବିରାଟର ବାଳେ
ଅନେକ ଉପୁଗାର କଲା ନବାତ କପଟ ବଧକାଳେ । ୧୧ ।

ବୃହଦ୍ଧ୍ୱଜର ପୁତ୍ର ସେ ବୃଧଶ୍ରବା ବୋଲି
ଚଣ୍ଡ ଗନ୍ଧର୍ବ ପୁତ୍ର ପ୍ରଚଣ୍ଡ ମହାବଳୀ । ୧୨ ।
ଯେତୁହାର ମାତା ନାମ ଅଟଇ ମଧୁବନ୍ତି
ବାସେବ ଦେବତାର ସେ ଅଟଇ ପଣନାନ୍ତି । ୧୩ ।
ଯେତୁହାର ଭାରଯା ନାମ ଅଟଇ ସୁରମୋହିନୀ
ଯେତୁହାଙ୍କଇଂ ବଳାତ୍କାରେ ନବାତକପଚ ଗଲେ ଘେନି । ୧୪ ।
ନବାତକପଚ କଇଂ ବଧକରି ମୁଂ ଆଣିଲି ସେତୁ ବାଳୀ
ଭାରଯା ପାଇଣ ଅନେକ ସାନନ୍ଦ ହୋଇଲେ ପ୍ରଚଣ୍ଡାବଳୀ । ୧୫ ।
ମୋତେ ବୋଇଲେ ତୁମ୍ଭେ ବଧକଲୁ ମୋର ବୈରି କଇରି
ମୁହିଂ ତୋତେ କିସ ହୋଇବି ଉପୁକାରି । ୧୬ ।
ଦେବାକୁ ରତ୍ନମାନ ନୋହଇ ତୁ ମୋହୋର ଯୋଗ୍ୟ
ଅଥବା ଦେଇପାରଇ ଯିସ ଲୋଡ଼ିପାରୁ । ୧୭ ।
ମୁହିଂ ବୋଇଲି ଯେବେ ପ୍ରସନ୍ନ ହୋଇଲୁ ମୋତେ
ଶହସ୍ର ରକ୍ଷାକରିବୁ ଅଗ୍ୟାଂତବାସ ପରଯନ୍ତେ । ୧୮ ।
ତାବୁ ମହନ୍ତଂକ ବଚନ ନୋହଇଟି ଆନ
ସତ୍ୟ ରଖି ଅଦଉଡିଯେତୁ ହୋଇଛୁ ବନ୍ଧନ । ୧୯ ।
ଗନ୍ଧର୍ବେ ଦାନବେ କିନ୍ନରେ ଶହସ୍ର ନଅନ୍ତୁ ବୋଲି ହରି
ଢେଣୁକରି ବକଣ୍ଠାଳେ ବଅଇ ଯୋଉରଡ଼ି । ୨୦ ।

---

୨୦।୨ 'ଢେଣୁକରି ବକଣ୍ଠାଳେ ବଅଇ ଯୋଉରଡ଼ି'' ପାଠ ପରେ 'ଙ, ଞ' ପୋଥି ଦ୍ୱୟରେ 'ଶମୀ ବୃକ୍ଷର ବୃତ୍ତାନ୍ତ'' କଥିତ ଅଛୁ :—
ଉତ୍ତର ବୋଇଲେ ଯେତୁ ଶମୀବୃକ୍ଷର ମହିମାଂ
ଯେତୁ ଶହସ୍ର ସହିରି ଅଛୁ କେବଣ ମହାତମା
ବଦଯନ୍ତି ଅର୍ଜ୍ଜୁନ ବାବୁ ଶୁଣରେ ଉତ୍ତର
ଯେତୁ ବୃକ୍ଷର ମହିମାଂ ସେ ଦେବଂକୁ ଅଗୋଚର ।
ମନୁ ସତ୍ୟଯୁଗେ ସେ ହର ପାର୍ବତୀଂକ ପ୍ରସନ୍ନେ
ବର ମାଗ ବୋଲି ଯେ ବୋଇଲେ ତ୍ରିଲୋଚନେ ।
[ଅବଶିଷ୍ଟାଂଶ ପରପୃଷ୍ଠାରେ]

ଯାଉଥା ବହ୍ନିନେ ଗନ୍ଧାଯ୍ୟେ ଯେ ସେହ୍ନ
ଆଡ ଯର୍ଦ୍ଧ ଯୋଜନ ପର୍ଯ୍ୟନ୍ତେ ନୁଆସନ୍ତ କେହ୍ନ । ୨୧ ।

---

[ ପୂର୍ବପୃଷ୍ଠାର ପାଠାନ୍ତର ]

ମୁହ୍ନଂ ବୋଇଲ ସ୍ୱାମୀ ମୋତେ ବର ଯେବେ ଦେବ
ମୋହୋର ଶସ୍ତ୍ର ରକ୍ଷା ନିମନ୍ତେ ତୁମ୍ଭେ ଶମୀବୃକ୍ଷ ହୋଇଥିବ ।
ବିରାଟେ ଅଜ୍ଞାତବାସ ବରଷେ ତେରଦିନ
ଶସ୍ତ୍ର ସମ୍ଭାଳିବ ତୁମ୍ଭେ ହର ପାର୍ବତୀ ବେନିଜନ ।
ହରହର ପାର୍ବତୀ ତୁମ୍ଭେ ହୋଇବ ବୃକ୍ଷଗୋଟି
ପଞ୍ଚ ବଦନ ବନ୍ଧ୍ୟା ହୋଇବେ ବୃକ୍ଷର ଶିଖାଟି ।
ଭିତର କୋକଟ ଯେ ହୋଇବେ ପାର୍ବତୀ
ଶସ୍ତ୍ର ରଖିଂ ଥୋଇ ଆମ୍ଭେ ହୋଇବୁ ନିଭ୍ରାନ୍ତ ।
ଅର୍ଜୁନର ମୁଖରୁ ଏସନେକ ବାକ୍ୟ ଶୁଣି
ତାହାଣ ଭୁଜରୁ କେଶବ ବାହାର କଲେ ଶ୍ରେଣି ।
ସଦାଶିବଂକର ବିଭୂତି ପ ର୍ବତୀଂକର ବଚନେ
ବ୍ରହ୍ମାଂକର କପୋଳେ ହର ମେଦିଲେ ବିଦ୍ୟମାନେ ।
ସବୁ ସମକଣ ନାରାୟଣ ମେଦିଲେ ଚକଟି
କରେଣ ମେଦ ଦେବୀଁଇଆଇଲେ ଖଡିଗୋଟି ।
ଈଶ୍ୱରେ ବୋଇଲେ ତୋର ଯେତେବେଳେ କାର୍ଯ୍ୟ
ଭୂମିରେ ଝନଗାର କାଟିଲେ ହୋଇବ ସଖେଜ ।
ଶମୀ ଶିଂଶୁପାଏସ୍ତେ ହରହର ମୂଳ
ଚତୁର୍ମୁଖ ବ୍ରହ୍ମା ହୋଇଲେ ସ୍ଥିରତ.ଲ ।
ଈଶ୍ୱରଂକର ଅଙ୍ଗ ଯେ ବାସୁଦେବଂକର କାୟେ
ସ୍ୱୟେଂ ବିଭୂତି ମେଦିଲେ ବ୍ରହ୍ମାଂକର କପୋଳେ ।
ଧାତାର ସ୍ଥିର ବଦନ ସ୍ଥିର ସିନ୍ଦୂର ସ୍ଥିରତାଲେ
ଏମନ୍ତେ ବୃକ୍ଷ ଯେ ଉପୁଜିଲ୍ଲ ରବିତଳେ ।
ସେ ବୃକ୍ଷ ମଧ୍ୟକୋଟରେ ଯେ ଅଛନ୍ତି ଗିରିଜା
ଏସେ ଶମୀବୃକ୍ଷ ଶୁଣ ତୁ ବିରାଟର ତନୁଜା ।
ଏ ବୃକ୍ଷର ଶସ୍ତ୍ର ଯେବେ ନୋହିବ ତାହାଂକର
ଆନକେ ଶହିବ ସେ ଶସ୍ତ୍ରଂକର ସ୍ୱରଭର ।

ଯେ ସେ ବିଦ୍ୟାଧର ପ୍ରଚଣ୍ଡ ମହାବଳୀ
ଯେ ଶସ୍ତ୍ର ରକ୍ଷାକର ପାରଇ କି ଆନ ଭଳି । ୨୨ ।
ଉତ୍ତର ବୋଇଲା ଯେ ଶମୀବୃକ୍ଷର ଅନେକ ମହିମାଂ
ଯେତେ ଶସ୍ତ୍ର ବନ୍ଧିଅଛି ଯେ କେବଣ ମହାତମା । ୨୩ ।
ସୁନ୍ଦର ହୋଇକରି ଯେ କ୍ରୋଟର ମଧ୍ୟସ୍ଥାନେ
ମହାଭାର ନ ସହଇ ଯେ ବୃକ୍ଷ ସହିଲା କେସନେ । ୨୪ ।
ଶୁଣ ଉତ୍ତର କୁମାର ଯେ ବୋଲଇ ଫାଲଗୁନ
ଯେ ବୃକ୍ଷ ହରିହର ଦେବତାଂକ ଭୁଜ ବେନ । ୨୫ ।
ବାବୁ ଅଙ୍ଗେକ ଶୁକ୍ଳ ବର୍ଣ୍ଣ ଯେ ଅଙ୍ଗେକ କଳା
ପ୍ରତକ୍ଷେ ଦେଖିଲୁଟିକି ବିରାଟର ବଳା । ୨୬ ।
ଯେବଣ ଶସ୍ତ୍ର ଭାର ନ ସହଇ ମେରୁ
ହରିହର ବେନି ଦେବତା ଯେହା ବହିଲେ ଗରୁ । ୨୭ ।
ଅର୍ଜୁନର ଯେତେବେଳେ ନପୁଂସକ ଲକ୍ଷଣ ପାରଗଲା
ଦେବଦତ୍ତ ଶଙ୍ଖ ଯେ ମାତଳ ଆଣିଦିଲା । ୨୮ ।
କିରୀଟୀ ମୁକୁଟ ଯେ ବୀରବେଶ ଅଳଂକାର
ମାତେଳୀ ଆଣି ଆଭରଣ କଲାକ ଶରୀର । ୨୯ ।
ଉତ୍ତର କୁମାର ପଚ୍ଚରଇ ଦେବଦତ୍ତ ଶଙ୍ଖ ଗୃହିଂ
ଯେ ଶଙ୍ଖଗୋଟି ସ୍ୱାମୀ ପାଇଲ ତୁମେ କାହିଂ । ୩୦ ।
ଅର୍ଜୁନ ବୋଇଲା ସ୍ୱାମୀ ଶୁଣସି ଉତ୍ତର
ଅଳକାପୁର ଠାକୁର ଯେ ଅଟଇ କୁବେର । ୩୧ ।
ମକର ମାସ ଶୁକଳ ପକ୍ଷ ତିଥି ଯେ ତଉଠି
ମଘାନାମେ ନକ୍ଷତ୍ରକୁ ବେଳ ଭୋଗ ତିନଘଟି । ୩୨ ।
ବିଷ୍ଟି ନାମେ କରଣ ଯେ ଆୟୁଷ୍ମାନ ନାମେ ଯୋଗ
ମକର ସଂକରାନ୍ତିକ ତିନ ଦିବସ ଭୋଗ । ୩୩ ।
ସହସ୍ରେକ କନ୍ୟା ଘେନ ନଳ କୁବେରଇ
ଚନ୍ଦ୍ରଭାଗା ଅର୍କକ୍ଷେତ୍ରେ ଯାଇଂ ସ୍ନାହାନ କରଇ । ୩୪ ।
ଅମ୍ବାସୁର ବୋଲିକରି ବାଣାସୁର ପଣନାତି
କଦମ୍ବାସୁର ବାନେବର ସେ ଅଟଇ ସନ୍ତତି । ୩୫ ।

ପୂର୍ବଦିଗେ ଅମୂ ବନେଣ ତାହାର ଯେ ବାସ
ସେତୁ ସେ ଭାସ୍କର ତୀର୍ଥକୁ ବଳ ଯେ ମନସ । ୩୬ ।
ତାହାର ଭାରଯା ନାମ ସରଳ ସୁନ୍ଦରୀ
ଚନ୍ଦ୍ରଭାଗା ତୀର୍ଥେ ସେ ମାୟେ ସ୍ନାହାନ କରି । ୩୭ ।
କୁବେର ଭାରଯା ନାମ ଅଟେ ହାରବତୀ
ଅନେକ ଅମୂଲ୍ୟ ରତ୍ନ ଆଭରଣ ହୋଇଛନ୍ତି । ୩୮ ।
ଅମ୍ବାସୁର ଭାରଯା ଯେ ସରଳ ସୁନ୍ଦରୀ
କୁବେର ଭାରଯା ହାରବତୀକ ବୋଇଲା କରଯୋଡ଼ି । ୩୯ ।
ଅପର୍ବ ରତ୍ନ ଅଳଂକାର ତୁମର ଚନ୍ଦ୍ରଂ ଅଛୁ
ମାଳୀ ଗୋଟିଏକ ତୁମ୍ଭେ ବଅଳନା ଲେଛୁ । ୪୦ ।
ଉପହାସ୍ୟ କରଣ ସେ ବୋଇଲା ଦେବସ୍ତିରୀ
ଦେବତାଂକ ଅଳଂକାରକୁ ତୁ ଇଚ୍ଛା କଲୁ ଲୋ ପାମେରୀ । ୪୧ ।
ଅସୁରୀ ପାମେରୀ ତୁମ୍ଭେ ଲୋକେ ହୀନଜାତ
ଯେତେଥେ ଅଳଂକାର ମାଗୁ ଲୋ ଚୁଣ୍ଡାଳୀ ଦୁରାପନ୍ତ । ୪୨ ।
ଅପାର ନିଂଦାସି ବୋଇଲା ବହୁତ ରାଗେ
କାନ୍ଦଣ ରାକ୍ଷାସୁଣୀ କହିଲା ଅମ୍ବାସୁର ଆଗେ । ୪୩ ।
ପ୍ରୀତି ଉପୁଜାଇ ମୁଂ ମାଗିଲି ଅଳଂକାର
ବୋଇଲା ଦେବତାଂକ ଅଳଂକାରକୁ ଆଶାକରୁ ଲୋ ତୋହୋ ଗ୍ଭର ।୪୪।
ଅମ୍ବାସୁର ଅଇଲା ଭାରଯା ହାଥ ଧରି
ଡାହାଣ ଭୁଜେ ଧରିଅଛୁ ସେ ଲୋହାର ଲଉଡ଼ି । ୪୫ ।
ଅଧର ପୃଷ୍ଟ କରଣ ଯେ ପ୍ରବେଶ କୁବେରର ଆଗେ
ଅପାର ବଡ଼ିମା କଥା ସେ କହୁଅଛୁ ରାଗେ । ୪୬ ।
ଆହୋ କୁବେର ରାତ୍ରିର ଗର୍ବେ ଅମ୍ବ ଦଇତ୍ୟ ଜାଯେ
ଅର୍କ ଦଇତ ଅଟଇ ତାହାର ତନୟେ । ୪୭ ।
ଅର୍କ ଦତ୍ୟକଇଂ ମାଡ଼ି ସେ ବସିଲେ ବିରଞ୍ଚି
ତେଣୁ ସେ କର୍ଣ୍ଣଅର୍କ ନାମ ବହିଅଛୁ । ୪୮ ।
ସେ ଅର୍କଦତ୍ୟର ପୁତ୍ର ମଯୁ ଯେ ଦାନବ
ହନୁମନ୍ତ ମାଡ଼ି ବସିଲ ଯେ ସେବଇ ରାମଦେବ । ୪୯ ।

ତାହାର ନନ୍ଦନ ଯେ କଳମ୍ବାସୁର ବୀର
କଳମ୍ବାସୁର ନନ୍ଦନ ମୁଂ ନାମ ମୋ ଅମ୍ବାସୁର । ୫୦ ।
ମୁହିଂ ରକ୍ଷାପାଳକ ଯେ ଭସ୍କର ଶର୍ଦ୍ଧ ଅଧିକାରୀ
ଶୋଷେକ ନାଶେକ ମୁହିଂ ସେଥିର ଦଣ୍ଡଧାରୀ । ୫୧ ।
ମୋହୋର ଭାରିଯା ଯେ ମାଗିଲା ସେକ ମାଳୀ
ତୋହୋର ଭାରିଯା ମୋହୋର ଭାରିଯାକୁ ଦିଲା ଗାଳି । ୫୨ ।
କଥା ନ କଲେ ସେ ନ ଦିଲେ ସୁଗତେ
ଭାରିଯାର ଦ୍ୱିଂଧାସ ମୁଂ ସହିବି କେମନ୍ତେ । ୫୩ ।
କୁବେର ବୋଇଲା ମୁଂ ଦେବଭଣ୍ଡାରର ଅଧିକାରୀ
ରକ୍ଷାପାଳକ ମୁହିଂଟି ସେମାନ ନୋହୋଇ ମୋହୋର । ୫୪ ।
କହୁଂ କହୁଂ କୋପକଲା ସେ ଅମ୍ବାସୁର ମହାବଳ
ଆକ୍ରେଷି ନଳ କୁବେରର ଧଇଲା ଯାଇଂ ବାଳ । ୫୫ ।
କୁମରକୁ ବନ୍ଧନ କଲା ସେ ଜଳଫାଶ ଘେନ
ସବୁଂକୁହିଂ ଧଇଲା କୁବେରର ସହସ୍ରେ କାମେମୀ । ୫୬ ।
ଅଳଂକ ଇମାନ ସେ ଯେ ଯେତେ ଥିଲେ ଭରି
ସମସ୍ତ ଅମ୍ବାସୁର ଘେନଲା ଉତ୍ଥୁଡ଼ି । ୫୭ ।
ଆପଣା ଭାରିଯା ଶ୍ୱରୀରେ ଆଭରଣ କଲା
ସହସ୍ରେ କନ୍ୟାଂକର ଅଳଂକାର ସମସ୍ତ ନେଇ ଦିଲା । ୫୮ ।
ନଳ କୁବେରକଇଂ ବନ୍ଧନ କଲା ଅମ୍ବସୁର
ଧାଇଁକାରେ ପଶିଲା ଯାଇଂ ଜଳ ଅନ୍ଧାରୀପୁର । ୫୯ ।
କନ୍ୟା ମାନେ ସମସ୍ତେ ଯେ ପଳାଇଲେ ବାକଳେ
କୁବେର ଆଗରେ ଯାଇଂ କହିଲେ ତତକାଳେ । ୬୦ ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ଆଦିକରି
ମେରୁ ଆସ୍ଥାନେ ବସିଛନ୍ତି ତହିଂ କୁବେର୍ କଳାକ ଗୁହାରି । ୬୧ ।
ପୁତ୍ର ମୋହୋର ଗଲା ଅର୍କ ତୀର୍ଥେ ସ୍ନାହାନ ନମନ୍ତେ
ଅମ୍ବାସୁର ଧରନେଲା ଚନ୍ଦ୍ରଭାଗା ଅର୍କତୀର୍ଥେ । ୬୨ ।
କ୍ରୋଧେଣ କୁବେର କହଇ ଅପ୍ରମିତା
ଶୁଣିଣ ପ୍ରତଉତ୍ତର ଦିଲେକ ବିଧାତା । ୬୩ ।

ଆନରେ ବଧ ସେ ନୋହଇ ଯାକୁଧାନେ
ପାଣ୍ଡବ କୁଳେ ଜାତ ତାହା ମାରିବ ଅର୍ଜୁନେ । ୬୪ ।
ମାତଳି ହକାରି ସେ ଦେବ ମଘବାନ
ବ୍ୟାଧ ପର୍ବତରୁ ମୋତେ ନଆଇଲେ ବହନ । ୬୫ ।
ଦେବ ସଭାତଳେ ମୁଂ ହୋଇଲି ପରିଣାମି
ଆଗ୍ୟାଂହଲେ ମୋତେ ପିତାମହ ଦେବସ୍ୱାମୀ । ୬୬ ।
ତୁହୋ ଧନୁର୍ଜୟେ ଯାଅସି ଅର୍କରଥେ
ନଳ କୁବେରକୁ ଧରି ନେଇଅଛୁ ଅମ୍ବାସୁର ଦଇତେ । ୬୭ ।
ତୁ ତାହାକୁ ବଧ ହୋ କର ଫାଲଗୁନ
କୁବେର ନନ୍ଦନ ଦେବଭଣ୍ଡାର ବେଗେ ଆସ ଘେନ । ୬୮ ।
ନାରଦ ବୋଇଲେ ସେ ଥାଇ ଜଳଅନ୍ଧାର ପୁର
କେବଣ ବାଗେ ସେ ଜନ୍ତୁଂ ହୋଇବ ବାହାର । ୬୯ ।
ପରମ ସାନନ୍ଦ ସେ ଦେବ ଯେ ସୁଧାତ
ଦେବଦତ୍ତ ଶଙ୍ଖ ଆଣି ଦିଲେକ ମୋର ହାଥ । ୭୦ ।
ବଇଲେକ କହଇ ସେ କମ୍ବୁ ଶବଦ ଶୁଣି
ଅମ୍ବାସୁର ଜନ୍ତୁଂ ବାହାର ହୋଇବ ଶୀଘ୍ରଖୁଣି । ୭୧ ।
ବ୍ରହ୍ମାସ୍ତ୍ରେ ଦିଲେ ମୋତେ ଆବର ଶହସ୍ର ଗୋଟିଏ
ସେହି ଘେନ ଅମ୍ବାସୁରକୁ ମାର ହୋ ଧନୁର୍ଜୟେ । ୭୨ ।
ଆହୋ ଉତ୍ତର ଯେ ଶଙ୍ଖ ଦେଖି ଯେ ମୋତେ ପୁଚ୍ଛାକଲୁ
ବୋଇଲୁ ଯେ ଶଙ୍ଖ ସ୍ୱାମୀ କାହୁଂ ତୁ ପାଇଲୁ । ୭୩ ।
ଦେବତାଂକର ହିଲ୍ଲ ଯେ ଅସୁରଂକ ବଧ ଅର୍ଥେ
ତେଣୁ ସେ ଦେବଦତ୍ତ ଶଙ୍ଖକୁ ବହଇ ମୋର ହାଥେ । ୭୪ ।
ଉତ୍ତର କୁମାର ଶୁଣି ଅର୍ଜୁନକୁ ପରିଣାମି
ଅମ୍ବାସୁର ବଧ ମୋତେ କହିବା ଦେବସ୍ୱାମୀ । ୭୫ ।

---

୬୫।୨ ବାଇବା ପର୍ବତୁଂ ମୋତେ ନିଆଇଲେ ବହନ ।—ଚ, ଝ, ଛ, ପ, ଘ, ଙ, ଅ, ଙ

ଯେସନେକେ ଅନ୍ଧ ବଧୀର ଅରଣ୍ୟର ପଶୁ
ମମ ଜନ୍ମଯାକ ବେଦ ଚକ୍ଷୁଂର ସାଦୃଶୁ । ୭୬ ।
ଶୁଣ ହୋ ଉତ୍ତର ଦେବଦତ୍ତ ଶଙ୍ଖର ମହିମାଂ
ସେସ୍ସନେକ କର ପ୍ରସନ୍ନେ ମୋତେ ଦିଲେ ବେଦବ୍ରହ୍ମା । ୭୭
ସେ ଶଙ୍ଖ ଲଳତ କର ଯେବେ କରଇ ସୁସ୍ୱରେ ଧ୍ୱନ
ଶୁଣିକର ବଶ୍ୟ ହୋଅନ୍ତି ଅବୋଧ କାମେନୀ । ୭୮ ।
ସେ ଶଙ୍ଖ ମଧମାନେ ଯେବେ ବାବେ ଧ୍ୱନ
ସପତ ଲକ୍ଷ ଯୋଜନେ ଜାଣନ୍ତି ପଦ୍ମଯୋନ । ୭୯ ।
ଊର୍ଦ୍ଧ୍ୱନଇଂ ବାଦ୍ୟ ଯେବେ କରବାକ ଠାଣି
ଅସାଧ ସାଧ ହୋଅଇ ସେ ଶଙ୍ଖର ଶବଦ ଶୁଣି । ୮୦ ।
ଆକ୍ରେଷ ବାଦ୍ୟ ସେ କରବା ଯେବେ ସ୍ୱର
ଛତିସେ ଶହସ୍ର ଧର ନୁଆରନ୍ତି କର । ୮୧ ।
ସେ ଶଙ୍ଖ ଘେନ ଗଲ ମୁଂ ଯେ ସ୍ୱର୍ଗର ଅର୍ଥେ
ଦତ୍ୟର ବର୍ଣ୍ଣିଚହ୍ନ ନାହିଂ ଜଳେ ପଶିଅଛି ଗୁପତେ । ୮୨ ।
ଆହୋ ଉତ୍ତର ସେ ଶଙ୍ଖଧ୍ୱନ ବାଦ୍ୟ କରନ୍ତେ ମୁହିଂ ଠାଣି
ଜଳ ଭୁବନ କମ୍ପିଲ ଗହ ଗହ ଶବଦ ଶୁଣି । ୮୩ ।
ଜଳ ଅନ୍ଧାରି ପୁରେ ଅମ୍ବାସୁର ପଶିଥିଲା
ଗର୍ଜନ ନାଦକର ସେ ଜନ୍ତୁଂ ବାହାର ହୋଇଲା । ୮୪ ।
ଉଲୁକାପାତ ଶବଦ ଶୁଭିଲା ସେତେବେଳେ
ଅମ୍ବାସୁର ବାହାର ହୋଇଲା ମହାଜଳେ । ୮୫ ।
ନଳ କୁବେର କୁଳେ ସେ ଅନେକ ବଳାସୁଣୀ
ଜଳପାଶ ଘେନ ସେ ବାନ୍ଧିଲା ଅଛି ଠାଣି । ୮୬ ।
ବାମକରେ ଧରଣ ଅଛଇ ସବୁର ଜଳପାଶୀ
ଡାହାଣ କରେ ଲୁହାର ଲଉଡ ଘେନ କୋପେ ବାହାର
ହୋଇ ଆସି । ୮୭ ।

---

୭୬।୨ ମମ ଜନ୍ମ ପାତକ ତୋହୋର ଦର୍ଶନେ ନାଶୁ ।—ଦ, ଜ
୭୯।୨ ଯଶୋବନ୍ତୀ ପୁରେ ଥାଇଂ ତାହା ଜାଣଇ ପଦ୍ମଯୋନ ।—ଣ, କ
୮୪।୨ ଶଙ୍ଖର ଶବଦ ଶୁଣି ସେ ବାହାର ହୋଇଲା ।—ଗ, ଞ, ଟ, ଫ

ବାବୁ ବହୁତ ପ୍ରତାପ୍ୟାଂ ସେ କନକ ଦଇତ ଅମ୍ବାସୁର
ବାଜନ୍ତି ରଣଗୋଳ ଯେ ତାହାର ମୋହୋର । ୮୮ ।
ରଥ ଗଜ ଅଶ୍ୱ ଯେ ନାହିଂ ତାହାର ଥାଟ
ଲୁହାର ଲଉଡ଼ି ଘେନ ସେ ବାହାର ଦ୍ରପିଷ୍ଟ । ୮୯ ।
ଘାଟି ଫଳା ଆଟଉଣି ଅଟଙ୍ଗ ନାହିଂ ବଜ୍ରସେନ୍ଥା
ଯେତେ ଶସ୍ତ୍ର ବାନ୍ଧିଲ ତାହାର ଶରୀରେ ପଡ଼ ସର୍ବ ଗଲ୍ ଚୂନା । ୯୦ ।
ଲକ୍ଷେ କୋଟି ମର୍ତ୍ତ୍ୟ ମେବଛ ଶର ବନ୍ଧ
ସ୍ୱେକୁସ୍ୱେକ ନାରାଜକେ ଯେ କନ୍ଦରେ ହୋନ୍ତି ଛେଦ । ୯୧ ।
ଆହୋ ଉତ୍ତର ଅନିବାରଣ ଯେ ମୋହୋର ସମସ୍ତ ଶହସ୍ତ୍ର
ସକଳ ଚୂରଗଲ୍ ଅମ୍ବାସୁର ଗାଦ । ୯୨ ।
ବାବୁ ସ୍ୱେସନେକ ଇହଲୋକ ଶସ୍ତ୍ରେ ସହୁଂ ନୁଆରିଲ ଜାଣି
ରାଗେ ଦେବ ଶହସ୍ତ୍ର ସନ୍ଧାନ କଲ ଟାଣି । ୯୩ ।
ବାବଲ ପଶୁପଦ ଗଦା ଯେ ମୁଦୁଗର
ଭୂଷଣ୍ଡୀ ଖଷକାଣ୍ଡ ଆବର ଶକ୍ତିଶର । ୯୪ ।
ରୁଦ୍ର ଶହସ୍ତ୍ର କାମ୍ୟେକ ବ୍ରହ୍ମ ଯେ ଶକଣ୍ଡ
ବ୍ରହ୍ମ ଶହସ୍ତ୍ର ନାରାୟଣ ଶସ୍ତ୍ର ରମ୍ବାବଳୀ ଚକ୍ର କାଣ୍ଡ । ୯୫ ।
ସ୍ୱେ ଶହସ୍ତ୍ରମାନ ସମସ୍ତ ବନ୍ଧିଲ ମୁଂ ଟାଣି
ସମସ୍ତେ ଚୂରିଗଲେ ପାଷାଣେ ଟେଳା ଜାଣି । ୯୬ ।
ଆହୋ ଉତ୍ତର ସମସ୍ତ ଶହସ୍ତ୍ର ବିଫାତେ
କାଳଚକ୍ର ପ୍ରହାର କଲ ହାଦେ ତହୁଂର ଯେ ଅନ୍ତେ । ୯୭ ।
ନିର୍ଘାତ ଦୁରନ୍ତେକ ଶରୀରେ ତାହାର ପଡ଼
ସେ ଅଭୁଟ କାଳଚକ୍ର ଗଲକ ଉପୁଡ଼ । ୯୮ ।
ପର୍ବତ ଅମୋହ ଶସ୍ତ୍ର ଯେ ମାଇଲ ଅଷ୍ଟାଙ୍ଗେ
ଅନର୍ଘାପ ଶିରବର ପଡ଼ିଲେ ତାର ଅଙ୍ଗେ । ୯୯ ।
କକଡ଼ା ମାସେ ଯେହ୍ନେ ଦ୍ରୋଣମେଘ କରେ ବୃଷ୍ଟି
ଅସୁର ଶରୀରେ ପର୍ବତେ ପଡ଼ିଲେ କୋଟି କୋଟି । ୧୦୦ ।
ଅଲ୍ପକ୍ଷେ ତୋଳ ସେ ବୁଲାଇଲ ଲୋହାର ଡାଙ୍ଗେ
ପର୍ବତମାନ ପଡ଼ ଚୂର ହୋଇଲେ ନିଶାଚର ଅଙ୍ଗେ । ୧୦୧

ଭାରତର ହୋଇଣ ମୁଂ ନୁଆରିଲି ସହି
ଅନଳ ବାଣ ବନ୍ଧିଲି ମୁଂ ଯେଣେ ସଂସାର ହୋଇବ ଦହି । ୧୦୨ ।
ଶୁଣ ହୋ ଉତ୍ତର ତାର ମହିମା ଦୁର୍ଲ୍ଲଭ
ସେ ଅନଳ ବାଣ ଯାଇ ପଶିଲା ଅମ୍ବାସୁର ଗର୍ଭ । ୧୦୩ ।
ମାଳଚକ୍ର ବାଣ ଯେ ମାଳାମ୍ବର ବସ୍ତ୍ରୁଂକର ହେଲା
ଯେସନେ ଶରେ କାମ୍ୟକ ବନ ଦହନ ହୋଇଲା । ୧୦୪ ।
ତ୍ରୈଲୋକ୍ୟ କମ୍ପିଲା ସେ ମାଳଚକ୍ର ବାଣ ପେଷନ୍ତେ
ବଳରାମ ଜାଣିଲେ ତାହା ଥାଇ ବାଇବ୍ୟ ପର୍ବତେ । ୧୦୫ ।
ଅମ୍ବାସୁରକଇଂ ଯତନେ ଲୋଡୁଥିଲେ କାମପାଳ
ସେ ଅର୍କଣାର୍ଥେ ସ୍ନାହାନ କରନ୍ତେ ହରିନେଲା ବଳରାମଂକର
ହଳ ଯେ ମୁଷଳ । ୧୦୬ ।
ବାଇବ୍ୟ ପର୍ବତୁଂ ବଳରାମେ କ୍ଷେପିଲେ କୋପମୂର୍ତ୍ତି
ସେତିକାର ଶହସ୍ର ଯୋଜନ ହୋଇଲା ରାମର ପାଦଗତି । ୧୦୭ ।
ଶ୍ରୀ ବଳରାମେ ତହୁଂ ରାଇ ମୋତେ ବଚନ ପ୍ରକାଶି
ରହ ରହ ଅର୍ଜୁନ ମୁଂ ଯେହାକଇଂ ବଧ କରଇସି । ୧୦୮ ।
ଶ୍ରୀ ବଳରାମଂକ ବଚନେ ମୁଂ ଛାଡିଲି ସାଂଗ୍ରାମ
ଅମ୍ବାସୁର ଭୁଲେ ଯୁଦ୍ଧ କଲେକ ବଳରାମ । ୧୦୯ ।
ମୁହିଂ ଛଡାଇ ଆଣିଲି ନଳକୁବେର ଅମର ବିଳାସୁଣୀ ।
କୁବେର ଦେବତାଂକ ଆସ୍ଥାନେ ହେଲି ଆଣି । ୧୧୦ ।
କୋପେଣ ବଳରାମ ପିଟିଲେ ହଳ ଯେ ମୁଷଳ
ସହସ୍ରବାର ପ୍ରହାର କଲେ ଅସୁର ବକ୍ଷସ୍ଥଳ । ୧୧୧ ।
ତଦ୍ୟାପି ନାଶ ଯହୁଂ ନଗଲା ଅମ୍ବାସୁର
ସମରେ ବିମୁଖ ଯେ ହୋଇଲେ ବଳେବର । ୧୧୨ ।
ଚରଣ ଧରି ବଳରାମେ ରାଗେଣ ଦେଲେ ଫିଙ୍ଗି
ଅମ୍ବୁବନେ ପଡିଲା ସେ ଥାନ ପଶିତ୍ୟାଗୀ । ୧୧୩ ।

---

୧୦୪।୨ ଯେସନ ଶରେ କାମଦେବ ଦହନ ଗଲା ।—ଦ, ଜ

ଜମ୍ବୁଦ୍ୱୀପ ଭରତଖଣ୍ଡ ଅଇଶାନ୍ୟ ଅଗ୍ନିକୋଣେ
ପୂର୍ବଦିଗ ସିନ୍ଧୁତଟେ ଅମ୍ବୁ ବନକା ଯେଣେ । ୧୧୪ ।
ହନୁମନ୍ତ ପର୍ବତେ ଅମ୍ବାସୁରକୁ ପିଟିଲେ ଅସକନ୍ଦେ
ପର୍ବତ ଚୂରଗଲା ପଡି ଅମ୍ବାସୁର କନ୍ଧେ । ୧୧୫ ।
ଅମ୍ବାସୁର ବଧ ସହୁଂ ନଗଲା କେଉଂଣସି ବାଗେ
ଅନେକ ଛମ ଉପୁଜଲା ବଳରାମଂକର ଅଂଗେ । ୧୧୬ ।
ମାଡି ବସିଲେ ବଳରାମ ଅମ୍ବାସୁର ହୃଦେ
କଟି ମେଖଳାପ୍ରେ ସଭଦ୍ରା ନାରାୟଣ ପାଦେ । ୧୧୭ ।
ଛନଦେବ ମାଡିବସିଲେ ପ୍ରେକକାସ୍ଥା
ପୂର୍ବଦିଗେ ଅମ୍ବୁବନେ ଅମ୍ବାସୁରକୁ ମାଡି ବସିଲେ ନିତସ୍ଥା । ୧୧୮ ।
ଅର୍ଜୁନ କହିଲେ ଯେ ଉତ୍ତର କୁମାରକୁ
ସେ ପରସ୍ତାବେ ଦେବଦତ୍ତ ଶଙ୍ଖ ହେଲେ ମୁକୁ । ୧୧୯ ।
। ୫୭୨୪ ।

---

୧୧୭। "କଟି ମେଖଳାପ୍ରେ ସଭଦ୍ରା ନାରାୟଣ ପାଦେ"
ପାଠ ପରେ 'ଦ' ପୋଥିରେ ଅଧିକ ପାଠ:—
ଛନଦେବ ମାଡି ବସିଲେ ସ୍ୱେକଠାବେ
ପୁରୁଷୋତ୍ତମ ତୀର୍ଥେ ବକେ କଲେ ମହାଦେବେ ।
ପୂର୍ବଦିଗେ ଅମ୍ବାସୁରକୁ ମାଡିବସଲେ ନିନେନ
ସିଦ୍ଧି ପାଷାଣ ହୋଇଛି ଅମ୍ବାସୁରର ଗାନ ।

୧୧୮। ପୂର୍ବଦିଗେ ଅମ୍ବୁବନେ ଅମ୍ବାସୁରକୁ ମାଡି ବସିଲେ ନିର୍ଦ୍ଦସ୍ଥା ।—
ଟ, ଢ

## ଅର୍ଜୁନର ନନ୍ଦିଘୋଷ ରଥ ପ୍ରାପ୍ତି ଓ ମହିଷାସୁର ବଧ ଏବଂ ଅକ୍ଷୟତୂଣ ଉତ୍ପତ୍ତିର ବିବରଣ

ଅର୍ଜୁନ ଦେବଦତ୍ତ ଶଙ୍ଖ ବାଦ୍ୟକଲା
ଯେସନେକେ ନିର୍ଘାତ ଆକାଶୁଂ ଖସିଲା । ୧ ।
ପ୍ରଳୟ ନିକଟେ ଯେହ୍ନେ ଗରଜନ୍ତି ମେଘା
ତେସନେକେ ଶବଦ ଶୁଭିଲା ଘୋରହା । ୨ ।
କଉରବେକ ସଇନ ଯେ ହାସିଲେ ତାହା ଶୁଣି
ଅଦଭୁତେ ଶୁଭିଲା କାହୁଂ ଆକାଶେ ନିର୍ଘାତ ଘୋର ବାଣୀ । ୩ ।
କି ଅବା ମନ୍ଦରଗିରି ପଡ଼ିଲାକ ଖସି
ଯୁଗାନ୍ତେକ କାଳ କିବା ହୋଇଲାକ ଆସି । ୪ ।
ଶମୀବୃକ୍ଷ ତଳକୁ ଦ୍ୱାରକା ଅଶୀ ସହସ୍ର ଜୋଜନ
ତହିଂକ ଶୁଭିଲା ସେ ଦେବଦତ୍ତ ଶଙ୍ଖସ୍ୱନ । ୫ ।
ଦ୍ୱାରକାପୁରେ ଥାଇ ତାହା ଜାଣିଲେ ଜନାର୍ଦ୍ଦନ
ଜାଣିଲେ ମାଧବ ଯେ ଶ୍ରୀ ମଧୁସୂଦନ । ୬ ।
ଗୋବିନ୍ଦ କୃତକୃତ୍ୟ ସାନନ୍ଦ ହୃଦଗତେ
ଦାରୁକକୁ ବଇ ବୋଇଲେ ସାଜ ନନ୍ଦିଘୋଷ ରଥେ । ୭ ।
ମଣ୍ଡଇ ଦାରୁକ ଯେ ଅନେକ ରତ୍ନ ଖଞ୍ଜି
ଯେସନେକେ ଅରୁଣ ରଥ ମଣ୍ଡଇ ବିରଞ୍ଚି । ୮ ।
ଜଡ଼ନ୍ତି ପାଟାଙ୍ଗ ଯେ ମୁକୁତା ପ୍ରବନ୍ଧ
ଝଟକନ୍ତି ହୀରା ମାଳା ସ୍ୱେହାଂକର ସନ୍ଧି । ୯ ।
ଫରହର ଆଲମ୍ବ ଜଡ଼ନ୍ତି ଚଉକତି
ମାଣିକ୍ୟ ଝରାପ୍ରେ ଝଞ୍ଜିଲ କ୍ଷୁଦ୍ରମୋତି । ୧୦ ।

---

୩।୨ ଅଦଭୁତେ ଶୁଭିଲା ଯହୁଂ କମ୍ବୁ ଶବଦ ବାଣୀ ।—ଛ, ଘ

୫।୨ ତହିଂକ ଶୁଭିଲା ଶଙ୍ଖ ଘନ ଘନ ।—ଚ, ଙ, ଘ ।

ରଥଂକର ପୀଡ଼ ଗୃହ ଯେ ପାଦକଛେ
ଶତେ ଶତେ ପଂକ୍ତି ହୀରା ମାଣିକ୍ୟ କାଛେ କାଛେ । ୧୧ ।
ମର୍କତର ମାଳା ଯେ ମରାଳ ଖଞ୍ଜଣୀ
ଚତ୍ୱଂର ଜ୍ୟୋତି ଦିନକର ତେଜ ଜାଣି । ୧୨ ।
ଦେବତାଏ ପ୍ରଶଂସନ୍ତି ଯେବଣ ରଥ ଦେଖି
ନରକାର ନାଥ କ ଗଗନ ଉପେକ୍ଷି । ୧୩ ।
ନାରାୟଣା ଶସ୍ତ୍ର ଚକ୍ର ଯେ ଭୂଷଣ୍ଡି
ଗଦା ମୁଦୁଗର ପାଟି ଆବର ତ୍ରିଦଣ୍ଡି । ୧୪ ।
ବଜ୍ର ଶକତି ବ୍ରହ୍ମଶକତି ଶୂଳ ଯେ ଶକତି
ଅମୋଘ ଶକତି ସୂର୍ଯ୍ୟାବ୍ରତେକ ଶକତି ଚ୍ଛେଲ ଆବର ରୁଦ୍ରକାନ୍ତି ।୧୫।
ପଟ୍ଟିଶା ଶର କୁଠାର ପ୍ରଶୁ ଯେ କୋଦାଳ
ମେଘାଶର ନାରାଜ ପଟ୍ଟିଶା ଦାବାନଳ । ୧୬ ।
ଜଳଫାଶ ନାଗଫାଶ କାଳଫାଶ ଆବର ଯମଫାଶ
ମାଳଚକ୍ର କାମ୍ୟେକଚକ୍ର କାଳଚକ୍ର ହରଣଚକ୍ର ଶୁଦ୍ଧ ଚକ୍ର
ଯେ ଅଶେଷ । ୧୭ ।
କଉମୁଦକୀ ଗଦା ରତ୍ନାବଳୀ ଗଦା ଲୋହସାର ଗଦା
ବଜ୍ରକେତନ ଗଦା କାଳେବର ଗଦା ଆବର ଚକ୍ରାବର୍ତ୍ତିକ ଗଦା
। ୧୮ ।

---

୧୮।୨ "ବଜ୍ରକେତନ ଗଦା କାଳେବର ଗଦା ଆବର ଚକ୍ରବର୍ତ୍ତୀ ଗଦା"
ପାଦାନ୍ତ ପରେ 'ଧନୁଶର' ଟ୍ରଭୃତିର ବର୍ଣ୍ଣନା 'ଦ' ପୋଥିଦ୍ୱୟରେ
ପରିଦୃଷ୍ଟ ହୁଏ :—
ଶାରଙ୍ଗ ଧନୁ ଅଦ୍ରାବଳୀ ଅଜଙ୍ଗ ନାମେ ଧନୁ
ପିନାକ ଧନୁ ଭୁଜଙ୍ଗ ଧନୁ ଶ୍ୱେତବଳୀ ଧନୁ ।
ମୀନକେତନ ଧନୁ ଆବର ଶ୍ୱେତମଣ୍ଡଳ ଧନୁ
ନଳଧନୁ ପ୍ରବାଳଧନୁ ସୂର୍ଯ୍ୟାବ୍ରତେକ ଧନୁ ।
ନଳବାଣ ଭୁଜବାଣ ଅପାଲିଟକ ଶର
ବାରେଣୀ ଶର ଯେ ଦେବ ଶସ୍ତ୍ର ଅପାର ।
[ ଅବଶିଷ୍ଟାଂଶ ପରପୃଷ୍ଠାରେ ]

ଅସଂକ୍ଷେପ ଶହସ୍ର ଘେନଣ ଦେବହର
ରଥରେ ଯୋଇଲେ ନେଇ ମଧୁହାର । ୧୯ ।
ଆପଣେ ଜଗନ୍ନାଥ ଯେବଣ ରଥ ସାଜ
ବାଛୁଣ ଅଶ୍ୱନ୍ତ ଯୋଚଲେ ଶୃଙ୍ଖବାଜୀ । ୨୦ ।
ଶ୍ୱେତ ଗୋକ୍ଷୀର ଶ୍ୱେତ ଆବର କମଗାଳ
ରଥରେ ଯୋଚଲେ ନେଇ ଦେବକୀର ବାଳ । ୨୧ ।
ଶହସ୍ର ଭେଦ ନୋହୋନ୍ତି ତାହାଂକର କାସ୍ୟେ
କାମରୂପୀ ଅଟନ୍ତି ସେତୁ ସୃଷ୍ଟହସ୍ୟେ । ୨୨ ।
ମହାଭୟ ନିବାରଣେ କରନ୍ତି ଆଦେଶଞ୍ଜା
ଯୁଗାନ୍ତେକ ଅଶ୍ୱ ସେ ପ୍ରଳୟ କାଳବଞ୍ଜା । ୨୩ ।
ରାତ୍ର ଦିବସ ଯେ ନ ଜାଣନ୍ତି ସୃଷ୍ଟ ହସ୍ୟେ
ଆକାଶେ କ୍ଷେପନ୍ତି ସେ ଶ୍ୟାମଳ ପକ୍ଷୀ ପ୍ରାସ୍ୟେ । ୨୪ ।
ଯେବେ ନିମିଷକେ ଭୂମି ପାରନ୍ତି ସେ ମହୀ
ଦିବା ଅର୍ଦ୍ଧେ ହୋଅନ୍ତି ସେ ସପତ ବ୍ରହ୍ମାଣ୍ଡ ଶାହୀ । ୨୫ ।
ସେ ସୃଷ୍ଟ ଅଶ୍ୱନ୍ତ ଜଗନ୍ନାଥେ ଯୋଚ
ରଥ ଘେନି ଦାରୁକ ଯାଅ ଅର୍ଜୁନ ଶର୍ମା କୃଷ୍ଣତଳେ ଅଛୁ । ୨୬ ।

---

[ ପୂର୍ବପୃଷ୍ଠାର ପାଠାନ୍ତର ]

ସ୍ୱର୍ଣ୍ଣ ମାଳା ପୋଯୋଲା ମାଣିକା ଆବର
ଛନ୍ଦ ଚାମର ଯେ ଘଣ୍ଟି ଘାଗୁଡ଼ି ଅପାର ।
ସୁବର୍ଣ୍ଣର ଚକ ଯେ ରୂପାର ଦଣ୍ଡ ଅଖ
ଅଷ୍ଟଖଣ୍ଡେ ନିର୍ବାଣ ସେ ଜାଣିଣ ମହାଶ୍ରେଷ୍ଠ ।
କୁସୁମର ଧଣ୍ଡାମାଳ ରଥରେ ବାନ୍ଧଣ
ଗନ୍ଧ କସ୍ତୁରୀ ରଥରେ ଲେପନ ।
ଦିବ୍ୟ ପାଟ ପତ୍ତମୀ ଘେନିଣ ରଥ ମଣ୍ଡି
ଆଦିତ୍ୟ ତେଜପ୍ରାସ୍ୟେ ରଥରେ ତେଜ ଖଣ୍ଡି ।
ଶତେକ ଶହସ୍ର ଯେ ଘେନିଣ ଦେବହର
ରଥରେ ଯୋଇଲେ ନେଇ ଦେବ ମଧୁହାର ।
୨୦।୨ ଆକାଶେ କ୍ଷେପନ୍ତି ସେ ଶେଣାପକ୍ଷୀ ପ୍ରାସ୍ୟେ ।—କ.

ନାରାୟଣ ବଚନେ ସେ ଚଳଇ ସାରଥି
ଅର୍ଜୁନଙ୍କୁ ଭେଟିଲ୍ଲ ଯେ ଇନ୍ଦ୍ରେଣୀ ପାଦାନ୍ତ । ୨୭ ।
ରଥ ଦେଖି ଅର୍ଜୁନ ଯେ ହୋଇଲ୍ଲ ନମସ୍କାର
ତାହା ଦେଖିଣ ଆଶ୍ଚର୍ଜ ଉତ୍ତର କୁମାର । ୨୮ ।
ଦେଖ ଦେଖ ଉତ୍ତର ହେ ବିରାଟର ସୁତ
ଏସେ ବାବୁରେ ଦେଖ ଆସି ନନ୍ଦଘୋଷ ରଥ । ୨୯ ।
ଅଶ୍ୱର ମହିମାଂ ଯେ ରଥର ମହିମାଂ
ସଞ୍ଚପିଣ ଉତ୍ତର କୁମାରକୁ କହିଲେ ମହାତମା । ୩୦ ।
ସମସ୍ତ କୁଶଳ ବାରତା ଦାରୁକ ସମାଦେ
ଦ୍ୱାରକାଏ କୁଶଳବାବୁ ତୋହୋର ପ୍ରସାଦେ । ୩୧ ।
ଶ୍ରୀକୃଷ୍ଣ ଅର୍ଜୁନ ତୁମେ ନୁହଂ ଭିନ୍ନାଭିନ୍ନ
ଭାର ନିବାରଣେ ତୁମ୍ଭେ ଯୁଗେ ଯୁଗେ ଜନ୍ମ । ୩୨ ।
ସତ୍ୟଯୁଗେ କୃଷ୍ଣ ଅବତାର ବାସୁଦେବ
ତୁ ଅର୍ଜୁନ ଅଂଶ ହୋ ଅନନ୍ତ ସଦାଶିବ । ୩୩ ।
ତ୍ରେତୟା ଯୁଗେ ସେ ଯେ ଶ୍ରୀରାମଚନ୍ଦ୍ର ରାଏ
ତୁହି ସେ ଲକ୍ଷଣ ହୋ ସୁମିତ୍ରା ତନଏ । ୩୪ ।
ଏହି ଯୁଗରେ ନରନାରାୟଣ ଅଂଶ ତୁମ୍ଭେ ବେନି
ଜନ୍ମେ ଜନ୍ମେ ତୁମ୍ଭେ ଅଂଶ ଭାର ନଶୋଧନ । ୩୫ ।
ରଥକଇଂ ଆଣିଲ ଆଗ୍ୟାଂଦେଲେ ନାରାୟଣେ
କେଶବ ସୁମର ବାବୁ ଯାଅ ଗୋଧନ ହରଣେ । ୩୬ ।
ବଜ୍ରସ୍ତ ମଣି ମୁକୁଟ ଯେ କୁଣ୍ଡଳ ମେଖଳା
ଅର୍ଜୁନ ହସ୍ତଗତେ ଦାରୁକ ଦିଲ୍ଲକ ଜୟମାଳା । ୩୭ ।
ନାରାୟଣ ଭୂଷଣ ସେ ଯେ ସର୍ବ ଅଳଂକାର
ଦାରୁକ ଆଭରଣ କଲ୍ଲ ପାଥବ ଶରୀର । ୩୮ ।
ଯେସନେ ବାସବର ଅଭିଷେକ କାଳେ
ତେସନେକ ଶୋଭବନ୍ତ ସୁରବଇ ବାଳେ । ୩୯ ।

---

୩୧।୨  ଦ୍ୱାରକାଏ ଉଛବ ବାବୁ ତୋହୋର ପ୍ରସାଦେ । —ଠ, ଟ, ଖ

ବାହୁକକଇଂ ଅର୍ଜୁନ ବଚନ ପ୍ରକାଶି
ଉତ୍ତର କୁମାର ରଥ ଘେନ ପ୍ରେତ୍ୱଠରେ ଥାଅପି । ୪୦ ।
ଶମୀବୃକ୍ଷ ତଳେ ରହିଲା ବାହୁକ ସାରଥି
ଉତ୍ତର କୁମାର ରଥ ଘେନ ରହିଲା ଶାନ୍ତମୂର୍ତ୍ତି । ୪୧ ।
ବହୁତ ବନପ୍ରେ ସେ ଦେଖଇ ଅପ୍ରମିତ
ଦେଖିଣ ସାନନ୍ଦ ଯେ ବିରାଟର ସୁତ । ୪୨ ।
ଉତ୍ତର ପ୍ରଣପତ୍ୟ ଚରଣେ ସୁତ କୋନ୍ତୀ
ସ୍ୱାମୀ ତୋହୋର ପରସନ୍ନେ ମୁଂ ପାଇଲି ସଦଗତି । ୪୩ ।
ଖାଣ୍ଡକେ ଶହସ୍ର ଯେ ଧଇଲେ କଣ୍ଠୀ
ନାରସୁଣ ସୁମର ଯାଇଂ ନନ୍ଦଦେଷ ରଥେ ଉଠ । ୪୪ ।
ବାମ ଦକ୍ଷିଣେ ଦକ୍ଷିଲ ଅଛି ଅକ୍ଷେପ୍ୟ ହୋଣ ବେନ
ଅନେକ ରତ୍ନ ମଣ୍ଡିତ ସେ ନାରାଜଂକର ଧାମ । ୪୫ ।
ସ୍ୱାମୀ ଆପଣେ କହିଲେ ସେ କଉରବଙ୍କ ସଇନ ଅସଂକ୍ଷେପ
ପ୍ରେ ବେନହୋଣେ ତୋହୋର ନାରାଜ ଅଛି ଅଳପ । ୪୬ ।
ଅର୍ଜୁନ ପ୍ରତିବାକ୍ୟ ଶୁଣ ହୋ ବିରାଟି
ଅକ୍ଷୟେ ନାମ ବହନ୍ତି ପ୍ରେ ହୋଣ ବେନଗୋଟି । ୪୭ ।
ଶୁଣ ହୋ ଉତ୍ତର ପ୍ରେ ହୋଣର ଚରିତ
ବିଷ୍ଣୁ ପ୍ରଭୁ ସତ୍ୟଯୁଗେ ମହେଂଷାସୁର ଜାତ । ୪୮ ।
ବ୍ରହ୍ମାର ବଳେ ସେ ମହେଂଷାସୁର ମହାବଳୀ
ଅନନ୍ତ କୋଟି ବ୍ରହ୍ମଣ୍ଡ ସାଧିଲା ମହାସ୍ଥଳୀ । ୪୯ ।
ଚଣ୍ଡମୁଣ୍ଡ ଶୁମ୍ଭ ନିଶୁମ୍ଭ ରକ୍ତବୀର୍ଯ୍ୟ
ବୀରଖଣ୍ଡ ଭ୍ରମର ବିମଳ କାନ୍ତମାଳା ଦନୁଜ । ୫୦ ।

---

୪୫।୨ ଅନେକ ରତ୍ନ ମଣ୍ଡିତ ବିଚିତ୍ର କମ ଘେନ ।—ଦ
୫୦।୨ "ବୀରଦଣ୍ଡ ଭ୍ରମର ବିମଳା କାନ୍ତମାଳା ଦନୁଜ"
ପାଠପରେ 'ଛ' ପୋଥିରେ ଅଧିକ ପାଠ:—
ଅଚଳ ବିରୂପାକ୍ଷ ଭାସ୍କର ମହାସୁର
ମେଦିନୀ ନ ସହଇ ଯେ ଅସୁରଂକ ପାଦଭାର ।

[ ଅବଶିଷ୍ଟାଂଶ ପର ପୃଷ୍ଠାରେ ]

ଅନ୍ଧକ ବିରୂପାକ୍ଷ ଘସ୍ମର ମୟୂରେସ୍ୱର
ମେଦନୀ ନ ସହଇ ଯେତେ ଦଇତଂକର ଭର । ୫୧ ।
ସମସ୍ତ ଦେବତାଯେତେ ଯେ ବହୁତ ବିକଳେ
ଗର୍ଭରୁ ଜାତକଲେ ଜାଳାନଳ ଅନଳେ । ୫୨ ।

[ ପୂର୍ବ ପୃଷ୍ଠାର ପାଠାନ୍ତର ]

ବ୍ରହ୍ମାର ଭୁବନ ନଇଉତ ପୁର ଗ୍ଭଡ଼ି
ସକଳ ଦେବତାଂକ ପୁର ଦୈତ୍ୟ ବସିଲେକ ମାଡ଼ି ।
ସିନ୍ଧୁ ଉପସିନ୍ଧୁ ଧୂମ୍ରଲୋଚନ ବାଳବିଲୋଚନ
ମହାଗିଲ୍ଲ ସହିତେ ଅନେକ ଯାତୁଧାନ ।
ସକଳ ଦେବତାଂକୁ ଅସୁରେ ଘଉଡ଼ିଲେ
ଅନନ୍ତ ଶଯ୍ୟାରେ ହରିଂକ ଦେବେ ଜଣାଇଲେ ।
ଶ୍ରୀକୃଷ୍ଣ ପଚ୍ଚରନ୍ତି ବ୍ରହ୍ମାଂକ ମୁଖ ଗ୍ଭହିଂ
ବିଧାତା ବୋଇଲ ସ୍ୱାମୀ ବର ଦେଇଅଛୁ ମୁହିଂ ।
ପୁରୁଷ ହାଥରେ ଯେ ନ ମରିବ ଅସୁର
ଶୁଣିଣ ବିସ୍ମୟ ଯେ ହୋଇଲେ ଚକ୍ରଧର ।
ତତକ୍ଷଣେ ଦେବଗଣ ଘେନିଣ ଚକ୍ରପାଣି
ମେରୁ ଶିଖ ଉପରେ ବସି କରନ୍ତି ଗ୍ଭଲେଣି ।
କେବଣ ପ୍ରକାରରେ ମରିବ ସେ ଦୈତ୍ୟ
ଯେତେଅକୁ ଉପାୟ ତୁମ୍ଭେ କହ ହେ ବିଧାତ ।
ବିଧାତା ବୋଇଲେ ଆଦ ଅର୍ଣ୍ଣପୂର୍ଣ୍ଣା ଜାତହେଲେ
ତେବେ ସେ ଦୈତ୍ୟ ବଳ ମରିବେ ସମ୍ଭାଳେ ।
ଯେତେମନ୍ତେ ସର୍ବଦେବ ଗ୍ଭଲନ୍ତି ଯେତେକମେଳେ
ଶରୀରୁ ଜାତକଲେ ବ୍ରହ୍ମା ଦାବାନଳେ ।
ସେ ଅନଳକୁ ପୂଜା କଲେ ଅନେକ ସ୍ତୁତ
ଅଗ୍ନି ଭିତରୁ ଆଦମାତ ହୋଇଲେ ଉତପତ୍ତି ।
ମହା ବଇଷ୍ଣବୀ ସେ କୋଟିଯେତେ ସୂର୍ଯ୍ୟ ତେଜ
ଯେତେକା ଶରୀରୁ ଉତପତ୍ତି ସହସ୍ରେକ ଭୁଜ ।
କେଶରୀ ବାହାନଗୋଟି ଦିଲେକ ହେମବନ୍ତ
ତହିଂ ବିଜେ କରିଥିଲେ ଦେବୀ ଜଗନ୍ମାତ ।

୫୨।୨     ଗଭରୁ ଜାତ କଲେ କୋଟ ଯେ ଅନଳେ ।—ଗ, ଙ

ସେ ଅନଳକୁ ଗ୍ରହଂ ସେ କରନ୍ତି ବହୁତ ଭୂପ୍ତି
ସେ ଅନଳୁ କନ୍ୟାଏକ ହୋଇଲା ଉତପତ୍ତି । ୫୩ ।
ମହା ବଇଷ୍ଣବୀ ସେ କୋଟିଏକ ସୂର୍ଯ୍ୟର ତେଜ
ଏକ ଶରୀରୁ ଉତପତ୍ତି ସହସ୍ରେକ ଭୁଜ । ୫୪ ।
ଈଶ୍ୱର ତେଜେ ଦୁର୍ଗାର ମୁଖେକ ହୋଇଲା
ବିଷ୍ଣୁର ତେଜଗୋଟି ଭୁଜରେ ରହିଲା । ୫୫ ।
ଚନ୍ଦ୍ରର ତେଜୁଂ ଦୁର୍ଗାର ସ୍ତନ ସେ ହୋଇଲା
ବରୁଣର ତେଜ ନାଭି ମଣ୍ଡଳେ ରହିଲା । ୫୬ ।
ପୃଥ୍ୱୀର ତେଜ କଟିଭାଗରେ ରହିଲା
ବ୍ରହ୍ମାର ତେଜ ପାଦ ଅଙ୍ଗୁଷ୍ଠ ହୋଇଲା । ୫୭ ।
କୁବେର ତେଜରୁ ନାସିକା ହୋଇଲା
ପ୍ରଜାପତି ତେଜ ସେ ଦନ୍ତରେ ରହିଲା । ୫୮ ।
ଅଗ୍ନିର ତେଜେ ସେ ଚକ୍ଷୁ ବେନି ହୋଇଲା
ପବନର ତେଜ ବେନି କର୍ଣ୍ଣରେ ରହିଲା । ୫୯ ।
ଏହିମନ୍ତେକ କରି ସର୍ବ ଦେବତା ଉଆଇଲେ
ସର୍ବ ଦେବତାଏକ ତାହାଂକର ହାଥରେ ଶସ୍ତ୍ର ଦିଲେ । ୬୦ ।
ବିଷ୍ଣୁ ଦିଲେ ଚକ୍ରଗୋଟି ରୁଦ୍ର ଦିଲେ ତ୍ରିଶୂଳ
ବରୁଣ ସେ ଶଙ୍ଖ ଦିଲେ ଶକ୍ତି ଦିଲେ ବଇଶ୍ୟାନର । ୬୧ ।
ପବନ ଧନୁ ଶସ୍ତ୍ର ଦିଲେ ଇନ୍ଦ୍ର ବଜ୍ର ଶକତି
ଯମ କାଳଦଣ୍ଡ ଦିଲା ବରୁଣ ଜଳପାଶ ଦିଅନ୍ତି । ୬୨ ।
ବ୍ରହ୍ମା ଅକ୍ଷଏକ ତୋଣ ଦିଲେ କମଣ୍ଡଳୁହିଂ ଦିଲେ
ଅରୁଣ ସୁବାପାଚ ଦିଲା ବାସୁକି ନାଗପାଶ ଦିଲେ । ୬୩ ।
ଆଦିତ୍ୟ ରଶ୍ମି ଦିଲେ କାଳ ଖଣ୍ଡା ଫଳା ଦିଲେ
ବିଶ୍ୱକର୍ମା ସେ ଅଭେଦ ବିଭୂତି ଆଣିଦିଲେ । ୬୪ ।
ହେମବନ୍ତ ସିଂହନାଦ ଦିଲେ ଦୁର୍ଗା ସହସ୍ର ଭୁଜ ହୋଇ
ମାର ମାର ବୋଲି ଦୁର୍ଗା ଗର୍ଜିଣ ଉଠଇ । ୬୫ ।
ଇନ୍ଦ୍ର ଦିଲେ ଅଇରାବତ ଶାର୍ଦ୍ଦୂଳ ଦିଲେ ହେମବନ୍ତ
ତହିଂ ବିଜେକଲେ ଦେବୀ ଜଗତମାତ । ୬୬ ।

ସେ ଦଶ ଦେବତାଏ ବୋଇଲେ ମାଗୋ ପୂର୍ବଅ ମନାଷା
ତ୍ରୈଲୋକ୍ୟ ଉଦ୍ଧାରଣୀ ଗୋ ବଧକର ମହିଷା । ୬୭ ।
ବିଜୟେ ଦୁର୍ଗା ଯେ ଅନ୍ତରୀକ୍ଷ ମାର୍ଗେ
ହିରଣ୍ୟ ଗିରି ପର୍ବତେ ବିଂଶମାଳ ଲଗେ । ୬୮ ।
ତହିଁ ବିଜେକଲେ ଯାଇଁ ଅନାଦ୍ୟ ଶକତି
ସହସ୍ରେକ ଭୁଜ ହୃଦେ ଗୋପ୍ୟାନ କଲେ ସଂଗତି । ୬୯ ।
ମହିଷାସୁର ଭୁବନ ଯେ କେନାବଳୀ ନଗ୍ର
ସିନ୍ଧୁ ପଶ୍ଚିମ କୋଣେ କୁଳବଇ ପଟଣା ପୁରୀ । ୭୦ ।
ଅସୁର ପୁରକୁ ଦେବୀ ଦୃଷ୍ଟିପାତ କଲେ
ପ୍ରଥମେ ଚଣ୍ଡ ମୁଣ୍ଡ ଦେଖିଣ ନାଶଗଲେ । ୭୧ ।
ଦୁଜଣ ନାଶଗଲେ ଶୁମ୍ଭ ଯେ ନିଶୁମ୍ଭ
ଅସୁର ନିଶୋଧନ କଲେ ଦେବୀ ସର୍ବ । ୭୨ ।
ତିଜଣ ନାଶ ଯେ କଲେ ରକତବୀର୍ଯ୍ୟ
ବଡାଇ ଦୁରାପଦ ସେ ଅଟଇ ଦନୁଜ । ୭୩ ।
ଅସୁରବଳ ସଇନ ଯନ୍ତ୍ରୁଂ ହୋଇଲେ ଅପ୍ରମିତ
ଶରୀରୁ ଜାତକଲେ ଦେବୀ ଅନେକ ମୂରତି । ୭୪ ।
ରକତବୀର୍ଯ୍ୟ ବୋଲିଣ ଯେବଣ ସେନାପତି
ଯେତେକେ ଅନେକ ଯେ ହୋଇଲେ ଅତିପତ୍ତି । ୭୫ ।
ପୃଥୀରେ ପଡଇ ଯେବେ ରକତ ଟୋପାଏ
ସହସ୍ରେ ରକତବୀର୍ଯ୍ୟ ହୋଇ ତହୁଁ ଜାଏ । ୭୬ ।
ଯେତେବେଳେ ଶହସ୍ର ନ ଅଣ୍ଟିଲ ବନ୍ଧନେ
ଶରୀରୁ ରୋମ ଉପାଡି ବାନ୍ଧିଲେ ଜଗତମାତେ । ୭୭ ।
ଶରୀରୁ ସହସ୍ର ଜାତକଲେ ମହାମାୟେ
ବନ୍ଧନେ ନାରିଜ ହୋଇଲା ଅକ୍ଷୟେ । ୭୮ ।
ଦେଖିଣ ମହାଦେବୀ ସାନନ୍ଦ ହୋଇଲେ
ହବାସହେ ବନ୍ଧନେ ନାରିଜ ନ ସରିଲେ । ୭୯ ।

ଅଣୀପଦ୍ମ ବେଶୀ ନାରାୟଣୀ ମୂର୍ତ୍ତି
ଯେଙ୍କଷୋଣୁ ନାରାଜ ବହନ୍ତ ଅପ୍ରମିତ ।୮୦ ।
ସପତ ଢକସେ ଯେ ମଯେ୍ୟଂଷା ନାଶଗଲ
ଯେଙ୍କା ଷୋଣୁ ନାରାଜ ଗୋଟିଯେ ନ ସରଲ ।୮୧ ।
ଶୁଣ ବାବୁ ଉତ୍ତର ସାବଧାନେ ଯେହ୍ନଂ କଥା
ଯେ ଷୋଣଗୋଟି ମୋଟେ ଦ୍ୱଲେକ ଜଗତମାତା ।୮୨ ।
ବହୁତ ସାନନ୍ଦ ଯେ ଶୁଣିଣ ଦ୍ୱରାଟର ସୂତ
ପ୍ରଣମିତ ହୋଇ ବୋଇଲ କେଉଁ ପ୍ରସ୍ତାବେ ଦ୍ୱଲେ ମାତ ।୮୩ ।
କେତେକାଳ ପରିଯନ୍ତେ କାହ୍ନିଂ କଲ ତପ
ଶୁଣିବେ ଇଚ୍ଛା ମୋହୋର କହିବା ସରୂପ ।୮୪ ।

।୫୮୨୮ ।

---

## ଅର୍ଜୁନଙ୍କର ପାଶୁପତ
## ଓ
## ଅକ୍ଷୟତୂଣ ପ୍ରାପ୍ତି ବିବରଣ

ଶୁଣିମା ଉତ୍ତର କହିବା ପୂର୍ବର ଯେ କଥା
ମୁହିଁ ବନବାସୀ ହୋଇଲି ସତ୍ୟର ନିମନ୍ତା । ୧ ।
ଉମାର ସହିତେ ଯେ ଭ୍ରମନ୍ତି ତ୍ରିଲୋଚନ
କାଳେନ୍ଦୀ ନଦୀତଟରେ କୁଳେବର ନାମେ ବନ । ୨ ।
ପାର୍ବତୀଙ୍କ ଜାନୁରେ ହର ସୀମସ୍ଥାନ ଦେଇ
ଶିବସେ ନିଦ୍ରାଗତ ଭୋଳାନାଥ ଗୋସାଇଁ । ୩ ।
ଗଣ୍ଡା ଗୋଟିଏକ ଯେ ଗଉରୀ ଥିଲେ ପୋଷି
କାଳନ୍ଦୀ ନଦୀକି ସେ ପାଣି ହେବଆସି । ୪ ।
ସୁସଜ୍ଜ ଜୀବ ଦେଖି ବିନ୍ଧିଲି ନାରାଜ
ହର ପାର୍ବତୀଙ୍କ ସମ୍ମୁଖରେ ପଡ଼ି ଗଣ୍ଡା ହୋଇଲା ପ୍ରାଣତ୍ୟାଗ । ୫
ଗଣ୍ଡାର ନିଧନ ଦେଖି ରୁଦ୍ର ମହାରାଗେ
ରାଗେଣ ଈଶ୍ୱରେ ବିହରନ୍ତି ବନମାର୍ଗେ । ୬ ।
କେବେ ଗଣ୍ଡା ମୋହୋର୍ ବିନ୍ଧିଲୁ ଅଦଭୁତେ
ତରଣ ପ୍ରମାଣେ ମାସ୍ୱେଂସ କାଟିବି ଦେଖନ୍ତେ । ୭ ।
ରେ ରେ କାର କରି ହର ଅନେକ ପ୍ରତଗ୍ୟାଂ ବୋଲି
ଦୁର୍ଧ୍ୱଂସ ବାକ୍ୟ ତାହାର ମୁଂ ସହି ନୁଆରିଲି । ୮ ।
ମୁହିଁ ଧରିଥିଲି ଯେ ବନଚର ରୂପ
ରୁଦ୍ର ବାରି ନୁଆରିଲେ ମୋହୋର ସରୂପ । ୯ ।
ଧାମଣା କାଠର ଧନୁ କଣ୍ଠା ବାସ୍ୱେଂଶର ଗୁଣ
ଫିରିକ ନାରାଚ କଣ୍ଠେ ଗୁଞ୍ଜମାଳୀ ଆଭରଣ । ୧୦ ।

ଶରୀରରେ ଆଭରଣ ମୟୂର କଣ୍ଠ ଝାଲ
ଶବର ରୂପ ଧରି ମୁଁ ବନେଣ ବୁଲୁଥିଲି । ୧୧ ।
ଏମନ୍ତେକ ଶୋଭବନ ମୋହୋର କରାତ ରୂପଗୋଟି
ଦ୍ୱିପରୀତ ରୂପ ଦେଖି ଚହ୍ନି ନୁଆରଲେ ଧୂର୍ଜଟୀ । ୧୨ ।
ଈଶ୍ୱରେ ହୋଇଛନ୍ତି ଯୋଗୀ ଯେ ସରୂପ
ମୁହିଂ ବାରି ନୁଆରିଲି ଈଶ୍ୱରଂକର ରୂପ । ୧୩ ।
ଦୁହିଂକରି ହୋଇଲା ଯେ ଉଚ୍ଚବାଚ କଳି
ହାବୋଡ଼ା ହାବୋଡ଼ି ଦୁହେଂ ହୋଇଲୁ ପେଲାପେଲି । ୧୪ ।
ମୁହିଂ ବୋଇଲି ତପ୍ରଆସିରେ ଛେଦିବି ତୋର ମୁଣ୍ଡ
ପାଣ୍ଡବଙ୍କ ପରାପ୍ରେ ଭରିଯା ହୋଇବ ତୋହୋର ରଣ୍ଡ । ୧୫
ଏହାର ଅବସ୍ଥା ମୁଂ ଯେ ନୁଆରିବ ଦେଖି
ତେଣୁକରି ମୁଂ ତୋତେ ସାଂଗ୍ରାମେ ଉପେକ୍ଷି । ୧୬ ।
କୋପେ ଈଶ୍ୱରେ ମୋତେ ପ୍ରହାର କଲେ ମୁଥେ
ମୁହିଂ ଧନୁ ଭରିଲି ଈଶ୍ୱରଂକର ମାଥେ । ୧୭ ।
ଈଶ୍ୱର ଦେବତାଂକୁ ମୁଂ ବୁଲାଇଲି ଅନ୍ତରୀକ୍ଷେ
ଶ୍ରୋଣିତ ବୃଷ୍ଟି ସେ ଯେ ହୋଇଲା ପଞ୍ଚମୁଖେ । ୧୮ ।
କୁତୂହୋଳ ପୁରୁଷ ସଦା ରଙ୍ଗେ ଭୋଳା
ବର ମାଗ କରାତ ରେ ବୋଇଲେ ସୁତଳା । ୧୯ ।
ଈଶ୍ୱରଂକ ମୁଖରୁ ଏମନ୍ତେକ ବାକ୍ୟ ଶୁଣି
ଭୂମିରେ ଥିରକରି ଥୋଇଲି ହର ଆଣି । ୨୦ ।
ଦେଖିଲି ପଞ୍ଚ ବଦନ ପଞ୍ଚଦଶ ଲୋଚନ
ବର ମାଗ ବର ମାଗ ବୋଲନ୍ତି ଈଶାନ । ୨୧ ।
ଭଣ୍ଡର, ମହାଭସ୍ମ କରିଣ ମୁଂ କାଢ଼ି ପକାଇଲି ଧନୁ
ପ୍ରଣପତ୍ୟ ହୋଇଣ ଶୁଭିଲି ପଞ୍ଚ ଯେ ବଦନୁ । ୨୨ ।

---

୧୪।୨ ହାବୋଡ଼ା ହାବୋଡ଼ି ହୋଇ ଦୁହେଂ ହୋଇଲୁ ବାରୁଆଳ ।—କ, ଚ
୧୫।୨ ଏହେତେ ପୃନ୍ଦରୀ ଭାରିଯା ଯାହା ହୋଇବ ତୋର ରଣ୍ଡ ।—ଗ, ଊ

ପୁଣ ପୁଣ ରୁଦ୍ର ମୋତେ ବୋଲନ୍ତି ଉତ୍ତର
କିଂପା ତୁମ୍ଭେ ହୋଇଲୁ ମାଗସିରେ ବର । ୨୩ ।
ଭୟେ ବୋଇଲି ଦେବ ମୁଂ ଅଟଇ ଅଗ୍ୟାମୀ
ଅନୁଗତେ ମୁଂ କ ବର ମଗିବ ଦେବସ୍ୱାମୀ । ୨୪ ।
ଈଶ୍ୱରେ ବୋଇଲେ ଆରେ ଶୁଣ ତୁ ବୀର ପାର୍ଥ
ଯାହା ମାଗିବୁ ତାହା ତୋତେ ଦେବଇଂ ମୋର ସତ୍ୟ । ୨୫ ।
ପାର୍ବତୀ ବୋଇଲେ ଦେବ ଶଙ୍କର ହୁଅସି
ସ୍ନାନ କର ଶ୍ରୀ ଦେବ ସରୋବରେ ପଶି । ୨୬ ।
ଈଶ୍ୱରେ ଗଲେ ସେ ସ୍ନାନ ନିମନ୍ତେ
ପାର୍ବତୀ ସନ୍ଦେଶ କହିଲେ ଗୁଣ୍ଡ ହାତେ ମୋତେ । ୨୭ ।
ପାର୍ବତୀ ବୋଇଲେ ଶୁଣସି ଅର୍ଜୁନ
ସତ୍ୟଯୁଗେ ତ୍ରିପୁର ଭୁଲେ ଯୁଦ୍ଧକଲେ ତ୍ରିଲୋଚନ । ୨୮ ।
ଅନେକ ଶସ୍ତ୍ରେ ବଧ ଯେ ନୋହିଲା ତ୍ରିପୁର
ନାରାୟଣ ଦେବତାଙ୍କ ଆପଣେ ହୋଇଲେକ ଶର । ୨୯ ।
ପବନ ଦେବତାଙ୍କ ପକ୍ଷୀ ଅଗ୍ନି ଦେବତାଙ୍କ ମୁନ
ସେହି ଶସ୍ତ୍ରେ ବଧ ତାହାକୁ କଲେକ ତ୍ରିଲୋଚନ । ୩୦ ।
ପାର୍ବତୀ ବୋଇଲେ ସେ ଶର ମାଗରେ ବାବୁ
ତେଣୁ ସେ ତ୍ରୈଲୋକ୍ୟ ଜିଣିବା ପାର୍ଥ ଅବଶ୍ୟ ହୋଇବୁ । ୩୧ ।
ଆହା ଉତ୍ତରେ ସ୍ନାନ ସାରିଣ ବଜେ ସଦାନନ୍ଦେ
ପଶୁପତ ଶର ମାଗିଲି ବଲେ ମୋତେ ହାତେ । ୩୨ ।
ଈଶ୍ୱରେ ବୋଇଲେ ନାରାୟଣ ଅଗ୍ନି ପବନ ଶର
ମୁହିଂ ସେ ଜାଣଇ ଯେହା ଆନେ ଆଗୋଚର । ୩୩ ।
ପାର୍ବତୀ ନ କହିଲେ କେମନ୍ତେ ଜାଣିଲୁ ପାର୍ଥ
ଯେହାର ଶସ୍ତ୍ରମାନ ମୁଂ ଦଆଇବ ନିରୁତାନ୍ତ । ୩୪ ।
ଈଶ୍ୱରେ ବୋଇଲେ ପାର୍ବତୀ ଯେ ଅର୍ଜୁନ ବୋଲି
ଯେବେ ସତ୍ୟ ମୁଂ ତ ଜାଣି ନୁଆରଲି । ୩୫ ।

---

୩୪ । * ଯେହାର ଶସ୍ତ୍ରମାନ ମୁଂ ଦଆଇବ ନିଅତ । —ତ, ଓ, ଗ

ଯେଣୁ ଯେ ପୁତ୍ର ହାତେ ହୋଇଲୁ ଆତୁର
ତୁମ୍ଭେ ପ୍ରସନ୍ନେ ଉମା ଦିଅ ଯେତୁହାକଇଂ ବର । ୩୬ ।
ସ୍ୱାମୀର ବଚନ ସେ ଅଲଂଘତ ବାମା
ସତ୍ୟ ହୋଇଲୁ ବର ମାଗ ବୋଇଲେକ ଉମା । ୩୭ ।
ଈଶ୍ୱରେ ବୋଇଲେ ଅଶକ୍ତଚକ୍ରେ ଥିଲେ
ବର ଦେବାର ଧର୍ମ ପ୍ରାପତ ନୋହଇଟି ଭଲେ । ୩୮ ।
ଉମାଦେବୀ ଗଲେ ଯେ ନଦୀକ ସ୍ନାହାନ କରି
ଅର୍ଜୁନକୁ କହିଲେ ସେ ଦେବ ତ୍ରିପୁରାରି । ୩୯ ।
ମତ୍ସ୍ୟଂଷା ବଧକାଳେ ଅକ୍ଷୟ ତୋଣ କଲେ ଦେବୀ ଜାୟେ
ତାହା ମାଗ ପାର୍ଥରେ ତ୍ରଇଲୋକ୍ୟେ ହୋଇବୁ ଅଜୟେ । ୪୦ ।
ଶୁଚିବନ୍ତ ହୋଇଣ ସେ ଅଇଲେ ପାର୍ବତୀ
ବରମାଗ ପାର୍ଥ ହୋଇଲୁ ମୋହୋର ସନ୍ତୋ । ୪୧ ।
ପ୍ରଣମିତ ହୋଇଣ ମାଗିଲା ବରଟି
ପ୍ରସନ୍ନ ହେଲ ଯେବେ ଦିଅ ଅକ୍ଷୟେ ତୋଣଗୋଟି । ୪୨ ।
ପାର୍ବତୀ ବୋଇଲେ ହର ମହକୁତ୍ୟ କଲ
ଆପଣାର ଶଜର୍ପଣ ପରେ ଦିଆଇଲ । ୪୩ ।
ଯେସନେକ ବଚନ ସେ ବୋଇଲେ ଦେବୀ ଉମା
ଅକ୍ଷୟେ ତୋଣ ମୋତେ ଦିଲେ ସଦାଶିବଙ୍କର ବାମା । ୪୪ ।
ଦେଇଣ ମହାସ୍ୱସ୍ତି ସ୍ୱାମୀକ କୋପକଲେ
ତ୍ରଇଲୋକ୍ୟେ ଜିତା ପାର୍ଥ ହୋଇଲୁ ବୋଇଲେ । ୪୫ ।
ଈଶ୍ୱରେ ବୋଇଲେ ମୁଂ ତ ନ କହିଲି ସଞ୍ଚ
ଭୂତ ଭବିଷ୍ୟ ଗ୍ୟାଂତା ସେ ବେଦବ୍ୟାସ ନାଥ । ୪୬ ।
ପାର୍ବତୀ ବୋଇଲେ କହ ନ କହିଲ ତ୍ରିପୁରାରି
ଶତେ ଈଶ୍ୱର ହୋଇଲେ ଯେବା ଅର୍ଜୁନକୁ ନୋହେ ସରି । ୪୭ ।

---

୩୯।୨ ମୋତେ ଦ୍ୱଇଣ ବୋଇଲେ ଦେବ ତ୍ରିପୁରାରି ।—ଙ, ଗ, ଚ, ଅ

ଶୁଣ ବାବୁ ଉତ୍ତର କହଇ ଧନୁର୍ଜୟେ
ବନା ତପେ ଅଛୟେ ନେଣ ପାଶୁପତ ଶର ପାୟେ । ୪୮ ।
ଉତ୍ତର ବୋଇଲା ସ୍ବାମୀ ଜୀବନ୍ ତୋହୋର ସାଧୁ
ମୋହୋର ଜୀବନ ସାଧୁ ମୁଂ ଯେ ଆଶ୍ରେକଲି ମହାସିନ୍ଧୁ । ୪୯ ।
ଉତ୍ତର କୁମାର ବୋଇଲା ସ୍ୱାମୀ କହଇ ମୁହିଂ ତୁକୁ
ମୁଂ ତୁର କ୍ଷେମ ହୋଇପାରିବ କି ସାରଥିପଣକୁ । ୫୦ ।
ଅର୍ଜୁନ ବୋଇଲା ଉତ୍ତର ତୁ ଆମ୍ଭର ଅନ୍ତଗୁରୁ
ପ୍ରାଣର ସଂଘାତ ତୁ କଂପା ଉପ୍ୟେକରୁ । ୫୧ ।
ଆଗ୍ୟାଂ ପ୍ରମାଣେ ସେ ସାନନ୍ଦ ହସନ୍ତି
ସାରଥିପଣେ ଯାଇଂ ନନ୍ଦଘୋଷ ରଥେ ଉଠି । ୫୨ ।

। ୫୮୮୦ ।

———

୪୮ ।୨ ବନା ତପେ ପାଇଲି ପରମାନନ୍ଦ ଉପାୟେ ।—ଝ, ଗ, ଟ, ଡ

## କୁରୁ ସେନା ପ୍ରଧାନମାନଙ୍କର ପରିଚୟ, ହିଁମିଚି ଖେଳ ଓ ଦୁର୍ବାସାଙ୍କଠାରୁ କୁନ୍ତୀଙ୍କ ବରପ୍ରାପ୍ତି ଏବଂ କର୍ଣ୍ଣ ଜନ୍ମ ବିବରଣ

ଶୁଣ ହୋ ଚଇତନ ବଦପୂନ୍ତ ମହାମୁନ୍ୟ
ମହତ ଦ୍ରଶନେ ମୁକତ ହୋନ୍ତୁ ଜନ । ୧ ।
ଯେବଣ ନନ୍ଦଘୋଷେ ନାରାୟଣ ସାରଥି
ସେ ଆସନ ଖମ୍ଭ ମାଡ ବସିଲା ବିରାଟ ସନ୍ତତି । ୨ ।
ଅର୍ଜୁନ ରଥୀ ସେ ଯେ ଉତ୍ତର କୁମାର ସାରଥି
ଯେସନେକେ ଆକାଶୁଂ ଇନ୍ଦ୍ର ଗୋବିନ୍ଦ ଆସନ୍ତି । ୩ ।
ରଥପଣେ ଅର୍ଜୁନ ସୁମରଇ ହନୁମନ୍ତ
କପିକେତନ ଆସି ସେ ଲାଗିଲା ତୁରିତ । ୪ ।
ଦେବଦତ୍ତ ଶଙ୍ଖ ଯେ ବାଜଇ ଘନ ଘନ
ଶୁଣିଣ ହାସିଲେ ଯେ ସକଳ କୁରୁବଳ ସନ୍ୟ । ୫ ।
ସମସ୍ତେ ଗୃହାଂନ୍ତ ଉତ୍ତରକଇଂ କରି ଯେକଦୃଷ୍ଟି
ନନ୍ଦଘୋଷ ରଥ ସନ୍ନିଧେ ଆସି ଭେଟି । ୬ ।
ଦୂରୁ ଦେଖିଲେ ଯେ ଭାରଦ୍ୱାଦଶଂକ ନନ୍ଦନ
ଦ୍ରୋଣେ ବୋଇଲେ ଶ୍ରେଷ୍ଠେ ବଳସ୍ତେ କଲଟି ଅର୍ଜୁନ । ୭ ।
କର୍ଣ୍ଣ ବୋଇଲେ ଗୁରୁ ହେ ଶବଦ ଦେବଦତ୍ତ
ଶଂକୁନ ବୋଇଲେ ଯେ କପିକେତନ ଧ୍ୱଜ ରଥ । ୮ ।
ଶଲ୍ୟ ବୋଇଲେ ସ୍ୱେତ ନନ୍ଦଘୋଷ ରଥ ଆସଇ
କୃପ ଆଚାର୍ଯ୍ୟ ବୋଇଲେ ସ୍ୱେତ ଅର୍ଜୁନ ପରାସ୍ୱେ ଦିଶଇ । ୯ ।
ଦ୍ରୋଣେ ବୋଇଲେ ଯେହା କେମନ୍ତେ କରିବାକ ସତ
ପାଣ୍ଡବେ ବନସ୍ତେ ପଡି ମଲେ ପଞ୍ଚୁ ଭ୍ରାଥ । ୧୦ ।

ଭୀଷ୍ମ ବୋଇଲେ ହୋ ପାଣ୍ଡବଂକ ଅନ୍ତରେ
ଆନ କେ ନନ୍ଦିଘୋଷ ରଥ ଆଣଇ ଆମ୍ଭର ସମ୍ମୁଖରେ । ୧୧ ।
କଅବା ଅର୍ଜୁନ ରଥୀ ହୋଇଜନା
କଂପା ଗୋଳକର ଯେହ୍ନକ୍ଷଣି ବୁଦ୍ଧି ସିନା । ୧୨ ।
ଯେସନେକ ବର୍ତ୍ତରନ୍ତେ ଯେ କୁରୁ ସନ୍ୟବଳ
ଯେକଦୃଷ୍ଟି କର ଯେ ଗୃହାଂନ୍ତ ସକଳ । ୧୩ ।
ଉତ୍ତର କୁମାର ଅର୍ଜୁନ ସମ୍ମୁଖେ ପରଣାମି
ଯେ ମହାରଥୀମାନେ କେ କେ ଅଟନ୍ତି ଦେବସ୍ୱାମୀ । ୧୪ ।
ଅର୍ଜୁନ ବୋଇଲେ ବାବୁ ଶୁଣ ହୋ ଉତ୍ତର କୁମାର
ଯେ ସେ ଭୀଷ୍ମ ଦ୍ରୋଣ କର୍ଣ୍ଣ ମହାବୀର । ୧୫ ।
ଭୂରିଶ୍ରବା ସୋମଦତ୍ତ କୃତବର୍ମା
ବାହ୍ଲିକ ଶଂକୁନ ଯେ ଦ୍ରୋଣ ସୁତ ଅଶ୍ୱତ୍ଥାମା । ୧୬ ।
କୃପ ଆଚାର୍ଯ୍ୟ ଜୟଦ୍ରଥ ଆବର ଗୁରୁସୁତ ଦେଖ
ଛତ୍ରୀ ବୀରବର ସୁନ୍ଦର ଘରଥେ ଅଛନ୍ତି ମଲ୍ଲ । ୧୭ ।
ସୁଭ ସଷ୍ଟିକ ପ୍ରବାଳ ଜଡ଼ିତ ରଥଗୋଟି
ଶାନ୍ତନୁଂକ ସୋଦର ଭୂରିଶ୍ରବା ଯେଟି । ୧୮ ।
ବାବୁ ତାହାଂକର ବାମ ପାଖେ କଣସୁମଯେ ରଥ
ହୀରା ମାଳା ମଣିଯେ ଜଡ଼ିତ ଚଉଳ ଅପ୍ରମିତ । ୧୯ ।
ବାବୁ କୃଷ୍ଣାଞ୍ଜନ ଛଜଷ ଯେ ରଥର ଉପରେ
ବାସୀନେତ ପାତାଙ୍ଗ ଉଡ଼ନ୍ତି ଗଗନ ଶିଖରେ । ୨୦ ।
କଣସୁମଯେ ରଥେ ମର୍କଟେ ଚେଜ ଝଳ
ଗଜ ମୁକୁତା ମାଣିକ୍ୟ ହୀରା ମାଳା ମାଳ ମାଳ । ୨୧ ।
ଦ୍ୱାଦଶ ଶାର୍ଦ୍ଦୂଳ ଯେ ଯୋଚନ୍ତି ଅଛି ରଥେ
ଆକାଶେ କ୍ଷେପୀ ଲେଡ଼ନ୍ତି ନ ବଶ୍ରାମନ୍ତି ଦବାଗ୍ନେ । ୨୨ ।

---

୧୩।୨ ଯେକଦୃଷ୍ଟି କର ଯେ ଗୃହାଂନ୍ତ ଜଳ ଜଳ ।— ଗ, ଡ

ଶାନ୍ତନୁଙ୍କର ନନ୍ଦନ ଗଙ୍ଗା ଯାହାର ମାଏ
ଯାହା'ର ଶର ବନ୍ଧନେ ତ୍ରଇଲୋକ୍ୟ କଂପଇ ଭଏ । ୨୩ ।
ଶରଣ ମଚ୍ଛଳ ଯେ କରିଛା ଜଗଜ୍ଜେଠୀ
ନାରାଜ ବନ୍ଧନେ ଯାହାର ଚାମ୍ଭର ଯାଏ ଫୁଟି । ୨୪ ।
ଜଗତ, ଯେକୋଇଶବାର ପୃଥୀ ନିକ୍ଷତ୍ର କଲେ ପ୍ରଶୁରାମେ
ସେ ପ୍ରଶୁରାମେ ଯେହାଂଙ୍କୁ ହାରିଲେ ସାଂଗ୍ରାମେ । ୨୫ ।
ଯେ ମହାମଣ୍ଡଳେ ଅସଂକ୍ଷେପ ଯାହାର କଥା
ସେ ସେ ଶ୍ରୀଷ୍ମଦେବ ଶ୍ୱେତ ଯେ ମହାରଥା । ୨୬ ।
ବାରୁ ସିନ୍ଧୁ ଶୋଷଣ ହୋଅଇ ଯାହାର ଶରଘାତେ
ତାର ସଂହରଣ କଲେ ସେ ପିତାର ନମନ୍ତେ । ୨୭ ।
ଯାହାର ନାରାଜ ଭେଦଇ ପୃଥିବୀରେ
ପୃଥୀଭେଦୀ ଶ୍ରୀଷ୍ମ ବୋଲି ବୋଲନ୍ତି ଜଗତରେ । ୨୮ ।
ନ ମରିବ ବୋଲି ସବୁରି ଶୀବ ଛେଦି
ନାହିଁଂନା ଜଣନ୍ତା ସେ ତ୍ର ଭୁବନ ମଧି । ୨୯ ।
ବାବୁ ଶ୍ରୀଷ୍ମଂକର ସନ୍ନିଧେ ଦେଖ ରଥଗୋଟି
ସରୁପ ପ୍ରକାଶଇ ସୂର୍ଯ୍ୟ କରଣ କୋଟି । ୩୦ ।
ଗଜ ମୁକୁତା ପଟ୍ଟପାଟ ଉପରେଣ ଠାଣି
ପଞ୍ଚଷଠି କୋଟି ଅବନ୍ଧା ଶୁଦ୍ଧ ରତ୍ନମଣି । ୩୧ ।
ଖେଚରି ବିମାନ ରଥ ନାମ ତା ବରଧ
ମାତ୍ର ଲୋଚନ ବେନଫାଳ ହୋଅଇ ଯାହାର ନାରାଜ ବନ୍ଧୁ । ୩୨ ।
ଶାକଲ୍ୟ ଦେଶ ରାଏ ଅଟଇ ଦଣ୍ଡଧାରୀ
ମାଦ୍ରୀ ଦେବୀଂକର ସୋଦର ଭ୍ରାଥ ନରଧାରୀ । ୩୩ ।
ଅଶ୍ୱିନୀ କୁମାରଂକର ଅଟଇ ଯେତ୍ତୁ ଶଳା
ନକୁଳ ସହଦେବଂକର ସୋହୋଦ୍ର ମଉଳା । ୩୪ ।

---

୨୭।୧ ବାବୁ ଦିନ୍ଧୁ ମଚ୍ଛନ ହୋଅଇ ଯାହାର ଶରଘାତେ ।—ଦ, ଙ, ଜ

୩୧।୨ ଚଉଷଠି କୋଟି ହୀରା ରଜଇ ସୂର୍ଯ୍ୟମଣି ।—ଗ, ଝ

ଉତ୍ତର କୁମାର ବୋଇଲା ଯେ ବଡ ଦୁର୍ଲଭ କଥା
ମାହାର ସୋଦର ହୋଇ କଂପାଏ ତୁମ୍ଭଂକୁ ଏତେକ ନରକଥା । ୩୫।
ଅର୍ଜୁନ ବୋଇଲା ବାବୁ ବାଳୁତ କୁତୂହଳେ
ଗୁଣ୍ଡି ବାଣ୍ଟି ହୋଇଲୁ ଝିମାଣି ଖେଳବେଳେ । ୩୬ ।
ଦୁର୍ଯୋଧନ ଯୁଧିଷ୍ଠି ହୋଇଲେ ମୂଳଗଣ୍ଡି
ଭୀମ ଦୁଃଶାସନ ହୋଇଲେ ବାମଗଣ୍ଡି । ୩୭ ।
ଯୁଧିଷ୍ଠିରଂକ ଆଡେ ସେ ପଡିଲା ଭୀମସେନ
ଦୁର୍ଯୋଧନ କଡରେ ସେ ପଡିଲା ଦୁଃଶାସନ । ୩୮ ।
କର୍ଣ୍ଣ ଅର୍ଜୁନ ଆମ୍ଭେ ଗଲୁ ଗୁଣ୍ଡି ବେନ
ଦୁର୍ଯୋଧନ ଭାଗେ କର୍ଣ୍ଣ ଯୁଧିଷ୍ଠି ରେ ଫାଲଗୁନ । ୩୯ ।
ନକୁଳ ସୋମଦତ୍ତ ଗଲେ ବେନଗୁଣ୍ଡି
ଦୁର୍ଯୋଧନ ଭାଗେ ସୋମଦତ୍ତ ଯୁଧିଷ୍ଠିରଂକ ଭାଗେ ନକୁଳ ପଡି । ୪୦ ।
ସହଦେବ ଶକୁନି ଯେ ହୋଇଲେ ଯେବେ ଯୋଗ
ଦୁର୍ଯୋଧନେ ଶକୁନି ସହଦେବ ଆମ୍ଭ ଭାଗ । ୪୧ ।
ଯେମନ୍ତେ ବେନଭାଗ ହୋଇଲୁ ଖେଡରସେ
ପ୍ରଥମେ ଦୁଃଶାସନ ଗୋଡାଇଲା ହରଷେ । ୪୨ ।
ଦୁଜେଣ ଗୋଡାଇଲେ ଭୀମସେନ ମହାବଳୀ
ବ୍ୟାଘକଇଂ ଦେଖି ଯେହ୍ନେ ପଳାବଇ ଛେଳି । ୪୩ ।
ମାରଣ କଉଡ଼ବେ ବଳନ୍ତ କରଇ ଭଗନ୍ତ
କାହାକୁ ଗୋଡେ ମାରି ପାଡଇ ଭୂମିଗତ । ୪୪ ।
ଯେବା ନଶୁଆସବେ ଶତେଭ୍ରାଥ ମାରି
ସୋମଦତ୍ତ ଶକୁନି ନୁଆରଲେ ଜବୁରି । ୪୫ ।
ଶତେ ଯେ ପଳାଇ ଅଛନ୍ତି ଦୁରସରି
ନଶୁଆସବେ ଭୀମସେନ ଗୋଡାଏ ପାଦଗତ କରି । ୪୬ ।

---

୩୭। ଭୀମ ଦୁଃଶାସନ ଯେ କଲେ ବାମଖଣ୍ଡି ।—ଣ, କ, ଦ, ଛ, ଜ

ଭୀମସେନ ପାଦ ପଡ଼ିଲା ଶଲ୍ୟଙ୍କର ପିଠି
ଅଶ୍ୱତ୍ଥାମ ଶଲ୍ୟ ପଡ଼ିଲେ ମହୀଲୋଟି । ୪୭ ।
ଉଠି ନୁଆଁଇଲେ ଯେ ବହୁତ ଲଜ୍ଜା ପାଇ
ଭୀମକୁ ମାରିବେ ବୋଲି ସତ୍ୟବ୍ରତ କଇ । ୪୮ ।
କଚ୍ଛାବନ୍ତ କ୍ଷେତ୍ରୀ ସେ ବାହୁଡ଼ି ପୁଅ ଭାଗେ
ମାଦ୍ରେୟ ବର୍ଷିମା କର ବୋଇଲେ ଅନେକ ବାଗେ । ୪୯ ।
କାହାର ବୋଲ ନ କର ଉହିଲେ କୁରୁଥାଟେ
ଭୀମକୁ ମାରିବେ ବୋଲି ପ୍ରତଗ୍ୟାଂ ଗରିଷ୍ଠେ । ୫୦ ।
ଶୁଣ ହୋ ଉତ୍ତର କ୍ଷେତ୍ରୀଂକର ଯେତ୍ତେହେଲେକ କଥା
ଭୀମସେନକୁ ଅପ୍ରୀତି ଯେତ୍ତହାଂକର ହୋଇଲା ସର୍ବଥା । ୫୧ ।
ଯେସନେକ ମହାରଥୀ ଯେ ଭାଗ୍ୟେଗୁରୁ ଶଲ୍ୟ
ଯୁଗାଧି କାଳର ଯେ ଭରଥେ ଭରୋଇମଲ୍ଲ । ୫୨ ।
ଧନୁରେ ଗୁଣେ ସେ ଯେ ବସାଇ ନାରାଜ
ବରୁତ୍ତ ପିଠିରେ ଥାଇ ଶଂକନ୍ତି ଦେବରାଜ । ୫୩ ।
ମହାବଳବନ୍ତା ଯେ ଛତ୍ରୀକୁଳ ଆଧି
ବିନ୍ଧିଲେ ନାରାଜ ପାତାଳ ସ୍ୱର୍ଗକେଇଂ ଭେଦ । ୫୪ ।
ତାହାଂକର ସନ୍ନିଧେ ଦେଖ ଯେକରଥ
ଉଦୟ କାଳେ ଯେହ୍ନେ ଦିନକର ନାଥ । ୫୫ ।
ଅହ୍ନିବ୍ରତେକ ପାତାଙ୍ଗ ଉଡନ୍ତି ରଥର ଉପରେ
ଫରହର ଦାସୀନେତ ଉଡ଼ଇ ଗଗନ ଭିତରେ । ୫୬ ।
ହାଥୀଦନ୍ତ ରଥ ସେ କଣ୍ୟ ସୁପେଣୀ
ତଥିର ଉପରେ ଘଟଣ ଶୁଦ୍ଧମଣି । ୫୭ ।
ମାଣିକ୍ୟ ଗଜ ମୁକୁତା ଜନ ଜନ ପନ୍ତ
ତଥିର ଉପରେ ହୀରା ପାଞ୍ଚପନ୍ତ ଝଲକନ୍ତ । ୫୮ ।
ହୀରା ପାଖରେ ମର୍କତ ସାତଧାଡ଼
ଯେତ୍କା ରଥେ ମଣ୍ଡିଲା ରତ୍ନ ଭଣ୍ଡାର ଗୃହ । ୫୯ ।

---

୫୮ । ସୁବାଟ୍ଟଳ ମୁକୁତା ମାଣିକ୍ୟ ଜନପନ୍ତ ।—ଘ, ଛ

ମାଳା ପଦ୍ମ ପାଖୁଡ଼ାରେ ଖଞ୍ଜି ତ ମୁକୁତା
ଲମ୍ବନ୍ତି ଝଡ଼ାପ୍ରେ ଗୁନ୍ଥଣ ପାଟସୂତା । ୭୦ ।
ଚଉଷଠୀ ପଦ୍ମ ହୀର ପୀତ ଶୁଭ୍ରରେଖ
କଣପ୍ର ଖଦ୍ର ଘଣ୍ଟି ବାଜନ୍ତି ଚଉପାଖ । ୭୧ ।
ଲମ୍ବନ୍ତି ମୁକୁତା ମାଳ ଚଉସର
ରଥରେ ପୁଞ୍ଜି ପୁଞ୍ଜି ମାଣିକ୍ୟର ଝର । ୭୨ ।
ଶତେକ କଣପ୍ର କଳସ ରଥରେ ନବାଣି
ତହିଁର ଉପରେ ଯେ ମର୍କତ ଖଞ୍ଜାଣି । ୭୩ ।
କେଶରୀ ଲାଙ୍ଗୁଡ଼ ଚିହ୍ନ ଉଡ଼ନ୍ତି ରଥ ଧ୍ୱଜେ
ଅମରାଧି ନାଥ କ ସେ ରଥରେ କାଲି ବଜେ । ୭୪ ।
ଆହେ ଉତ୍ତର ଲକ୍ଷେକ ଆଲମ୍ବ ଉଡ଼ଇ ବେଢ଼ପାଖେ
ଢାଳନ୍ତି ସୁବର୍ଣ୍ଣ ବନ୍ଧ ଡାଲମ୍ବା ଚାମରଙ୍କ ଲକ୍ଷେ । ୭୫ ।
ଲକ୍ଷେଣ ଉଦଣ୍ଡ ଯେ ଲକ୍ଷେକ ପାଟଛତ୍ର
ସ୍ୱେକଲକ୍ଷୀ ପାଞ୍ଚଲକ୍ଷୀ ଉଡ଼ଇ ପଞ୍ଚ ଅଶ୍ୱବୃତ । ୭୬ ।
ସୁବର୍ଣ୍ଣ ବନ୍ଧା ଶଙ୍ଖ ହୀର ମାଳାପ୍ରେ ଜଡ଼
ବେନ କୋଟି ଶଙ୍ଖ ଘୁମୁରେଣ ପୁଂର । ୭୭ ।
ଅନର୍ଘ ମଣି ମୁକୁଟ ଶୋଭିତ ଲଲାଟେ
ଅଷ୍ଟଚନ୍ଦ୍ର ବିରାଜନ୍ତି ମୁକୁଟ ସପ୍ତଶାଖା ଘଟେ । ୭୮ ।
ବଇଜୟନ୍ତି ମାଳା ଶୋଭେ ଯାହାଂକର ହୃଦେ
ଅନ୍ତମାନେ ମାନଗୋବିନ୍ଦ ସ୍ୱେଚ୍ଛିଟି ସେ ହାବେ । ୭୯ ।
ସମ୍ପୂର୍ଣ୍ଣ ଚନ୍ଦ୍ର ଲେଖନ ଶୋଭିତ ଲଲାଟେ
ଆରକ୍ତ ସୁରଭି ଶୋଭିତ ଲଲାଟ ବେନକ୍ରୋଟେ । ୮୦ ।
ବେନକରେ ଶୋଭାବନ ଯେ ଶଙ୍ଖ ପଦ୍ମନିଧି
ପନ୍ନଗା ନାଗପୂଣ ସ୍ୱେ ଅଟଇ ଯେ ବିଧି । ୮୧ ।
ବାବୁ ସ୍ୱେହାର କରସ୍ଥଳ ଲାଗନ୍ତେ ପାଷାଣେ
ଅବଶ୍ୟ ପାଣିଦ୍ରବ୍ୟ ହୋଅଇ ତତକ୍ଷଣେ । ୮୨ ।

---

୭୬। ୨ ଲକ୍ଷେକ ଚଇଲ ଯେ ପାଞ୍ଚଲକ୍ଷୀ ଅଶ୍ୱବୃତ ।—ଖ, ଠ

ଆହେ। ଲକ୍ଷେ ରାଜାଂକର ଉପରେ ଯେ୍ଝ ଅଟନ୍ତି ମଉଡମଣି
କୋଟିଯେ୍ଝ ପାଦେ କନ୍ଦେ ବଜଯେ୍ଝ କମଳାମା । ୭୩ ।
କାନ୍ଦଲେ ମାଣିକ୍ୟ ଯେ ଝଡଇ ଲୋଚନୁ
ହସିଲେ ମୁକୁତା ଯେ ପଡଇ ବଦନୁଂ । ୭୪ ।
ଗୃଲନ୍ତେଣ ଅବେଣ୍ଣ ପଦ୍ମ ଯେ ଫୁଟଇ
ଅନ୍ତମାନେ ରାଜା ସେ'ମାନଗୋବନ୍ଦାଇ । ୭୫ ।
ବନ୍ତଶ ଲକ୍ଷଣେ ସେ ରାଜା ଦ୍ରିଯୋଧନ
ଲକ୍ଷେକ ରାଜା ଖଟନ୍ତି ଯେ୍ହାର ଚରଣ । ୭୬ ।
ଅପୂର୍ଣ୍ଣୀ ପ୍ରଦାନ ଯେ୍ଝ ଅନୁବ୍ରତେ ବର
ପିତାମାତା ଆଦକର କାହାକୁହିଂ ନାହିଂ ନମସ୍କାର । ୭୭ ।
ଅଦଭୂତେ ଜଳରୁ କନ୍ୟାଯେ୍କ ଆସି
ଅଷ୍ଟଦନେ ପ୍ରଦାନ ସେ ହୁଅଇ ଶୁଭ୍ରକେଶୀ । ୭୮ ।
ବାବୁ ଇନ୍ଦ୍ରପ୍ରଶସ୍ତ ଯମପ୍ରଶସ୍ତ ହସ୍ତିନା ବାରୁଣା ଜଇନ୍ତା
ଯେ୍ଝ ପଞ୍ଚ କଟକ ମୂଳେ ରାଜ୍ୟ ଅପ୍ରମିତା । ୭୯ ।
କୁଞ୍ଜଗୋଳ ଦେଶର ରାଯେ୍ଝ ଅଟଇ ଆଧିପତି
ବଡାଇ ପ୍ରତାପୀ ରାଜା ସେ ମାନଚକ୍ରବ୍ରତ୍ତି । ୮୦ ।
ଶତେକ ଭ୍ରାଥ ଯେ୍ହାର ଯେ୍କୁଯେ୍କ ଦକ୍ଷ
ଧାମକ ବବେକ ପଣ୍ଡିତ ବୀରବର୍ତ୍ତ । ୮୧ ।
ଗାନ୍ଧାର ଦେଶର ରାଜା ମନ୍ତ୍ରୀ ଯେ ଶକୁନ
ଭୂତ ଭବିଷ୍ୟ ଗ୍ୟାଂତା ଯେ୍ ଅଟଇ ମହାଗ୍ୟାନୀ । ୮୨ ।
ଶୁଦ୍ଧ ସଷ୍ଟ କ ଜାଣି ଯେ୍ହାର ରଥ ବରାଜେ
ବଳୟୁ ବାହାନେ ସେ ଯେ୍ହାର ରଥ ସାଜେ । ୮୩ ।
ଆହେ। ଉତ୍ତର, ଯେ୍ହ'ର ଡାହାଣ ପାରୁଶେ ଯେବଣ ରଥ ବରାଜ
ଆଦତ୍ୟ କରଣ ଜାଣି ସେ ରଥ ମହାତେଜ । ୮୪ ।
ଯେ୍ତେକ ରତ୍ନ ଯେ ଲାଗିଅଛୁ ରଥେ
ଶତେକ ନୃପତିଂକର ଭଣ୍ଡାର ପୁଣ ତେତେ । ୮୫ ।

---

୭୩।୨ କୋଟିପାଦେ ମୁକୁଟେ ବଜଯେ୍ଝ କମଳାମା ।—ଘ, ଙ, ଛ, ଟ, ଣ

ସମସ୍ତ ରଥମାନ ଯେ ଅଟଇ ଅମୂଲ୍ୟ
କୁବେର ଭଣ୍ଡାର ଯେ ନୋହିବ ସମତୁଲ । ୮୬ ।
ଯେ ସେ ରାଧେୟ ନନ୍ଦନ ସେ ଅଟଇ ବୀର କର୍ଣ୍ଣ
ପୃଥୀ ଯେହାକୁ ଲକ୍ଷ ଦଅଇ ଶତେଶ୍ୱର ସୁବର୍ଣ୍ଣ । ୮୭ ।
ଆହେ। ଉତ୍ତର ଆଶ୍ଚେହୋଇ ଚରଣ ତାର ପଡନ୍ତେଣ ପୃଥୀ
ମୁଖରୁ ରୁଧିର ଯେ ବହଇ ବସୁମତୀ । ୮୮ ।
ଥିରହୋଇ ଚରଣ ପଡିବା ନିମନ୍ତେ
ଚେଣୁକର କଣଯୁ ଲକ୍ଷ ଦଅଇ ଭାର ଶତେ । ୮୯ ।
ଆମ୍ଭର ସୋଦର ସେ ଅଟନ୍ତି ଜ୍ୟେଷ୍ଠଭ୍ରାଥ
ଯୁଧିଷ୍ଠି ଦେବହୁଂ ବଡ କୋଇନ୍ତାଂକ ଗର୍ଭୁଂ ଜାତ । ୯୦ ।
ଉତ୍ତର ବୋଇଲା ବାବୁ କଡାଇ ଦୁର୍ଲ୍ଲଭ ଯେ ବାଣୀ
ଆଶ୍ଚର୍ଯ୍ୟ ହୋଇଲା ମୁଂ ତୁମ୍ଭର ବାକ୍ୟ ଶୁଣି । ୯୧ ।
ଯେବଣ ସହୋଦ୍ର ଯେବା ମାତାହୁଂ ଜାଯେ
ଜ୍ୟେଷ୍ଠଭ୍ରାଥ ହୋଇଣ କଂପେ ଯେତେକ ନନ୍ଦର୍ଯେ । ୯୨ ।
ଅର୍ଜ୍ଜୁନ ବୋଇଲା ହୋ କୋନ୍ତଭୋଜ ବୋଲି ଯେବରାଜା
କୋଇନ୍ତା ଦେବୀ ଅଟନ୍ତି ଯେ ତାହାଂକ ତନୁଜା । ୯୩ ।
କୋଇନ୍ତାଯେ ଦୁର୍ବାସାଂକୁ ସେବାକଲେ ବାଳକାଳେ
ଦ୍ୱାଦଶ ବରଷ ସେବାକଲେ ଅବଶ୍ୱଇତ ବେଳେ । ୯୪ ।
ରାଜ୍ୟରୁ ଯାଆନ୍ତେଣ ସେ ଦୁର୍ବାସା ମହାଯତି
କୋଇନ୍ତାଯେ ଗୋଡାଇ ଅଛନ୍ତି ପଛକତି । ୯୫ ।
ଦୁର୍ବାସାଯେ ବୋଇଲେ ବାହୁଡି ଯାଅ ଗୋ ଆଈ
ପ୍ରଲମ୍ବିତ ହୋଇଣ ସେ ବୋଲନ୍ତି ମହାମାଈ । ୯୬ ।
ଈଶ୍ୱର ସମାନେ ମୁହିଂ ତୁମ୍ଭନ୍ତିଂ ସେବାକଲି
କିଛିହିଂ ନ ପାଇ ମୁଂ ନିଷ୍ଫଳ ହୋଇଲି । ୯୭ ।
ଦୁର୍ବାସାଯେ ବୋଇଲେ ଯେ ମହାମନ୍ତ ଆମ୍ଭର
ଯାଚଣ ନ ଦେଉଂ ଯେ ଆମ୍ଭେ ତୁ ମାଗିଲୁ ଯୁମୁର । ୯୮ ।
ଯେବେ ଆଈ ତୁହି ଯେବେ କଲୁ ଇଚ୍ଛା
ମାଗକନା ଆମ୍ଭେ ଦେବୁଂ ପୂରୁଂ ମନୋବାଞ୍ଛା । ୯୯ ।

କୋଇଲା ପ୍ରେ ବୋଇଲେ ମୁଂ କସ ମାଗବଇଂ ବର
ସ୍ତ୍ରୀ ଙ୍କର ବେଦନା ଜାଣି ଅନୁଗ୍ରହ କର । ୧୦୦ ।
ଦୃଭସାପ୍ରେ ବୋଇଲେ ସ୍ତ୍ରୀ ଙ୍କର ପ୍ରେହେନ୍ତେକ ମନବାଞ୍ଛା
ସୁନ୍ଦର ସୁପୁରୁଷ ପୁତ୍ରକଇଂ କରନ୍ତୁ ମନଇଚ୍ଛା । ୧୦୧ ।
ଜପାମାଳ ଗୋଟିପ୍ରେ ଦେବ ଆଣ୍ଡ ଛୋଡେ
ପ୍ରେତା ଯେବ ସୁମରଣା କରିବୁ ଶେଯ୍ୟାର ଯୁଗତେ । ୧୦୨ ।
ଯଦ୍ୟପି ଧର୍ମ ପବନ ଇନ୍ଦ୍ର, ଚନ୍ଦ୍ର ରୁଦ୍ର ସୂର୍ଯ୍ୟ ବ୍ରହ୍ମା ବିଷ୍ଣୁ
ସେ ଆସି ପ୍ରାପତ ହୋଇବ ତୋହୋର ପଛୁ । ୧୦୩ ।
ପ୍ରେସନେକ ଜପାମାଳା ଦେଇ ଗଲେ ଭଗବନ୍ତେ
କୋଇନ୍ତାପ୍ରେ ସ୍ନାନ ସାରିଲେ ସେହି ଯେ ବନସ୍ତେ । ୧୦୪ ।
ସ୍ନାହାନ ସାରି ବେଶ ହୋଇଛନ୍ତି ଜଭ
ଈଶ ନେ୍ୟ ଦିଶିଲେ ଯେ ଆଦିତ୍ୟ ଜ୍ୟୋତି ପ୍ରଭା । ୧୦୫ ।
ମହାମନ୍ତ୍ର ପଞ୍ଚାକ୍ଷ ସେ କରିବାର ନମନ୍ତେ
ବରଞ୍ଚିକ ସୁମରଣା କଲେକ ଶଯ୍ୟାର ଯୁଗତେ । ୧୦୬ ।
ଦିନକର ନାଥ ଯେ ମୂର୍ତ୍ତିବନ୍ତ ହୋଇ
କୋଇନ୍ତାଂକ ସନ୍ନିଧେ ଯେ ବିଜେକଲେ ଯାଇଂ । ୧୦୭ ।
ଅଗ୍ୟାନ କୋଇନ୍ତା ଯେ ଅବଶ୍ୱଇତ ଅରଜବନ୍ତି
କୋଇନ୍ତାପ୍ରେ ଭାସ୍କରେ ଯେ କରିଲା ପୀରତି । ୧୦୮ ।
ଭାବ ଆଲଙ୍ଗନେ କୁମାରୀକ ସମ୍ଭବେ
କାମକର୍ଣ୍ଣ ବିମ୍ବରୁ ସନ୍ତାନ ହୋଇଲେ ପ୍ରସବେ । ୧୦୯ ।
ଦିନକର ନାଥ ଯାଇଂ ଧଇଲେ ତାକୁ କୋଳେ
ସପତସୂର୍ଯ୍ୟ ମଣି ସେ ଗୃପିଲେ ବକ୍ଷସ୍ଥଳେ । ୧୧୦ ।

---

୧୦୭।୨ "କୋଇନ୍ତାଂକ ସନ୍ନିଧେ ଯେ ବିଜେକଲେ ଯାଇଂ" ପାଠପରେ 'ଗ ଜ' ପୋଥିରେ ଅଧିକା ପାଠ:—

ଆଗ୍ୟାଂହଲେ ଭାସ୍କର କାହ୍ନଂକ ସୁମରଣା କଲ ମୋତେ
ବଳାତ୍କାରେ କୋଳେ ଯେ ଧଇଲେ ଆଦିତ୍ୟେ ।

ଅଭେଦକପଟ ମଣି ଗୁପିଲେ ତାଳୁରେ
ବଜ୍ର ଛତ୍ରଜଙ୍ଘ ନେଇଁ ଗୁପିଲେ ଶରୀରେ । ୧୧୧ ।
କର୍ଣ୍ଣରେ ଖଞ୍ଜିଲେ ନେଇ ଅମୃତ କୁଣ୍ଡଳ ବେନ
କର୍ଣ୍ଣ ନାମ ଧଇଲେ ସେ କୁମର କୋଳେ ଘେନ । ୧୧୨ ।
ସପତସୂର୍ଯ୍ୟ ତେଜ ଲୋହିତ ବର୍ଣ୍ଣ କାୟେ
ଲଜ୍ଜେଣ ପିତାର ଘରକୁ ନ ନେଲେ କୋଇନ୍ତାୟେ । ୧୧୩ ।
ମୃତ୍ତିକା ମଞ୍ଜୁଷ ଏକ କୋଇନ୍ତା ଦେବୀ କରି
ବାଳୁତ କୁମରନ୍ତ ତହିଁର ଭିତରେଣ ଭରି । ୧୧୪ ।
ଯମୁନା ନଦୀ ଯେ ବହଇ ଈଶାନ୍ୟଦ୍ୱାରୀ
ସେ ନଦୀ ଭିତରେ ଦେବୀ ପକାଇଲେ ବେଗି । ୧୧୫ ।
କୁମାର ତେଜେ କରି ସିଝିଲା ସେହୁ ମାଟି
କଞ୍ଚା କର୍ଦ୍ଦମ ସେ ହୋଇଲା ବଜ୍ରଘୋଟି । ୧୧୬ ।
ସେ ମଞ୍ଜୁଷ ଉପୁଡଆଇଲା ଯମୁନା ଭିତରେ
ଯାଇଂଣ ଆଉଜିଲା ସେ ଇନ୍ଦ୍ରପ୍ରଶସ୍ତ ନଗରେ । ୧୧୭ ।
ଗାଲବର ନନ୍ଦନ ସଞ୍ଜୟେ ଧୃତରାଷ୍ଟ୍ରର ମନ୍ତ୍ରୀ
ରାଧାନାମେ କନ୍ୟାୟେ ତାହାର ଦୁହିତ୍ରୀ । ୧୧୮ ।
ସଞ୍ଜୟକୁ ପ୍ରାପତ ହୋଇଲା ଦିବ୍ୟଚକ୍ଷୁ
ସେ ବୋଇଲା ମାୟେ ଗୋ ରାଧା କାହିଁ ଅଛୁ । ୧୧୯ ।
ଯେହ୍ନକ୍ଷଣି ଚଳନ୍ତ ତୁ ଯମୁନା ନଦୀ କୂଳେ
ମଞ୍ଜୁଷ ଗୋଟିଏ ଉପୁଡିଆଇ ଗୋ ଯାଉଅଛି ଜଳେ । ୧୨୦ ।
ତାହା ଘେନକରି ତୁ ମାଗୋ ଆସସି ଯତନେ
ବଢାଇ ବଳବନ୍ତା ତହିଁ ଅଛଇ ନନ୍ଦନେ । ୧୨୧ ।
ପିତା'ର ବଚନେ ସେ ଚଳଇ ନନ୍ଦିନୀ
ପାଇଲା ମଞ୍ଜୁଷ ସେ ସୁକୁମାର ସୁବାଣୀ । ୧୨୨ ।
ଅନେକ ଯତନେ ତାହା ରାଧା ଯେ ପାଳିଲା
ବାଳକାନ୍ତି ପ୍ରୀତି ତାର ମାନଗୋବିନ୍ଦର ଭୁଲେ । ୧୨୩ ।
ପ୍ରାଗବେଣୀ କୂଳେ ଦୁହେଁ ହୋଇଲେ ମଇଷ
ନକାଣନ୍ତି କୋଇନ୍ତା ମ.ଛ ନ ଜାଣୁ ଆମ୍ଭେ ଭ୍ରାଅ । ୧୨୪ ।

ଇଦଂବାଚ ଉତ୍ତରକୁ କହିଲେ ଫାଲଗୁନ
ତଦର୍ଥେ କର୍ଣ୍ଣ ଅଛୁ ତାହା ଭୁଲେ ଶହସ୍ର ଘେନ । ୧୨୫ ।
ପରମ ସାନନ୍ଦେଣ କହିଲେ କଥାଟି
ଶୁଣିଣ ସାନନ୍ଦ ଯେ ହୋଇଲା ବିରାଟି । ୧୨୬ ।
ବାବୁ ସେ କର୍ଣ୍ଣର ସନ୍ନିଧେଣ ବିରାଜଇ ଯେଉଂଣ ରଥ
ପୂର୍ଣ୍ଣିମା ଚନ୍ଦ୍ର ଜାଣି ଦିଶଇ ଉଦିତ । ୧୨୭ ।
ରଥର ଉପରେ ବିରାଜଇ ଚନ୍ଦ୍ରକରଣ ମଣି
ତଥିର ଉପରେ କଣପ୍ସୁ ମୃଗଚର୍ମ ଗୁପ୍ତେଣି । ୧୨୮ ।
ତଥିର ଉପରେ ମଲ୍ଲି ମାଲଷ୍ଟ ଗଜର ମୁକୁତା
ମାଣିକ୍ୟର ଝରା ଯେ ଗୁନ୍ଥିଣ ପାଟସୂତା । ୧୨୯ ।
ଚନ୍ଦ୍ର ମଣ୍ଡଳ ରଥ ଚନ୍ଦ୍ର କରଣ ଯେ ମଣି
ଚନ୍ଦ ଉଦୟେ ଜାଣି ଦିଶଇ ରପ୍ତେଣୀ । ୧୩୦ ।
ବାବୁ ଉଦ୍ଧାଳକ ଗୋହୀ ଭରଦ୍ୱାଦଣ ମହର୍ଷ
ଦ୍ରୋଣ ମହାଗୁରୁ ଯେ ତାହାଂକର ଶିଷ । ୧୩୧ ।
ପ୍ରଶୁରାମ ପ୍ରତିଗ୍ରହେ ପାଇଲେ ଆନ୍ଧବିଦ୍ୟା
କୁରୁ ପାଣ୍ଡବଂକ ମଧ୍ୟେ ଗୁରୁ ବ୍ରାହ୍ମଣ ମହାସିଦ୍ଧା । ୧୩୨ ।
ଲକ୍ଷେକ ବଳ ଧନୁ ଧରିଛନ୍ତି ହାଥେ
ବିଶାଣତେ ଶାର୍ଦ୍ଧେଳ ଯୋଚିଲା ଅଛୁ ରଥେ । ୧୩୩ ।
ଶାର୍ଦ୍ଧୂଳ ଲାଞ୍ଜ ଚିହ୍ନ ଉଡଇ ରଥଧ୍ୱଜେ
କଣ୍ଡୁମୟ ରଥେ ହାର ସାରଥେ ସଘେଜେ । ୧୩୪ ।
ବାବୁ ସେ ଦ୍ରୋଣ ଯେ ଅଟନ୍ତି ମହାରଥୀ
ତାହାଂକର ସମାନେ ଅଛନ୍ତି ଶାସ୍ତ୍ର ମହାଛଣୀ । ୧୩୫ ।
ବାବୁ ତାହାଂକର ସନ୍ନିଧେ ତୁ ଦେଖ ହୋ ବିରାଟି
ୟେକଖଣ୍ଡ ରଥ ସେ ଯେ ମର୍କତ ଆହୁଟି । ୧୩୬ ।
ବିରାଜଇ ରଥେ ମୁକୁତା ନକ୍ଷତ୍ର ପନ୍ତି ଜାଣି
ୟେ ସେ ଅଶ୍ୱତ୍ଥାମା ହୋ ମହାରଥୀ ଦ୍ରୋଣି । ୧୩୭ ।
ଲକ୍ଷେ ପଞ୍ଚାଶ ସହସ୍ର ବଳ ବହଇ ୟେ ଧନୁ
ବଳ ବିଦ୍ୟାତେ କ୍ଷୟେ ନୋହଇ ୟେହାଂକର ତନୁ । ୧୩୮ ।

ଛତ୍ରୀଂକର ମଧ୍ୟେ ଯେ ଅଟଇ କୋଟିକଳ୍ପି
ଦ୍ରୋଣେ ଯେହ୍ନାଂକର ପିତାମାତା ଯେହ୍ନାଂକର କୃପୀ । ୧୩୯ ।
ଯେହ୍ନାଂକର ଧନୁ ଧରନ୍ତେ କମ୍ପଇ ଆଖଣ୍ଡଳ
ଯମ ଦେବତା ନ ବସଇ ସଞ୍ଜୀବନୀ ମଣ୍ଡଳ । ୧୪୦ ।
ଛତ୍ରୀ ମାନମର୍ଦ୍ଦନ ଯେ ଗୁରୁ ପରମଗୁରୁ
ଦ୍ରୋଣୁଂ ଅଧିକ ପାଞ୍ଚସସ୍ତ୍ର ବଳ ଯେହ୍ନାର ଧନୁଧରୁ । ୧୪୧ ।
ବାବୁ ଶରଣରକ୍ଷଣ ଯେ ସମରେ ଅଶତ୍ରମା
ଯେହ୍ନାଂକର ମାତୁଳ ଯେ ହାଦେ ଦେଖ କୃପବ୍ରହ୍ମା । ୧୪୨ ।
ମଳୟ ବସନ୍ତ ରଥ ମଳୟ ବସନ୍ତ ସାରଥି
ମଳୟାନଳ ଧ୍ୱଜଯେ ରଥ ଆଲୋକମୟେ ବରାଜଇ ହବାବାନ୍ତ । ୧୪୩ ।
ଯେତେକ ରତ୍ନ ସେ ଲଗିଅଛି ରଥଶିଖା
ଅଂକେ ଲେଖନ୍ତେ ସେ ନ ଯାଇ ଆଜ୍ଞ ଲେଖା । ୧୪୪ ।
ସହସ୍ରେକ ଶାର୍ଦ୍ଦୂଳ ଯୋଚଲ୍ଲ ଅଛି ବଳ ଲାଗି
ଚଳଇ ରଥ ଗଗନେ ପବନୁଂ ଅତି ବେଗ । ୧୪୫ ।
ଯାହାକୁ ଶର ସେ ସନ୍ଧଇ ତାହାକୁ ଅବଶ୍ୟ ବନ୍ଧଇ
ବନ୍ଧନ୍ତେ ନ ବ୍ରୁତଇ ବ୍ରହ୍ମା ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ ଯେବେ ହୋଇ । ୧୪୬ ।
ସମରେ ମହାତମା ସେ ଅଟଇ ନର୍ଦ୍ଦେୟ
ସୁରଲୋକେ ନାଗଲୋକେ ଯେ ସମରେ ଅଭୟେ । ୧୪୭ ।
ହତ୍ୟା ବବାଦକୁ ଯେ ନ ଘୁଞ୍ଚନ୍ତି ସର୍ବକାଳେ
ହବ ଭୁବନ ସଞ୍ଚୟେ ଉପାଜି ପାରନ୍ତି ମନ୍ତବଳେ । ୧୪୮ ।
ବ୍ରାହ୍ମଣପଣକୁ ଯେ ଯେତେ ମାନ ତେଜ
ଯେ ସେ ମହାରଥୀ କୃପ ଯେ ଆଗୃର୍ଯ୍ୟ । ୧୪୯ ।
ଆହୋ ଉତ୍ତର ମାବଗ ସ୍ମୃପେଣୀ ଆରକ୍ତମୟେ ରଥ
ଲୋହିତ ପିଙ୍ଗଳ ବର୍ଣ୍ଣ ସମସ୍ତ ମରକତ । ୧୫୦ ।

---

୧୪୫।୨ ସହସ୍ରେକ ବଡ଼ମୁଖୀ ଯୋଚଲ୍ଲ ବାରୁଲାଗି ।—ଛ
୧୪୭।୨ ସୁରଲୋକ ନାଗଲୋକ ପାବନ୍ତି ମହାଭୟେ ।—ଛ, ଘ, ଙ

ଶଲ୍ୟଂକର ଚର୍ମେ ଯେ ଛୁଇଂଲ୍ଲ ଅଛୁ ରଥଗୋଟି
ସେ ସେ ସୋମଦତ୍ତ ଷଷ୍ଠୀ ମହାରଥୀଟି । ୧୫୧ ।
ଆହୋ ଉତ୍ତର ତାହାଂକର ଭଣୋଲ ଯେ ବାହ୍ଲିକ ମହାଯୋଧୀ
ଷଷ୍ଠୀବର ସୁନ୍ଦର ସେ ଅଛନ୍ତି ପବନ ଭେଦ । ୧୫୨ ।
ମିଳାଇଥେ ଦେଖ ଡାଳମ୍ବା ଗୃମର ଘୁଙ୍ଗୁଣୀ
ଯେସନେକେ ବିରାଜଇ ସ୍ୟମନ୍ତକ ମଣି । ୧୫୩ ।
ବାବୁ ବାହ୍ଲିକ ଦେଶର ସେ ଅଛନ୍ତି ନରନାହା
ରଥରେ ଯୋଚିଲ୍ଲ ଅଛୁ ଦେଖ ସହସ୍ରେ ବାହୁଟିଆ । ୧୫୪ ।
ଶତେଦଳ ପଦ୍ମ ଯେ ସୁବର୍ଣ୍ଣରେ ଖଞ୍ଜି
ମଣୁଆଳ ଯୋଦ୍ଧାସେ ଅମାପତ ବଳ ଗଞ୍ଜି । ୧୫୫ ।
ବାବୁ ସ୍ୱରଣଗ୍ର ବୋଲି ମଣ୍ଡଳ ସେକ ଦେଶ
ତହିଂ ରାଜା ଅଛଇ ଅଲମ୍ବୁଷ ରାକ୍ଷସ । ୧୫୬ ।
ପଦ୍ଧେକ ଯୋଦ୍ଧା ସେହାର ବ୍ରାହ ଯେ ବାହାନ
ଅହର୍ନିଶି ବିଶ୍ୱାସ ସେ ଦୁର୍ଯ୍ୟୋଧନ ରାଜାର ସନ୍ନିଧାନ । ୧୫୭ ।
ଆଗିଆଣି ଥାଠେ ସେ ଚଳଇ ସର୍ବକାଳେ
ଲକ୍ଷେକ ନୃପତି ସେ ଜିଣିପାରଇ ରୋଳେ । ୧୫୮ ।
ରାଜାର ସଂଘାତ ସେ ସେହୁ ଷାଖା ଅବରୋଧ
ତାହାର ନନ୍ଦନ ନାମ ଅଛଇ ଅଳାୟୁଧ । ୧୫୯ ।
ଷାରଙ୍ଗ ସମାନେ ତାହାର ହାଥେ ଧନୁ
ତପେଣ ପ୍ରସନ୍ନ ତାକୁ ହୋଇଲେ ପଞ୍ଚ ମନୁ । ୧୬୦ ।
ଯୁଗାନ୍ତକ ଯୋଦ୍ଧାସେ ମାଳବ ଆଧିପତି
ଚତୁରଙ୍ଗେ ବିଖ୍ୟାତ ସେହାର ଅଲୌକିକ କୀର୍ତ୍ତି । ୧୬୧ ।

---

୧୫୩।୧ ନବାଡ ରଥ ଦେଖ ଡାଳମ୍ବା ବୃମର ଘୁଙ୍ଗୁଣୀ । ଘ, ଛ

୧୫୩।୨ ଯେସନେକେ ବିରାଜଇ କଉସ୍ତୁଭ ମଣି ।—ଘ, ଛ, ପ, ଧ

୧୫୬।୧ ବାବୁ ହରଗେଶ ବୋଲି ମଣ୍ଡଳ ସେକଦେଶ ।—
ଖ, ଛ, ଘ, (, ଧ, ଫ

ବାବୁ ହୀରାମଣ୍ଡେ ରଥ ଭଗଜାଇ ଶୁଭମଣ୍ଡେ
ଦ୍ୱାଦଶ ଆଦିତ୍ୟ ରଥ ଘୋଟିଲା କଣ୍ଠମଣ୍ଡେ । ୧୬୨ ।
ସିନ୍ଧୁ ଦେଶର ରାଜା ଯେ ଦୁର୍ଦ୍ଧର ପତି
ଦୁର୍ଯୋଧନ ଭଉଣୋଇ ଯେ ଜୟଦ୍ରଥ ନୃପତି । ୧୬୩ ।
ଦଶ ଅକ୍ଷୌହିଣୀରେ ରଥ ସ୍ୱେ ସାଜଇ ଅନୁକ୍ରମେ
ପଛୁଆଣି ଥାଇ ଚଳଇ ସେ ପିତାର କମଣ୍ଡେ । ୧୬୪ ।
ଉତ୍ତଙ୍ଗ ଦେଶର ରାଜା ଅଟଇ ବଂଶୀମାଳ
ମହାନ୍ଧ୍ରତେକ ଯୋଦ୍ଧା ଯେଣ ଡାହାଣ ଥାଇ ଚଳ । ୧୬୫ ।
ଆହୋ ଉତ୍ତର ବକଣ୍ଠି ଦେଶର ରାଜା ଯେ ଉର୍ଦ୍ଧ୍ୱକେଶୀ
କାଶୀର ବଦାଦେ ଦାରଣ ମାନଗୋବନ୍ଦ ଚରଣ ଶରଣ ପଶି । ୧୬୬ ।
ପଦ୍ମେକ ମୁକୁଟ ବନ୍ଧାଣ ଯୋଦ୍ଧା ଯେଣ ମହାତେଜ
ରାଜାର ବାମପାଖେ ଥାଇ ବଳ ସାଜ । ୧୬୭ ।
ବାବୁ ଅସଂକ୍ଷେପ କୁରୁ ସାଗରି ସ୍ୱେ ନ ସରଇ କହନ୍ତେ
ଅଷ୍ଟାଦଶ କ୍ଷୌହିଣୀ ବଳ ଅଛଇ ଲେଖନ୍ତେ । ୧୬୮ ।
ତୁ ଯେ ପୁଚ୍ଛାକଲୁ ବାବୁ ସେନାପତିଂକର କଥା
ଠିକ ଠିକ କରି ତୋତେ ମୁଂ କହିଲି ବାରତା । ୧୬୯ ।
। ୬୦୮୯ ।

———

# ଅର୍ଜୁନ ଦୁର୍ଯ୍ୟୋଧନର କଳ ଓ ଶତେଭାଇଙ୍କ ସହିତ ଯୁଦ୍ଧ

ଉତ୍ତର ବୋଇଲା ସ୍ୱାମୀ ପାଇଲ ଛଦନ୍ତ
କାହାର ସମ୍ମୁଖେ ଏବେ ବାହିବଇଂ ତୋର ରଥ । ୧ ।
ଅର୍ଜୁନ ବୋଇଲା ଶୁଣ ହୋ ଉତ୍ତର କୁମାର
ଧନୁର୍ଦ୍ଧର ହୋଇ ବସିଥିବୁଟି ରଥର ଉପର । ୨ ।
ମହାଘୋର ସମର ହୋଇବ ଗୋଳଯୁଦ୍ଧ
ଅନେକ ସେନା ଯୋଦ୍ଧାଏ ପଡ଼ିବେ ରଣମଧ୍ୟ । ୩ ।
ଦେଖିଣ କାତର ନ ହେବୁ ନୋହିବୁଟି ବରତି
ରଥୁଁ ଅନ୍ତର ହୋଇଲେ ନ ଜିଏ ବ କାହାଗୋଟି । ୪ ।
ଯଦ୍ୟପି ହର ଇନ୍ଦ୍ର ବ୍ରହ୍ମା ଆସିବେ ଆଜ ବାହି
ଏହି ରଥେ ଥିଲେ ବାବୁ ପରମାଦ ନାହିଁ । ୫ ।
ଅଶ୍ୱ ନ ଚଳଣ ଏହିକା ଆରମ୍ଭେ ବସିଥିଲେ
ଭେଦନ୍ତା ନାହିଁ ତୋତେ ଶ୍ରେଷ୍ଠ ଦ୍ରୋଣଙ୍କର ବେଳେ । ୬ ।
ଉତ୍ତର ବୋଇଲା ଗୋସାଇଂ ମୁଂ ଆଶ୍ରେକଲି ମେରୁ
ତୁ ଏବେ ସମର କର ମୋତେ କଂପେ ଶଙ୍କା କରୁ । ୭ ।
ଯଦ୍ୟପି ଶ୍ରେଷ୍ଠେ ଦ୍ରୋଣେ ଅନନ୍ତ ମହାଯୋଧୀ
ସମସ୍ତେ ଭୋଗ କରନ୍ତି ସେ ରାଜାର ସମ୍ପତ୍ତି । ୮ ।
ରାଜାର ବଚନେ ସେ ଚଳନ୍ତି ସର୍ବଲୋକ
ଆମ୍ଭମାନେ ନାଇକା ରାଜା ସେ ବାହକ । ୯ ।
ଆମ୍ଭମାନଂକ ସମ୍ମୁଖ ନ ବାହା ମୋହୋର ରଥ
ରାଜାକୁ ଜିଣିଲେ ସେ ସାଧ ହୋଅଇ ସମସ୍ତ । ୧
ଅର୍ଜୁନ ବଚନେ ସେ କୁମାର ଚୂଡ଼ାମଣି
ଦୁର୍ଯ୍ୟୋଧନ ସମ୍ମୁଖରେ ରଥ ଭୂଇଁରେ ଟେକିଲାକ ଆଣି । ୧୧ ।

ଯେସନେକେ ଜଳଘାତ ପଡ଼ଇ ଆକାଶୁଂ
କଉରୋବ ବଳ ହାସିଲେ ନନ୍ଦଘୋଷ ରଥ ଆସୁଂ । ୧୨ ।
ଦେଖିଣ ତ୍ରସ୍ତ ହୋଇଲେ ରଥୀ ସମସ୍ତ
ଅନ୍ତରୀକ୍ଷେ ପ୍ରବେଶ ଆସି ନନ୍ଦଘୋଷ ରଥ । ୧୩ ।
ସମସ୍ତେ ଦେଖିଲେ ରଥଧ୍ୱଜେ କପି ଯେ କେତନ
ଦ୍ଧ ଯୋଧନ ବୋଇଲା କରେ ଆରେ, ଅରଜୁନ । ୧୪ ।
ପଶାରେ ହାରିଲରେ ରାଜ୍ୟଭାର ସମସ୍ତ
ବରଷେ ତେରଦିନ ବଞ୍ଚିବନା ଅଗ୍ୟାଂତ । ୧୫ ।
ଆବର ଦଶ ଦିବସ ଅଛଇନା ଲେଖନ୍ତେ
କାଣ୍ଡୁଡି ଦ୍ୱାଦଶ ବରଷ ସେବିବ ବନସ୍ତେ । ୧୬ ।
ଅର୍ଜୁନ ନମସ୍କାର ନନ୍ଦଘୋଷ ରଥେ ଥାଇଂ
ଅନେକ ମତେ ହିଂହାସି ବୋଲଇ କୁରୁସାଇଂ । ୧୭ ।
ଆରେ ସମ୍ପଦ ହାରିଣ ଯେ ପଶିଲ ଘୋର ବନ
କନ୍ଦମୂଳ ଆହାର ଅଟାଦ୍ୟ ଭକ୍ଷଣ । ୧୮ ।

---

୧୨।୨  "କଉରୋବ ବଳ ହାସିଲେ ନନ୍ଦଘୋଷ ରଥ ଆସୁଂ"
ପାଦ ପରେ 'ଦ ଓ ଜ' ପୋଥିରେ ଅଧିକା ପାଠ—
ଉତ୍ତର ଅରଜୁନ କଥା ଯେ ସଂପାଦ ହୁଅନ୍ତେ
ଆଦିଅନ୍ତ କରି ଅରଜୁନ କହିଲା ସକଳ ବୃତ୍ତାନ୍ତେ ।
ଉତ୍ତର କୁମାର ଶ୍ରୋତା ଯେ ଅର୍ଜୁନ ବକତା
ସମସ୍ତ କହିଲା ଛତ୍ରୀମାନଂକ ବାରତା ।
କଉରୋବ ସମସ୍ତ ଯେ ଗୋଧନ ବେଢ଼ିଥିଲେ
ଅଡ଼ାଇ ନଅନ୍ତେ ସେ ଗୋଧନ ନ ଚଳିଲେ ।
ଦୁଇଦିନ ପରିଯନ୍ତେ ବେଢ଼ିଲେ ଗୋଧନ
ଥାଠ ବେଢ଼ି ଅଡ଼ାନ୍ତେ ସେ ନ ଗଲେ ଅସାଧ୍ୟ ଗୋରୁମାନ ।
ଉତ୍ତର ଅରଜୁନର ସଂପାଦ ସରିଲା ଦୁଇଦିନେ
ପ୍ରବେଶ ହୋଇଲେ ଯାଇଂ ସଂଗ୍ରାମ ଭୂମି ସ୍ଥାନେ ।
ସମସ୍ତେ ଦେଖିଲେ ରଥ ଧ୍ୱଜେ କପି ଯେ କେତନ
ଦ୍ଧ ଯୋଧନ ବୋଇଲା କରେ ଅଇଲୁ କି ଅରଜୁନ ।

ନଗ୍ରେଣ ପଶିଲ ରେ ହୋଇଲ ଭିକ୍ଷାଣୀ
ଛତ୍ରୀବୃତ୍ତ ଗୁଣଣ ରେ ହୋଇଲ ତପୁସୀ । ୧୯ ।

---

୧୯।୧ "ନଗ୍ରେଣ ପଶିଲ ରେ ହୋଇଲ ଭିକ୍ଷାଣୀ"
ପାଦାନ୍ତ ପରେ ଦ, ଜ' ରେ ଭିନ୍ନ ପାଠ—
ନଗରେ ପଶି ରେ ହୋଇଲ ଭିକ୍ଷାଣୀ
ଦୁର୍ଯୋଧନ ବଚନେ ଅର୍ଜୁନ ମହାଶ୍ରେଷି ।
ଆହୋ ଚନ୍ଦ୍ରସେନ ତୋତେ ବାନ୍ଧି ନେଉଥିଲ
ମୋହୋର ପ୍ରତାପେ ସେ-ତେ'ତେ ଗୁଣ୍ଡିଗଲ ।
ତୁ ଯେ ବୋଇଲୁ ସ୍ୱେ ପଣାନ୍ଦୀତାର କଥା
ମୂର୍ଖପଣ ତୋହୋର ନ ଗଲ ସର୍ବଥା ।
କପଟ ପଣାସ୍ୱେ କର ଭିଆଇଲୁ କୃତ୍ୟ
ଅଜାତଶତ୍ରୁ ତୁମ୍ଭେ ଖେଳାଇଲ ଜୂତ ।
ଭିକ୍ଷା ମାଗିଲୁ ବୋଲି ଯେ ବୋଇଲୁ ଯଥାବୃତ୍ତ
ଦାନଭିକ୍ଷା ମାଗନ୍ତି ଯେ ବିଷ୍ଣୁ ପଶୁପତି ।
କନ୍ଦମୂଳ ଭକ୍ଷିଲ ବୋଲି ଯେ ବୋଇଲୁ ବଚନ
ଅରଣ୍ୟେ ଭକ୍ଷନ୍ତି କନ୍ଦମୂଳ ଋଷିଗଣମାନ ।
ସେ ପଣାକାଳେ ତୁମ୍ଭର ଦେଖିଲି ସମୃଦ୍ଧି
ଆଜ ବେଦବ୍ୟାସ ଖୋଲିବାକ ପଣାବିଧି ।
ସ୍ୱାମୀ ଆଜର ପଣାରେ ପାରଇ ଯେତୁ ଜିଣି
ତାହାଂକର ମହିମା ଯେ ଜଗତେ ବଖାଣି
ଯାବତ କାଳେ ସମ୍ପଦ ତୁମ୍ଭର କପଟ କୂଟ
ଘରେକ ଭିଆଇଲ ଜଉଣ ଲ ଗୁଆଘୃତ ଛଣପଟ
ପୁରଚନ, ପଣ୍ଡା ହାଥେ ଲଗାଇଲ ଜୋଇ
ସେ ବ୍ରାହ୍ମଣ ନାଶଗଲ ଆମ୍ଭେ ଗଲୁ ପାରହୋଇ ।
ପୁରଚନା ପଣ୍ଡା ନାଶଗଲ ତୋହୋର ବିଶ୍ୱାସେ
ତୋତେ ଲାଗିଅଛି ଯେ ବ୍ରହ୍ମହତ୍ୟା ଦୋଷେ ।
ଆହୋ ବିଶ୍ୱାସଘାତକ ହୋଇ ବ୍ରତନ୍ତି ଯେଉଂ ପ୍ରାଣୀ
ଜୀବନ ଥିବ ତାର ନର୍କରେ ବାସ ପୁଣି ।

ଯୋଗୀ ତପସ୍ୱୀ ବ୍ରାହ୍ମଣ ଭିକ୍ଷାବାସୀ
ଯେତେ ନ୍ତ ବଧକଲେ ଯେ ଅନେକ ପାପ ଗ୍ରାସି । ୨୦ ।
ଜାତି ବୁଡାଇଲ ରେ ହୋଇଲ ମାନହାନ
କୁଳଗୋତ୍ର ବୁଡାଇଲ ରେ ବିରାଟେ ନେଲ ଦାନ । ୨୧ ।
ଅଚାର ପାଚକ ରେ ପର ଅନ୍ନ ଭୋଗୀ
ଆପଣାର ଦୋଷେଣ ରେ କୁଟୁମ୍ବ ପରତ୍ୟାଗୀ । ୨୨ ।
ଯେତେକ ପ୍ରତିଜ୍ଞାଂ ଯେବେ ଅଛଇ ତୁମ୍ଭର
ପଶାଖେଳେ କିଂପେ ହାରିଲ ରେ ରାଜ୍ୟଭାର ଭଣ୍ଡାର । ୨୩ ।
ଅର୍ଜୁନ ପ୍ରତିବାକ୍ୟ ଯେ ଝୁଂଘାସ ବଚନ ଶୁଣି
ତୋହୋର ବର୍ତମାନ ଅଛଇ ମୁହିଂ ଜାଣି । ୨୪ ।
ପାଣ୍ଡବାସୁର ତୋତେ ଗିଳୁଥିଲା ଯେବଣ କାଳେ
ତୋତେ ଉଦ୍ଧରଣ ଆଣିଲୁ ତାକୁ ମାଇଲୁ ସେକାଳେ । ୨୫ ।
ହିରଣ୍ୟ ରାକ୍ଷସ ତୋତେ ନେଇଥିଲା ହରି
ଜୀର୍ଣ୍ଣକୂପ ଭିତରେ ତୋତେ ପକାଇଲା ବନ୍ଦୀକରି । ୨୬ ।
ନକୁଳ ଉଦ୍ଧାରି ତୋତେ ଆଣିଲା ରେ ତହୁଂ
ପାମର ମୂଢ ରେ ବାକ୍ୟେ ତୁ ଯେତେ ଗର୍ବ କହୁ । ୨୭ ।
ଦ୍ରୋପଦ ରାଜା ରାଇଜର ଜାଣୁ ଟିକ କଥା
ଯେତେ ଶ୍ୟାମସେନ କଲେ ଯେତେକ ଅବସ୍ଥା । ୨୮ ।
ବନାକାର୍ଯ୍ୟେ ରକ୍ଷାକଲୁ ଆମ୍ଭେ ତୋତେ
ମୃତ୍ତୁଜୀବ ଘେନ ଯେବେ ଆସି ପ୍ରତିଜ୍ଞାଂ କରୁ କେତେ । ୨୯ ।
କାଯ୍ୟେମେକ ବନର କଥା ଜାଣୁଟିକ ସବୁ
ଭୀଷ୍ମ ଦ୍ରୋଣ କର୍ଣ୍ଣ ନ ଥିଲେ କି ବାବୁ । ୩୦ ।
କାଳେଣ ସମସ୍ତେ ଗୁଡ ପଳାଇ ଗଲେଟି ତୋତେ
ଆକାଶକଇଂ ବନ୍ଧନ କରି ତୋତେ ନେଲାଟି ଚିତ୍ରସେନ ରଥେ । ୩୧ ।
ବାସବର ସୁତ ମୋହେ ରେ ସେ ସହୋଦ୍ର ଭ୍ରାଥ
ଯୁଧିଷ୍ଠିରଙ୍କ ବଚନେ ମୁହିଂ କଲଇଂ ଅନର୍ଥ । ୩୨ ।
ସୋଦର ଗୁଡଲା ମୁହିଂ ତୋହୋର କଷ୍ଟ ଦେଖି
ଗନ୍ଧର୍ବେ ଯୁଦ୍ଧ କଲି ମୁହିଂ ଉପ୍ରୋଧ ଉପେକ୍ଷି । ୩୩ ।

ତୁ ଯେ କହିଲୁ ପଶାକ୍ରୀଡାର କଥା
ମୂର୍ଖଦୂର୍ବଳ ବାକ୍ୟରେ କଥା କହୁ ତୁ ସର୍ବଥା । ୩୪ ।
କପଟପଶା ଯେ ଭିଆଇଲୁ ଜୁଆ
ଅଜାତଶତ୍ରୁକୁ କଲୁ ବାକ୍ୟତମତ କୋହ । ୩୫ ।
ସେ ପଶା ଖେଳରେ ତୁମ୍ଭର ଦେଖିଲୁ ସମ୍ଭୃଦ୍ଧି
ଆଜ କେଉଁ ଭାଗ୍ୟେ ପଶା ଖେଳିବା ରଣ ମଧ୍ୟି । ୩୬ ।
ସ୍ୱାମୀ ଆଜ ପଶାଯେ ପାରିବ ଯେତ୍ତ ଜାଣି
ତାହାର ମହିମାଂ ସେ ଯେ ଯୁଗରେ ବଖାଣି । ୩୭ ।
ଯାବତକାଳେ ତୁମ୍ଭର ସଂପଦ କୂଟ ଯେ କପଟ
ଘରେକ ଭିଆଇଲ ଜଉ ସଜଳସ ଗୁଆଦ୍ଦୃତ ଛଣପଟ । ୩୮ ।
ପୁରଞ୍ଜନ ପଣ୍ଡ୍ୟାଂକୁ ପେଷିଣ ତାହା ହାଥେ ଲଗାଇଲ ଯୂଇ
ତହିଂ ପୁରଞ୍ଜନ ନାଶଗଲା ଆମ୍ଭେ ଧର୍ମେ ଗଲୁ ଜୀଇଂ । ୩୯ ।
ସେ ପୁରଞ୍ଜନ ନାଶଗଲା ତୋହର ବିଶ୍ୱାସେ
ତୁମ୍ଭର ବ୍ରତ ହେତୁ ବ୍ରହ୍ମହତ୍ୟା ପାପ ଦୋଷେ । ୪୦ ।
ଆହୋ ଦୁର୍ଯୋଧନ ବିଶ୍ୱାସଘାତକେଣ ବ୍ରତମନ୍ତ ଯେଉଂଣ ପ୍ରାଣୀ
ଜୀବନହୀନ ତାଂକର ନର୍କେଣ ତାଂକୁ ଗଣି । ୪୧ ।
ଆପଣାର ଅପାର ଦୋଷ ପରକୁ ହିଂସାସ
ଦେଖନ୍ତୁ ସମସ୍ତେ ପଶା ଖେଳିବା ଆଜ ଆସ । ୪୨ ।
ଦୁର୍ଯୋଧନ ବୋଇଲା ତୁ ଶୁଣରେ କଣ୍ଟି
ଉଚବାତ କାଳେ କାହିଂ ପଶାକାଠି । ୪୩ ।
ପଶା ସାରହିଂ ତ ଆବର ଯେତେ ନାହିଂ
ରଣ ଭିତରେ ପଶା ଖେଳିବା ଆଉ କାହିଂ । ୪୪ ।
ଅର୍ଜୁନ ବୋଇଲା ହେ ଶୁଣିମା ମହାରାଜ
ତୋହୋର ମୋହୋର ବନ୍ଧାବନ୍ଧ ହୋଇବା ନାରାଜ । ୪୫ ।
ଯେତେ ନାରାଜମାନ ହେ ହୋଇବ ପଶାକାଠି
ସେନାଂକର ଶୀର ଗୁଡ଼ ହୋଇବେ ସାର ଗୋଟି । ୪୬ ।
ଯେତିକୁ ପରଜା ହେ ଆସ କରିବା ଦୁର୍ଯୋଧନ
ସେନା ସଇନମାନଂକର ସବୁରିହିଂ ଜୀବନ । ୪୭ ।

ଯେବେ ପଣ ଏବେ ଜିଣିଲେ ସେ ରାଜ୍ୟଭାର ଭୋଗୀ
ଯେବେ ଆଜ ହାରଇ ସେ ସମସ୍ତ ପରିତ୍ୟାଗୀ । ୪୮ ।
ତୋହୋର ସେନା ସନ୍ୟମାନଂକର ଯେବେ ଶିରଲେଟି
ସେମାନେ ହୋଇବେନା ଆଜ ପଣର ସାର ଗୋଟି । ୪୯ ।
ସମରେ ଝାସି ଅର୍ଜୁନ ଯତ୍ନଂ କଲ୍ଲକ ପର୍ବ୍ବଜ
ଶୁଣିଣ କୋପାନଳ ହୋଇଲ୍ଲ କୁରୁରାଜ । ୫୦ ।
ଶ୍ରୀଭୁଜେ ଧନୁଏକ ଧରିଣ ଧୃତରାଷ୍ଟ୍ର
ଅର୍ଜୁନ ଉପରକୁ କଲ୍ଲକ ଶରବୃଷ୍ଟି । ୫୧ ।
ଗୁଣେଣ ଶତେକ ସେ ବସାଇଲ୍ଲ ବାଣ
ଅର୍ଜୁନ ଉପରକୁ ବନ୍ଧିଲ୍ଲ କୁରୁଗଣ । ୫୨ ।
ପୁଣି ବେନଶତ ନାରାଜ ଗୁଣରେ ବସାଇ
ଆକ୍ରୋଷିଣ ପ୍ରହାର କଲ୍ଲକ କୁରୁସାଇଂ । ୫୩ ।
ଉତ୍ତର ବୋଇଲ୍ଲ ନାରାଜତ ପଡଇ ଅବଛନ୍ନେ
ମୋହୋର ଦେହ କମ୍ପ ଅଛୁ ତୁ ସହୁଛୁ କେସନେ । ୫୪ ।
ଅର୍ଜୁନ ବୋଇଲ୍ଲ ହାଦେ ପରର କାର୍ଯ୍ୟ ବୋଲ
କେମନ୍ତେ ହନ୍ଦ କରିବ ବୋଲି ବହୁତ ହୁଦେ ବିସରିଲ । ୫୫ ।
ଉତ୍ତର ବୋଇଲ୍ଲ ସ୍ୱାମୀ ତ୍ରିଗର୍ତ୍ତି ହାରି ପଳାଇଲ୍ଲ
ମାନଗୋବିନ୍ଦ ରାଜାକୁ ଯାଇଂ ଶରଣ ପଶିଲ୍ଲ । ୫୬ ।
ତାହାର ନିମନ୍ତ କରି ବାହ୍ଵଲ୍ଲ କୁରୁଗଣ
ଆମ୍ଭେ ଯେ ତୋହୋର ଚର୍ନ୍ନଂ ପଶିଲୁ ଶରଣ । ୫୭ ।
ଶରଣବଚ୍ଛଳ ନାଥ ତୁମ୍ଭ କରିବୁ କାରଣ
ବିନ୍ଧ ଏବେ ନାରାଜ ନକର କଷଣ । ୫୮ ।
ଏମନ୍ତେ ଉତ୍ତର ବଇକୁଳୀ ତେଣେ ମାନଗୋବିନ୍ଦର କୋପ
ଯଷ୍ଟି ପ୍ରହାରେ ଯେସନେ ଗର୍ଜଇ କାଳସର୍ପ । ୫୯ ।
କୋପଭର ହୋଇଣ ଧନୁର୍ଜ୍ୟେ ପାର୍ଥ
ଦ୍ରୋଣଂକର ନାମ ଧରି ସେ ଧନୁରେ ଲଗାଇଲ୍ଲ ମାଥ । ୬୦ ।

---

୫୨।୨ ଅର୍ଜୁନ ଉପରକୁ ବନ୍ଧିଲ୍ଲ ଗରୁଡାଣ ।—କ, ଣ, ଦ, ଜ, ଙ୍କ, ପ, ଧ

ଦ୍ରୋଣେ ବୋଇଲେ ତୋତେ ପରମ କଲ୍ୟାଣ ହୋଉ କାବୁ
ଯେ ପଞ୍ଚୁ କଟକେ ଯେ କଚ୍ଛପ ହୋଇ ବସିବୁ । ୬୧ ।
ଶୁଣ ଟଂକାର କଲା ପାର୍ଥ କେଶବ ନାମ ଧରି
ଭୀଷ୍ମ ଦ୍ରୋଣ ଭୂରିସବା କୃପ ବିଦୁରେ ଶୁଭଂ ପ୍ରଣପତ୍ୟ କରି । ୬୨ ।
ମନେଣ ସାନନ୍ଦ ପାର୍ଥ ଯୁଦ୍ଧେଷ୍ଟି ନାମ ଧରି
ବିନ୍ଧିଲା ନାରାଜ ବାରୁଣୀ ଶର ଗୁରି । ୬୩ ।
ଧନୁ ହୋଣ ଶରାସନ ବଜୁଲ ଯେହ୍ନେ ହାସେ
ଜୁଳୁଜୁଳା ପୋକ ଯେହ୍ନେ ଉଡନ୍ତି ଆକାଶେ । ୬୪ ।
ତେସନେକ ସରୁପ ସେ ନାରାଜଂକ ଜ୍ୟୋତି
ଦେଖିଣ ପ୍ରଶଂସନ୍ତି ଗାଙ୍ଗେବ ମହାରଥୀ । ୬୫ ।
ରୋଷେ ପଞ୍ଚୁ ଶର ବିନ୍ଧିଲା ସୁତ କୋନ୍ତୀ
ସେହ୍ନା ଫୁଟି ମୂର୍ଚ୍ଛାଗତେ ପଡିଲା ସାରଥି । ୬୬ ।
ପୁଣ ଗୃରିଶରେ ଅର୍ଜୁନ କଲା ଭେଦ
ନୃପତି ରଥ ଗୃରିହୟେ ହୋଇଲା ଶିରଚ୍ଛେଦ । ୬୭ ।
ପୁଣ ଶତେ ନାରାଜ ଯେ ବିନ୍ଧିଲା କରାଟୀ
ଛଇଗୁଡେ ମାନଗୋବନ୍ଦର ରଥ ଗଲା ଫୁଟି । ୬୮ ।
ଯୋଜନେକ ଅନ୍ତରେ ପଡିଲା ରଥପୀଠ
ବିରଥୀ ହୋଇଲେ ସେ କଉରବେ ମହାବୀର ସୋହୋଡ । ୬୯ ।
ଦୁର୍ଯୋଧନର କଟାଳ ଦେଖିଣ ଧୁଶାସନ
ବୃନ୍ଦଜୟେ ଦୁର୍ବଳ ଦୁର୍ମଦ ଦୁରକର୍ଣ୍ଣ ଦ୍ରୁମନ । ୭୦ ।
ଯେ ବଧି ଅନେଶ୍ଵତ ଭାଇ ଥିଲେକ ତାହାର ପାଖେ
ରାଜାକୁ ପଛକରି ଯେ ବିନ୍ଧିଲେ ବାଣ ଲକ୍ଷେ । ୭୧ ।
ଶତେକ ସହୋଦ୍ରଂକ ମହାପ୍ରତାପ ଦେଖି
ବିନ୍ଧଇ ଶର ଫାଲଗୁନ ଉପ୍ରୋଧ ଉପେକ୍ଷି । ୭୨ ।
ଅନେଶ୍ଵତ ଭ୍ରାଥକୁ ପାଞ୍ଚଶତ ବାଣ
ବିନ୍ଧିଲା ଧନୁର୍ଜୟେ ଶବଦ ଗରୁ ଟାଣ । ୭୩ ।

---

ଶ୍ଳୋ ୧ ଅନେଶ୍ଵତ ଭ୍ରାଥଂକୁ ଅନେଶ୍ଵତ ବାଣ ।—ଗ, ପ, ଧ

ରଥ ହାଥୀ ହୟ ସେନା ସାରଥି ସମସ୍ତ ଗଲେ ଫୁଟି ।
ଅସାଷ୍ଟମେ ସମସ୍ତେ ପଡ଼ିଲେ ମହୀରେ ଲୋଟି । ୭୪ ।
ହାଥୀପୃଷ୍ଠେକ ଆରୋହି ଯେ ରାଜା ଦୁର୍ଯୋଧନ
ଧନୁରେ ଶରପୃଷ୍ଠେକ ଧରି ସେ କଲେକ ସନ୍ଧାନ । ୭୫ ।
ବିନ୍ଧିଲା ଅର୍ଜୁନ ଉପରକୁ ସେ ଧାଡ଼କାରେ
ନାରାଜ ପଡ଼ିଲେ ଯାଇ ଅଶ୍ୱଂକ ଉପରେ । ୭୬ ।
କଉଣିକ ନାରାଜ ଯେ ବିନ୍ଧିଲେ କିରୀଟି
ହାଥୀର ଛଟାରେ ପଡ଼ି ଧାଡ଼କାରେ ବାଣ ଗଲା ଫୁଟି । ୭୭ ।

---

୭୭। "ହାଥୀର ଛଟାରେ ପଡ଼ି ଧାଡ଼କାରେ ବାଣ ଗଲା ଫୁଟି" ପରେ 'କ' ପୋଥିରେ ଅଧିକା ପାଠ :—

ଯୋଜନକ ଅନ୍ତରେ ଗଡ଼ିଣ ପଡ଼ିଲା
ବିରଥୀ ହୋଇଣ ମାନଗୋବିନ୍ଦ ପଳାଇଲା ।
ମାନଗୋବିନ୍ଦ ପଳାଇବା ଦେଖି ବୀର କର୍ଣ୍ଣ ରାଗ
ଦେଖିଲା ଦୁର୍ଯୋଧନ ପଳାଇ ମାନଭଙ୍ଗ ।
କୋପେଣ କର୍ଣ୍ଣବୀର ସାରଥିକ କହଇ ଉତ୍ତର
ଅର୍ଜୁନ କଡ଼କୁ ରଥ ବାହା ବେଗେ ମୋର ।
ଦେଖିଲା କର୍ଣ୍ଣ ରଥ ଟେକିଲା ଆଗେ ଆଇଂ
ଅର୍ଜୁନ ବୋଇଲା ଯେ ଉତ୍ତର ମୁଖ ଗୃହଂ ।
କର୍ଣ୍ଣର ତହଂକ ବାହା ରଥ ମୋର
ଅର୍ଜୁନ ବଚନେ ରଥ ଟେକିଲା ଉତ୍ତର
ଦେଖିଣ କର୍ଣ୍ଣ ଯେ କୋପେ କୋପଭର
କର୍ଣ୍ଣହଂ ରଥ ଆଣି ଟେକିଲା ଅର୍ଜୁନ ଆଗର ।
କୋପେଣ ଅର୍ଜୁନ ଯେ କହଇ ପଣଧାଇ
ମୋହୋର ମହିମାଂ କରେ ଶୁଣିଲା ତୋର ନାହିଂ ।
ଆରେ ହାଥର ସୁଖରେ ଖେଳିଲ ଦ୍ରୁମ୍ନେ-ପଶା
ଅସଂଖ୍ୟ ଭାରଥେ ଜୀବନ ବିବଶା ।
ସ୍ୱେକା ଆସି ସ୍ୱେବେ ମୋହୋ ରଣମୁରେ ପଡ଼ିଲୁ
ଯାହାର ପ୍ରଭଗ୍ୟାଂରେ ବାଗ୍ନଧି ହୋସ୍ୱେ ଚଳୁ ।

ଦେଖନ୍ତେଣ ହାଥୀ ଯେ ପଡ଼ନ୍ତି ଶରଘାୟେ
ପାବଗଡ଼ ହୋଇଣ ପଳାୟେ କୁରୁଗ୍ରୟେ । ୭୮ ।
ଅର୍ଜୁନ ତାକ ବିଅଇ ଦୁଯୋଧନର କଷ୍ଟ ଦେଖି
ଉହ ଉହ ମାନଗୋବନ୍ଦ କାହ୍ନଂକ ଯାଜ୍ ସମର ଉପେକ୍ଷ । ୭୯ ।
କପଟପଣ ପ୍ରାୟେ ବୁଝିଲ କ କଉରେବ
ନଷ୍ଟ ହୋଇଲେ କ ଆଜ ପ୍ରାଣ ଘେନ ଯିବ । ୮୦ ।
ଉତ୍ତର ବୋଇଲ ସ୍ୱାମୀ ତାହାର ଅପଚୟ ବେଳ ହୋଇଅଛି
ବନ୍ଧୁଜନା ନାରାଜ ଆବର ଜୟ ବାଞ୍ଛି । ୮୧ ।
ସମର ଧର୍ମକଥା ତୁ ନ ଜାଣୁ ବରାଟି
ନଣତ ଯୋଦ୍ଧାୟେ ଯେ ସମରେ ବିଅନ୍ତି ପିଠି । ୮୨ ।
ତାହାନ୍ତ ମାଇଲେ ଯେ ଆପଣା ଧର୍ମ ନାଶି
ସୁସ୍ଥ ହୋଇଣ ସମର କରନ୍ତକନା ପୁଣ ଆସି । ୮୩ ।

। ୭୧୩୭ ।

---

## କର୍ଣ୍ଣ ଅର୍ଜୁନଙ୍କ ଯୁଦ୍ଧ

ରାଜାର ବିରଥୀ ସେ ଦେଖିଣ ବୀରକର୍ଣ୍ଣ
ଲକ୍ଷେ ଯୋଦ୍ଧା ଘେନିଣ ସେ ଧାଇଁଲା ଅର୍ଜୁନ ସନ୍ନିଧାନ । ୧ ।
ରେ ରେ ପାଣ୍ଡବା ତୁ ଆଜ ଯିବୁ କାହିଁ
ସମସ୍ତେ ମଲେଣି ତୁ ସେବକା ଅଛୁ ରହି । ୨ ।
ମୃତ୍ୟୁ ପ୍ରାପତ କାଳେ କାଳସର୍ପେ ଖେଡିଆଜ୍ଞ
ଯାହାର ପ୍ରତାପ୍ୟାଂସ୍ତେ ବାଘନଧି ହୋଯ୍ୟେଃ ଚନ୍ତ୍ର । ୩ ।
ଆରେ ବିରାଟ କଟକେ ତୁ ହୋଇଲୁ ଭିକ୍ଷାବାସୀ
ପରକାର୍ଯ୍ୟେ ତୁରେ ଆପଣା ମୃତ୍ୟୁ ଲୋଡୁ ଆସି । ୪ ।
ଅର୍ଜୁନ ବୋଇଲା ତୁ ହୋ ଶୁଣ ବୀରକର୍ଣ୍ଣ
ବିରାଟ ରାଜ୍ୟେ ଆମ୍ଭେ ହୋଇଲୁ ଗୋପ୍ୟାନ । ୫ ।
ସ୍ୱାମୀତ୍ୱ ପଣେ ଆମ୍ଭେ ଆସ୍ଥାନେ ବସିଲୁ
ରାଜାର ଅଗୋଚରେ ବ୍ରାଘ ମାଲ ମାଇଲୁ । ୬ ।
ଶତେସିଂଘର ବଳ କୀଚକ ପ୍ରାକ୍ରମ
ଦ୍ରୋପଦୀଂକ ନିମନ୍ତେ ତାହା ବଧ କଲେ ଭୀମ । ୭ ।
କ୍ଷଣେ କ୍ଷଣେ କ୍ରୋଧ ବସିଲା ବୃକୋଦରେ
ଶତେ ଭ୍ରାଥ ତାହାର ମାଇଲେ ଅଗୋଚରେ । ୮ ।
ଆହୋ କର୍ଣ୍ଣ ତ୍ରିଗର୍ତ୍ତ ଯେ ଅଇଲା ଦଣ୍ଡ ଘେନ
ବିରାଟଙ୍କୁ ରକ୍ଷା ନିମନ୍ତେ ତାହାର ବନ୍ଧିଲୁ ସଇନ । ୯ ।
ବିରାଟଙ୍କୁ ବନ୍ଦୀ ମୁକତ ଭୀମସେନ କଲେ
ତ୍ରିଗର୍ତ୍ତ କେଶ ଧରିଣ ସେ ଘରେଣ ଦେଇଗଲେ । ୧୦ ।

---

୩ { କେବଣ ପ୍ରକର୍ମେ ତୁ କାଳସର୍ପର ଆଗେ ଖଡିଆଜ୍ଞ
ମଣ୍ଡୁକା ହୋଇ ତୁ କାଳସର୍ପ କେଉଁ ଯାଜ୍ଞ ।—ପ, ଧ

ଅଜାତଶତ୍ରୁ ସେ ଯେ ଅଟନ୍ତି ଧର୍ମବଳୀ
ଛଡ଼ାଇଦେଲେ ଚିତ୍ରଗର୍ଭକୁ ସେ ବନ୍ଧନ ହୋଇଗଲି । ୧୧ ।
ଆହୋ କର୍ଣ୍ଣ ରାକ୍ଷସ କଲେ କେହ୍ନ ନ ରହିଲେ ସୀମା
ବିରାଟ ରାଜ୍ୟରେ ପୁଣ ଯେତେସନେକ ମହିମା । ୧୨ ।
ଯେତେ ଦଣ୍ଡ ଧେନ ଆସିଲ ତୁମ୍ଭେ ବାନ୍ଧି
ପ୍ରାଣ ଘେନ ଯେଥିଂ ଆଜ ଜଣେ ଯାଇ ନାହିଂ । ୧୩ ।
ଆସିବାର ବେଳ ତୁମ୍ଭର ଅଟଇ ସୁବଧାନ
ଯେମନ୍ତ ସମୟେ ନାହାନ୍ତି ଠାକୁର ଭୀମସେନ । ୧୪ ।
ଜଣେହେଂ ଜୀବନ ଧର ଥାଆନ୍ତ କ ଗେଲେ
ଅଷ୍ଟାଦଶ ଅକ୍ଷୌହିଣୀ ଲୋଟାନ୍ତେ ଯେତେବେଳେ । ୧୫ ।
ଅର୍ଜୁନ କୂଟବାକ୍ୟ ଶୁଣି କର୍ଣ୍ଣ ମହାଯୋଧୀ
ଅବଚ୍ଛନ୍ନେ ନାରାଚ ସନ୍ଧେବ ରୋଷେ ବନ୍ଧି । ୧୬ ।
ଅର୍ଜୁନ ପଞ୍ଚଶାଳ ଯେ ଶହସ୍ର ବିଭାତେ
ରୋଷେଣ ଲାଘବ ଯୁଦ୍ଧ ସେ କରନ୍ତି ଅପ୍ରମିତେ । ୧୭ ।
ଶତେକ ନାରାଚ ଯେ ବନ୍ଧିଲା କର୍ଣ୍ଣ ଟାଣି
ପାଞ୍ଚ ନାରାଚେ ଯେ ଅର୍ଜୁନ ତାହା ହାଣି । ୧୮ ।
ବେନଶତ ନାରାଚ ସନ୍ଧେବ ବେଗେ ବନ୍ଧି
ଦ୍ୱାଦଶ ନାରାଚେ ଅର୍ଜୁନ ତାହା ଛେଦି । ୧୯ ।
ପଞ୍ଚଶତ ନାରାଚ ବନ୍ଧଇ ବୀର କର୍ଣ୍ଣ
ବିଂଶ ନାରାଚେ ତାହା ଛେଦିଲେ ଅରଜୁନ । ୨୦ ।
ପୁଣ ବେନ ସହସ୍ର ନାରାଚ କର୍ଣ୍ଣ ବନ୍ଧି
ପଞ୍ଚଶତ ନାରାଚେ ଅର୍ଜୁନ ତାହା ଛେଦି । ୨୧ ।
ରହ ରହ କର୍ଣ୍ଣ ହୋ ଦେଖ ମୋହୋର ଶର
ଅକ୍ଷମୁନା ଶରେ ଅର୍ଜୁନ ବନ୍ଧିଲା ଅନବାର । ୨୨ ।
ପୁଣ ପୁଣ ପାର୍ଥିବ ଯେ ବନ୍ଧିଲା ଗଳଗାଜ
କର୍ଣ୍ଣ ରଥ ଶତଖଣ୍ଡ ହୋଇ ଗଲା ଧ୍ୱଜ । ୨୩ ।
ଆରେକ ରଥ ଯେ ଆରୋହଣ ବୀରକର୍ଣ୍ଣ
ଅବହୁତେକ ନାରାଚ କଲକ ଆଧାନ । ୨୪ ।

କୋପେଣ ନାରାଚ ବନ୍ଧଇ ସେ ଗାଣ୍ଡିବଧର ତନୁ
ଅର୍ଜୁନ ଛେଦିଲ କର୍ଣ୍ଣର ବଜ୍ରାବଳୀ ଧନୁ । ୨୫ ।
ଧନ ଛେଦନ୍ତେ ସେ କର୍ଣ୍ଣ ରଥ ଗୁଡ଼ି
ଖଡ଼ଗ ଫଳା ଯେନ ପାଦଗତି ଡେଇଁପଡ଼ି । ୨୬ ।
ଖେଳନ୍ତା ସିଂହ ଯେସନ୍ତେ ଦଶଇ ମଧ୍ୟପୁରୀ
କ୍ଷଣେ କ୍ଷଣେ ଗର୍ଜଇ ଯେସନ୍ତେ ବିକ୍ରମକେଶରୀ । ୨୭ ।
ଅସିପତ୍ର ଧରଣ ଧାଇଁଲ ବୀରକର୍ଣ୍ଣ
ହାକୋଡ଼ା ଶର ଯେନ ମାଇଲେ ଫାଲଗୁନ୍ୟ । ୨୮ ।
ଘାଏଣ ଘୁମାଇ କର୍ଣ୍ଣ ପଡ଼ିଲ ମହୀଲୋଟି
ଅସାଷ୍ଟମେ ବୀର ସେ ନୁଆରଲ ଉଠି । ୨୯ ।
କର୍ଣ୍ଣର ଉପରେ ବୀର ଗଲ ରଥ ବାହି
ଦେଖିଲ କର୍ଣ୍ଣର ଯୋଦ୍ଧାମାନେ ଛନ୍ତ ରହି । ୩୦ ।
ଗୈଖାର ଭୁଜଙ୍ଗମ ଆବେଢ଼ ଛନ୍ତି ବୀରେ
ନବନଗୀ କୋଳ ତାହାଂକର ଝଲକନ୍ତ କରେ । ୩୧ ।
ଆରେ ଆରେ ପାର୍ଥ ବୋଲି ଓଗାଳଲେ ଆସି
ଲକ୍ଷେକୋଟି ନାରାଚ ବନ୍ଧଲେ ରଣେ ପଶି । ୩୨ ।
ଦୁରନ୍ତୁଂ ଦେଖିଲ ତାହା ନାରାୟଣର ସାହା
ଲକ୍ଷେକ ନାରାଚ ବନ୍ଧିଲ ସୁଭଦ୍ରାର ନାହା । ୩୩ ।
ନର୍ଘାତ ବାଣଘାତେ ସବୁରି କାୟେ ଫୁଟି
ମେଲଚ୍ଛ ଯୋଦ୍ଧାମାନେ ପଡ଼ଲେ ମହୀଲୋଟି । ୩୪ ।
ରୋଧିର ବିଲେପନ ଶରୀରେଣ ରଙ୍ଗକେଳ
ଯେସନେ ସନ୍ଧ୍ୟାକାଳେ କଂଶୁକ ପୁଷ୍ପ ଓଳ । ୩୫ ।
ଗୁଣସାଗର ଯୋଦ୍ଧା ଯେ ଅଟଇ ବିବହ୍ର
ପ୍ରେହା ଶର ପ୍ରହାରେ ପଡ଼ଲେ କେନଲକ୍ଷ । ୩୬ ।

———— । ୭୧୯ ।

୨୭।୨ ହାଥୀ ଦେଖି ଯେସନ୍ତେ ଗର୍ଜଇ ବିକ୍ରମ କେଶରୀ ।— ଦ, ଜ
୨୯।୨ ଅଜସ୍ର ଶରେ ବୀର ନ ପାରଇ ଉଠ ।—ଣ, ତ, ଫ, ଥ

## ଅର୍ଜୁନ ସହିତ କୁରୁସୈନ୍ୟଙ୍କର ଘୋରଯୁଦ୍ଧ, ମୋହନା ଶର ପ୍ରୟୋଗ ଏବଂ କୁରୁସେନାଙ୍କର ଲାଞ୍ଛନା

ବହୁତଇ ପାଣ୍ଡବ ସେ ଥାଠର ଭିତର
ପୁଣି ପ୍ରବେଶ ହୋଇଲେ ଆସି ସେ ଦୁର୍ଯୋଧନ ଗୁମୂର । ୧ ।
ଶଲ୍ୟ ବାଲ୍‌ହିକ ଜୟଦ୍ରଥ ଅଶ୍ୱତ୍ଥାମ
ଶକୁନି ସୋମଦତ୍ତ ଅଲମ୍ବୁଷ କୃପବ୍ରହ୍ମା । ୨ ।
ଏ ଷଡଯୋଧୀ ସେନଣ ମାନଚକ୍ରବ୍ରିଷ୍ଣ
ଅର୍ଜୁନ ଗୁମୂରେ ଆସି ପ୍ରବେଶ ଚଚକ୍ଷଣାନ୍ତ । ୩ ।
ଅମୃତ ବଦାବେ ଯେହ୍ନେ ସିଂହକାର ସୂତ
ସେହିମତ ପ୍ରାପ୍ତେକ ହୋଇ ଦିଶୁଛନ୍ତି ସମସ୍ତ । ୪ ।
ପ୍ରେକ ପ୍ରେକ ଯୋଦ୍ଧାପ୍ରେ ସହସ୍ର ବାଣ ପେଷି
ପ୍ରେକମୁଖ ହୋଇଣ ସେ ବିନ୍ଧିଲେ ସବ୍ୟସାଚୀ । ୫ ।
ଷଡ ଯୋଦ୍ଧାଂକ ସମର କହିବେ କ ପାର
ଯେସନେକେ କୂଳକୁ ଉଠଇ ସମୁଦ୍ର ଲହରୀ । ୬ ।
ସହସ୍ର ସହସ୍ର ଶର ଯେ ଅର୍ଜୁନ ଛେଦଇ
କଉରେବ ସନ୍ୟକୁ ପ୍ରେକାପ୍ରେ ଅର୍ଜୁନ ବିନ୍ଧଇ । ୭ ।
ପାଥକୁ ନାରାଜ ଯେ ବିନ୍ଧଇ ଅପ୍ରମିତା
ଲକ୍ଷ ଲକ୍ଷ କୋଟି ଯେ ନ ଯାଇ ଗଣିତା । ୮ ।
ଜାଳାବଳୀ ବାଣ ଧରି ବିନ୍ଧଇ ବୀର ପାଥ
ଶଲ୍ୟ ଅଶ୍ୱତ୍ଥାମାଂକର ଛେଦିଲେକ ରଥ । ୯ ।

---

୫।୧ ପ୍ରେକ ଧନୁକେ ଯୋଦ୍ଧାପ୍ରେ ସହସ୍ର ବାଣ ଯୋଡି ।—କ, ଖ, ଘ, ଢ, ଙ

ଅଶ୍ୱତ୍ଥାମା ବିରଥୀ ହୋଇ ଦ୍ରୋଣଂକ ରଥେ ଉଠ
ଖ୍ରୀଷ୍ମଂକ ରଥେ ଯାଇଂ ଉଠିଲ୍ଲ ଧୃତରାଷ୍ଟ୍ର । ୧୦ ।
ରାଜାକଇଂ କୋଳକରି ଗଙ୍ଗାର ନନ୍ଦନ
ଆମ୍ଭର ବୋଲ ତୁ ଯେ ନକଲୁ ଦ୍ରିଯୋଧନ । ୧୧ ।
ଦୁଷ୍ଟଂକର ବୋଲେ ଯେ ଅଇଲୁ ରଥ ସାଜ
ବିଦେଶେ ବିନାକାର୍ଯ୍ୟେ ବୁଡ଼ାଇଲୁ ସମ୍ଭୃଧି । ୧୨ ।
ଦ୍ରିଯୋଧନ ବୋଇଲ୍ଲ ଜାଣିତ ନୁଆରି
ଗୁଡ଼ ଗୋଧନ ପଲ ଯିବା ଗ୍ଭଲ ଅପସରି । ୧୩ ।
ଖ୍ରୀଷ୍ମେ ବୋଇଲେ ତୁହୋ ମୂର୍ଖ ସାଂଗ୍ରାମେ
ଘଞ୍ଚିଲେ କେ ଆଜ ବଞ୍ଚିବାକ କ୍ଷମେ । ୧୪ ।
ଦ୍ରୋଣେ ବୋଇଲେ ରହିଣ ଯୁଦ୍ଧ କରିବା ସମସ୍ତେ ସ୍ୱେକମୁଖେ
ସ୍ୱେକା ପାଣ୍ଡବ ଯିନା ଅଛଇ ବିକଶ୍ରେ । ୧୫ ।
ଖ୍ରୀଷ୍ମେ ବୋଇଲେ ସ୍ୱେକା ପାଣ୍ଡବେ ଛତ୍ରୀ ମହାସିଦ୍ଧା
ଆବର ବନସ୍ତେ ସେ ପାଇଛନ୍ତି ଅନେକ ବିଦ୍ୟା । ୧୬ ।
ନିବାଂତକପଟ ବଧକରି ଅମର ସ୍ୱର୍ଗବାସେ
ବହୁତ ଶସ୍ତ୍ର ଦିଲେ ଅମରଗଣ ତୋଷେ । ୧୭ ।
ଖ୍ରୀଷ୍ମ ବୋଇଲେ ତୁମ୍ଭର ଶିଷ୍ୟପ୍ରାସ୍ୱେ ମଣିଲ କ ଦ୍ରୋଣେ
ଈଶ୍ୱର ଦେବତାସ୍ୱେ ହାରିଲେ ଯାହାକୁ ରଣେ । ୧୮ ।
ଦ୍ରୋଣେ ବୋଇଲେ ଦେଖ ହୋ ଜାଣିମା ଛତ୍ରୀବୃତ୍ତି
କାସ କାସ ନାରାଜ ହୋଇଛୁ ଉପଗତ । ୧୯ ।
ଅର୍ଜୁନ ବୋଇଲ୍ଲ ଉତ୍ତର ଖ୍ରୀଷ୍ମ ଦ୍ରୋଣକଇଂ ରୁହାଂ
ଦ୍ରିଯୋଧନ ଯହିଂ ଅଛୁ ତହିଂକ ରଥ ବାହା । ୨୦ ।
ବାବୁରେ ବଡ଼ାଇ ଦୁରାପଦଟି ହୋଇବ ସମର
ନପୂଣ ରହି ନୁଆରି ରଥର ଉପର । ୨୧ ।
ପାଟଡୋର ଘେନଥିବୁଟି ଦମ୍ଭେ ନିଜ ହାଥେ
ମୁହିଂ ଯିନା ନିବାରିବ କଉରେବ ସମସ୍ତେ । ୨୨ ।

---

୧୪।୨ ଘୁଞ୍ଚିଲେହେଂ ଜଣେ କେହୁ ନ ବ୍ରହିବେ ଜୀବନେ ।—କ, ଣ

ବାହର ଭୁରଙ୍ଗମ ସେ କୁମାର ବରଷି
ଶ୍ରୀକୃଷ୍ଣ ଦ୍ରୋଣ ସମ୍ମୁଖରେ ନନ୍ଦଘୋଷ ଯାଇଂ ଭେଟି । ୨୩ ।
ଯେସନେକେ ମନ୍ଦର ହେମବନ୍ତ ଆକ୍ରୋଷି
କଉରବେ ସଇନକ ନନ୍ଦଘୋଷ ତେସନେକ ଦଶୀ । ୨୪ ।
ସମ୍ମୁଖରେ ଅରଜୁନ କରଇ ସମ୍ଭାଷ
ଶ୍ରୀକୃଷ୍ଣେ ପେଶିଲେ ଯେ ନାରାଜ ଆଶିଷ । ୨୫ ।
ଲକ୍ଷେକ ବାଣେକ ଯେ ବନ୍ଧଇ ଫାଲଗୁନ
ଶ୍ରୀକୃଷ୍ଣଂକର ଚରଣେ ସେ କରଇ ଦଣ୍ଡି ମା । ୨୬ ।
ଗଙ୍ଗାର ନନ୍ଦନ ଯେ ଗୁଡିଲ୍ଲ ଓପ୍ରୋଧ
କାଳାନ୍ତକ ରୂପ ଧରି ଆରମ୍ଭିଲେ ଯୁଦ୍ଧ । ୨୭ ।
ଅଧାଚନ୍ଦ୍ର ବାଣ ଯେ ପେଷିଲେ ଗାଙ୍ଗେ
ଦୁରୁଂ ଛେଦିଲ୍ଲ ତାହା ପାଣ୍ଡବ ପାର୍ଥିବ । ୨୮ ।
ସମର ସମ୍ମୁଖଣ ଯେ ଗୁଡଲେ ଗାଙ୍ଗେବେ
ପୁଣି ପଞ୍ଚଷଠି ନାରାଜ ଯେ ବନ୍ଧଲେ ପାର୍ଥିବେ । ୨୯ ।
ପୁଣି ବେନଶତ ଯେ ନାରାଜ ପୂରେଇ
ଆକ୍ରେଷି ନାରାଜ ପେଷଲେ ଶ୍ରୀକୃଷ୍ଣେ ନେଇ । ୩୦ ।
ଗଙ୍ଗାର ନନ୍ଦନ ଯେ ପ୍ରତାପବନ୍ତ ମହାଛତ୍ରୀ
ବ୍ରହ୍ମାଣ୍ଡ ଜିଣିମାକୁ ସମର୍ଥ ମହାରଥୀ । ୩୧ ।
ହାଥର ବ୍ୟଗ୍ରେ ଶହସ୍ର ଦେଖିତ ନୁଆର
ପବନହୁଂ ବେଗେ ସେ ନାରାଜ ପ୍ରହାର । ୩୨ ।
ବଢିଲ୍ଲ ରଣଗୋଳ ଅକ୍ଷୟ ସମରେ
ନକ୍ଷତ୍ରାବ ବାଣ ଅର୍ଜୁନ ଧରିଲ୍ଲ ନଜକରେ । ୩୩ ।
ଶତେକ ଶାର୍ଦ୍ଦୂଳ ଯୋଡିଲ୍ଲ ଶ୍ରୀକୃଷ୍ଣଂକର ରଥେ
ବେନଖଣ୍ଡ ହୋଇଲେ ସେ ଅର୍ଜୁନ ଶରଘାତେ । ୩୪ ।
ମଳୟ ବସନ୍ତ ବୋଲକରି ଶ୍ରୀକୃଷ୍ଣଂକ ସାରଥି
ଅର୍ଜୁନର ଶରଘାତେ ସେ ମୋହେଣ ପଡନ୍ତି । ୩୫ ।
ପୁଣ ଦଶାଶତେ ନାରାଜ ବନ୍ଧେଲ୍ଲ ପାର୍ଥ ଟାଣି
ଶ୍ରୀକୃଷ୍ଣଂକର ରଥ ସେ ନାରାଜ ଘେନଆଣି । ୩୬ ।

ବିରଥୀ ହୋଇଣ ସେ ଗଙ୍ଗାକେଶରୀ ସୁତ
ପୁଣ ଆରୋହିଲେ ଶୁଦ୍ଧ ସଜ୍ଜ କମନ୍ୟେ ରଥ । ୩୭ ।
ଗ୍ରାହ୍ମଣଂକର ଅଦ୍ଭୁମାନେ ଭରଦ୍ୱାଜଂକର ଶିଷ
ପାଞ୍ଚଲକ୍ଷ ଯୋଦ୍ଧା ଯେନ ଅର୍ଜୁନଙ୍କୁ ଓଗାଳିଲେ ଆସି । ୩୮ ।
ଅଣୀ ମର୍ତ୍ତ ଯୋଦ୍ଧା ଯେନ ମାନଚକ୍ରବ୍ରୁଷ
ସେହି ସେ ବେଢ଼ିଲେ ଆସି ଅର୍ଜୁନର କଣ୍ଡ । ୩୯ ।
ଦ୍ରୋଣେ ବୋଇଲେ ହୋ ସମସ୍ତେହେଂ ରହ ରହ
ଅମାନ୍ତ ନ କରିବା ସମସ୍ତେହେଂ ସମର ସର୍ବେ ସହ । ୪୦ ।
ଏକା ଯୋଦ୍ଧାକୁ ବହୁତ ଲୋକ ସମର କଲେ
କାଳଭ୍ରଷ୍ଟ ହୋଇବନା ଧର୍ମକୁ ଲଂଘିଲେ । ୪୧ ।
କ୍ଷଣକ ସମର ଦେଖ ହୋ ମୋର ରହି
ଯୋଦ୍ଧାନ୍ତ ସମ୍ବୋଧିଲେ ମଧୁର ବଚନ କହି । ୪୨ ।
ଆର୍ଦ୍ଧବଳୀ ସାତ୍ୱତେଶ୍ୟ ଯେ ଦ୍ରୋଣଂକର ଧନୁ
ଅର୍ଜୁନ ଗ୍ରୁମୁରେ ପ୍ରବେଶ ଭରଦ୍ୱାଦଶଂକର ତନୁ । ୪୩ ।
ରଥେ ଥାଇ ପାର୍ଥିବ ଯେ ବନସ୍ତେ ଦଇନ
ଦ୍ରୋଣେ କଲ୍ୟାଣ କଲେ ଯଥାବାକ୍ୟ ଯେନ । ୪୪ ।
ଅଧର ପୃଷ୍ଟକରି ଦ୍ରୋଣେ କୋପେ କହନ୍ତି କଥା
ଲୋକତ କର୍ମେ ଯେ କହନ୍ତି ଯଥା ଯଥା । ୪୫ ।
ଆରେ ରାଜ୍ୟହାର ତେଜଣ ରେ ପଶିଲ ଯାଇଂ ବନେ
ଅଗ୍ୟାଂତବାସ ଲଗୁଡ ଅଛଇ ଗଣନ୍ଦନ ଲେଖନେ । ୪୬ ।
ବିରାଟର ଗୋଧନ ଆମ୍ଭେ ନେମୁଂରେ ହସ୍ତିନା
ଆମ୍ଭେ ହର ନେମୁଂ ଯୁଗତେ ଭୁମ୍ଭର କାର୍ଯ୍ୟ ସିନା । ୪୭ ।
ଯଦ୍ୟପି ଦୁର୍ଜ୍ଜତକାଳ ବଞ୍ଚିଲ ପ୍ରେଥି ଦନ
ପରପାଇଂ କର୍ମେ ଆପଣା ସହୋଦ୍ରେ ଅନ୍ୟୋଅନ୍ୟ । ୪୮ ।

---

୪୦।୧ ଅମାଢ କରିବା ନାକ ସ୍ୱେକଥା ନୋହୋଇ ସନ୍ଦେହ ।—ଡ, ଗ
୪୨।୨ ଯୋଦ୍ଧାନ୍ତ ସମ୍ବୋଧିଲେ ପ୍ରବୋଧ ବଚନ କହି ।—କ, ଦ
୪୫।୨ ଲୋକତ କର୍ମେ ସେ କହନ୍ତି ନ୍ୟାଥା ।—ଚ, ଦ, କ

ସମର ଦୁର୍ଭର ବୋଲି ଯାଅ ଯା ଯେଥୁ ଘୁଞ୍ଚି
ଗୋଧନ ସଙ୍ଗ ଆମ୍ଭେ ନେଉଁ ସବ୍ୟସାଚୀ । ୪୯ ।
ଅର୍ଜୁନ ବୋଇଲା ତୁମ୍ଭେ ଅଟ ପରମଗୁରୁ
ଛତ୍ରୀବୃତ୍ତିପଣ ତାତ ଦୂଷଣ କିମ୍ପେ କରୁ । ୫୦ ।
ଦ୍ୱିଗୁଣ ସମ୍ବନ୍ଧ ତାତ ଆମ୍ଭର ଆଦ୍ୟୋଳ
ଭୀମସେନ ବଧକଲେ କୀଚକ ମୁଳେ ଶତେ ମହାବଳୀ । ୫୧ ।
ଯାହାର ଅନ୍ନ ଭକ୍ଷି ତାହାକୁ ସିନା ରଥି
ଶହାସ୍ତ୍ର ସଂହିତାଯେ ତାତ ଯେତେହେନେକ ଦ୍ୱନ୍ଦ୍ୱର ଅଛୁ । ୫୨ ।
ତୁମ୍ଭେ ଯେ ବୋଇଲ ଅଜ୍ଞାତବାସ ତନଦିନ ଅଛୁ
ବତ୍ସର ଦଶଦିନ ଲଇ ସାତଦିନ ଊଣା ହୋଇଅଛୁ । ୫୩ ।
ଯେଥୁ ତୁମ୍ଭେ ସମସ୍ତେ ହୋ ଯାଅ ସନ୍ୟ ଘେନ
ରଣମହଲା ବାନା ମୋ ନାମଟି ଫାଲଗୁନ । ୫୪ ।
ଗୋଧନ ନିମନ୍ତେ ସମସ୍ତେ ପାଇବଟି ଲଜ
କଥା ସେ ରହିବ ତାତ ନୋହିବ କସ କାର୍ଯ୍ୟ । ୫୫ ।
ଦ୍ରୋଣେ ବୋଇଲେ ତୁ ସମ୍ବୋଧନା ନ କଲେ
ଯେ କୁରୁସାଗର ଜିଣିପାରିବୁ ଟିକ ତୋହୋର ବେଳେ । ୫୬ ।
ଅର୍ଜୁନ ବୋଇଲେ ତାତ ସାଗର ଜଳ ବୋଲି
ଯେକାଯେ ସାଗର ସେ ମନ୍ଥ ଲି କୀର ବାଳୀ । ୫୭ ।
ଦ୍ରୋଣେ ନବୋଇଲେ କୋଟିଯେ ସିଂହର ପ୍ରାକ୍ରମ ଅଟଇ ଯେଉଁଣ ବାଳ
ଲୋହଶଙ୍ଖ ବେଳ ପର୍ବତ ଶଙ୍ଖନାଳ ପ୍ରାୟେ ତୋଳ । ୫୮ ।
ତୁ ତାହାକୁ ପଟାନ୍ତର ହୋଇବୁ କ ଧନୁର୍ଜୟେ
ଅର୍ଜୁନ ବୋଇଲା ସେ ହୋଉକିନା ଶୟେ । ୫୯ ।
ଗୁରୁହେ ତୁମ୍ଭେ ଯେ ବୋଇଲ ଯେ କୁରୁ ସାଗର ସନ୍ୟ
ମୁହିଁ ଜାଣଇ ସବୁରି ପ୍ରାଣ ଅଛୁ ଯୋ ନାଗଜ ମୂନ । ୬୦ ।

---

୫୮।୨ ଲୋହଶଙ୍ଖ ବେଳ ପର୍ବତ ଶଙ୍ଖନାଦ କରି ତୋଳ ।—ଦ, ଜ

୫୮।୨ ଲୁହାର ବେଳ ପର୍ବତ ଭୁଜରେ ଘେନଇ ତୋଳ ।—ଟ

ଦ୍ରୁପଦ ପ୍ରତିଗ୍ୟାଂ ଶୁଣି ଚଳିଲେ ଦ୍ରୋଣଗୁରୁ
ଶତେ ନାରାଜ ପେଷିଲେ ଦ୍ରୋଣେ ପଚ୍ଛରୁ ପଚ୍ଛନ୍ତୁ । ୬୧ ।
ପୁଣି ଶତେ ନାରାଜ ହେନଣ ମହାରଥୀ
ଦୁଇଶର ହେନଣ ସେ ପେଶି ଛେଦିଲେ ସାରଥି । ୬୨ ।
ପୁଣିହିଂ ନାରାଜ ପେଷିଲେ ଶତେ ଶର
ଶରଗୋଟି ଅଶ୍ୱଂକର ଉପରେ ପ୍ରହାର । ୬୩ ।
ପୁଣିହିଂ ଶରଶତ ;ବାଣ ହେନକରି ଦ୍ରୋଣେ
ନନ୍ଦିଘୋଷ ରଥ ଭେଦିଲେ ଶରକୋଣେ । ୬୪ ।
ଅନିବାରଣ ଶର ଯେ ହେନଲେ ଫାଲଗୁନ
ଧାଡିକାରେ ଭେଦିଲେ ସେ ନାରାଜ ସହସ୍ରେ ତିନ । ୬୫ ।
ଦ୍ରୋଣଂକର ଶରମାନ ଅର୍ଜୁନ ସବୁ ଛେଦି
ପୁଣିହିଂ ସହସ୍ରେ·ନାରାଜ ଦ୍ରୋଣଗୁରୁ ଭେଦି । ୬୬ ।
ମହାଚଞ୍ଚଳ ବ୍ରତ ସେ ପରଶୁରାମ ଦାମି
ପୁଣି ସହସ୍ର ନାରାଜ ବିନ୍ଧିଲେ ଦ୍ରୋଣେ ଟାଣି । ୬୭ ।
ଅନିବାରଣ ଶର ତାହା କେ ପାରିବ କଳି
ଉଦ୍ଦୋକୁଳ ହିନ୍ଦନ୍ତେ ଅଦୃଶ୍ୟ ଅଂଶୁମାଳୀ । ୬୮ ।
ଯେସନେକେ କୁହୁଡି ବିକାଶଇ କୁମ୍ଭମାଧେ
ସେହି ସାରଥେ·ନାରାଜ ପଡିଲେ ଦଶଦିଗେ । ୬୯ ।
ସମରେ ଅର୍ଜୁନ କରଇ ଲାଘବ ଯୁଦ୍ଧ
ବିଚାରି ବୋଇଲ ମୋହୋର କାହାକୁ ଉପ୍ରୋଧ । ୭୦ ।
ମସ୍ତକେ ହାଥ ଦେଇ ପଚାରଇ ଫାଲଗୁନ
ଦୁଷ୍ଟ ଦଣ୍ଡ ଗୁରୁ ହୋ ହେନ ମୋହୋର ଦଇନ । ୭୧ ।
ତୁମ୍ଭର ଶହସ୍ରମାନ ତାତ ବନ୍ଧୁଟି ପୁଣେତେବେଳେ
ପୁଣି ଶହସ୍ରେ ତୁମ୍ଭନ୍ତ ଜଣି ହୁଅଇ କ ଗେଲେ । ୭୨ ।

---

୬୮।୨ ଉଦ୍ଦୋକୁଳ ସମରେ ଅଦୃଶ୍ୟ ଅଶ୍ୱମାଳୀ ।— ଚ, ଙ, ଗ
୬୯।୧ ଯେସନେକ କୁହୁକ ଘୋଟଇ ଧନୂମାସେ ।—ଗ, ଙ

ଅନେକ ନାରାଚ ମୋତେ ଦେଇଅଛନ୍ତି ପଶୁପତି
ମହେଶଙ୍କ ଭକ୍ତପାର୍ଥ ଯେବେଣ ଶରେ ସାଧିଲେ ମୋତେ ଦେଇ ଅଛନ୍ତି
ପାବକ । ୭୩ ।
ଶରୀର ମୋହୋର କର୍ମି ଆସୁଅଛି ବେଳୁବେଳ
ଗୁରୁ ବ୍ରାହ୍ମଣ ନ ଯାଇଟି ସମର ଖେଳ ୭୪ ।
ଦ୍ରୋଣେ ବୋଇଲେ ଦେଖିବା ତୋହୋର ସମର
କସ କସ ଶହସ୍ତ୍ର ବନ୍ଧୁ କନା ପାଥ ୭୫ ।
ଆହୋ ଅର୍ଜୁନ ଛଳୀ ହୋଇ କଂସେ ବଞ୍ଚିଲତ କାଯେ
ନସତ ହୋଇ ଖ୍ରଣ୍ଡବା କେବଣ ଉପାୟେ । ୭୬ ।
ଆଦ୍ୟନ୍ତୁଂ ତୋହୋର ଶହଧିକୁ ଆମ୍ଭେ କରଅଛୁଂ ଆଶ
ରଣଯଜ୍ଞ କରଅଛୁ ଅର୍ଜୁନ ଶହସ୍ତ୍ରେ ହୋଇବୁଂ ପ୍ରାଣନାଶ । ୭୭ ।
ଅର୍ଜୁନ ବୋଇଲା ଗୋସାଇଂ ଯେ ନୋହଇଟି ପରସ୍ତାବ
ପ୍ରାଣତ୍ୟାଗ ହୋଇବ ଯେ ନୋହୋଇ ଯେ ଠାବ । ୭୮ ।
ତୁମ୍ଭେ ଯେ କାମ୍ୟକଲ କାରଣ ନମନ୍ତୁ
ପରକାର୍ଯ୍ୟ ତୁମ୍ଭେ ଅନମିତେ ପାଇବ କଂସେ ମୃତ୍ୟୁ । ୭୯ ।
କୁଭୂମି କୁତୀର୍ଥ ଯେ ନୋହୋଇ ସୁତୀର୍ଥ
ଯେବେମାତ୍ର ଅଛୁ ଯେତେ ନନ୍ଦଘୋଷ ରଥ । ୮୦ ।
ଯେ ରଥେ ସାରଥି ହୋଇଥିବେ ବାସୁଦେବ
କୁରୁକ୍ଷେତ୍ର ମଣ୍ଡଳେ ମହାଭାରଥ ଯୁଦ୍ଧ ଯେ ହୋଇବ । ୮୧ ।
ସେ ଭୂମିରେ ପଡବ ତୁମ୍ଭେ ଛଧେଯ୍ୟ କଇଛା
ଯେଠାରେ ପଡବାକୁ ତୁମ୍ଭେ କଲ ମନବାଞ୍ଛା । ୮୨ ।
କୁରୁକ୍ଷେତ୍ର ଭୂମିରେ ଥିବେ ଲକ୍ଷେକ ନରେନ୍ଦ୍ର
କୁରୁପାଣ୍ଡବ ଯୁଦ୍ଧ ହୋଇବ ତହିଂମଧ୍ୟ । ୮୩ ।
ନନ୍ଦଘୋଷ ରଥେ ଥିବେ ପାଥ ଗୋବନ୍ଦ
ତୁମ୍ଭେ ତହିଂ ମୃତ୍ୟୁ ଲଭିଲେ ପାଇବ ପରମ ପଦ । ୮୪ ।
ଅକାରଣ ସ୍ଥାନେକ କାରଣ ହୋଇ ମଲେ
ସୁପୁରୁଷେ ନାଶ ଯାନ୍ତି ସୁସ୍ଥାନ ପାଇଲେ । ୮୫ ।

ଦ୍ରୋଣେ ବୋଇଲେ ବାବୁ ଯେବେ ତୋହୋର ଇଚ୍ଛା
ଅଗ୍ନରେ ଝାସିବାକୁ କ ତୋହୋର ମନବାଞ୍ଛା । ୮୬ ।
ଦ୍ରୋଣଂକର ବଚନ ଶୁଣିଣ ସବ୍ୟସାଚୀ
କୋପେଣ ପାର୍ଥିବ ଧନୁ ନାରାଚ ଆମନ୍ତ୍ରି । ୮୭ ।
ନବ୍ରାଘ ବାଣେକ ଯେ ପେଷିଲ୍ଲ ଧନୁର୍ଜୟେ
କାଳସର୍ପ ପ୍ରାୟେକ ଭେଦଲ୍ଲ ଦ୍ରୋଣଂକର କାୟେ । ୮୮ ।
ରୋଧିର ବଲେପନ ଦ୍ରୋଣଂକର ଅଙ୍ଗ
ଯେସନେକେ ଶଶ୍ୱରେ ବକାଶଇ ପାଟ ଯେ ଦେବାଙ୍ଗ । ୮୯ ।
ଦ୍ରୋଣଂକର ଅପଚୟେ ସାନନ୍ଦ ଫାଲଗୁନ
ହରଷେ ଅର୍ଜୁନ କଲ୍ଲ ଦେବଦତ୍ତ ଶଙ୍ଖଧ୍ୱନି । ୯୦ ।
ଦେବଦତ୍ତ ଶଙ୍ଖର ଯେ ଘୋର ଗହଗହ ନାଦେ
ନଚେଷ୍ଟ ହୋଇ ଦ୍ରୋଣ ପଡ଼ିଲେ ନଶବଦେ । ୯୧ ।
ଦ୍ରୋଣଂକର ଅଚେତେ ପାର୍ଥିବ ରଥ ବାହ୍ୱ
ଦେଖିଲେ ଦ୍ରୋଣଂକର ସନ୍ଧ୍ୟେ କେହି ନାହିଂ । ୯୨ ।
ଆଠ ଭିତରେ ସେ ପଶିଲ୍ଲ ସବ୍ୟସାଚୀ
ପାଞ୍ଚ ସହସ୍ର ଯୋଦ୍ଧା ଯେନ ମାନଗୋବନ୍ଦ ରହିଅଛି । ୯୩ ।
ମୋହଗଲ୍ଲ ଯୋଦ୍ଧାମାନେ ଉଠିଲେ ଚେତନା ପାଇ ହାଦେ
ଯେତେବେଳେ ଦେବଦତ୍ତ ଶଙ୍ଖ ଶୁଭିଲାକ ବାଦ୍ୟନାଦେ । ୯୪ ।
ଶୁଣ ହୋ ଚଇତନ ଦେବଦତ୍ତ ଶଙ୍ଖର ମହିମାଂ
ସ୍ୱେହେନ୍ନେକ କର ଯେ ସିଜଲ୍ଲ ବେଦବ୍ରହ୍ମା । ୯୫ ।

---

୯୪ । ୨ "ଯେତେବେଳେ ଦେବଦତ୍ତ ଶଙ୍ଖ ଶୁଭିଲାକ ବାଦ୍ୟନାଦେ"
ପରେ 'ଗ ଙ୍ଗ' ପୋଥିରେ ଭିନ୍ନପାଠ:—
ଯେତେବେଳେ ଦେବଦତ୍ତ ଶଙ୍ଖ ଶୁଭିଲ ବାଦ୍ୟମାନେ
ଉତ୍ତର କୁମର ପଶ୍ଚରଇ ବୋ ଦେବ ଅର୍ଜୁନେ ।
ସେ ଶଙ୍ଖର ମହିମାଂ ଦେବ ଅଟଇଂ ଅଗୋଚର
ଶବଦ ଶୁଭିଲା ଛନ୍ଦୀମାନେ ଲୋଟନ୍ତି ଭୂମିର ।

ଯେ ଶଙ୍ଖର ଶବଦ ଶୁଣିଣ ଛତ୍ରୀମାନେ ହେଉଛନ୍ତି ମୋହ
ମୋହଗଲା ଯୋଦ୍ଧାଯେ ବାହୁଡ଼ି ପାଆନ୍ତି ଦେହ । ୯୬ ।
ଯେସନେକ ବାଦେ ଯୋଦ୍ଧାଯେ ପାଆନ୍ତି ଶ୍ରମ
ମୋହଗଲା ଯୋଦ୍ଧାଯେ ପାଆନ୍ତି ଚେତନ । ୯୭ ।
ଡାଇବେ ଘାରେ ଯେ ମରନ୍ତି ବା ସମରେ ମୋହଯାଇ
ସମରେ ଛୁଦ୍ର ପାଇଲେ ପୁଣ ଉଠନ୍ତି ଚଆଇଂ । ୯୮ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଅଶ୍ୱତ୍ଥମା ଭୂରିଶ୍ରବା
ମୋହ ଚେଜ ଉଠିଲେ ସମସ୍ତ କଉରବା । ୯୯ ।
ପୁଣି ନାରାଜ ଘେନଣ ଯେ ସମର ଆବୋରି
ବାହାନ୍ତି ନାରାଜ ଯେ ଅବଛିନ୍ନ କରି । ୧୦୦ ।
ଦୁର୍ଯୋଧନ ବୋଇଲା ହୋ ନୃହଂଇ ଯେବେ ଯେବେ
ସମ୍ମୁହ ହୋଇ ସମର କରିବା ସବ୍ବଲୋକେ । ୧୦୧ ।
ଧର୍ମ ଅଧର୍ମ ତୁମ୍ଭେ କହୁଛଂ ନ ବଗୁର
ସମସ୍ତେ ବେଢ଼ି ଯେକମୁଖେ ନାରାଜ ବେଗେ ମାର । ୧୦୨ ।
ରାଜାର ମୁଖରୁ ଯେସନେକ ବାକ୍ୟ ଶୁଣି
ବେଢ଼ିଲେ ଯୋଦ୍ଧାମାନେ ଚନ୍ଦ୍ରକୁ ତାରା ଜାଣି । ୧୦୩ ।
ଧର୍ମକୁ ଛାଡ଼ିକଲେ ପାଇବାନା ବଡ଼ ଦୁଖ
ଯେକା ପାଣ୍ଡବକେ କଲା ସମସ୍ତ ବମୁଖ । ୧୦୪ ।
ଯେସନେକେ ଅରଣ୍ୟ ଭିତରେ କେଶରୀ
ସେହ୍ନ ସାରଙ୍ଗେ ଦଶଇ ଦୁର୍ଗାସ୍ତ ଶ୍ରୀହରି । ୧୦୫ ।
ପାଞ୍ଚ ପରାପୁଧ ରଥୀ ଯେ ନବ ପରାପୁଧ ହାଥୀ
ବତଶ ପରାପୁଧ ଅଶ୍ୱ ଯେ ବେଢ଼ିଲେ ଯେକମୁର୍ତ୍ତି । ୧୦୬ ।
ଯେକା ଯୋଦ୍ଧାକୁ ଯେ ସମସ୍ତେ କରନ୍ତି ଯେକଦୃଷ୍ଟି
ଅର୍ଜୁନକୁ ବେଢ଼ି ଯେ କରନ୍ତି ଶରବୃଷ୍ଟି । ୧୦୭ ।
ଆହୋ ଚଉଚନ କେ ଶତେକ କେ ସହସ୍ରେକ ବାଣ ବନ୍ଧ
କେ ଅଛବ୍ରତେକ କେ ଲକ୍ଷେବାଣ ସନ୍ଧ । ୧୦୮ ।
ଆକାଶ ଅନ୍ଧାର ଦଶଇ ଉଲୁକାପାତମହୀ
ସାଧୁ ଅର୍ଜୁନ ହୋ ତୋହୋରେ ଯେହ୍ନା ହୋଯେ ସହି । ୧୦୯ ।

ତୁଷାର ବୃଷ୍ଟି ଜାଣି ଶରଦ ମେଘ ଗରଜନେ
ପବନ୍ତୁଂ ବେଗେ ଶର ବନ୍ଧନ୍ତି ଯୋଦ୍ଧାମାନେ । ୧୧୦ ।
ଊର୍ଦ୍ଧ୍ୱମୁଖେ ଗାଣ୍ଡିବ ଧରି ଅର୍ଜୁନ ମହାବଳୀ
ଶହସ୍ରକୁ ଶହସ୍ର ସ୍ୱେ କରଇ ପଡଛାଳ । ୧୧୧ ।
ଅର୍ଜୁନ ନ ଦିଶଇ ଉତ୍ତର କୁମରକୁ
ଶରବୃଷ୍ଟିରେ ଉତ୍ତର ନ ଦିଶଇ ଅର୍ଜୁନକୁ । ୧୧୨ ।
ଶର ବନ୍ଧ ଊର୍ଦ୍ଧ୍ୱେ ଡାକ ଦିଅଇ ଧନୁର୍ଦ୍ଧରେ
ରହିଥାଅ ଉତ୍ତର କୁ ହୋଇଣ ନଭର୍ସ୍ୱେ । ୧୧୩ ।
ଉତ୍ତର ଡାକ ଦିଅଇ ରଥଦଣ୍ଡେ ଥାଇ
ଧନୁର୍ଘୋଷ ନ ଶୁଭଇ ଅର୍ଜୁନ ଅବା ରଥେ ନାହିଂ । ୧୧୪ ।
ସ୍ୱର୍ଗମର୍ତ୍ତ୍ୟ ପାତାଳ କମ୍ପଇ ଯେବଣ ଶଙ୍ଖନାଦ
ଉତ୍ତର କୁମାରକୁ ନ ଶୁଭଇ ଶଙ୍ଖର ଶବଦ । ୧୧୫ ।
ଉତ୍ତର ବିଚାରିଲା ଅବା ପଳାଇଲା ଅର୍ଜୁନ
ଅର୍ଜୁନ ବିଚାରଇ ରଥେ ନାହିଂ ଅବା ବିରାଟ ନନ୍ଦନ । ୧୧୬ ।
ଅର୍ଜୁନର ବାଣ ଯେ ଯୋଦ୍ଧାଂକୁ ଅଗୋଚର
ସେ ସନେକ ଅଗୋଚର ହୋଉଅଛି ସମର । ୧୧୭ ।
କକଡା ବୃଷ୍ଟି ଜାଣି ସେ ନାରାଚମାନ ପଡି
ଉତ୍ତର କୁମାରକୁ ନ ଦିଶଇ ଅଶ୍ୱଗୁଡି । ୧୧୮ ।
ଉତ୍ତର ବିଚାରଇ ଅଶ୍ୱେ ମୋହୋର ନାହାନ୍ତି ଅବା ରଥେ
ବିରାଟର ନନ୍ଦନ ସେ ବିଚାରଇ ହାତେ । ୧୧୯ ।
ଉତ୍ତର ହାଥ ପଡିଲା ଅଶ୍ୱଂକ ଉପରେ
ମହାତେଜ ଅଶ୍ୱ ସେ ଉଡିଲେ ଗଗନରେ । ୧୨୦ ।
ସମର ଭୂମି ଗୁଡି ଲଗିଲେ ଗଗନେ
ଉତ୍ତର କୁମାରକୁ ଦେଖିଲେ ପଣ୍ଡୁର ନନ୍ଦନେ । ୧୨୧ ।

---

୧୧୭।୧ ଅର୍ଜୁନର ଯୋଦ୍ଧାପଣ ଯେ ଦେବଂକୁ ଅଗୋଚର ।—କ. ୧, ୨

୧୧୭।୨ ଅତନ୍ତୁଂ ଦୁସ୍ତର ସେ ହୋଇଲା ସମର ।—ଝ

ଅର୍ଜୁନ ବୋଇଲେ ଉତ୍ତର ତୁ ମନ୍ଦବୁଦ୍ଧ କଲୁ
ସମର ତେଜ ରଥ କାଂକେ ଗଗନ ମଣ୍ଡଳେ ଆଣିଲୁ । ୧୨୨ ।
ଉତ୍ତର କୁମରକୁ ଅର୍ଜୁନ କୋପେଣ ବୋଇଲେ
ସମରେ ଅଧର୍ମ ହୋଇବଟି ଶତ୍ରୁରେ ପିଠିଦିଲେ । ୧୨୩ ।
ଉତ୍ତର ବୋଇଲା ସମର ତୋର ମୋତେ ହୋଇଲା ଅଗୋଚର
ଗୁଣଘୋଷ ଶଙ୍ଖନାଦ ନ ଶୁଭିଲା ତୋହୋର । ୧୨୪ ।
ଅଶ୍ୱ ସବୁତେ ଦେବ ନୁଆରଲ ଠାବକର
ବର୍ଣ୍ଣନ୍ତେ ଅଶ୍ୱେ ହୋଇଲେ ଗଗନଗୃଷି । ୧୨୫ ।
ଅର୍ଜୁନଙ୍କୁ ଉତ୍ତର ହୋଇଣ ପରଣାମି
ବୋଇଲା ନଅନ୍ତୁ ଗୋଧନ ପଳ ସମର ନକର ଦେବସ୍ୱାମୀ । ୧୨୬ ।
ଅବଶ୍ୟ ଯୁଦ୍ଧ ରହ କରବୁ ଯେବେ ପାର୍ଥ
ମୁହିଂ କ୍ଷଣେହେଂ ବଶ୍ରାମି ନୁଆରବ ତୋ ନନ୍ଦଘୋଷ ରଥ । ୧୨୭ ।
ମୋହୋର ଶରୀରକୁ ତ ଶରଘାତ ନାହିଂ
ଆମ୍ଭ ବସର୍ଜିବ ମୁହିଂ ଶରବୃଷ୍ଟି ଗୃହିଂ । ୧୨୮ ।
ଅର୍ଜୁନ ବୋଇଲା ଉତ୍ତରକୁ ରଥରେ ବସିଥିବୁ
ତହୁଂ ତୋତେ ପ୍ରମାଦରେ କଛୁ ନାହିଂ ବାବୁ । ୧୨୯ ।
ରଥ ତେଜ୍ୟାକଲେ ବାବୁ ତୋହୋର ହୋଇବ ମରଣ
ଉତ୍ତର ବୋଇଲା ତୋହୋର ପୋଡୁ ପୋଡୁ ରଣ । ୧୩୦ ।
ଅର୍ଜୁନ ବୋଇଲା ଦ୍ୱାଦଶ ବରଷ ସମର ମୋର ନାହିଂ
ସମସ୍ତ ଶସ୍ତ୍ରମାନ ବେଳେ ବେଳେ ବନ୍ଦଇ କନା ମୁହିଂ । ୧୩୧ ।
ତୁ କମ୍ପେ ସମର ଦେଖି ହୋଉଅଛୁ ବକଳ
ମୁହିଂ ପୂ ସମର ହାଦେ ମଣଇ କୁତହଳ । ୧୩୨ ।
ମୋହୋର କୁତୂହଳ ସମର ସରବା ପରଯନ୍ତେ
ଲକ୍ଷମାନ ସାହାହୋଇ ବସିଥାଅ ତୁ ପୂ ମୋହୋର ରଥେ । ୧୩୩ ।

---

୧୩୦।୨ ଉତ୍ତର ବୋଇଲା ମୁହିଂ ହୋ ତୋହୋରେ ଶରଣ ।—
ଟ, ଦ, ଜ, ଝ

କଉରବେ ସଇନ ଆମ୍ଭେ ଜିଣିମା ଯେଉଁକ୍ଷଣି
ଗୋଧନ ପଲକୁ ମହାବେଗେ ଯିବା ଘେନି ପୁଣି । ୧୩୫ ।
ମୁର୍ଚ୍ଛା ଜାଣିଲ ତୁ ନସଚ ହୋଇଲୁ ବିରାଟି
ରଥୁ ଡେଇଁ ପଡିଲେ ହସଇବୁ ତୋହୋର କାଯ୍ଯ୍ୟଗୋଟି । ୧୩୬ ।
ଏମନ୍ତେ ବୋଲି ପାଟଡୋରେ ବନ୍ଧନ କଲା ରଥେ
ଖଡିକାରେ ରଥ ଯେ ବାନ୍ଧିଲା ସାର ପାଥେ । ୧୩୬ ।
ଗୋଳରେ ସଇନମାନେ ନୁଆରିଲେ ଠାବକରି
ଆପଣେ ଆପଣେ ହୋଇଛନ୍ତି ମରାମରି । ୧୩୭ ।
ଶ୍ରୀକରେ ଗାଣ୍ଡିବ ଧନୁ ଧରିଣ ବିକଟେ
ନନ୍ଦିଘୋଷ ରଥ ନେଇ ଟେକିଲା ପ୍ରକଟେ । ୧୩୮ ।
କଉରବେ ଆଶ୍ରିଜ ଯେ ହୋଇଲେ ତାହା ଦେଖି
ଥୋକାଏ ରଥୀ ପଳାଇଲେ ସମର ଉପେକ୍ଷି । ୧୩୯ ।
ଦୁଇପହ ସମର ଯେ ତିନ ପ୍ରହର ଆସି ବେଳ
ଶ୍ରମେ ଅଶ୍ୱ ଗଜ ସଇନ ସବୁ ହୋଇଲେ ନିଚଳ । ୧୪୦ ।
କ୍ଷୁଧା ତୃଷାଏ ଅଶ୍ୱ ଯେ ନୁଆରନ୍ତି ଚଳ
ଦେଖିଣ ବିସ୍ମରଇ ସେ ଦୁଷ୍ଟ ବନମାଳୀ । ୧୪୧ ।
ମେଘ ଶବ୍ଦରେ ଯେ ବନ୍ଧିଲା କରୀଟୀ
ଅଦଭୁତେ ମେଘରୁ ଯେ ହୋଇଲା ଜଳବୃଷ୍ଟି । ୧୪୨ ।
ସମର ଭୂମିଯାକ ହୋଇଲାକ ଜଳ
ପିବନ୍ତି ଗଜ ଅଶ୍ୱେ ବହୁତ ପଡିଲା ଚହଳ । ୧୪୩ ।
ଜଳ ପାଇଣ ସଇନମାନେ ହୋଇଲେ ହରଷ
ସାଧୁ ସାଧୁ ଅର୍ଜୁନ ବୋଲି ଶୁଭିଲା ଆକାଶ । ୧୪୪ ।
ଶୁଣ ହୋ ଚଇତନ ଯେବେ ଅର୍ଜୁନର ମହିମା
କ୍ଷତ୍ରୀବର ଯୋହାଡ ସେ ଜଗୁଜିତା ମହାତମା । ୧୪୫ ।
ସମରେ ସମର୍ଥକ ସେ ନୁହଇଁ ବଡ ରାଗୀ
ପର ମନ ଜାଣନ୍ତି ସେ ଅଟନ୍ତି ପରମ ଯୋଗୀ । ୧୪୬ ।
ଆଠଯୋକ ଶୁଭିଲା ସେ ସାଧୁ ସାଧୁ ଧ୍ୱନି
ସବୁର ଆଦ୍ୟ ଘେନ ତୁ ହୋ ବ୍ରତ ଫାଲଗୁନି । ୧୪୭ ।

ସମରେ ଧନ୍ୟ ଧନ୍ୟ କରନ୍ତି ଚୋଷମନ୍ତ
ସମରେ ଶ୍ରୀଗିଲ୍ଲ ସେ ବଚସପାର୍ଥ ନାନ୍ତ । ୧୪୮ ।
ସାଷ୍ଟମ ହୋଇଣ ସେ ଯେ କଉରବେ ସଇନ
ପୁଣି ଅର୍ଜୁନକୁ ବେଢିଲେ କରେ ଶସ୍ତ୍ରମାନ ଘେନ । ୧୪୯ ।
ବର୍ଷନ୍ତି ଅବଛନ୍ନେ ନାରାଚ ବେଗେ ଟାଣି
କକଡା ମାସେ ଯେହ୍ନେ ନିରାଧାର ବରଷଇ ପାଣି । ୧୫୦ ।
ବାଣ ଜ୍ୱାଳାବଳୀ ଆଦିତ୍ୟ ତେଜ ଯେହ୍ନେ ଘୋଟି
ଏକ ଏକ ଯୋଦ୍ଧାକେ ଯେ ନାରାଚ କୋଟି କୋଟି । ୧୫୧ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ଉଲ୍କାପାତମୟେ
ଷୀରୋଦ୍ଧି ମନ୍ଥନ କାଳେ ଯେସନେକ ପ୍ରାୟେ । ୧୫୨ ।
କହନ୍ତେ ଅସମ୍ଭବ ଗୋଧନ ହରଣର କଥା
ଇତକ୍ଷ୍ମା ମହାଭାରଥ ସମର ବ୍ୟବସ୍ଥା । ୧୫୩ ।
ଭୀଷ୍ମ ଦ୍ରୋଣ ଅଶସ୍ତ୍ରମା ଶଲ୍ୟ ବାଲ୍ମିକ
କର୍ଣ୍ଣ ଶକୁନ କୃପ ଭୂରିସବା ଆଦି ଯେତେ ଲୋକ । ୧୫୪ ।
ଏକମୁଖ ହୋଇଣ ଯେ ପଛ କଲେ ଦଣ୍ଡ
ବର୍ଷନ୍ତି ନାରାଚ ଯେ ଘୋଟିଣ ଭୂଅଖଣ୍ଡ । ୧୫୫ ।
ଏକା ରଥୀକି ବେଢିଲେ ସେ ବାଆନ ପଦ୍ମ ଯୋଧୀ
ନବଶି ଜପ୍ରୋଧ ଗୁଣ ଆକ୍ରୋଶି ବାଣ ବନ୍ଧ । ୧୫୬ ।
ଦ୍ରୋଣେ ବୋଇଲେ ଆଜ ନାଶଗଲୁ ଫାଲଗୁନ
ଆଜ ଏଥୁଂ କେମନ୍ତରେ ଯିବୁ ପ୍ରାଣ ଘେନ । ୧୫୭ ।
ଅର୍ଜୁନ ବୋଇଲେ ଗୁରୁ ହେ ବଚନ ତୁମ୍ଭର ସତ୍ୟ
ଆଜ କଉରବେ କେହ୍ବି ନ ପାବନ୍ତି ଜୀବତ । ୧୫୮ ।
ଉଭୟ ପ୍ରତିବାକ୍ୟେ ସମର ମହାଘୋର
ସାଂଗ୍ରାମ ଭୂମିଗୋଟି ଦିଶିଲ୍ଲ ଦିବସେ ଅନ୍ଧକାର । ୧୫୯ ।
କଷ୍ଟୋର ଦେଖି ଭୀଷ୍ମେ ପର୍ବତା ଶସ୍ତ୍ର କଲେ
ବଜ୍ରଶର ପେଷି ତାହା ଅର୍ଜୁନ ନିବାରିଲେ । ୧୬୦ ।
ଦ୍ରୋଣେ ପେଷିଲେ ପନ୍ନଗାଶର ବାଣ
ମହା ମହା ଫଣୀମାନେ ଫେରୁ ଧରି ଯେ ଗର୍ଜନ୍ତି ଆଠେଣ । ୧୬୧ ।

ଉତ୍ତର ବୋଇଲା ସ୍ୱାମୀ ଉତ୍ତଙ୍ଗ ବଳ ଦେଖ
ମହାଭୟ ଲାଗିଲା କଷ୍ଟରୁ ମୋତେ ରଖ । ୧୬୨ ।
ଉତ୍ତର ବଚନେ ସେ ପ୍ରତଗ୍ୟାଂ ମହାରଥୀ
ଖଗବର ନାଗଜ ପେଷିଲା ତତକ୍ଷଣାନ୍ତ । ୧୬୩ ।
ଗରୁଡାଶର ସେ ପେଷିଲେ ଯେତେବେଳେ
ମୂର୍ଚ୍ଛାଗତ ହୋଇ ପଡଗଲେ ନାଗବଳେ । ୧୬୪ ।
ଅଶସ୍ତମା ବିନ୍ଧିଲା ଅନଳ ଶର କାଢି
କାଳାନଳ ବହ୍ନନ ଆସୁଅଛୁ ମାଡ଼ି । ୧୬୫ ।
ମଞ୍ଜେଣ ମେଖଳା ଯେ ଆକାଶେଣ ଶିଖା
ପୃଥିବୀ ବିକାଶିଲା ଅନଳର ରେଖା । ୧୬୬ ।
ଉତ୍ତର ବୋଇଲା ସ୍ୱାମୀ ହୋଇଲା ବଡାଇ ଦୁଲଭ
ଯେବେ ସକଳ ସଂସାର ଦହିଜ ହୋଇବ । ୧୬୭ ।
ଜଳବିମ୍ବ ଶରେକ ଯେ ମାଇଲା କିରୀଟୀ
ଅଗ୍ନିର ଉପରେ ଜଳ ହୋଇଲାକ ବୃଷ୍ଟି । ୧୬୮ ।
କଉରବେ ଯୋଦ୍ଧାଏ ଯେ ପଳାବନ୍ତି ଭଙ୍ଗି
ଯେହ୍ନେକା ପାଣ୍ଡବକେ ଧାମଇ ଗଳଗାଜ । ୧୬୯ ।
ମନ୍ଦର ପର୍ବତ ଯେହ୍ନେ ସିନ୍ଧୁ କଲା ଗୋଳା
ସେହ୍ନି ସରୁପେ ବିଶଇ ହାଦେ ସେ ବାସକର ବଳା । ୧୭୦ ।
ଯେବଣ ଶହସ୍ର ବିନ୍ଧନ୍ତି କଉରବେ
ପ୍ରତିତୁଲ୍ୟ ନାରାଜେ ନାଶଇ ପାର୍ଥିବେ । ୧୭୧ ।
ସମରେ ସନ୍ୟମାନେ ପାଇଲେ ମହାଦୁଖ
ପଳାବନ୍ତି ସମର ତେଜି ହୋଇଣ ବିମୁଖ । ୧୭୨ ।
ତେବେ ଦାନବେ ଯେ ଅଗୋଚର କଥା
ସଂପି କବି କେତେ କରିବ ଲେଖନ ସର୍ବଥା । ୧୭୩ ।
ଯେବଣ ସମର ହୋଇଲା ଗୋଧନ ହରଣେ
ସଂପି କବି ପାରିବ କେ ଲେଖନପଠନେ । ୧୭୪ ।
ସତ୍ୟ ତ୍ରେତୟା ଦାପର କଳ ଯୁଗ ଚାରି
ଚାରି ଯୁଗକୁ ଅସଂଖ୍ୟ ଗୋଧନ ହରଣ ଆର୍ଦ୍ଦୋଳ । ୧୭୫ ।

ସେନ୍ୟ ରଥୀଙ୍କେ ଯେ ପଦ୍ମ ସାଗରକ ଯୋଧୀ
ସେନ୍ୟକମୁଖ ହୋଇ ସମସ୍ତେ ହାଦେ ବନ୍ଧ । ୧୭୬ ।
ଯାକଚ ଚନ୍ଦ୍ର ଯେ ହବାକର କଥା
ସମସ୍ତ ଉଦତ ହୋଇ ରହିଲକ ବୃତ୍ତ ଯଥା । ୧୭୭ ।
ନ ଦେଖିଣ ନ ପଚ୍ଛିଣ କହିତ ନୁଆର
ସୁବୁଦ୍ଧି ସୁଗ୍ୟଂଜନେ ସେହା ଶୁଣିମା ବଚ୍ନର । ୧୭୮ ।
ଦଣ୍ଡଭଗ୍ନ ଦେଖିଣ ଛତ୍ରୀ ସେନାପତ
ପୁଣ ଆବୋରଲେ ଆସି ଅର୍ଜୁନର କନ୍ତ । ୧୭୯ ।
ତପନ ଶର ସୀତାଂଶୁ ଶର ନବତନ ବଜ୍ରମୁନା
ଅମୋଦ୍ଧ ଶର ପଶୁପତ ଆଦ୍ୟାବଳୀ ପଞ୍ଚମୁନା । ୧୮୦ ।
ଅଧାଚନ୍ଦ୍ର ବାଣ ବାବଲ ବଜ୍ରସୂଚୀ
ବନ୍ଧନ୍ତି ନାରାଜ ଯେ କୋଣରୁ ବାଛୁ ବାଛୁ । ୧୮୧ ।
ତମ୍ବୁର ମୁଦୁଗର ଯେ ଅନନ୍ତ ଶକତ
ବନ୍ଧନ୍ତେ ଆଚ୍ଛେମୟେ ହୋଇଅଛି ପୃଥୀ । ୧୮୨ ।
ଦେଖିଣ ଅସ୍ମୀଭୂତ ହୋଇଲେ ସବ ଛତ୍ରୀ
କ ଜାଣି ଜୁ କୁଜୁଳା ଯୋଜ ନଶାଭାଗେ ଦଶନ୍ତି । ୧୮୩ ।
ମହା ପ୍ରଳୟ ଜାଣି ସମର ହୋଇଲା
ଯୁଦ୍ଧ କରନ୍ତେଣ ଆଦତ୍ୟ ଅସ୍ତଗଲା । ୧୮୪ ।
କଇଚ୍ଛାବନ୍ତ ରାଜା ସେ ଅନନ୍ତ ମହାଛତ୍ରୀ
ସେନ୍ୟ ଭାଙ୍ଗନ୍ତେ ଦଶ ବଂଶ ତରଶ ବେଢନ୍ତି । ୧୮୫ ।
ରଜଣୀ ଅନ୍ଧାରେ ଯେ ହୋଇଲା ମହାରୋଳ
ମୁଖରବ ଶବଦେ ଯେ ଶୁଭଇ ଚହଳ । ୧୮୬ ।

---

୧୮୧।୨ "ବନ୍ଧନ୍ତି ନାରାଜ ଯେ କୋଣରୁ ବାଛୁ ବାଛୁ" ପାଦ ପରେ
'ଛ, ଘ' ପୋଥିରେ ପାଠ:—
ଅନେକ ଶର ସେ ଧରିଣ ନଜ କରେ
ବନ୍ଧନ୍ତି ସେ ନରନ୍ତରେ ଅର୍ଜୁନ ଉପରେ ।

ମହାଘୋର ଉପୁଜିଲା ସମର ମହାରଣେ
କାରଣ ନ ଗଲା କେ ପର କେ ଆପଣେ । ୧୮୭ ।
ଏକ ହାଥରୁ ଆରେକ ଶର ଯେନଇ ଉଛୁଡି
ଶୋଣରୁ ଶହସ୍ରମାନ କେ ବହନ୍ତି ବୈଶକର । ୧୮୮ ।
ଆଗ୍ୟାଂ ହେଲାକ ସହେ ଗାନ୍ଧାରୀର ବଳା
ସମର ଅଭିମୁଖେ ଲଗାଅ ହସ୍ତଭିର ମାଳା । ୧୮୯ ।
ରଥକେ ପଞ୍ଚାଶ ଯେ ଗଜକେ ପଞ୍ଚବଂଶ
ଅଶ୍ୱ ଯୋଦ୍ଧାକେ ପଞ୍ଚଦଶ ଧନୁ ଯୋଦ୍ଧାକେ ଦଶ ଦଶ । ୧୯୦ ।
ପାଦାନ୍ତମାନେ ବାମକରେ ଢାଲ ଯେ ଡାହାଣ କରେ ଗଦା
ଏକାଦଶ ଯୋଜନ ପରଯନ୍ତେ ଦଶିଲାକ ହବସ ପ୍ରାୟେ ପଦା ।୧୯୧।
ଉତ୍ତର ବୋଇଲା ସ୍ୱାମୀ ନ କରନ ଯୁଦ୍ଧ
ରକତସାର୍ଥ ପରାଏ ଦେଖିଲ ରଣମଧ୍ୟ । ୧୯୨ ।
ମରନ୍ତି ଗଜଅଂନ୍ତ ଲୋଟନ୍ତି ଉଠନ୍ତି
ଏକ ପଡନ୍ତେ ସେ ଦଶ ବଂଶ ହୋଟନ୍ତି । ୧୯୩ ।
ଅର୍ଜୁନ ବୋଇଲା ଉତ୍ତର ନ ଜାଣୁ ଏଥିର କଥା
ଏହାଂକର ଯୁଦ୍ଧ ମୋତେ ହୋଇଲା ଅପ୍ରମିତା । ୧୯୪ ।
ପ୍ରାଣେ ନ ମାରଣ ମୁହିଂ କୁତ୍ହୋଳ ଯୁଦ୍ଧ କଲି
ଶିର ଛେଦନ ନ କରଇ ପରକାର୍ଯ୍ୟ ବୋଲି । ୧୯୫ ।
କଞ୍ଚ ଦୋଷକୁ ବହୁତ କୋପେ ଶାସ୍ତ୍ର
କ୍ଷଣକରେ ଅଛୁ ସିନା ମରଣ ପ୍ରାପତ । ୧୯୬ ।
ଉତ୍ତର, ତେର ବରଷ ହୋଇଲାନ ସମର ମୋର ନାହିଂ
ସବଗ ନ ହଞ୍ଜିଇ ଏ କଉରେବଲ ଗୁହିଂ । ୧୯୭ ।
ପ୍ରାଣେହେଂ ଏହାଲ ଆଗ ମୁଂ ମାରବ କେମନ୍ତେ
ସମସ୍ତେହେଂ ବାନ୍ଧେବ ମୋର ଅଟନ୍ତି ଯୁଗତେ । ୧୯୮ ।

---

୧୮୯।୨ ସମର ଅଭିମୁଖେ ଲଗାଅ ହସ୍ତିଭିର ଢାଲା ।—ଗ, ଙ, ଘ, ଝ

ମୁଖ ଗୃହାଗ୍ରେଣ ସବୁନ୍ତ୍ରସ୍ତଂ ଜପ୍ରୋଧ
ଚେଣ୍ଟୁକର ନଖଧାରେ ନ କରଇ ଯୁଦ୍ଧ । ୦୯୯ ।
ପ୍ରତାପୀ ପାଣ୍ଡବ ସେ ସମରେଣ ଯୋଝି
କଉରବେ ସଇନକ ସୈକା ବ୍ୟାପିଲ୍ଲ କଷ୍ଠୀ । ୨୦୦ ।

---

୧୯୯।୨ "ଚେଣ୍ଟୁକର ନଖଧାରେ ନ କରଇ ଯୁଦ୍ଧ" ପାଦାନ୍ତ ପରେ
'ଦ, ଜ' ପୋଥିଦ୍ୱୟରେ ଅଧିକ ପାଠ :—

ଚଉରଙ୍ଗି କ୍ଷେଉଣ ଗୋସିଂହର ବଳ
ଅଢାଇ ପ୍ରହରେ ତାହା ମାଇଲି ସକଳ ।
ଇନ୍ଦ୍ରଂକୁ ଜିଣିଲି ମୁହିଂ ଖାଣ୍ଡେବ ବନ ଦାହ
କରାତ ରୂପେ ଈଶ୍ୱରଂକୁ ଜିଣିଲଇ ମୁହିଂ ।
ଛପନ କୋଟି ଯଦୁବଂଶ ଜିଣିଲଇ ଦ୍ୱାରକା
ହରି ବଳରାମ ଜିଣି ସୁଭଦ୍ରା ଆଣିଲି ଏକା ।
ଦୁଷ୍ଟ ଦାନେବ ମାରି ସନ୍ଥଜନ ପ୍ରତିପାଳି
ଚତୁର୍ଦ୍ଦିଗ ଜିଣି ମୁଇଂ ରାଜସୂୀ ଯଗ୍ୟଂ କଲି
ହନୁମନ୍ତ ସଙ୍ଗେ ମୁହିଂ ହୋଇଲି ବିବାଦୀ
ଶରେ ଶରେ ମୁହିଂ ବାନ୍ଧିଲି ପୟୋଧି ।
ନିବାତକପଚ ମୁହିଂ ମାଇଲଇଂ ସ୍ୱର୍ଗେ
ଅଙ୍ଗାରପର୍ଣ୍ଣଙ୍କ ମୁହିଂ ଜିଣିଲଇଂ ରଣରଙ୍ଗେ ।
ଚିତ୍ରସେନ ଗନ୍ଧର୍ବ ଜିଣି ନେଉଥିଲା ଦୁର୍ଯୋଧନକୁ
ସେ ଚିତ୍ରସେନକୁ ଜିଣି ଆଣିଲି ଏହାଂକୁ ।
ପାଣ୍ଡବାସୁର ଏହାର ଶତେ ଭାଇଂକ ଧରି
ଅଗ୍ନିରେ ଦାହକରି ଖାଉଥିଲା ପୋଡ଼ି ।
ସେ ପାଣ୍ଡବାସୁରକୁ ମାରିଲଇଂ ମୋହୋର ଭୁଜ ବଳେ
ଶତେ ଭାଇଂକ ଜିଣି ଆଇଲି ସେହୁ ଗୋଳେ ।
ଏହେ ଗୁରୁ କୁରୁବଳ ମୋତେ ତରଣ ପ୍ରାଏ ଦିଶି
ଏକା ଶରକେ ସର୍ବ ମାରିବି ବିକାଶି ।
ବାଗେଣ ପାର୍ଥିବ ଯେ ବ୍ରହ୍ମାଣ୍ଡ ଯାକ ଯୋଝି
କଉରୋବ ସଇନଂକ ଏକା ବ୍ୟାପିଲ୍ଲ କଷ୍ଠୀ ।

ଉତ୍ତର ବୋଇଲା ସ୍ୱାମୀ ତୋହୋର ଆକ୍ରଷଣ ଯେମନ୍ତ
ଗ୍ଭଗଲ ପ୍ରାଣ୍ୟେକ ଦିଗନ୍ତ କଉରବେ ସମସ୍ତ । ୨୦୧ ।
କଉରବେ ସୋଦର ତୋର ଅଟନ୍ତି ଯୁଗତେ
ସମରକୁଇଂ ଆରମ୍ଭ ତୁ କଲୁ କସ ଅର୍ଥେ । ୨୦୨ ।
ସ୍ୱାମୀ ଉପ୍ରୋଧ ଯେବେ ବସିବ ଛତ୍ରୀଂକର କାର୍ଯେ
ବାହୁଡଗଲେ ସ୍ୱେଥୁ ଉପୁଜିବ ବହୁତ ଲଜେ । ୨୦୩ ।
ଗୁଣସାଗର ନାଥ କଇଛା ଜଗତେଜେଠୀ
ଅଥବା ଉପ୍ରୋଧ କଲେ ଗୃଲ ଯିବାକ ଲେଉଟି । ୨୦୪ ।
ଉତ୍ତର କୁମାରର ବଚନ ଶୁଣିଣ ଫାଲଗୁନ
ବଗେଣ ପାର୍ଥିବ ଯେ ମୋହନା ଶର ଘେନ । ୨୦୫ ।
ମନବେଘା ନାରାଜ ଯେ ବସାଇଲେ ଧନୁ
ପ୍ରେକା ଘାନ୍ତକେ ଭେଦିଲା ଯୋଦ୍ଧାଂକର ତନୁ । ୨୦୬ ।
ରଥୀକେ ଶତେ ନାରାଜ ଗଜକେ ପଞ୍ଚାଶ
ମୁକୁଟ ଯୋଦ୍ଧାକେ ପଞ୍ଚବିଂଶ ପାଦାନ୍ତକେ ଦଶ ଦଶ । ୨୦୭ ।
ବାରଥେ ଭ୍ରଗେଇ ମନ୍ତ୍ର ମହିମାଂ ଯାହାର ଧନ
ପ୍ରେକ ଘାନ୍ତକେ ଅର୍ଜୁନ ପେଷିଲେ ପ୍ରେତେ ଶର ଘେନ । ୨୦୮ ।
ଅର୍ଜୁନ ଛଆରଇ ଯେ ମନବେଘା ଶର
ଭେଦ ହୋ ନାରାଜ ସବୁଂକର ଅଙ୍ଗାର । ୨୦୯ ।
ଅନର୍ଘାପ ନାରାଜ ଅର୍ଜୁନ କଲାକ ବୃଷ୍ଟି
ସବୁଂକର ଉପରେଣ ନାରାଜ ଯାଇ ଫୁଟି । ୨୧୦ ।
ଶତେ ଶତେ ନାରାଜ ପଡିଲା ରଥ ରଥୀଂକ ଉପରେ
ପଞ୍ଚାଶ ପଞ୍ଚାଶ ନାରାଜ ଭେଦିଲା ଗଜ ଯୋଦ୍ଧାଂକ ଅଙ୍ଗରେ । ୨୧୧ ।
ମୁକୁଟ ଯୋଦ୍ଧାକେ ପଡିଲା ପଞ୍ଚ ବିଂଶ ବାଣ
ଦଶ ଦଶ ନାରାଜ ପଡିଲା ପାଦାନ୍ତକେ ଜାଣ । ୨୧୨ ।
ଅଷ୍ଟାଦଶ ଷଉଣୀ ଉପରେ ପ୍ରେତ୍ତେନେକ ଶର ଫୁଟି
ପ୍ରେକାଘାନ୍ତ ସମସ୍ତେ ପଡିଲେ ମହୀଲେଟି । ୨୧୩ ।
ପ୍ରେକାଦଶ ଯୋଜନ ବଳ ପଡିଲେକ ମାଡି
ଶଘରୁ ଆମ୍ଭମାନେ ଯେ ସବୁରେ ଗଲୁ ଗ୍ଭଡି । ୨୧୪ ।

ଗଜ ଅଶ୍ୱମାନେ ଯେ ପଡ଼ିଲେ ନମସ୍କାଇ
ମୋହଶର ଘାୟେ ପଡ଼ିଲେ ରଣଭୂଇଂ । ୨୧୫ ।
ଅସଂଖ୍ୟ ସମର ଯେ କଲେକ ସବ୍ୟସାଚୀ
ଅସାସ୍ତ୍ରମ କୁରୁଖାରଂକର ଚେତନା ନାହିଂ କଛି । ୨୧୬ ।
ରତ୍ନ ମଣିମୁକୁଟ ଶିରେଣ ଶିରଭୂଷା
ରକତେ କର୍ଦ୍ଦନ ଯେ ହୋଇଲେ ମାଟି ମିଶା । ୨୧୭ ।
ଚନ୍ଦନ କସ୍ତୁରୀ କୁଂକୁମ ପୁଷ୍ପ ଯେ ଦେବାଙ୍ଗ
ରୋଧିରେ ବିଲେପନ ହୋଇଲା ସେ ସବୁଂକର ଅଙ୍ଗ । ୨୧୮ ।
ମହାବାତେ ଯେସନେ ଲୋଟନ୍ତି ବୃକ୍ଷପନ୍ତ
ଅବସ୍ତ୍ରାୟେ କଉରୋବେ ହୋଇଲେ ବିନଶ୍ୟନ୍ତ । ୨୧୯ ।
ଉତ୍ତର କୁମାର ଅର୍ଜୁନ ଚରଣେ ପଣମି
ଦୁସହ ପ୍ରତଗ୍ୟାଂ ତ କଲୁ ଦେବସ୍ୱାମୀ । ୨୨୦ ।
ଦେବେଣ ଅଗୋଚର ତୋହୋର ମହିମାଂ
ତୁମ୍ଭେ ସେ ଖାରବର ଛତ୍ରିଂକର ଉତ୍ତମା । ୨୨୧ ।
ଉତ୍ତରକଇଂ ହକାରଣ ବୋଲଇ ଖାରମଣି
ଉତ୍ତର ବାଳୀ ବଚନ ଅଛୁଟିକ ହେତୁକର ଶୁଣି । ୨୨୨ ।
ପଡ଼ିଛନ୍ତି କଉରୋବେ ହୋଇଣ ରଣେ ଅସାସ୍ତ୍ରମେ
ମୋହୋର ବାଣେ ଯେ ହୋଇଣ ମତିଭ୍ରମେ । ୨୨୩ ।
ଯେତେବେଳେ କଉରୋବେ ହୋଇଛନ୍ତି ଅସାସ୍ତ୍ରମ
ଯାଅ ଯା ଉତ୍ତର ହୋ କର ତୁ ଉଚିତକର୍ମ । ୨୨୪ ।
ବାବୁ ରଥରୁ ଓହ୍ଲାଇ ପଶ ଯା ସମର ଭିତରେ
ଶ୍ରୀଭୂଷା ମୁକୁଟମାନ ଆଣ ହୋ ଉତ୍ତରେ । ୨୨୫ ।
ଉତ୍ତର ବୋଇଲା ମୁଂ କରଇ ବଡ ଭୟେ
ଯେମାନେ ଦିଶୁଛନ୍ତି ମୋତେ ବହ୍ନିର ତେଜ ପ୍ରାୟେ । ୨୨୬ ।
ଉତ୍ତର କୁମାର ହାଥ ଧରିଣ ଫାଲଗୁନ
ରଥରୁ ଓହ୍ଲାଇଲା ହାଥରେ ତୁଳାୟେକ ଘେନ । ୨୨୭ ।
ଅର୍ଜ୍ଜୁନ ଉତ୍ତର ଦୁହେଂ ପଶିଲେକ ଥାଟେ
ପ୍ରଥମେ ଭେଟିଲେ ଯାଇଂ କର୍ଣ୍ଣର ନିକଟେ । ୨୨୮ ।

ଆହୋ ଉତ୍ତର ଆମ୍ଭର ସୋଦରଟି ପେଖ ମହାବଳୀ କର୍ଣ୍ଣ
ବନ୍ଦନ ଗୃହ୍ଣଂଣ ନବେଗପଇ ଶାର ଫାଲଗୁନ୍ୟ । ୨୨୯ ।
ମମ ସନ୍ଦୋହ୍ର ହୋଇ କଉରୋବେ ତୋହୋର ମେଳ
ପଡ଼ିଲୁ ଉତ୍ତାନଶାହ୍ମ ହୋଇଣ ତୋହୋର ଭଲ । ୨୩୦ ।
ବଇଜନ୍ତୀ ମାଳା ଥିଲା କର୍ଣ୍ଣର ହାଦେ ହୃଦେ
ଅର୍ଜୁନ ବୋଇଲା ଉତ୍ତର ହୋ ପେହ୍ନା ଘେନ ହାବେ । ୨୩୧ ।
ପେହ୍ନକା ମାଣ ଖ୍ରୀଷ୍ମ ହୋ ନୃହନ୍ତ ମୋହଗତ
ଲୋକତ କର୍ମକଇଂ ସେ ହୋଇଛନ୍ତ ଅଚେତ । ୨୩୨ ।
ଖ୍ରୀଷ୍ମଂକର ସନ୍ନଧେ ଅଛନ୍ତ ଦ୍ରୋଣଗୁରୁ
ପେଖ ଦୁହନ୍ତ ଗୁଡ଼ ଆଣ ଯେତେ ରତ୍ନ ପାରୁ । ୨୩୩ ।
ଯନ୍ତଂ ସେ ଆଗ୍ୟାଂ ହୋ ବିଲା ସବ୍ୟସାଚୀ
ଅମୂଲ୍ୟ ରତ୍ନମାନ ଉତ୍ତର ଘେନଇ ବାଛୁ ବାଛୁ । ୨୩୪ ।
ଦେବାଙ୍ଗ ବସ୍ତ୍ରମାନ ଯେ ଅମୂଲ୍ୟ ରତ୍ନ ନେତ
ଘେନଣ ଉତ୍ତର ସୁଖେ ପୂରାବଇଂ ରଥ । ୨୩୫ ।
କର୍ଣ୍ଣର ମୁକୁଟ ଘେନଣ ଫାଲଗୁନ
ପାଦାନ୍ତ ଗୋଟିକର ଶୀରେ ବାନ୍ଧିଲାକ ଆଣି । ୨୩୬ ।
କର୍ଣ୍ଣର ସନ୍ନଧେ ପଡ଼ିଲା ଅଛି ଶାର ଧୁଶାସନ
ଅର୍ଜୁନ ନବେଗପଇ ଯେ ତାହାର ବଦନ । ୨୩୭ ।
ଆରେ ତୁହ୍ମ ଯେ କେଶ ଧରିଲୁ ମୋହୋର ଦ୍ରୋପଦୀ
ସଭାତଳେ ଆଣି କଲୁ ଯେ ଅମାନ୍ତ । ୨୩୮ ।
ମୁହ୍ନଂ ତୋହୋର ଶୀର ଛେଦନ୍ତ ଆଜ ରଣେ
ପରକାର୍ଯେ ତୋତେ ନ ମାରଇ ଅକାରଣେ । ୨୩୯ ।
ମୁହ୍ନଂ ଅବା ତୋହୋର ଆଜ ବିଦାରନ୍ତ ବକ୍ଷସ୍ଥଳ
ଖ୍ରୀମସେନ ଠାକୁରଂକର ପ୍ରତଗ୍ୟାଂ ହୋଇବ ନଷ୍ଫଳ । ୨୪୦ ।
ଯେଉଂଦିନୁ କେଶରେ ଧରିଲୁ ଧୁଶାସନ
ସେହ୍ନଦିନୁ ଜାଜ୍ଞସେନୀର କେଶ ହୋଇଛି ଅବନ୍ଧନ । ୨୪୧ ।
ତୋହୋର ହୃଦ ଉପାଡ଼ିବେ ଖ୍ରୀମସେନ ଠାକୁରେ
ରୋଧିର ଢାଳିବେ ନେଇଣ ପାଞ୍ଚାଳୀର ଶୀରେ । ୨୪୨ ।

ତେବେ ସେ କେଶ ବନ୍ଧନ କରିବେ ପାଞ୍ଚାଳୀ
ତେର ବରଷ ହୋଇଲା କେଶ ଅଛିତ ମୁକୁଳ । ୨୪୩ ।
ଧୂଣ ସନର ଶ୍ରୀଭୂଷା ମୁକୁଟ ଅଳଂକାର
ନେଇଣ ଆଭରଣ କଲା ସେ ଗୁଣ୍ଡାଳର ଶିର । ୨୪୪ ।
ଗୁଣ୍ଡାଳର ଭୁସିବାଦ୍ୟ ଧୂଣ ସନ ହୃଦରେ ଲମ୍ବାଇ
ହୃଦରେ ଛନଗାର କାଟିଲା ବେଷ ବନ୍ଧ । ୨୪୫ ।
ଅଣସ୍ତ୍ରମାକୁ ରଥୁଂ ଆଣିଲା କୋଳକରି
ଭୂମିରେ ଶୁଆଇଲା ବିବସନ କରି । ୨୪୬ ।
ଦେଖିଲା ଶକୁନି ଯେ ପଡ଼ିଛୁ ଅଚେତେ
ତାହାର କଣ୍ଠରେ ଦୁହେଂ ମିଳଲେ ଭୁରିତେ । ୨୪୭ ।
ଶକୁନିର ବଦନ ଯେ ଗୁହଂଇ ଫାଲଗୁନି
ଶୁଣ ହୋ ଉତ୍ତର ଯେଁଟି ଆମ୍ଭର ମାତୁଳ ଶକୁନି । ୨୪୮ ।
ଜଦୁର ଘରେକ ଯେଁଟି ଭିଆଇଲା କୂଟ କପଟେ
ପୁରେକ ରଞ୍ଚିଲା ଜଜ ସଜଳସ ଗୁଆଘୃତ ଛଣପଟେ । ୨୪୯ ।
ବିଷଲଡୁ ଖୁଆଇଲା ଭୀମସେନ ଠାକୁରଂକୁ
ନାଗେଣୀ ଖାଉ ବୋଲି ପକାଇଦେଲା ଜଳକୁ । ୨୫୦ ।
କପଟପଣା ଯେ ସଞ୍ଚିତ ଯେହ୍ଵାର ବୁଦ୍ଧି
କୂଟ ଉପାୟେ କରି ସେ ଦେନିଲା ଆମ୍ଭର ସମ୍ପୃଧି । ୨୫୧ ।
ଉତ୍ତର ବୋଇଲା ଯେ ଟେକଣ ଦକ୍ଷିଣ ପାଣି
ଦେସି ଆଗ୍ୟାଂ ଦୁବଗ୍ଳର ଗ୍ଲରକୁ ପକାଇବି ହାଣି । ୨୫୨ ।
ଅର୍ଜୁନ ଧଇଲା ଉତ୍ତର କୁମରର ବାହା
ବାବୁ ଉତ୍ତର ରେ ତୁ କୋପ ନ କରନି ଯେହ୍ଵା । ୨୫୩ ।
ବାବୁ ମାନଗୋବିନ୍ଦ ରଜା ଯେହ୍ଵାର ବଇରି
ବଂଶ ନାଶକଲା ଯେହ୍ଵାର ପଥର ଘରେ ଭରି । ୨୫୪ ।
କେତୁଣିସି ମତେ ତାକୁ ନୁଆରିଲା ଜିଣି
କୂଟ ଉପାୟେ କରିଅଛୁ ମନ୍ତ୍ରୀ ଚୂଡ଼ାମଣି । ୨୫୫ ।
ଆମ୍ଭର ତୁଲେ ଯତନେ କରାଇ ବଇରିତା
ଦୁଯୋଧନ ସମ୍ପଦ ହରାଇବା ନିମନ୍ତେ କରାଇ ଅବସ୍ଥା । ୨୫୬ ।

ଆମ୍ଭର ହିଂସାସ ଯେ କରାଇ ଅନେକ ବାରେ
ଆମ୍ଭେ ନାଶ କରିବୁ କଉରବେନ୍ଦ୍ର ସୁମରି ଗତଦୋଷ ରାଗେ । ୨୫୭ ।
ଯେହ୍ନାକଇଂ କୋପ ତୁହ୍ମେ ନ କର ବିରାଟି
ବିହ୍ନରକ୍ତେ ଶକୁନ ରେ ଅଛୁ ଆମ୍ଭର କାର୍ଯ୍ୟ ସେଠି । ୨୫୮ ।
ଅର୍ଜୁନର ବଚନ ଶୁଣି ଉତ୍ତର ପରମ ଶାନ୍ତ
ଶକୁନକ କୋପ ଯେ ଛାଡିଲା ନିଭ୍ରାନ୍ତ । ୨୫୯ ।
ଶକୁନକ କୋଳକରି ଧଇଲାକ ବିରାଟି
ତାହାକୁ ଶୁଆଇଲ ନେଇ ଗର୍ଦ୍ଧଭର ପିଠି । ୨୬୦ ।
ଗଳାରେ ଲମ୍ବାଇଲା ତାର ହମାଲୁ ଗୋଟାଯେ
ଅଛବ ବସନମାନ ଆଭରଣ କଲା ତାର କାଯେ । ୨୬୧ ।
ଦୁର୍ଜୟ ବୋଲଣ ଯେ ଦୁର୍ଯୋଧନର ସାନ
ତାହାର କେଶ ଯେ ଧଇଲେକ ଅର୍ଜୁନ । ୨୬୨ ।
ଆରେ ସଭାତଳେ ବସାଇଲୁ ତୁ ଆମ୍ଭନ୍ତ ନେଇ
ଯେବେ ସେ ପ୍ରତଗ୍ୟାଂମାନ ତୋର ସବୁ ଗଲା କାହ୍ନିଂ । ୨୬୩ ।
ସୁମର ରେ ଦୁର୍ଜୟେ ତୋହୋର ପିତାମାତା
ସୁମର ଦୁର୍ଜୟ ରେ ତୋ ଇଷ୍ଟଦେବତା । ୨୬୪ ।
ଶ୍ରୀକୃଷ୍ଣାର ନନ୍ଦନ ଯେ କୋପିତ ମହାରଥା
ଛେଦିବ ଶିରକମଳ ରହୁ ଆଜ କଥା । ୨୬୫ ।
ଉତ୍ତର ବଚନେ ଯେ ବୋଲଇ ସବ୍ୟସାଚୀ
ଭୀମସେନ ଠାକୁରଂକ ତହ୍ନିଂ ପାଇବାନା ବାଚ । ୨୬୬ ।
ଶତେଭାଇ ମାରିବେ ବୋଲି କରିଛନ୍ତି ପ୍ରତଗ୍ୟାଂ
ମୁହ୍ନିଂ କେସନେକେ ତାହା କରିବଇଂ ଅବଗ୍ୟାଂ । ୨୬୭ ।
ଯେହ୍ନେବୋଲି ଛାଡିଲା ସେ ଦୁର୍ଜୟର କେଶ
ସମଯେକ ବ୍ରହ୍ମଥାଅ ରେ ଯେତେଦିନ ଥିବ ଆଶା । ୨୬୮ ।
ଦୁର୍ଯୋଧନର ଶତେଭ୍ରାଥ ଶତେକ ଯେ ରଥୀ
କେଶଧରି କୁମାର ଭୂମିରେ ଶୁଆଇଲା ସବୁନ୍ତି । ୨୬୯ ।
ରାଗେ ଉତ୍ତର କୁମାର ଖଡଗେ କରଇ ପ୍ରହାର
ଈଶାନ ଖମ୍ଭମାନ ଛେଦିଲା ସବୁଂକର ରଥର । ୨୭୦ ।

ରଥୀମାନଂକୁ ନେଇଣ କରଇ ପାଦାନ୍ତ
ପାଦାନ୍ତମାନଂକୁ ଯେ କରାଇଲ ନେଇ ରଥୀ । ୨୭୧ ।
ବାହୁକମାନଂକୁ ନେଇ ବସାଇଲ ଅଶ୍ୱ ପିଠି
ଅଶ୍ୱ ଯୋଦ୍ଧାମାନଂକୁ ପକାଇଲ ଭୂମିଲେଟି । ୨୭୨ ।
ଯୋଦ୍ଧାଂକର ବେକରେ ଲଗାଇ ତୂରମାନ
ବାଦ୍ୟକାରମାନଂକୁ କଲେ ଯୋଦ୍ଧାର ବଧାନ । ୨୭୩ ।
ଥାଠ ଲେଉଟାନ୍ତେ ତିନ ପ୍ରହର ରାତ୍ରି
ଅର୍ଜୁନ ବଜେକଲ ମାନଗୋବନ୍ଦର କତି । ୨୭୪ ।
ଉତ୍ତର ଦେଖିଲ ଯେ ଦୁର୍ଯୋଧନର ମୁକୁଟଗୋଟି
ଶରଧାରେ ଫେଇଲ ତାହାକୁ ବରଟି । ୨୭୫ ।
ଅର୍ଜୁନ ବୋଇଲ ଶୁଣ ଶୁଣ ମୁକୁଟ ଉତ୍ତର
ଲକ୍ଷ୍ମୀ ବଜେ କରଥାନ୍ତି ସେ ମୁକୁଟ ଉପର । ୨୭୬ ।
କୋଟିଏ ମାଣିକ୍ୟ ଯେ ଅଛଇ ସେଥେ ଲଗି
କୋଟିଏ ପାଦେ ସେଥି ବଜେ କରଇ ସଉଭାଗୀ । ୨୭୭ ।
ସେ ମୁକୁଟ ଭାର ହାତେ ଆନନ ସହଇ
ପନ୍ନଙ୍ଗା ନାରପୂଣ ରୂପେ ସେହା ମାନଗୋବନ୍ଦ ବହଇ । ୨୭୮ ।
ପନ୍ନଙ୍ଗା ବସ୍ତୁ ସେ ଯେ ରଜା ଦୁର୍ଯୋଧନ
ଲକ୍ଷେ ନୃପତି ସେହାର ପାଦେ କରନ୍ତି ବନ୍ଦନ । ୨୭୯ ।
ବତିଶ ଲକ୍ଷଣ ସେ ମାନଚକ୍ରବର୍ତ୍ତୀ
ପଞ୍ଚ କଟକରେ ଅଟଇ ଆଧିପତି । ୨୮୦ ।
ହେତପ୍ରାଯୁଗେ ସେ ଜାତ ହୋଇଲ ରାବଣ
ସେ ମୁକୁଟ ବନ୍ଧାଥିଲ ତାହାର ଶିରେଣ । ୨୮୧ ।
ସେ ମୁକୁଟର ତେଜ ଯେ ସହସ୍ରେ କରଣ
ଦୁର୍ଯୋଧନ ବାନ୍ଧିଲ ସେହା ଦ୍ୱାପର ଯୁଗେଣ । ୨୮୨ ।
ସେ ମୁକୁଟ ତେତିଶ କୋଟି ଦେବତା ନୁଆରଲେ ବାନ୍ଧି
ସେ ମୁକୁଟର ମହମାଂ ଯେ ସେସନେକ ବଧି । ୨୮୩ ।

ଅର୍ଜୁନର ବଚନ ଶୁଣି ସେ ବିରାଟର ସୁତ
ସଧୀରେ ସଧୀରେ କର ଥୋଇଲା ମୁକୁଟ । ୨୮୪ ।
ଅର୍ଜୁନ ବୋଲଇ ମାନଗୋବିନ୍ଦର ମୁଖ ଗୃହ୍ନଂ
କଳିକର୍ମ ତୋତେ ଫଳିଲା ପ୍ରତ୍ୟକ୍ଷଇ । ୨୮୫ ।
ଯେ ଯାହା ଅରଜଇ ଅବଶ୍ୟ ତାହା ଫଳଇ
କଳିର କୃତ କୁକର୍ମ ବୋଲଣ ବୋଲଇ । ୨୮୬ ।
ଆପଣେ ଯାହା ଅର୍ଜି କର୍ମ ବୋଲି ଭୁଞ୍ଜି
ସଞ୍ଚୟେ ନାଶକର ପୋଟ୍ଟୁଳା ତୋହୋର ପାଞ୍ଜି । ୨୮୭ ।
ଆପଣେ ଅରଜା ନାହିଁ ହୋ ଖଣ୍ଡିଲା
ଯେତେକ ଧନ ତୋତେ ଥୋଇଅଛି ବିଧାତା । ୨୮୮ ।
ଅନର୍ଘ ମଣିମୁକୁଟ ଯେ ଦୁର୍ଯୋଧନ ଶିରେ ଥିଲା
ଅଳାୟୁଧ ରାକ୍ଷସର ଶିରେ ତାହା ବାନ୍ଧିଲା । ୨୮୯ ।
ଅଳାୟୁଧର ମୁକୁଟ ବାନ୍ଧିଲା ରାଜାର ଶିରେ
କାଟାରି ଗୋଟିଏ ନେଇ ଲମ୍ବାଇଲା ରାଜାର ଗଳାରେ । ୨୯୦ ।
କୃପ ଆଚାର୍ଯ୍ୟଙ୍କୁ କୋପ କଲାକ ବିରାଟି
ଉତ୍ତର କୁମାର ତାହାଙ୍କୁ କଲା ସାତବେଣୀ । ୨୯୧ ।
ଶଲ୍ୟଙ୍କର କେଶ ଯେ କଲେ ଲଣ୍ଡମୁଣ୍ଡ
ଥୋଡ଼ ଥାଆନ୍ତେ ସେ ଦିଶିଲେ ବିଖଣ୍ଡ । ୨୯୨ ।
ଭୂରିଶ୍ରବାଙ୍କର ଯେ ଚିରିଲେ ଲହେ ଗାଲ
ଶ୍ରବଣ ଛେଦନ କଲେ ଯୋଦ୍ଧାଏ ଯେତେ ଭଲ । ୨୯୩ ।
ମେଳେଚ୍ଛ ଯୋଦ୍ଧାଙ୍କର ଯେ ଛେଦିଲେକ ନାସା
ଜୟଦ୍ରଥର ଓଷ୍ଠ କାଟି ପୂରାଇଲେ ମନାଷା । ୨୯୪ ।
ସୋମଦତ୍ତ ରାଜାର ଯେ ଛେଦିଲେ ଅଙ୍ଗୁଷ୍ଠ
ବିକର୍ଣ୍ଣର ଛେଦିଲେ ବାମ ତଳପାଗୋଟି । ୨୯୫ ।

---

୨୮୪।୨ ସଧୀର ପ୍ରାସ୍ତେ କର ଥୋଇଲା ମୁକୁଟ ।—ଫ, କ, ଣ, ଝ

୨୮୮।୧ ଆପିତ ଆପ୍ୟ ଯେ ନାହିଁ ନା ଖଣ୍ଡିଲା ।—କ, ଣ

ଲଢେ ଅଳମ୍ବୁଷାର ଖୋଳଲେ କାମଚକ୍ଷୁ
ରେ ରେ କଉରବେ କ୍ଷୁମନ୍ତ ଆଜ କେନ୍ତୁ ରଖୁ । ୨୯୬ ।
ରାଜା ଭ୍ରାଥମାନଂକର ଛେଦିଲେ ଅଙ୍ଗୁଳି
କାହାନ୍ତ ଚରଣ ଯେ ରୁଧିର ଦିଲେ ବଳୀ । ୨୯୭ ।
ବାଲ୍ହିକ ରାଜାର ଯେ ଚିରଲେ ବକ୍ଷସ୍ଥଳ
ଧୁଶାସନର ହୃଦେ ଲମ୍ବାଇଲେ ମନ୍ଦାର ମାଳ । ୨୯୮ ।
ଦୁଇ ଦୁଇ ଯୋଦ୍ଧାନ୍ତ କଲେକ ବନ୍ଧନ
କାହାର ହୃଦେ ଲଦିଲେ ନେଇ ପାଷାଣ ଖଣ୍ଡମାନ । ୨୯୯ ।
ଶୁଣ ମହାରାଜା ଯେହ୍ନେହା ଅଗସ୍ତି କହିଲେ
ଅତଅନ୍ତ ରଗେ ଅର୍ଜୁନ ଯେମନ୍ତ କୃତ କଲେ । ୩୦୦ ।
ପୁଣ ସେ ମିଳଲେ ଜଦ୍ୟରଥର ପାଶରେ
ଶୃଣ୍ଡାଳ ଗୋଡ଼ ବାନ୍ଧିଲେ ଜଦ୍ୟରଥର ଶିରେ । ୩୦୧ ।
ଉତ୍ତର ବୋଇଲା ସ୍ବାମୀ ତୋହୋର ହିବହ୍ର ନାମଗୋଟି
ବିଭତ୍ସ କର୍ମ ତୋର ଦେଖିଲି ମମଦୃଷ୍ଟି । ୩୦୨ ।
ଅରୁଣ ପ୍ରକାଶକୁ ଅଳ୍ପ ଅଛୁ ରଜ୍ଜଣୀ
ଅଡ଼ାଅ ଗୋଧନ ପଲ ଉତ୍ତର ଗୃଲ ଯିବା ଘେନି । ୩୦୩ ।
ଗୋପାଳମାନେ ସେ ଯେ ବନ୍ଧନେ ପଡ଼ିଥିଲେ
ଅନେକ ରତ୍ନ ସେ ଯେ କାଢ଼ିଣ ଘେନଗଲେ । ୩୦୪ ।
ଛାଡ଼ ତୋଡ଼ର ଯେ କଳସ୍ବା କଂକଣ
କୁରୁଥାଠେ ପଣିଣ ଗୋପାଳେ ଲୁଟିଲେ ତତକ୍ଷଣ । ୩୦୫ ।
ଗୃମର ବସ୍ତ୍ରମାନ ଘେନଲେ ରଥଂକରୁ
ହରଷେ ଗୋପାଳମାନେ ଯେ ଅଡ଼ାକନ୍ତ ଗୋରୁ । ୩୦୬ ।
ଅନେକ ରତ୍ନମାନ ଗୋପାଳେ ଶରୀରେ ଆଭରଣ
ଧାମଇ ସହଦେବ ଯେ ଲଉଡ଼ି କରେଣ ଧରଣ । ୩୦୭ ।
ଅଡ଼ାକନ୍ତ ଗୋଧନ ପଲ ସେ ବଡ଼ାଇ ହରଷେ
ଗୋଧନ ଘେନିଣ ଯାଇଂ ପ୍ରବେଶ ପଞ୍ଚୁଟକାଶେ । ୩୦୮ ।

---

୨୯୮।୨ ଦୁର୍ଦ୍ଦକ୍ଷର ବୁକୁରେ ଲମ୍ବାଇଲେ ମନ୍ଦାର ମାଳ ।—ପ, ଥ, ଡ, ଧ

ଅଶୀ ସହସ୍ର ଗୋପାଳେ ଯେ ଗୋଧନ ବେଢ଼କର
ସହଦେବଙ୍କୁ ବେଢ଼ି ସେ ରହିଲେ ଆବୋର । ୩୦୯ ।
ରଥ କାଢ଼ଇ ତହୁଂ ସେ ବିରାଟର କାଳ
ବିଜୟେ ସବ୍ୟସାଚୀ ଶମୀବୃକ୍ଷ ତଳ । ୩୧୦ ।

। ୭୦୭୮ ।

———

## ବିରାଟ କଳିଙ୍ଗ ରାଜା ଯୁଦ୍ଧୋଗମନ ଓ ଭୀମ

## କର୍ତ୍ତୃକ ବୀରବାହୁର ପତନ

ବଇବସ୍ୱତ ମନୁ ଅଗସ୍ତିଂକ କଲେ ପୁଚ୍ଛା
ତବ ପୁଣ୍ୟେ ବିଷ୍ଣୁ ପୁରାଣ ମୁଂ ଶୁଣିବେ କଲି ଇଚ୍ଛା । ୧ ।
କଳପି ରାଜ୍ୟକୁ ଯେ ଗଲେକ ବିରାଟ
ସେ ବେନି ରାଜାଂକର କେଉଁଠାରେ ହୋଇଲା ଭେଟ । ୨ ।
ଅନମିତ ପର୍ବତେ ବିଜୟେ ବୀରବାହୁ
ବିରାଟରେ ସଇନ ପ୍ରବେଶ ହୋଇଲେ ତହୁଂ । ୩ ।
କାରଚା ପାଇଣ ସେ ବୀରବାହୁ ନୃପତି
ଜାବଡ଼େ ଚଳାଇଲା ସେ ସମସ୍ତ ହାଥୀ ରଥୀ । ୪ ।
ଯତୁଂ ଯବନ ବଳ ଉଠିଲେ ଗଳଗାଜ
ମଚ୍ଛ ରାଜାର ସଇନ ପଳାଇଲେ ସର୍ବ ଭାଜି । ୫ ।
ବୀରବାହୁର ସଇନ ତହୁଂ କଲେ ଗୋଳ
ଗୋଡ଼ାଇ ପିଟିଲେ ସେ ବିରାଟର ସନ୍ୟବଳ । ୬ ।
ଅନେକ ସଇନ ଯେ ପଡ଼ନ୍ତେଣ ଦୃଷ୍ଟି
କୋନ୍ତଂକର ମୁଖ ଚୃହୁଂ ବୋଲଇ ବିରାଟି । ୭ ।

କୋପେ ସମଦଣ୍ଡ ଭାଜନ୍ତ ହୋଇଲ ନରମାଖି
ଶରୀର ନ ରହଇ ସନ୍ୟଂକର ହତ ଦେଖି । ୮ ।
ପଳାବନ୍ତି ସଇନ ପସ୍ୟେଣ୍ଡ ଯେ କରି
ଭାଞ୍ଜି ପଳାବନ୍ତି ରଥ ଗଜ ଅଶ୍ୱ, ଘୁଡ । ୯ ।
ବିରାଟ କୋପେ ବଲ୍ଲଭ ଗନ୍ଧିକାର ବାଜାପାଳ
ପାଞ୍ଚହେଂ ରହିଛନ୍ତି ଅନଳ ବର୍ଟର ତଳ । ୧୦ ।
ସନ୍ୟ ପଳାଇଲେ ଛିନ୍ନ ଯେ ବିଛନ୍ନେ
ସାରବାହୁ ଥାଠ ଗୋଡାବନ୍ତି କୋପମନେ । ୧୧ ।
ବିରାଟ କୋପକଲା ସଇନ ହତ ଦେଖି
ବିଶ୍ୱାସେ ଆଣିଲ ମୋତେ କୋପେ ନୁଆରଲ ରଖି । ୧୨ ।
ଆବର ଥାଇଣ ମୁଂ କସ କରିବଇଂ କୋପେ
ଯେହ୍ନିକ୍ଷଣି ନାଶ ଯିବାଟି ନ ଯାଇ ରଖନ୍ତେ । ୧୩ ।
ରଥ ଚେଜ୍ୟାକରି ସେ ମଚ୍ଛଦେଶ ସାଇଂ
ପଳାଇ ଲେଉଇ ରାଜା ମନ୍ତ୍ରୀ କୁଳେ ନାହିଂ । ୧୪ ।
କଷ୍ଟୋର ଦେଖିଣ ସେ ଘୁଞ୍ଚିଲେ ଯୁଦ୍ଧେଷ୍ଟି
ନକୁଳ ଘେନକରି ବାହୁଡିଲେ ନ ଗୃହିଂଲେ ଲେଉଟି । ୧୫ ।
ନକୁଳ ଯୁଦ୍ଧେଷ୍ଟି ଯେ ଯାଚକେଶ୍ୱର ମନ୍ତ୍ରୀ
ଯେ ତିନହେଂ ଘୁଞ୍ଚି ବନ ଗହନେ ପଶନ୍ତି । ୧୬ ।
ବିରାଟ ପଳାବନ୍ତେ ଦେଖିଲା ସୂପକାର
ରହ ରହ ବିରାଟ ହୋ ଦେଖିବା ସମର । ୧୭ ।
ଯେମନ୍ତ ସମୟେ ଯାଇଂ ବେଢିଲେ ସଇନ
ଅନେକ ଦୂରକରି ବେଢିଲେ ଶୁଭଇ ଘୋରଧୂନ । ୧୮ ।
ସମୁଦ୍ର ଜଲ୍ଲୋଳ ପ୍ରାୟେ ବିଶୁଅଛି ଥାଠ
ଦେଖିଣ ଉଚ୍ଚସ୍ୱରେ ଗୋବଇ ବିରାଟ । ୧୯ ।

---

୧୩।୨ ଯେହ୍ନିକ୍ଷଣି ଭିତରେ ଯାଇ ହୋଇବ ଉପଗତେ ।—ତ, ପ, ଧ

୧୩।୨ ଯେହ୍ନିକ୍ଷଣି ଆଠ ବେଢିଲେ ନୁଆରଇ ରଖିତେ ।—ଥ, ଗ, ଡ

ଶବର ବୋଇଲା ମୁଂ ଅଟଇ ବଡ ପାପୀ
କାଞ୍ଚେକ ମଣ୍ଡଳ କମ୍ପା ମୁଂ ନ ଯଲି ଅଦ୍ୟାପି । ୨୦ ।
ଅଥବା ମରଣ ନୋହିଲା ଯେବେ ମୋତେ
ଏହି କଷଣୁଂ ପାର ମୁଂ ହୋଇବି କେମନ୍ତେ । ୨୧ ।
ରାଜ୍ୟଭାର ତେଜ ନୋହିଲା କମ୍ପା ଯୋଗୀ
ଆବର କ ମୋତେ ରାଜ୍ୟଭାର ଭୋଗୀ । ୨୨ ।
ଏହିମାନଂକର ପାପ ଆତ୍ମା ମୁଂ ଜାଣିଲିଇଂ ହାଦେ
ପରରାଜ୍ୟେ ଆଣି ମୋତେ ଶକ୍ତିଲେ ପରମାଦେ । ୨୩ ।
ମୋତେ ଏହି ସମରେ ଯେ ପକାଇଲେ ପେଲି
ଏହିମାନଂକୁ ତ ନୋହିବ ମାରନ୍ତା ବ୍ରାହ୍ମଣ ଜନ ବୋଲି । ୨୪ ।
ସଞ୍ଚଏହି ରାଜ୍ୟକୁ ମୋର କଳାଇଲେ ଆଶ
ସୁହୃଦପଣେ ପଡି ମୁଂ ହୋଇଲି ହିଂସାସ । ୨୫ ।
ବିରାଟ ବୋଇଲା ମୋତେ ଗୁରୁ କନା ଗୋସାଇଂ
ଏହି ଗହନ ଥାଠ ଦେଖି ମୋହୋର ବୁଦ୍ଧି ନାହିଂ । ୨୬ ।
ଏହିଥୁ ବେଳେ ମୋତେ ସେନସାଥେ ଉଦ୍ଧାର
ମହାଦେଶେ ମଚ୍ଛଦେଶେ ତୁମ୍ଭେ ହୁଅସି ଅଧିକାରୀ । ୨୭ ।
ଶୁଣ ହୋ ବିରାଟ ବଦଯନ୍ତି ବଲ୍ଲଭ
ଛତ୍ରୀବୃତ୍ତି କଥା ହାଦେ ବଡାଇ ଦୁଲଭ । ୨୮ ।
ସମର ଆରମ୍ଭ ଯେ କରିଅଛଇ ବୀରବାହୁ
ଏହିମନ୍ତ ବେଳେ ଘୁଞ୍ଚିଲେ ବ୍ରତବା ଆମ୍ଭେ କାହୁଂ । ୨୯ ।
ତୋତେ ମୋତେ ସର୍ବେ ଯେ ଦେଖଛନ୍ତି ବେଢ
ଆମ୍ଭର ଥାଠ ଥୋକାଏହି ଯାଆନ୍ତୁ ଅପସର । ୩୦ ।
ଏହିମନ୍ତ ବଚନେ କହାଇଲେ ସଇନ
ଭୀମସେନ ରହିଅଛି ବିରାଟକୁ ଘେନ । ୩୧ ।
ଧାଡିକାରେ ବେଢିଲେ ଯେ ଲକ୍ଷେ ମୁକୁଟବନ୍ଧା ଯୋଧୀ
ଅବଛନ୍ନେ ନାରାଜ ଯେ କରୁଛନ୍ତି ସନ୍ଧି । ୩୨ ।

---

୨୫।୨ ହାଥେ ପଡି ମୁହିଂ ହୋଇଅଛି ଧଂସ । —ଚ, ଧ, ଢ

ଭୀମସେନ ବୋଇଲା ହୋ ଶୁଣ ସହଦେବ ମହେଶ
ପୂରବର ନ ସିଦ୍ଧୁ ଭୁ ରହିଥାଅ ମୋର ପଛେ । ୩୩ ।
ଯେତିକଷଣି ସମଦଣ୍ଡ ବଢାଇବ ବେଳେ
ମାରିବ ଯବନବଳ ଚୋପୋର ଅଙ୍କୁଛଲେ । ୩୪ ।
ବଳନ୍ତ ଯୋଦ୍ଧାଏ ଯେ ଆକର୍ଣ୍ଣ ପୂରେଇ
ନାରାଚ ଚୂର ହୋଇଛି ଭୀମସେନ ଅଙ୍ଗେ ଯାଇଂ । ୩୫ ।
ପର୍ବତ ଉପାନ୍ତେ ଥାଇ ଯେସନେକ ଜନେ
ବରଟ ବର୍ଷନ୍ତେ ରହିଲା ଭୀମସେନର ସନେ । ୩୬ ।
ଦେଖିଲେ କଷ୍ଟେରେ ସଇନ ଯେ ହୋଇଲେକ ଭେଟ
କାଳାନଳ ମୂର୍ତ୍ତିଧର ଉଠିଲା ଗରଷ୍ଟ । ୩୭ ।
କାଳାନଳ ମୂର୍ତ୍ତି ଜାଣି ସେ ପବନର ବସ
ଆକ୍ରୋଷିଣ ଭୀମସେନ ଉପାଡିଲା ଶାଳ ବେଣୁବୃକ୍ଷ । ୩୮ ।
ଅନ୍ତରୀକ୍ଷେ ଧରି ବୁଲାଇ ବୃକ୍ଷ ଉର୍ଦ୍ଧ ବାହୁ
ନଶାପତଙ୍କ ଦେଖି ଯେହ୍ନେ କ୍ଷେପଇ ଶୂନ୍ୟେ ରାହୁ । ୩୯ ।
ସେହି ପ୍ରକାରେ ସେ ଦଶଇ ବୃକୋଦର ମୂର୍ତ୍ତି
ପର୍ବତ ତଳେ ଯେହ୍ନେ ଦଶନ୍ତି ବୃକ୍ଷପନ୍ତି । ୪୦ ।
ମନ୍ଦର ପର୍ବତ ଜାଣି ଭୀମସେନର କାଏ
ସାରବାହୁ ସନ୍ୟ ଦଶିଲେ ଖର୍ପରୂପ ପରାଏ । ୪୧ ।
କାଳଚକ୍ର ପ୍ରାଏ ଯେ ବୁଲାଇ ବେଣଡୋଳ
ଅଧର ବକଟାଳ ଖାଂକର ଯାହାର ବାଳ । ୪୨ ।
ଯେସନେକେ ଭଇରେବ ଉଠଇ ଗଳଗାଜ
ରେ ରେ କାର କରି ଧାକନ୍ତେ ପଳାଇଲେ ସର୍ବସନ୍ୟ ଭାଜ । ୪୩ ।
ଦଣ୍ଡ ଭଞ୍ଜନ୍ତେଣ ବୃକୋଦର ଉଠି
ଶାଳବୃକ୍ଷ ବୁଲାଇଣ ଅନ୍ତରୀକ୍ଷେ ନେଇ ପିଟି । ୪୪ ।
ପୁଣ ପୁଣ ପ୍ରହାର କରଇ ସାର ପରଚଣ୍ଡା
ସହସ୍ରେକ ରଥ ଭାଜି କଲାକ ମସୀଗୁଣ୍ଡ । ୪୫ ।
ସରେ ବୃକ୍ଷେକ ଧରିଣ ବୁଲାଇ ଭୀମସେନ
ଗଜ ଅଶ୍ୱ ଉପରେ ପିଟିଲା କୋପମନ । ୪୬ ।

ଭଲ ଭଲ ବନ୍ଧା ଯେ ମସ୍ତେମନ୍ତମାନ
ହାଥରେ ଧରିଣ ଘରେ ବୁଲଇ ଭୀମସେନ । ୪୭ ।
ବେନକରେ ବେନଗଜ ବୁଲଇ ବେ ପଭରେ
ପ୍ରହାର କରଇ ଭୀମସେନ ଯୋଦ୍ଧାଂକ ଉପରେ । ୪୮ ।
ବାତଘାତେ ଯେସନେ କଦଳୀ ବନ ଭାଞ୍ଜେ
ସେହି ସାଦୃଶ୍ୟେ ଭୀମସେନ ଯବନ ବଳ ପଡଲେ ନମଞ୍ଜି । ୪୯ ।
ଅପ୍ରମିତ ସମର ଅଗୋଚର ଯତ୍ନଂ
ଦେଖିଣ ଦୁରାତ୍ନକ ବଳ ଭାଞ୍ଜିଲେକ ଚତ୍ନଂ । ୫୦ ।
ଅନେକ ନାରାଜ ଯେ ବର୍ଷିଲେ ସର୍ବସାର
ସମସ୍ତ ଚୂରିଗଲା ମାରୁତି ଅଙ୍ଗର । ୫୧ ।
ଗଦା ମୃଦୁଗର ଯେ ତମ୍ବୁର ଚକ୍ର କାଣ୍ଡ
ଭୀମସେନ ବାମଅଙ୍ଗେ ପଡି ସର୍ବେ ଚୁରିହୋନ୍ତି । ୫୨ ।
କୋନ୍ତ ଜାଠି ଶକତି ଗୁରୁଜ ବାବଲ ଲଂକଆ
କେତେ କେ ମାରୁଅଛନ୍ତି କେ ଅନ୍ତକରୁ ଛାହା । ୫୩ ।
ପର୍ବତ ଉପରେ ଯେହ୍ନେ ବରଷଇ ଜଳ
ଭୀମସେନ ଅଙ୍ଗେ ବାଜ ଶସ୍ତ୍ରେ ପଡନ୍ତି ମହାଚଳ । ୫୪ ।
ନାରାଜ ନ ଭେଦଇ ଯେଣୁ ଭୀମସେନର ଅଙ୍ଗେ
ବିମୁଖେ ସମସ୍ତ ସଇନ ପଳାବନ୍ତି ରଣଭଙ୍ଗେ । ୫୫ ।
ବାସଭଗ୍ନେ ଯେସନେକେ ପଳାବନ୍ତି ପକ୍ଷୀ
ଭାଞ୍ଜିଲେ ଯବନ ବଳ ହୋଇଲେ ନିରାମାଖି । ୫୬ ।
ଆମାନୁଷ୍ୟ କୃତ ଯେ କଲାକ ବ୍ରିକୋଦର
ଦ୍ୱାଦଶ ଯୋଜନ ପରିଯନ୍ତେ ପଡିଲା ପସ୍ତେଡ । ୫୭ ।
ରଥ ଗଜ ଅଶ୍ୱ ସଇନ ପାଦାନ୍ତି
ଯେକର ଉପରେ ପଡି ଆରେକ ନମଞ୍ଜନ୍ତି । ୫୮ ।
ପଡିଲେ ସଇନ ଯେ ନଶବଦ ହୋଇ
ରକତେ କର୍ଦ୍ଦମ ହୋଇଲାକ ରଣଭୂଇଂ । ୫୯ ।

ଦ୍ୱାଦଶ ଯୋଜନ ଦୀର୍ଘ ଛଅ ଯୋଜନ ପ୍ରସ୍ଥ
ଯେସନେ ଦୂର ମାଡଣ ଯେ ପଡ଼ିଲେ ସଇନ ପାଦାନ୍ତ । ୬୦ ।
କ୍ରୋଧିରେ ଦଳିଲେ ପାଦ ଯେ ଭୀମସେନର କାଏ
ଦଶଇ ଅଷ୍ଟାଙ୍ଗ ଯେ ମହୀର ପୃଷ୍ଠ୍ୟ ପ୍ରାଏ । ୬୧ ।
ଶତେ ପରସ୍ପରୁ ସନ୍ୟ ଆଣିଥିଲା ଗାରବାହୁ
ପଞ୍ଚ ପରସ୍ପରୁଧ ଯେନ ପଳାଇଲା ସେହୁ । ୬୨ ।
ଦନ୍ତରେ ଛିଣ୍ଡିଣ ଯେ ଅଧରେଣ ଅଙ୍ଗୁଷ୍ଠି
ବାହୁ ନ ଚେଷ୍ଟା କରଣ କେ ଚରଣରେ ଲୋଟି । ୬୩ ।
ନଦ୍ଧ୍ୟା ନରକୁଳ ନର୍ଭ୍ୟେ ନରପକ୍ଷଇ
ଶରଣ ବୋଇଲେ ସେ କ୍ଷଣେହେଁ ନ ରଖଇ । ୬୪ ।
ରୁଦ୍ର ଅବତାର ସେ ଜାଣିଣ ଭୀମସେନା
ଗାରବାହୁ ବଣ୍ଡ ଭଞ୍ଜ କଲା ସର୍ବ ଚୂନା । ୬୫ ।
·ଗୋଡ଼ାଇ ବୃକୋଦର ଆରେ ଆରେ ଗାରବାହୁ
କାହିଁକ ପଳାଇଅଛୁ ପଛେ ଗୋଡ଼ାଇଅଛୁ ସହୁ । ୬୬ ।
ଆରେ ଲେଉଟା କର ତୋର ରୁହାଉ କନା ହସ୍ତେ
ନସତ ହୋଇଲେ କ ରହିବ ତୋର କାଏ । ୬୭ ।
କଟାଳ ଦେଖିଣ ସେ ସହସ୍ରେକ ଯୋଦ୍ଧା ଭୁଲେ
ନବଦଶ କୋଟି ଯେନ ସେ ଯେକମୁଖେ ରହିଲେ । ୬୮ ।
ଭୀମସେନ ନପାତ କଲକ ତାହାର ତେଜ
ସହସ୍ରେ କୋଟି ଯେନ ଯେ ମାଇଲା ମହାରାଜ । ୬୯ ।
ମହାତେଜ ଦେଖି ମାରୁତି ପାଡିଲା ବାମଅଙ୍ଗ
ସମସ୍ତ କୋଟେ ପଡ଼ି ହୋଇଲେକ ଭଙ୍ଗ । ୭୦ ।
ଶହସ୍ର ବଅର୍ଥେ ଯେ ରହିଲେ ସର୍ବେ ଘୁଞ୍ଚି
ବୃକୋଦର ବୋଇଲା ରେ ହୋଇଲୁ ନଗ୍ନମାଛି । ୭୧ ।
କାଳଚକ୍ର ପ୍ରାଏ ଭୀମ ବୁଲାଇ ବେନଆଖି
ଯୋଦ୍ଧାଏ କଂକର ହୋଇଲେ ତାହାକଇଂ ଦେଖି । ୭୨ ।
ଚନ୍ଦ୍ର ଦେଖି ରାହୁ ଯେହ୍ନେ ପଡ଼ଇ ଧାଇଁ ମାଡ଼ି
ଭୀମସେନ ପିଟିଲା ଯେ ଲୋହଦଣ୍ଡ କାଢ଼ି । ୭୩ ।

ଯୋଦ୍ଧାଂକର ଶିରରେ ଯେ ପଡ଼ିଲା ଲୌହଦଣ୍ଡ
ଅଶ୍ୱମାନେ ଶୂନ୍ୟ ହୋଇଣ ବେନଖଣ୍ଡ । ୭୪ ।
ନସତ ହୋଇଣ ଛତ୍ରୀ ଦନ୍ତେ ଘେନନ୍ତି ତୃଣ
ମୁଖେ ଅଙ୍ଗୁଷ୍ଠ ଲଇ ଫୁକାରନ୍ତି ଶରଣ । ୭୫ ।
ପ୍ରଣପତ୍ୟ ହୋଇବେ ଯେହୁଂ ତାକୁ ମାରଇ ପାଦଘାତେ
ପଳାନ୍ତା ଯୋଦ୍ଧାକୁ ସେ ପ୍ରହାର କରଇ ମୁଖେ । ୭୬ ।
ସହସ୍ରେ ଯୋଦ୍ଧା ତାହାର ସମସ୍ତେହେଂ ସାଖା
ପଡ଼ିଲେ ନବୁଜାଇ ହୋଇଣ ନରେଖା । ୭୭ ।
ମୂଷଳେକ ଘେନିଣ ସେ ନୃପତି ସୁରବାହୁ
ଭୀମସେନ ଉପରେ ପିଟିଲାକ ସେହୁ । ୭୮ ।
ଦେଖିଣ ବୃକୋଦର ତାହା ଧଇଲା ବାମହାଥେ
ହୃଦଗତେ ତାହାକୁ ମାଇଲା ପାଦଘାତେ । ୭୯ ।
ପଡ଼ନ୍ତେଣ ମୁଥେକ ପ୍ରହାର କଲା ତୋଳ
ସୁରବାହୁର ଗାତ୍ର ଯେ ହୋଇଲାକ ଧଳ । ୮୦ ।
ରାଜାର ପଡ଼ନ୍ତେଣ ଯେ ଅପାର ରଥୀ ଥିଲେ
ନିଜ ଭୂମି ଛାଡ଼ି ସେ ବନସ୍ତେ ପଶିଲେ । ୮୧ ।
ଶୁଣ ହୋ ରାଜନ ଭୀମସେନ ଚଳଇ ବିରାଟକୁ ଘେନି
ଆସିଣ ଭେଟିଲେ ସେହୁ ଆପଣା ସଇନ । ୮୨ ।
ମାଡ଼ିଣ ବସିଲେ ସେ କଳପି ରାଜ୍ୟଭାର
ଅନେକ ଧନ ଭଣ୍ଡାର ତାହାର କଲେ ଜର । ୮୩ ।
ଶ୍ୱେତନାମେ ବିରାଟର ଅଟଇ କନିଷ୍ଠ ପୁତ୍ର
କଲୁ ରାଜ୍ୟେ ତାହାକୁ ଧରାଇଲେ ଦଣ୍ଡଛତ୍ର । ୮୪ ।
। ୭୫୬୨ ।

———

୮୧।୧ ରାଜାର ପଡ଼ନ୍ତେଣ ଯେ ଅବା ଥିଲେ ।—କ, ବ

## ଉତ୍ତରର ଜୟ ବାର୍ତ୍ତା ଶୁଣି ବିରାଟର ଆନନ୍ଦ ଓ ଯୁଧିଷ୍ଠିରଙ୍କର ମସ୍ତକରୁ ରକ୍ତପାତ

ରଥ ଗଜ ଅଶ୍ୱ ଚାଲୁ ଦଳେକ ବହୁତ
ସେମନ୍ତର ସମସ୍ତେ ନେଇ ବାରତା ଦେଲେ ଦୂତ । ୧ ।
ସ୍ୱାମୀ ଦଣ୍ଡଭଗ୍ନ ହୋଇଣ ଯେ ତ୍ରିଗର୍ତ୍ତେଶ୍ୱର ଗଲେ
ଦୁର୍ଯ୍ୟୋଧନ ଅଗ୍ରତେ ଯାଇଁ ସବୁ ବାରତା କହିଲେ । ୨ ।
ସ୍ୱାମୀ ଶରଣପଞ୍ଜର ବାନା ଅଟଇ କୁରୁପତି
ମହୀଦେଶକଇଁ କାହିଁଲେ ରାଜା ମାନଚକ୍ରବର୍ତ୍ତୀ । ୩ ।
ରାଜା ରାଜ୍ୟେ ନାହିଁ ବୋଲି ସେ ବାରତା ପାଇଲେ
ରାଜ୍ୟକୁ ନୁଆସି ତେଣେ ଗୋଧନ ହରିନେଲେ । ୪ ।
ଶୁଣିଣ ବିରସ ଯେ ହୋଇଲେ ବିରାଟ
ଭୀମସେନ ବୋଇଲେରେ ଲେଉଟାଅ ବେଗେ ଥାଟ । ୫ ।
ଶ୍ୱେତ କୁମାରକୁ କଳ୍ପି ରାଜ୍ୟେ ଥୋଇ
ଆସଇ ମହୀଧିପ ଥାଟ ଯେ ଚଳାଇ । ୬ ।
ପବନନନ୍ଦନ ବେଗେ ଥାଟ ଚଳାଇ ଭୀମସେନ
ମୋହୋପିବାଯାଏ ନପୁଣ ନଥାଇ ଦୁର୍ଯ୍ୟୋଧନ । ୭ ।
ଯେତେକ ପୁଣ୍ୟ କାହିଁ ଅବା କରିବ ଇହଜନ୍ମେ
ଭେଟିବ କି କଉରବେ କଳ ଆଜର ସଂଗ୍ରାମେ । ୮ ।
ନଜର ଦେଶେ ରାଜା ଯାଇଁ ପ୍ରବେଶ ହଉନ୍ତି
ପୁଣ ବେଶାଙ୍ଗରେ ନେଇ ବାରତା କଲେ ଧାଙ୍କି । ୯ ।
ସ୍ୱାମୀ ଦୁର୍ଯ୍ୟୋଧନ ରାଜା ଗୋଧନ ନିଅନ୍ତେଣ ହରି
ଉତ୍ତର କୁମାର ଯେକା ଗଲେକ ରଥେ ଚଢ଼ି । ୧୦ ।
ଶୁଣି ବିରସ ଯେ ହୋଇଲେ ବିରାଟ
ଉତ୍ତର ପ୍ରାକ୍ରମେ କି ଜିଣିବ କୁରୁଥାଟ । ୧୧ ।

କୋଳେ ପଚ୍ଚରିଲେ ସେ ଗଲା କ ସେବକାଙ୍ଗେ
ଅଥବା କାହାକୁ ସେ ଘେନିଗଲା ସଙ୍ଗେ । ୧୨ ।
ଉତ୍ତର ବୋଇଲା ସ୍ୱାମୀ ନପୁଂସକ ବୃହନ୍ନଳା
ତାହାକଇଂ ଘେନିଗଲା ସେ ରଥେ ସାରଥି କରି । ୧୩ ।
କୋଳେ ବୋଇଲେ ହୋ ବଜା ନ ଭାଳନ୍ତ ଆଉ ଚିତ୍ତେ
ଉତ୍ତରକୁ ପ୍ରମାଦ ନାହିଂ ଯେ ବୃହନ୍ନଳା ଥାଆନ୍ତେ । ୧୪ ।
କହିଛି ଥାଠ ଯେ କଡ଼ାଷ୍ଟେ ବେଗ ବେଗ
ସମସ୍ତ ପଛକରି ଭୀମସେନ ହୋଅଇ ଆଗ । ୧୫ ।
ଭୀମସେନଂକ ଆଗମନ ବାରତା ଯେ ଶୁଣି
ଅର୍ଜୁନ ବଗ୍ଧରଇ କଉରେବେ ମରିବେ ସେହିକ୍ଷଣି । ୧୬ ।
ଜୀବନ୍ୟାସ ଶରେକ ଯେ ପେଷିଲେ କିରୀଟୀ
ଜୀବଦାନ ପାଇଣ ଯେ କଉରେବେ ସର୍ବେ ଉଠି । ୧୭ ।
ଉପୁଣୀ ପ୍ରଭାତେ ଚେତନା ପାଇଲେକ ବଳ
ସମସ୍ତ ପାଲଟି ଦେଖି ଉପୁଜିଲା ମହାଗୋଳ । ୧୮ ।
କେ ବୋଲଇ ମୋହୋର ମୁକୁଟ କେହୁ ନେଲା
କେ ବୋଲଇ ରତ୍ନହାର କେ ମୋହୋର ଚୋରିକଲା । ୧୯ ।
କେ ବୋଲଇ ମୋହୋର ଗଦା ଧନୁ ନାହିଂ
ପାଦାନ୍ତ ହୋଇ ରଥୀ ହୋଇଲି କିଂପାଇଂ । ୨୦ ।
କେ ବୋଲଇ ମୋହୋର ନାସା ଶ୍ରବଣ ଛେଦିଲା
କେ ବୋଲଇ ମୋ ହୋଇ ଶରୀର ବିଦାରିଲା । ୨୧ ।
ଭୀଷ୍ମେ ବୋଇଲେ ହୋ ନ କଲ ଆମ୍ଭର ଯେ ବୋଲ
କାଳେ ଫଳିଲା ତୁମ୍ଭଂକୁ ନୋହିଲା କିଛି ଭଲ । ୨୨ ।
ସେହେନ୍ତେକ ବିଡମ୍ବଣ କଲାକ ଫାଲଗୁନ
ପଳାଅ ସେବେ ସମସ୍ତେ ନଲାଜ ଆମ୍ଭ ଘେନ । ୨୩ ।
ଦ୍ରୋଣଂକର ଅଗ୍ରତେ ଶଲ୍ୟେ ଯେ ବୋଇଲେ
ଧର୍ମେଣ ଅର୍ଜୁନ ସର୍ବୁଂକର ଶିର ନ ଛେଦିଲେ । ୨୪ ।
ଶକୁନି ବୋଇଲା ହୋ ମଲେ ଭଲ ଥିଆନ୍ତା
ମରଣୁଂ ଅଧିକ ହୋଇଲା ଯେ ଗଞ୍ଜଣ କଥା । ୨୫ ।

ଭୀଷ୍ମେ ବୋଇଲେ ଯେବେ ପଳାଅ ବହନ
ସମ୍ମୋଡେ ମାରିବଟି ଆସୁଅଛୁ ଭୀମସେନ । ୨୬ ।
କେଶବାସ ଅସମ୍ଭାଳେ ପଳାବନ୍ତି ସଇନ
ଯାନ ବାହାନ ଚଢି ଯେ ନୁଆଁରନ୍ତି ଶସ୍ତ୍ର ଘେନ । ୨୭ ।
ଗଜେ ପଳାବନ୍ତେ ମାଡଗଲେ ପାଦାନ୍ତ
ରକତ ମାସେଂସେ କର୍ଦ୍ଦନ ହୋଇଲାକ ପୃଥୀ । ୨୮ ।
ଯେଥୁ ଅନନ୍ତରେ ହୋ ଶୁଣିବା ବାକ୍ୟରସ
ମହାଭାରଥ ଶୁଣନ୍ତେ ଯେ ଦୁରିତ ହୋଯେ ଧ୍ୱଂସ । ୨୯ ।
ଅପୁତ୍ର କମାନେ ପୁତ୍ର ପାଂବନ୍ତି, ବସନ୍ତି ସ୍ୱର୍ଗବାସ
ହେ ସ୍ୱର୍ଗ୍ୟଂଜନମାନେ ଶ୍ରବଣେ ଶୁଣି ହୃଦେ ଯେହା ଘୋଷ । ୩୦ ।
ଦାରୁକକୁ ହକାରି ବନେଯେ ବୋଲନ୍ତି ଫାଲଗୁନ
ଦ୍ୱାରକାପୁରକୁ ଯାଅ ଯା ଯେବେ ନନ୍ଦଘୋଷ ରଥ ଘେନ । ୩୧ ।
ସମସ୍ତ ବାରତା କହ ଶ୍ରୀହରିଂକ ଆଗେ
ଜଣିଲ କଉରବେନ୍ଦ୍ର ମୁହିଂ କୃଷ୍ଣଂକ ଅନୁରାଗେ । ୩୨ ।
ଚଳଇ ଦାରୁକ ଯେ ନନ୍ଦଘୋଷ ରଥ ଘେନ
ଧନୁହୋଣ ଶମୀକୋଟେ ଥୋଇଲେ ଫାଲଗୁନ । ୩୩ ।
ସ୍ତ୍ରୀ ଭାବେଶ ଅଳଂକାର ପୂଣିହିଂ ଅର୍ଜୁନ ଅଙ୍ଗେ ଭରି
ଜନ ହନକଇଂ ଭ୍ରାନ୍ତିକ ରୂପ ବୃହନ୍ନାଭା । ୩୪ ।
ବୀରବେଶ ଅଳଂକାର ଶ୍ରୀକୃଷ୍ଣାର ସୁତ
ଅର୍ଜୁନ ପାଦପଦ୍ମେ ବନେଯେ ଭଗତ । ୩୫ ।
ସ୍ୱାମୀ ରଥୀର ପଣେ ମୋହୋର ରଥେ ବସିଚେ ଇଚ୍ଛାନାହିଂ
ଶରୀର କମଇ ମୋହୋର ଚୋହୋର ରୂପ ଗୃହିଂ । ୩୬ ।
ଅର୍ଜୁନ ବୋଇଲ ଭ୍ରାନ୍ତ ନ କରସି କିଛୁ
ଅଜ୍ଞାତବାସ ଆବର କେନ ଦିବସ ଅଛୁ । ୩୭ ।
ଉତ୍ତର କୁମାର ରଥୀ ଅର୍ଜୁନ ସାରଥି
ଶମୀବୃକ୍ଷ ତଳରୁ ଯେ ଚଳନ୍ତି ତତକ୍ଷି । ୩୮ ।
ଅର୍ଜୁନ ଆଦେଶେ ଦାରୁକ ଗଲା ବେଗେ
ନନ୍ଦଘୋଷ ଘେନ ପ୍ରବେଶ ରାମକୃଷ୍ଣ ଆଗେ । ୩୯ ।

ସାଂଗ୍ରାମ କଥା ସବୁ କହଇ ସଞ୍ଜପି
ସେହୁକା ଅର୍ଜୁନଙ୍କେ କଉରେବ ବଳଯାକ ବ୍ୟାପି । ୪୦ ।
ଅଷ୍ଟାଦଶ କ୍ଷଉଣୀ ଯେ ଭୀଷ୍ମ ଦ୍ରୋଣଂକର ମୂଳେ
ସବୁନ୍ତ ଧଂସିଲା ପାର୍ଥ ରଣ କୁତୂହଳେ । ୦୧ ।
ଶୁଣି କୃତକୃତ୍ୟ ଯେ ଭୁଜଙ୍ଗସାର ବଲ୍ଲଭ
ହୃଦଗତେ ସୁସ୍ଥ ହୋଇଲେ ପ୍ରଭୁ ବଳଦେବ । ୪୨ ।
ନନ୍ଦଘୋଷ ଗୃହ୍ୱଂ ହରି କରନ୍ତି ଧନ ଧନ
ସେହୁ ରଥେ ହଜେ ମୋହୋର କଲ୍ଲକ ଫାଲଗୁନ । ୪୩ ।
ଆହୋ ଚଇତନ ସମଦଣ୍ଡ ଘେନଣ ଚଳଇ ବିରାଟ
ମଘ ମହାଦେଶେ ପ୍ରବେଶ ହୋଇଲାକ ନଜ ଥାଠ । ୪୪ ।
ଚରଗଣେ ବାରତା ଜଣାଇଲେ ସେହୁ
ସ୍ୱାମୀ ଜଗତେ ଜୟବନ୍ତ ହୋଇଲେ ତୋହୋର ତନୟେ । ୪୫ ।
ସ୍ୱାମୀ ଅଷ୍ଟାଦଶ କ୍ଷଉଣୀ ଯେ ସେହୁ କୁରୁ ସାଗର
ତାହା ଜିଣିମାକୁ ହୋ ସାମର୍ଥ ହୋଇଲା ତୋହୋର କୁମର । ୪୬ ।
ବିରାଟେ ବୋଇଲେ ହୋ ପୁତ୍ର ମୋର ସାଧୁ
ସେହୁକାସେହୁ କେମନ୍ତେ ମନ୍ଥିଲୁ ରେ କାସନଧି ସିନ୍ଧୁ । ୪୭ ।
କୋନ୍ତେ ବୋଇଲେ ବିରାଟେ ବୃହନ୍ନଳା ସାରଥି ଯାହାର ରଥେ
ତାହାକୁ ଜିଣିମାକୁ ସାମର୍ଥ କେ ସେହୁ ତିନ ଜଗତେ । ୪୮ ।
ଶୁଣିଣ କୋପ ଯେ କରଇ ବିରାଟ
ଓଷ୍ଠେ ଦନ୍ତ ଚାପିଣ ଅଧର କଲା ପୁଷ୍ଟ । ୪୯ ।
ଆପଣେ ଆପଣେ ମହାରାଜେ କ୍ରୋଧ ମୂର୍ତ୍ତି କରଇ ଶାନ୍ତ
ଉପ୍ରୋଧେଣ କିଛୁ ବୋଲି ନୁଆରି ମନେ କରଇ ଭ୍ରାନ୍ତ । ୫୦ ।
ବିଜେ ମହାରାଜେ ଆସ୍ଥାନେ ହରଷେ
ସନ୍ୟବଳ ଗଲେ ଯେ ଯାହାର ଗୃହବାସେ । ୫୧ ।

---

୫୦ ରାଜେ କ୍ରୋଧମୂର୍ତ୍ତି ମହାରାଜେ ମୂର୍ତ୍ତି
ବଦନ ନଚେପଇ ରାଜା ନ ବୋଲଇ କିଛୁ ।—ତ, ଧ, ପ

ବୈକୁଣ୍ଠ ଘରକୁ ଯେ ଚଳିଲେ ବଲ୍ଲଭ
ସନ୍ଧଣା ବନ୍ଧି ସେ ଯେ କରଇ ସୁଲଭ । ୫୨ ।
ବାଜୀଶାଳେ ଯାଇଂଣ ସେ ପ୍ରବେଶ ନକୁଳ
ଗୋଧନ ପଲ ସେନଣ ରହିଲେ ଚନ୍ଦ୍ରୀପାଳ । ୫୩ ।
ବିରାଟ ବୋଇଲା ମୁଣୋଶ୍ଚ ସାରିବା ପରିଯନ୍ତେ
ପଶାପୀଠେ ଆସ ହୋ ଖେଳିବା ଦୋଷ ଛଡ଼େ । ୫୪ ।
ବଦନ୍ତ ସଧୀରେ ଇଡଂବାଚ ଆପଣେ ଦେବଧର୍ମେ
ପୁନ ତୋହୋର ଉଦ୍ଧତ ହୋଇଲା ସାଂଗ୍ରାମେ । ୫୫ ।
ଉତ୍ତର କରାଇବୁ ହାଦେ ମଘଦେଶେ ମତ୍ସ୍ୟଦେଶେ
ପଶା ଉଚିତ ନୋହୋଇ କଣ୍ଟକ ହରଷେ । ୫୬ ।
ବିରାଟ ବୋଇଲା ମୋତେ ନ ଭାବଇ ଆନ
ଆଜ ସେ ନଚନ୍ତ କଲା ଯେ ମୋହୋର ନାନ । ୫୭ ।
ଯେବେ ସେ ମଘଦେଶ ମତ୍ସ୍ୟଦେଶ ହୋଇଲା ମୋତେ ଭୋଗୀ
ସର୍ବ ସୁଲକ୍ଷଣ କୁମର ହୋଇଲା ପରମ ଯୋଗୀ । ୫୮ ।
କାଂଠ କୋଠି ବୋଲି ଘେନ୍ତେ ପକାଇ ଦେଲେ ଖଡ଼ି
ପ୍ରଭୁ ଲୋକଂକର ଆଗ୍ୟାଂ ମେଣ୍ଟି ତେ କ ପାରି । ୫୯ ।
ଶ୍ରୀଭୁଜେଣ ଖଡ଼ି ଧରିଣ ଧର୍ମସୁତେ
ପଶାକୋଠି କାଟନ୍ତି କୋନ୍ତେ ଯେ ପଣ୍ଡିତେ । ୬୦ ।
ଦ୍ୱାଦଶ କୋଠି ଯେ ଷ କଛ କରିଣ କାଟି
ବିରାଟ ପାଡ଼ିଲେ ଯେ ପଶା ସାରଗୋଟି । ୬୧ ।
ବସିଲେ ପଶାଯେ ଯେ ବିରାଟ ଧର୍ମରାଯେ
ଅନ୍ତଅନ୍ତ ହରଷେ ସେ ପଶାକ୍ରୀଡ଼ା କଯେ । ୬୨ ।
ଦେଶାନ୍ତରେ ଯାଇଂ ବାରତା ଜଣାଇଲେ ଆସ୍ତାନେ
ସ୍ୱାମୀ ଦଣ୍ଡଭଗ୍ନ ହୋଇ ପଳାଇ ଗଲେ କଉରବ ସନ୍ୟମାନେ । ୬୩ ।

---

୫୬।୨ ପଶାର ହୁଚନ୍ତ ମିଳଇ କଣ୍ଟକେ ବରଷେ ।—କ, ଣ, ଛ
୫୮।୧ ସର୍ବଶୁଭେ କୁମର ମୋହୋର ହୋଇଲା ମହାଯୋଧୀ ।—ଗ, ଝ,

ଗୋଗୋଟଷ୍ଠ ନେଇ ଯେ ଘୁଞ୍ଚିଲେକ ନିଜ ଗୋଧନ ପଲ
ଅଳକାନାଥ ପ୍ରାୟେ ଆସଇ ଉତ୍ତର କୁମର । ୬୪ ।
ନଗ୍ରେଣ ପ୍ରବେଶ ଯେ ହୋଇଲେ ଗୃପଧାରୀ
ମାତଳି ସମାନେ ରଥ ବାହଇ ବୃହନ୍ନାରୀ । ୬୫ ।
ବିରାଟ ବୋଇଲେ କୋନ୍ତେ ପୁତ୍ର ମୋହୋର ଧନ
ଯେକାୟେ ଜିଣିଲା ଖ୍ରିଷ୍ଟ ଦ୍ରୋଣ କର୍ଣ୍ଣରେକ ସଇନ । ୬୬ ।
କୋନ୍ତ ବୋଇଲେ ବିରାଟେ ବୃହନ୍ନାରୀ ଯାହାର ରଥେ ସାହା
ତ୍ରଇଲୋକର ମଧ୍ୟେ କେହ୍ନୁ ଜିଣିତେ ପାରଇ ତାହା । ୬୭ ।
ଶୁଣିଣ ବିରାଟ ଯେ କୋପେଣ ପ୍ରଚଣ୍ଡ
ସିଗେଣେ ମହାଧିପର ଗଳଇ କିପଣ୍ଡ । ୬୮ ।
ରକତ କୁମୁଦ ପ୍ରାୟେ ବିରାଜଇ ବେନନେତ୍ର
ବଦନ ରକ୍ତବର୍ଣ୍ଣ ପୁଣ ଉପ୍ରୋଧ ବହୁତ । ୬୯ ।
ଖେଳନ୍ତ ପଶା ସେ ଯେ ଅକ୍ଷୟ କୁତୂହଳେ
ବଢିଲା ଅନେକ ହରଷ ଜିଣିଲେ ମହୀପାଳେ । ୭୦ ।
ବିଜୟେ ଉତ୍ତର କୁମାର ଉତର କଟକେ
ପୁଣ ବାରତା ଯାଇଂ କହିଲେ ଦୂତଲୋକେ । ୭୧ ।
ସ୍ୱାମୀ ଉତ୍ତର କୁମାର ତୋର କର୍ଣ୍ଣରେକ ବଳ ଜିଣି
ଦ୍ୱାରେ ପ୍ରବେଶ ଆସି କାର୍ତ୍ତିକେଶ୍ୱର ଜାଣି । ୭୨ ।
କୋନ୍ତେ ବୋଇଲେ ବିରାଟେ ବୃହନ୍ନାରୀ ଯାହାକଇଂ ସାହା
ତ୍ରଇଲୋକେ ସାମରଥ କେ ଜିଣିତେ ପାରେ ତାହା । ୭୩ ।
ଯେତ୍ତୁ ଅବା ଅଟଇ ଯେ ସେ ମାନଗୋବିନ୍ଦ
ବୃହନ୍ନାରୀ ଥିଲେ ଜିଣି ପାରଇଟି ଅସକନ୍ଦ । ୭୪ ।

---

୬୪।୨ ଅଳକାନାଥ ପ୍ରାୟେ ଦିଶଇ ତୋହ୍ମୋର ଉତ୍ତର କୁମର ମହାମଲ୍ଲ ।
—ପ, ଗ, ଙ, କ, ଙ

୬୪।୨ ସୁର ଇନ୍ଦ୍ର ପ୍ରାୟେ ବଳେ ଉତରକୁ କୁମାର ମହାମଲ୍ଲ— ଦ, ଜ

୭୪।୨ ବୃହନ୍ନାରୀ ଥିଲେ ଜିଣି ନୁଅାରଇ ଅସକନ୍ଦ—କ, ଫ

ପୁଣ ପୁଣ ଶଳାଘନା ବଚନ କୋନ୍ତଂକର ଶୁଣି
ସାରେଣ କର୍ମିଲ ଶସ୍ତ୍ର ବିରାଟର କଦଳୀ ପତ୍ର ଜାଣି । ୭୫ ।
ଅସ୍ଥାଙ୍ଗ ବାକ୍ୟେ ସେ ଓପ୍ରୋଧ କଲ ଚେତ୍ୟା
ସାରେଣ ପ୍ରତିବାକ୍ୟ ବୋଇଲ ମହାରାଜା । ୭୬ ।
ଆହୋ କୋନ୍ତ ପଣ୍ଡିତ ତୁ ଅଟୁ ବଡ଼ ଲଘୁ
ନପୁଂସକ ଗୁରୁକୁ ତୁ କେତେହେଂ ଶଳାଘୁ । ୭୭ ।
ସର୍ବ ପ୍ରଭାତେ ହୋ ବୃହିଂଳେ ଯାହାର ମୁଖ
ତନକର ସୁକୃତ ହରଇ ମିଳଇ ବଡ଼ ଦୁଖ । ୭୮।
ମୋହୋର ନନ୍ଦନର ବଳସାର୍ଥ ଧଂସୁ
ନପୁଂସକ ଗୁରୁକୁ ତୁ ପ୍ରତଗ୍ୟାଂ ଅଭ୍ୟାସୁ । ୭୯ ।
ଅଜାତକ ଲୋକକୁ ନ ନେଇ ଯାତ୍ରାକାଳେ
କାହାକୁଇଂ ନ ପ ଇ ସେ ନେଲ ଆରତର ବେଳେ । ୮୦
ରଥରେ ଥିଲକ ସେ ଲଖମାତ୍ର ହୋଇ
ପୁତ୍ର ବଳସାର୍ଥ ମୋର ନନ୍ଦୁ କାହିଂପାଇଂ । ୮୧ ।
କୋନ୍ତେ ବୋଇଲେ ରାଜା ନ ଜାଣି କହୁ ଦ୍ରୁଡ଼
ସିଂଘ ଶ୍ରିକାଳ କି ହୋଇବେ ସମସର । ୮୨ ।
ଯଦ୍ୟପି ନପୁଂସକ ହୋଇଲ ଅଜାତ
ବୃହନ୍ନାଳା ଦର୍ପେ ସେ ଜିଣିଲ କୁରୁପତି । ୮୩ ।
ଆହୋ ବିରାଟ ଭୀଷ୍ମ ଦ୍ରୋଣ ଶଲ୍ୟ କୃପ ଅଶସ୍ଥାମା ଯାହାକଇଂ ସାହା
ଉତ୍ତର ପ୍ରାକ୍ରମେ କି ଜିଣିତେ ହୋଇଅଇ ତାହା । ୮୪ ।
କହୁଂ କହୁଂ କୋପକଲ ବିରାଟ ମହାପ୍ରଭୁ
ଅଧର ପୁଷ୍ଟକର ବୋଇଲ ସ୍ନେହେ ସେ ତାହି ତାହି ମୋତେ କହୁ ।୮୫।
କାଳଚକ୍ର ପ୍ରାୟେକ ବୁଲଇ ରକତ କୁମୁଦ ଦେନଦୃଷ୍ଟି
କୋପେ ବିରାଟେଶ୍ୱର ନେଇ ମାଇଲ ପଶାକାଠି । ୮୬ ।

---

୭୬।୧ ଅସଙ୍ଗତ ବାକ୍ୟ ସେ ଓପ୍ରୋଧ କଲ ଚେତ୍ୟା । —ଝ, ଙ, ଡ

୭୫।୧ ଶଳାଘନା – ଶ୍ଲାଘା – ପ୍ରଶଂସା

ଆକ୍ରୋଷି ପଶାକାଠି ପ୍ରହାର କରନ୍ତେ ବିରାଟେ
ପଶାକାଠି ବାଜଇ ଯାଇଂ ଜ୍ୟୋତିଂକ ଲଲାଟେ ।୮୭।
ଶ୍ରୀକାନ୍ତ କପାଳେ ଯେ ପଡ଼ିଲା ପଶା କାଠ
ରୋଧିର ବାହାର ହୋଇଲା ଯୁଧିଷ୍ଠିରଂକ କପାଳ ଫୁଟି ।୮୮।
ଧାଡ଼ିକାରେ କପାଳୁ ରୋଧିର ସଖ୍ଯଂ ଗଲା
କରସ୍ତେଣ ରୋଧିର ଦେବ ଧଇଲେ ସମ୍ଭାଳି ।୮୯।
ମନେଣ ବିଚାରନ୍ତି ଯୁଧିଷ୍ଠିର ବିରାଜଦେବ
ନପୁଣ ନ ଦେଖନ୍ତି ନକୁଳ ଭୀମ ସହଦେବ ।୯୦।
ଦେଖିଲେ ପରମାଦ ଯେ କରିବେ ପରମାଣ
ବିରାଟ ଶିର କମଳ ଯେ କାଟିବେ ସେହିକ୍ଷଣ ।୯୧।
ସ୍ୱାମୀ ଜଗନ୍ନାଥ ଅନୁଗ୍ରହ ମୋତେ କର
ସହଦେବ ନକୁଳ ଅର୍ଜୁନ ନ ଦେଖୁ ବୃକୋଦର ।୯୨।
ସମୂଳ ଜନତାରଣ ତୁ ସକଳ ଜନତନ୍ତା
ସେ ଦୁର୍ଗତିରୁ ନାଥ ତୁହି ସେ ରଖନ୍ତା ।୯୩।
ଶୁଣ ହୋ ଚଇତନ ଯୁଧିଷ୍ଠିରଂକ ମହିମାଂ
ଅଯାତଶତ୍ରୁ ସେ ଯେ ଅଣହାତ କୋପିତ ମହିଂମା ।୯୪।
ସେତେ କଷ୍ଟରେ ବିରାଟକୁ କୋପ କେବେହେଂ ତାହାଂକର ନାହିଁ
ପାଡ଼ ହୋ ବିରାଟ ବୋଲି ପଶାସାରି ଦଳେ ବାହି ।୯୫।
ଯୁଧିଷ୍ଠିରଂକ ରୋଧିର ଯେବେ ପଡ଼ନ୍ତାନା ପୃଥୀ
ସଞ୍ଚସେ ଶସ୍ୟ ନ ଫଳନ୍ତା ସେ ନବସୃଷ୍ଟି ।୯୬।
ମେଘେ ବୃଷ୍ଟି ସେ ଯେ ନ କରନ୍ତେ ଭଲେ
ଜଳ ପ୍ରଳୟେ ହୋଅନ୍ତା କୋନ୍ତେଂକର କୋପକଲେ ।୯୭।
ବିରାଟ କୋପକଲା ମାଇଲା ପଶାସେ
ପୂର୍ବକର୍ମ ବିଧାନ ମେଣ୍ଟିଲା ଉପାସେ ।୯୮।

---

୮୮।୧ ଶ୍ରୀଖଣ୍ଡ କପୋଳେ ପଡ଼ିଲା ପଶାକାଠି ।—ଝ, ଣ, ଜ, ଦ
୮୯।୨ ହାଥେ ରୋଧିର ଦେବ ଧଇଲେ ସମ୍ଭାଳି ।—ଝ, ଟ, ଫ
୯୭।୨ ଜନଜନ୍ତୁ ନାଶଯାନ୍ତେ ଯୁଧିଷ୍ଠିର କୋପକଲେ ।—ଢ

ଯୁଦ୍ଧେଷ୍ଟି କୋପ ଯେବେ କରନ୍ତେ ଅଳପ
ମଘଦେଶ ମହାଦେଶର ସରନ୍ତା ସର୍ବଦର୍ପ । ୯୯ ।
ବଇବସୁତ ମନୁଷ୍ୟେ ପୃଚ୍ଛାକଲେ ଅଗସ୍ତିଂକ
ଯେ଼ୁହେନ୍ମେକ ପ୍ରାଭବ କର୍ମେ ହୋଇଲା ଯୁଦ୍ଧେଷ୍ଟିଂକ । ୧୦୦ ।
ଅଜାତଶତ୍ରୁ ସେ ଅଣକୋପିତ ଧର୍ମସୁଏ
ଶତ୍ରୁ ମିତ୍ର ଯାହାକୁ ଯେ଼ୁକତ୍ତ୍ୱ ସବସ୍ୟେ । ୧୦୧ ।
ପାପ ନାହିଂ ମିଥ୍ୟା ନାହିଂ ଯେଉଂଣ ମହାତମାର ଅଙ୍ଗେ
ତାହାଂକୁ ଯେ଼ୁତ ପ୍ରମାଦ ହୋଇଲା କେଉଂଣ କାଗେ । ୧୦୨ ।
ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ମହାରଥୀ
କର୍ମେ ଲେଖନ ଥିଲେ ଅବଶ୍ୟ ବହଇ ବଧାତା । ୧୦୩ ।
ଶତଶୃଙ୍ଗ ପର୍ବତେ ଯୁଦ୍ଧେଷ୍ଟି ଜନ୍ମିଲେ ଯେତେବେଳେ
ଗହନ ଅଟବ୍ୟ ଯେ଼ୁ ଭ୍ରମନ୍ତି କାଳକାଳେ । ୧୦୪ ।
ଲଖକୁ ହାଥସୂତ୍ର ହୋଇବାର ନିମନ୍ତେ
ଗୋଡ଼ ଗୋଟିଯେ଼ୁ ଘେନ ଫିମ୍ପି ମାରନ୍ତ ଅନୁବ୍ରତେ । ୧୦୫ ।
ହନେକ ଆକ୍ରେଷ୍ଟି ଯେ ମାଇଲେ ଗୋଡ଼ଗୋଟି
ଦର୍ଦ୍ଦୁରି ଜୀବ ଲଲାଟେ ପଡ଼ି ଲଲାଟ ଗଲା ଫୁଟି । ୧୦୬ ।
ସେହି ପ୍ରହରେ ଯେ ନାଶ ଗଲାକ ମଣ୍ଡୁକା
ପ୍ରାଣ ଘେନଗଲେ ତାହାର ନାଶକର ତହିଂକ । ୧୦୭ ।
ଚତ୍ରଗୁପତେ ବୋଇଲେ ଯେ଼ୁ ଅପାର କାଳ ବ୍ରତନ୍ତା ଭୋଗୀ
ଯୁଦ୍ଧେଷ୍ଟିଂକ ପ୍ରହାରେ ଯେ଼ୁ ହୋଇଲା ପ୍ରାଣତ୍ୟାଗୀ । ୧୦୮ ।
କୃତାନ୍ତକ ବୋଇଲା ଅହୋକ୍ଷେ ଯେ ଘେନଲା ଯେ଼ୁହାର ପ୍ରାଣଗୋଟି
ତାହାର ଲଲାଟେ ପଡ଼ନ୍ତ ବଗଟର ପଶାକାଠି । ୧୦୯ ।
ଯେ଼ୁସନେକ ଶାପ୍ୟ ଯହୁଂ ହଲେ ଜନ୍ତୁ ଅଇର
ତେଣୁକରି ଯୁଦ୍ଧେଷ୍ଟିଂକ ଲଲାଟେ ବଗଟ ପ୍ରହାର । ୧୧୦ ।

---

୧୦୮ ଚତ୍ରଗୁପତେ ବୋଇଲେ ଯେ଼ୁ ଅପାର କାଳ ବ୍ରତନ୍ତା କୃମି
ପିମ୍ପି ପ୍ରହାରେ ଅହୋକ୍ଷେ ଯେ଼ୁ ନାଶଗଲା ମୃତ୍ତୁଭୂମି । —ତ, ପ

ଜମ୍ବୁରୁ ଜମ୍ବୁରୁ ଦେବ ପୁରୁଷଂକର ଆଦିମୂଳ
ବିହନ୍ତା ପୁରୁଷ ତୁ ବନ୍ଧୁ ସର୍ବକାଳ । ୧୧୧ ।
ଯେ ଯାହା କରଇ ତୁ ପ୍ରତକ୍ଷେ ତାହା ଦେଖ
ତତକ୍ଷଣେ ବନ୍ଧୁ ତାକୁ କ୍ଷଣେହେଂ ନ ରଖୁ । ୧୧୨ ।
ମାତା ରଜ ପିତା ବାର୍ଯ୍ୟରେ ସେ ଯେ ଜମୁଜଇ ପିଣ୍ଡ
ଧାତୁବାଦ୍ୟ ଲଇ ତୁ କରୁ ସର୍ବ ରୁଣ୍ଡ । ୧୧୩ ।
ଅଥବା ପର ଶକତ କରଇ ଯେହୁ ନନ୍ଦା
ସ୍ୱେକଲତା ଅନ୍ତର ନୋହୋଇ ନଜପାପ୍ୟେ ବନ୍ଧା । ୧୧୪ ।
ଯାବତ ତପନ ତାପ ହୋଇବ ପରମ ଶୀତଳ
ପରମ ବ୍ରହ୍ମ ଯେନ ସ୍ୱେ ପଞ୍ଚୁ ଦାବାନଳ । ୧୧୫ ।
ଚତୁର୍ଥ କର୍ମେଣ ମୁହିଂ ଯେ ଅଛଇ ମନ୍ଦଭାଗୀ
ତାରଣ ପୁରୁଷ ତୁ ଅବଶ୍ରାମ କର୍ମଯୋଗୀ । ୧୧୬ ।
ସର୍ବଗ୍ୟାଂ ନାଥ ତୁ ସମ୍ବଳ ଜନ ଚନ୍ତ ।
ସଂସିଦ୍ଧ ପୁରୁଷ ତୁ ଅଭୟେ ବରଦାତା । ୧୧୭ ।
ମାୟା ମୋହ ପଟଳ ସ୍ୱେ ସଂସାର ରଚନା
ଲୋଭ ମୋହ କାମ କ୍ରୋଧ ସ୍ୱେ ଅଦଭୁତ ବନ୍ଧନ ସିନା । ୧୧୮ ।
ନମାମି କରମ ପୁରୁଷ ତୁ ଅଟୁ ମହାକଷ୍ଟି
ଦୁରାପଦ ବନ୍ଧ ଦୁର୍ଗତ ସର୍ବ ମେଣ୍ଟି । ୧୧୯ ।
ବହନ୍ତା ପୁରୁଷକୁ ମୋହୋର ବନସ୍ୱେ ଯୁଗତେ
ଶୂଦ୍ରମୁନ ସାରଳା ଦାସ କହିଲେ ସଂସାର ଜନହିତେ । ୧୨୦ ।
ଅଲେଖ ପୁରୁଷ ତୁ ସମସ୍ତ ସମ୍ପାଦ
ସ୍ୱେହାଂକର ପ୍ରସନ୍ନେ ଯେ ପ୍ରସରଇ ସର୍ବ ବୁଦ୍ଧି । ୧୨୧ ।
କଞ୍ଚତ ପାତକ ମୋହୋର ଯିସ ଥିଲା ପୂର୍ବେ
ଭୋ ଦଇବ ପୁରୁଷ ଖଣ୍ଡନ କର ସ୍ୱେବେ । ୧୨୨ ।

---

୧୧୨।୨ ଇହଜନ୍ମେ ପରଜନ୍ମେ ବନ୍ଧୁ ତୁ କ୍ଷଣକେ ନ ରଖୁ । —ଛ, ଣ
୧୧୨।୨ ଅହନ୍ତାରେ ବହନ୍ତା ତୁ କ୍ଷଣେ ହେଂ ନ ରଖୁ ।—ଟ

ସ୍ୱାମୀ ନରକୁଳ ପୂରୁଷ ତୁ ବନ୍ଧୁ ହୋ ପ୍ରତକ୍ଷେ
ଇଦଂବାକ୍ୟ ଭବେ ମୁଂ କହୁଛି ଯେଉଂଣ ପକ୍ଷେ । ୧୨୩ ।
କଳିକାଳ ବଳାଳେ ଯେ ପାପପୂଣ୍ୟ ବେନି
ପୂର୍ବର କଳ୍ପିତ ଦୋଷେ ଉପୁଜଇ ମାନବ ଯୋନି । ୧୨୪ ।
ଜନ୍ମେ ଜନ୍ମେ ଅଭ୍ୟାସି କହିଲ ଶାହାସ୍ତ୍ର ଯୋଗେ
ମାଗଇ ପଦାର୍ଥମାନ ଯେ କର୍ମର ପରସ୍ତାବେ । ୧୨୫ ।
ଚନ୍ଦ୍ରେଣ କଳଂକ ଯେହ୍ନେ କହିତ ହରେଗନ୍ତ୍ରେଣ ଘୋଟି
କର୍ମର ବପାକେ ତାହା ଯେ ସହିଲେ ଯୁଧିଷ୍ଠି । ୧୨୬ ।
ଆପଣେ ଯେତେ ପାପ କରଇ ଫଳଇ ପ୍ରତକ୍ଷେ
କଲ୍ କର୍ମଙ୍କୁ ସେ କର୍ମ ବୋଲନ୍ତି ଜଗତେ । ୧୨୭ ।
ଭବଗ୍ରାହ୍ୟ ନାଥ ତୁ ଜଇଛା ଜଗଜେଠୀ
ବପତ୍ୟେ କର୍ମକର ସହିଲେ ଯୁଧିଷ୍ଠି । ୧୨୮ ।
ହେ ବୁଧଜନେ କାଳ ପାବେଣ କର
ସହିଲେ ସେ ମର ନ ସହିଲେ ଝୁରିମର । ୧୨୯ ।
ମହନ୍ତ ଗୁପତ ଆଗ୍ୟାନ ଯେ ବରାଟ ପର୍ବ କଥା
ଶୁଣନ୍ତେ ଆପାଦ ଖଣ୍ଡଣ ହୋଅଇ ସର୍ବଥା । ୧୩୦ ।
କଉଶଲ୍ୟା'ର ନନ୍ଦନ ଦେବ ଯେ ଶ୍ରୀରାମ
ହୃଦଗତେ ବଧ୍ୱଂସୁ ମୋହୋର ତବ ନାମ । ୧୩୧ ।
ଶ୍ରୀ ଭ୍ରମୁକ ସାରୋଳ ଦାସର କାନ୍ଥର ସୁଫଳେ
ଶ୍ରୀ ସରସ୍ୱତୀ ଭଣ୍ଡାର ମୁଂ ବଧ୍ୱଂସିଲି ପୁଣ୍ୟବଳେ । ୧୩୨ ।
। ୭୬୯୪ ।

---

୧୨୯।୨ ହେ ବୁଧଜନେ କାଳେ ପାତକ ନ କର ।—ଖ, ଠ
୧୨୯।୨ ସହିଲେ ସେ ତର ନ ସହିଲେ ଝୁରିମର ।—ଛ, ଘ

## ଉତ୍ତରର ଯୁଧିଷ୍ଠିରଙ୍କୁ ସ୍ତୁତିବାଦନ ଓ ଅଭିଷେକ ନିମନ୍ତେ ଯୁଧିଷ୍ଠିର ସହଦେବଙ୍କ ସହିତ ମନ୍ତ୍ରଣା

ଶିରେ ପ୍ରହାର କଲା ବିରାଟେଶ୍ୱର ରାଜା
କୌନ୍ତଂକୁ ସମାସ୍ୟା ନ ଦେଇ ପାଇଲା ବଡ଼ ଲଜ୍ଜା । ୧ ।
ଲଜ୍ଜ ଭୟ ସଂକୋଚେ ସେ ଦିଅନ୍ତି ସମ୍ଭାଷି
ବିଧବା ଆତ୍ମା ପ୍ରାୟେ ସେ ସଂକୋଚେ ଅଛି ବସି । ୨ ।
ଉତ୍ତର କୁମର ଆସି ବିଜେକଲା ସିଂହଦ୍ୱାରେ
ଦ୍ୱାରଗଣେ ବାରତା ଜଣାଇଲେ ସମ୍ମୁରେ । ୩ ।
କୌନ୍ତେ ବୋଇଲେ ହୋ ଉତ୍ତର ଏକା ଆସୁ
ନପୁଂସକ ବୃହନ୍ନଳା ଭିତରେ ନ ପଶୁ । ୪ ।
ଦ୍ୱାରଗଣେ କହିଲେ କୁମାର ଚୂଡ଼ାମଣି
ଏକା ଭିତରକୁ ଆସିବ ନ ଆସିବ ବୃହନ୍ନଳା ପୁଣି । ୫ ।
ଆଗ୍ୟାଂ ପ୍ରମାଣେ ସେ ଉତ୍ତର କୁମାର ଆଗସର
ଆସ ଆସ ସ୍ୱାମୀ ବୋଲି ଅର୍ଜୁନର ହାଥ ଧରି । ୬ ।
ବୃହନ୍ନଳା ବୋଇଲେ ହୋ କୌନ୍ତଂକର ଆଗ୍ୟାଂ ମୋତେ ନାହିଁ
ଅକାରଣେ କଠାଳ ତୁ କରୁ କାହିଁପାଇଁ । ୭ ।
ଏହୁ ଗୁପତ ବେଶବନ ହୋଉ କନା ତୁମ୍ଭ
କର ଯା ଭ୍ରଶନ ତୁ ସୁବଧାନ କର୍ମ ଧେନ । ୮ ।
ବଇବସ୍ୱତ ମନୁ ପୁଚ୍ଛା କଲେ ଶୁଣ ହୋ ଯୋଗେଶ୍ୱର
ବୃହନ୍ନଳାଙ୍କ କଂପେ କୌନ୍ତେ ପଶିତେ ନ ଦିଲେ ଭିତର । ୯ ।

---

୯।୧  ଚଇତନ ପୁଚ୍ଛାକଲେ ଶୁଣ ହୋ ଯୋଗେଶ୍ୱର ।—
ଣ, ଖ, ଛ, ଥ, ଜ, ଦ, ଘ, ଠ

ଶୁଣ ଲୋ ଚଇତନ ମନୁ ଯେ ବୋଇଲେ
ଶମୀବୃକ୍ଷ ତଳେ ଯେ ପାଣ୍ଡବ ନିୟମ କଲେ । ୧୦ ।
ଭୀମ ଅର୍ଜୁନ ଯେ ନକୁଳ ସହଦେବ
ଗଙ୍ଗାରେ ହାଥ ଭରଣ ନିୟମ କଲେ ବୀର ଯେ ପାଣ୍ଡବ । ୧୧ ।
ଅଜ୍ଞାତବାସେଣ ଯେ ଗୁପତ ହୋଇଥିବ
ଅପାର ଦୋଷକଲେ ବରଷକୁ ସହିବା । ୧୨ ।
ଠାକୁର ଦ୍ରୌପଦୀଙ୍କ ଯେ କରିବେ ହିଂସାସ
ଅବଶ୍ୟ ଗୁପତେ ତାହାକଇଂ କରିବା ପ୍ରାଣେ ନାଶ । ୧୩ ।
ଅଥବା ଯେବେ ଆମ୍ଭେ ନୁଆରିବା ଁନାଶି
ଅବଶ୍ୟ ମରିବାଟି ଅନଳେଣ ଯାସି । ୧୪ ।
ବୋଲଇ ମନ ହୋ ଶୁଣ ତୁ ଚଇତନ
ବରଷର ଦୋଷ ଯେ ନ ଘେନଲେ ଧର୍ମନାନ । ୧୫ ।
ଅର୍ଜୁନ ଦେଖିଲା ଯେବେ ଯୁଧିଷ୍ଠିରଙ୍କ ଲଲାଟ
ଯେବା କ୍ଷଣକେ କ ଜୀବନ ପାଆନ୍ତା ବରଷ । ୧୬ ।
ତାହା ଜାଣି ଯୁଧିଷ୍ଠି ବଚ୍ଚରଲେ ହୃଦେ
ତେଣୁକରି ଭିତରେ ପଶି ନ ବଲେକ ହାଦେ । ୧୭ ।
ଉତ୍ତର କୁମାର ଯାଇଂ ପ୍ରବେଶ ଭିତରେ
ରଥଘେନି ବୃହନ୍ନଳା ରହିଅଛଇ ସିଂହଦ୍ୱାରେ । ୧୮ ।
ସ୍ତମ୍ଭରେ ଉତ୍ତର କୁମାର କରଇ ଦ୍ରୁଶନ
ନରେପିଣ ଗୃହାଂଇ ସେ କୋକ୍ତଂକର ବଦନ । ୧୯ ।
ପ୍ରଥମେ ବନ୍ଦିଲା କୋକ୍ତଂକ ଶ୍ରୀ ପଦ୍ମପାଦ ଗୋଟି
ଯେହ୍ନ ଚରଣ ତଳେଟି ଲକ୍ଷେ ରଜାଂକର ଶୀରଲୋଟି । ୨୦ ।
ତ୍ରଇଲୋକ୍ୟ ଠାକୁର ନାଥ ଜଗତ୍‌ଜୀବନ ଦେବସ୍ୱାମୀ
ଯେହ୍ନ ଚରଣ ତଳେ ଯେ ଶ୍ରୀବାସୁଦେବ ପରଣାମି । ୨୧ ।

---

୧୩।୧ ଯୁଧିଷ୍ଠିର ଦ୍ରୋପଦୀଙ୍କ ଯେ କରବ ହିଂସାସ ।—
ଣ, ଝ, ଞ, ଗ, ଘ, ଙ, ଛ, ଠ, ଜ, ଧ

ଯେବଣ ପାଦପଦ୍ମ ଦେଖି କ୍ଷମ ନୋହିଲା ବିରାଟ
ସେ ପାଦପଦ୍ମ ରଜ ଆସି ପଡ଼ିଲା ମମମସ୍ତ । ୨୨ ।
କେବଣ ଦିଗପାଳର ଯେ ଅଟଇ ମହା ଯଜ୍ଞଂଭୂମି
ତେଣୁ ସେ ଶ୍ରୀଚରଣ ପଡ଼ିଲା ଯେଉଁଥେ ସ୍ୱାମୀ । ୨୩ ।
ଯେ ବେନି ଚରଣର ଯେ ଦଶଇ ଅଙ୍ଗୁଷ୍ଠି
ଚନ୍ଦ୍ର ହୋଇ ବସିଲା ଲକ୍ଷେ ରାଜାଂକର ମୁକୁଟଗୋଟି । ୨୪ ।
ସୁସଞ୍ଚ ସୁବଳିତ ଆରମ୍ଭ ବେନିଜାନୁ
ଶୁଦ୍ଧ ସ୍ପଟିକ ଜାଣି ଯାହାର ବିରାଜଇ ତନୁ । ୨୫ ।
ପରିମଳ ସୁସଞ୍ଚ ଘଟଣ ତ୍ରିବଳୀ
ଯେ ଜାନୁ ଉପରେ ଯଜ୍ଞଂକାଳେ ବସିଥିଲେ ପାଞ୍ଚାଳୀ । ୨୬ ।
ଉସାଣିଲା ସୁବର୍ଣ୍ଣ ପଟ୍ଟ ପ୍ରାୟେ ଶୋଭିବନ କୁଞ୍ଚି
ଗମ୍ଭୀର ନାଭି ନିର୍ବାଣ ପରବାଳ ଗଞ୍ଚି । ୨୭ ।
ଆରମ୍ଭ ଆକ୍ରୁଷଣ ସ୍ୱାମୀର ବକ୍ଷସ୍ଥଳ
ସଂମସ୍ତଂକର ଚିନ୍ତା ଅଛି ଯେ ହୃଦୟ କମଳ । ୨୮ ।
ସୁରମ୍ୟ କମଳ ନାଳ ପରିଯେ ଯାହାର ବେନି କରଗୋଟି
ଯେ କର ନେଇଟାନ୍ତେ ନେଇଟଇ ନବସୃଷ୍ଟି । ୨୯ ।
ସ୍ୱାମୀ ଯୁଗାନ୍ତକ ଆରୋପଣ ଜାଣି ଯାହାର କଣ୍ଠତଟ
ଅନନ୍ତ କୋଟି ବ୍ରହ୍ମାଣ୍ଡର ଚିନ୍ତାମଣି ଘଟ । ୩୦ ।
ଉସାଣିଲା ମର୍କତ ଜାଣି ଅଧର ପ୍ରକାଶି
ଦ୍ୟାବା ପୃଥିବୀ ଯେଣେ ସିଦ୍ଧହୋଇ ଆସି । ୩୧ ।
ସ୍ୱାମୀ ଚନ୍ଦ୍ରବଂଶୀ ଲକ୍ଷଣ ଯେବଣ ବେନିଡୋଳ
ଦେଖିଲେ ସଦଯେ ସର୍ବୁଂକର ଚିରକାଳ । ୩୨ ।

---

୨୪।୧ ଚନ୍ଦ୍ର ହୋଇ ବସିଲା ଲକ୍ଷେ ରାଜାଂକର ଲଲାଟପାଟି ।— ଦ, ଗ, ଙ୍କ, ଜ

୨୭।୧ କୁଞ୍ଚ = କୁକ୍ଷି ।

୨୭।୨ ଗମ୍ଭୀର ନାଭି କୁନ୍ଦ ଘଟଣ ଜାଣି ଗଞ୍ଚି ।—କ

୩୧।୧ ସ୍ୱାମୀ ବିମ୍ବଫଳ ଜିଣି ଅଧରଗୋଟି ଯେ ପ୍ରକାଶି ।—ଗ, ଠ, ଙ୍କ

ସ୍ୱାମୀ ଯାବତ ଚନ୍ଦ୍ର ସେ ଦିବାକର ଜାଣି
କହ'ନ୍ତେ ଅନନ୍ତ ନୋହଇ ଦୂତବାଣୀ । ୩୩ ।
ଅଷ୍ଟାଙ୍ଗ ଶରୀର ଯାକ ନବେଶଇ ବରଷି
ଲଲାଟେଣ ତାମ୍ର କର୍ଣ୍ଣ ସଘାତେଣ ଫୁଟି । ୩୪ ।
ପୁଣ ପୁଣ ବନୋଗଇ ସେ ବିରାଟର ବଳା
କୋନ୍ତଂକର ମୁଖ ଗୃହଂ ପଦ୍ମପାଦେ ପ୍ରଣପତ୍ୟେ ଶୁଭିଲା । ୩୫ ।
ଉତ୍ତର ବନସୁ ଦେଖି ବଗୃରନ୍ତ କୋନ୍ତେ
ନଚଯେ ଅର୍ଜ ନ କହିଲ ଯେହାର ଭୁଲେ ଯାଆନ୍ତେ । ୩୬ ।
ତାହାର ନ କହିଲେ ଯେ ଆମ୍ଭର କେହ୍ନେ ତନ୍ତି
ଗୁପତ ଭନବନ ଅଛୁ ନାହିଂ ଅବା କହିଲ ଫାଲଗୁନ । ୩୭ ।
କୋନ୍ତେ ବୋଇଲେ ରେ ପରମ କଲ୍ୟାଣ ହୋଇ ଭୂଷୁ ସୁତ
ଲକ୍ଷ୍ମୀ ଅଳଂକୃତ ହୋଇ ତରାଅନ ହୋଜ ଗ୍ରତ । ୩୮ ।
ଉତ୍ତର କୁମାରକୁ ଦେଖି ବିରାଟ ଜଷତ ହୋଇଥିଲା
କୋନ୍ତଂକୁ ପ୍ରଣପତ୍ୟ ହୋଅନ୍ତେ ତାହାର ଶରୀର କମ୍ପିଲା । ୩୯ ।
ରାଗେ ଉତ୍ତରକୁ ପ୍ରତବାକ୍ୟ ଦିଅଇ ଦଣ୍ଡଧ'ରୀ
ପିତା କେ ମଉସା କେ ପୁଣ ନୁଆଣିଲୁ ବାଟ । ୪୦ ।
ସମରେ ଶତ୍ରୁକୁ ଜିଣି ଉନ୍ମୁକ ହୋଇଲୁ କରେ ବା'ବୁ
ତବ କର୍ତ୍ତବ୍ୟ ବାବୁ ଯେ କରୁ କଲୁ ସବୁ । ୪୧ ।
ଅଥଯେ ହୋଇଲା କରେ ତୋହୋର ମମାଷା
ପିତାକୁ ଅମାନନା କର ଓଲଟିଲୁ ମଉଷା । ୪୨ ।
ଉତ୍ତର କୁମର ବୋଇଲା ଶୁଣିମା ମହସସେ
କୋନ୍ତଂକର ଲଲାଟରେ ଦିଶଇ କସ ଘାଯେ । ୪୩ ।

---

୩୪।୨ ଲଲାଟ ଦିଶଇ ରକତ ତାମ୍ର ପ୍ରାୟେ ଫୁଟି ।—କ, ଣ, ଦ, ଗ, ଡ
୩୬।୧ ଉତ୍ତର କୁମାର ବନୋପ ଦେଖି ବିସ୍ମରନ୍ତ କୋନ୍ତେ ।—ପ, ଧ, ଭ
୪୧।୨ ଜ୍ୟେଷ୍ଠ କନିଷ୍ଠ ତ ଯେକତ କଲୁ ସବୁ ।—ଠ, ଘ, ଛ, ଖ

ବିରାଟ ବୋଇଲା ଶୁଣସି ରେ ନନ୍ଦନ
ତୋହୋର ବାହୁବଳେ ଜିଣି ଆଣିଲୁ କି ଗୋଧନ । ୪୪ ।
ଏହା ବୋଲନ୍ତି ବୃହନ୍ନଳା ଅଛଇ ଯାହାର ଭୁଲେ
ତାହାକୁ କି ପ୍ରମାଦ ହଇଲେକ୍ୟ ବାହୁ ଅଇଲେ । ୪୫ ।
ଯୁଧେଷ୍ଠି ଙ୍କ ସଭାପଣ୍ଡା ବୋଲି ମୁହିଂ ଯେ କଲି ଗଞ୍ଜଣେକ
କାଳେହେଂ ନ ଛାଡିଲା ଏହି ଭୃତ୍ୟର ସଭାକ । ୪୬ ।
ବାବୁ ଧାରଣା ଜନ ହୋଇ ଏହାର ପ୍ରକୃତି ବଡ ଲଘୁ
କେତେହେଂ ସହିବ ରେ ପୁଅ ନପୁଂସକ ସଳାଘୁ । ୪୭ ।
ପୁଣ ପୁଣ ସହିଲି ପାଞ୍ଚବାର ପରିଯନ୍ତେ
ପୁଣ ବୋଇଲା ଉତ୍ତର ପ୍ରତଗ୍ୟାଂ କି ବୃହନ୍ନଳା ଥାଆନ୍ତେ । ୪୮ ।
ବାବୁ ସହି ନୁଆରିଲି ରେ ଜଗୁବନ୍ଦନ ପୁଅଗେ ଟି
ସାଟଗେଣ ପ୍ରହାର ମୁଂ କଲଇଂ ପଶାକାଠି । ୪୯ ।
ଉତ୍ତର ବୋଇଲା ତାତ ଏହେନ୍ନେକ ଭୁମ୍ଭର ବୁଦ୍ଧି
ପାଦେ ପେଲିଇଲ ତାତ ଅମୂଲ୍ୟ ରତ୍ନନିଧି । ୫୦ ।
ସ୍ୱାମୀ ଯେତେବେଳେ ଗନ୍ଧର୍ବେ କୀଚକ ଅନେଶ୍ୱତ ଭ୍ରାଥ ମାରି
କୋନ୍ତେଂକର ନ ଥିଲେ କି ତୁ ଆସନ୍ତୁ ଜବୁରି । ୫୧ ।
ଜାଣୁନା କି ତ୍ରିଗର୍ତ୍ତ ସମରେ ଯେବଣ କଥା
ସମରେ ହାରି କେତେ ପାଇଲୁ ଅବସ୍ଥା । ୫୨ ।
ଏହନ୍ତୁ କୋନ୍ତ ପଣ୍ଡୁଂକର ଆଗ୍ୟାଂଏଣ କରି
ବଲ୍ଲଭ ବ୍ରାହ୍ମଣ ତୋତେ ଆଣିଲାକ ତାରି । ୫୩ ।
ସୀରବାହୁ ସମରେ ଯେହ୍ନ ଲଢରି ଆଣିଲାକ ତୋତେ
କଲା ଉପକାର ତାତ ପାସୋରିଲୁ କେମନ୍ତେ । ୫୪ ।

---

୪୮ । ୨ ପୁଣ ବୋଇଲା ଉତ୍ତର ପ୍ରତଗ୍ୟାଂ କି ବୃହନ୍ନଳା ଦେଖନ୍ତେ ।—
ଝ, ଗ, ଞ, କ, ଢ

୫୦ । ୨ ପାଦେ ପ୍ରହାରି କଲ ଅବ୍ୟସ୍ତ ବାରିନିଧି ।—
ଝ, ଘ, ଣ, କ, ଟ, ଢ, ଜ, ଖ

ହେ ପିତା ଯୁଧିଷ୍ଠିର ସମାନେ ଯାହାଙ୍କୁ କଲୁ ସେବା
କରଷକ ଭଗତ କ୍ଷଣକେ କଂଟପ ହାଙ୍ଗ ଲୁ ଭୃ ଅବା । ୬୫ ।
ଉତ୍ତର ବୋଇଲା ଭୃମ୍ଭେଁ ବନ୍ଦନ ଆସ୍ତାନୁ ଓହ୍ଲାଅଗସ୍ତେ
ପ୍ରଣପତ୍ୟ ହୋଇବା କୌନ୍ତେଂକର ପଦ୍ମପାସ୍ତେ । ୬୬ ।
ପୁତ୍ରର ଚରସ୍ତେ ରାଜା ବିଚାରଇ ହୃଦଗତେ
କେବଣ ମହାତ୍ମା ସ୍ତେ ଅବା ଅଛଇ ଗୁପତେ । ୬୭ ।
ହତକ୍ଷଣ ପୁତ୍ରକଇଂ ନାହିଂ ବଡ ସାନ
ରକ୍ଷ ବକ୍ଷ ହୋଇଲେ ହୋଅଇ ସେ କୃଷ୍ଣର ସମାନ । ୬୮ ।
ସମରେ ଉଦିତ ପୁତ୍ର ଅଭସ୍ତେ ହତକ୍ଷଣ
ସୁଭଗ୍ୟାଂ ପୁତ୍ର ହୋଇଲେ କରିବା ନାହିଂ କ ସବୁଗଣ । ୬୯ ।
ସ୍ତେତେ ବିଚାରଣ ସ୍ତେ ଆସ୍ତାନ କଲା ତେଜ୍ୟା
ପୁତ୍ରକଇଂ ଯେନଣ ପ୍ରଣପତ୍ୟ ହୋଇଲେକ ମହାରାଜା । ୭୦ ।
କୁଶ ହାଥ ହୋଇଣ କୌନ୍ତେ ବିରାଟକୁ କଲ୍ୟାଣ କଲେ ବାଞ୍ଛା
ନଚଳା ଲକ୍ଷ୍ମୀ ଶ୍ରେଗ୍ୟକର ଧର୍ମ ଦେବତା କରୁ ତୋତେ ରକ୍ଷା । ୭୧ ।
ଉତ୍ତର ବୋଇଲା ସ୍ୱାମୀ ସଦସ୍ତେ ଯେବେ ଶତ୍ରେ
ଅଣକୋପିତ ନାଥ ମୋହୋର ଯେନମା ଭଗତେ । ୭୨ ।
ଅନେକ ବିନସ୍ତ ବଚନେ ଯେ ବନ୍ଦସ୍ତନ୍ତ ଦେବ କୌନ୍ତେ
ପରମ ସାନନ୍ଦ ହୋଇଣ ଉତରକୁ ଗଲେ ପିତାପୁତ୍ରେ । ୭୩ ।
ଯାଆନ୍ତେ ବିରାଟ ପଚାରଇ ଗୋଧନ ହରଣ କଥା
ସତ୍ୟ କହାଇଣ ସେ କହିଲା ସବୁ ମିଥ୍ୟା । ୭୪ ।
ସେହି ଆସ୍ତାନେଣ ଯେ ଅଛନ୍ତି କୌନ୍ତେ ବସି
ଆହତ୍ୟ ଅସ୍ତଗଲା ପ୍ରବେଶ ହୋଇଲେକ ନଶି । ୭୫ ।
ହାରେ ରହିଥିଲା ଯେ.ଗାର ଧନୁର୍ଜସ୍ତେ
କୌନ୍ତେଂକର ସନ୍ନିଧେ ଦ୍ରଶନ ଯାଇଂ କସ୍ତେ । ୭୬ ।
କୌନ୍ତେ ବୋଇଲେ ବାବୁ ମହକୃତ୍ୟ କଲୁ
ଉତ୍ତର କୁମାର ଅଗ୍ରତେ କହାଇଂ କହିଲୁ । ୭୭ ।
ଅର୍ଜୁନ ବୋଇଲା ସ୍ୱାମୀ ଉତ୍ତର କୁମାରକୁ ସତ୍ୟ କରାଇଲା
ଗୋପ୍ୟାନ କସ ହୋଇବ ମୁଂ ପ୍ରତକ୍ଷେ ଯୁଦ୍ଧକଲ । ୭୮ ।

ଯୁଧିଷ୍ଠିର ଦେବ ବୋଇଲେ ତୁ କାହାର ବୋଲେ ଗଲୁ
ଅଜ୍ଞାତବାସ ନହାଇ ସରଇ ତୁ କଂପେ ଉଦିତ ହୋଇଲୁ । ୬୯ ।
ଅର୍ଜୁନ ବୋଇଲା ସ୍ୱାମୀ ତୁମ୍ଭେ ଶୁଣିମା ରାଜଦେବ
ମୁହିଂ କସ କରିବ ମୋତେ ପେଷିଲା ସହଦେବ । ୭୦ ।
ଆବର ଆଜ୍ଞାଂ ମୋତେ ହେଲେକ ଦ୍ରୋପଦୀ
ସୈନ୍ୟକରି ଯୁଦ୍ଧେ ମୁଂ ଗଲି ଗୋଧନ କଡ଼ି । ୭୧ ।
ଯୁଧିଷ୍ଠିର ବୋଇଲେ ତୁ ଯାଅ ସେହିକ୍ଷଣ
ଗୋଗୋଷ୍ଠେ ସହଦେବ ଅଛୁ ହକାରି ବେଗେ ଆଣ । ୭୨ ।
ଚଳଇ ବୃହନ୍ନଳା କୋଳନ୍ତଂକର ଆଜ୍ଞାଂସେ କରି
ଗୋଗୋଷ୍ଠୁ ସହଦେବକଇ ଆଣିଲଂ ହକାରି । ୭୩ ।
ସ୍ୱାମୀର ବଚନ ସେ ନଗ୍ରଧାରି ଶିରେ
ଚଳଇ ସହଦେବ କୋଳନ୍ତଂକ ଆସ୍ଥାନରେ । ୭୪ ।
ଅର୍ଜୁନ ବୋଇଲା ତୁ ସହଦେବ ଶୁଣ
ଠାକୁରଂକ ଆଜ୍ଞାଂ ତୁ ଆସିବୁ ସେହିକ୍ଷଣ । ୭୫ ।
ପରମ ସାନନ୍ଦେ ସେ ଚଳଇ ବେଗେ ମନ୍ତ୍ରୀ
କୋଳନ୍ତଂକୁ ଦ୍ରୁଶନ କଲା ପାଞ୍ଚଘଡ଼ି ରାତି । ୭୬ ।
ଆସ୍ଥାନର ତଳେ ଯାଇଂ ସନ୍ନିଧେ ପରଣାମି
କିମର୍ଥେ ଆଜ୍ଞାଂ ମୋତେ କହିବା ଦେବସ୍ୱାମୀ । ୭୭ ।
ଯୁଧିଷ୍ଠିର ଦେବ ତାହାଙ୍କୁ ବଚନ ପ୍ରକାଶି
ବାବୁ ଅଜ୍ଞାତବାସ ଲେଖନ୍ତେ କେତେଦିନ ଅଛୁ । ୭୮ ।
ସହଦେବ ବୋଇଲା ଧନୁ ଶୁକଳ ତ୍ରୟୋଦଶୀ ଦିନ
ହୋଇଲଇଂ ଗୋପ୍ୟାନ
ବରଷକ ପୂରି ହୋଇଲାକ ଆବର ଦଂଶଦିନ । ୭୯ ।
ଯୁଧିଷ୍ଠିର ଦେବେ ଯେ ସହଦେବକୁ କଲେ ବାଚ
ନିରଞ୍ଜନ ଆଜ୍ଞାଂସେ ଆମ୍ଭନ୍ତ ବରଷେ ତେରଦିନ ସଞ୍ଚ । ୮୦ ।

---

୭୯।୨ ବରଷେ ଅନ୍ତର ହୋଇଲାକ ଆବର ଦଶଦିନ ।—ଟ

ଯେତେବେଳେ ଅଧିକ ଦିନ ହୋଇଲା ଲେଖନ୍ତେ
ଆବର ସାତ ଦିବସ ଅଧିକ କହିଲୁ କେମନ୍ତେ । ୮୧ ।
ସହଦେବ କହଇ ଯେ ବଚନ ପ୍ରସିଦ୍ଧ
ସ୍ୱାମୀ କୃଷ୍ଣ କପଟ ମନ୍ତ୍ରୀ ଯେ ଶକୁନି ମନ୍ଦବୁଦ୍ଧି । ୮୨ ।
ବରଷକେ ବଢ଼ା ଯେ ଦଶଦିବସ ଯୁଗତେ
ଅଗ୍ୟାଂତବାସ ଲଗୁନ୍ତି ସେ ବଢ଼ା ଦିବସ ଗଣନ୍ତେ । ୮୩ ।
ବୋଲନ୍ତା ଅଗ୍ୟାଂତବାସ ଦଶଦିନ ଥାଉଂ
ଉଦିତ ହୋଇ ପାଣ୍ଡବେ ଅଇଲେ ଆଉ କାହୁଂ । ୮୪ ।
ତାହା'ର ବଚନ ତୁମ୍ଭେ ନୁଆରନ୍ତ ମେଣ୍ଟି
ପୁଣ ବନବାସେ ହୁଅନ୍ତ ବଡ଼ କଷ୍ଟ । ୮୫ ।
ସ୍ୱାମୀ ତୁମ୍ଭନ୍ତ ନ କହିଲ ଯେତେ ବଢ଼ା ଦଶ ଦିବସ
ତାହା ସରିଅଛୁ କହିଲ ସହଦେବ ସନ୍ଦେଶ । ୮୬ ।
କୋନ୍ତେ ବୋଇଲେ ହୋ ପଣ୍ଡିତ ମହାଗ୍ୟାଂତା
ସଭାସ୍ତେ ଅବଶ୍ୟ ଶକୁନି ଲଗୁନ୍ତି କରନ୍ତା । ୮୭ ।
ଧର୍ମ ଲଂଘିତ ଆମ୍ଭେ ନୁଆରନ୍ତୁ ବିଧାନେ
କାହୁଁଡି ଦ୍ୱାଦଶ ବରଷ ପୁଣ ପଶନ୍ତାଇ ବନେ । ୮୮ ।
ଭଲହିଂ ସେ କଲୁ ବାବୁ ପଣ୍ଡିତ ଗୁଣଗ୍ରାହୀ
ଯେତେବେ ଦୁଇ ଦିବସ ସରିଲେ ଅଭିଷେକ
ହୋଇବାଆମ୍ଭେ କାହିଂ । ୮୯ ।
ସୁସ୍ଥାନ ସୁଭୂମି ହୋଇବ ସୁତୀର୍ଥ ବାସ
ଯେମନ୍ତ ଆନ ଗୋଷ୍ଠିଏ ରେ ଠାବ କରିଆସ । ୯୦ ।
ଆମ୍ଭନ୍ତ ଅଭିଷେକ ତ ନ କରିବେ ଧୃତରାଷ୍ଟ୍ର
ଆମ୍ଭର ସମ୍ପଦ ଦେଖିଲେ ସେ କଉରବେ ହୋଇବେ
ବଡ଼ କଷ୍ଟ । ୯୧ ।

---

୮୧।୧ ଶକୁନି ଲେଖନ୍ତେଣ କହନ୍ତା ଯୁଗତେ ।—କ, ଦ

ଅଭିଷେକ ହୋଇ ଆମ୍ଭେ ଯିବା ସେଥୁଂ ନୃପେ
ଇନ୍ଦ୍ରପ୍ରସ୍ଥ ରାଜ୍ୟ ମାଡ଼ କରିବାକ ଧାପେ । ୯୨ ।
ଆବର ଧୃତରାଷ୍ଟ୍ର ପୁଅନ୍ତ ନାହିଂ ମୋର ଉପ୍ରୋଧ
ଲୁଣ୍ଡନ ସୁଦଯ୍ୟା ସେବେ ଆରମ୍ଭ ନ ଯୁଦ୍ଧ । ୯୩ ।
ସହଦେବ ବୋଇଲେ ଦେବ ସେ ତୋହୋର ସତ୍ୟ
ଶମୀବୃକ୍ଷ ତଳେ ଦେବ ବହଇ ମହାଙ୍ଗାର୍ଥ । ୯୪ ।
ମସ୍ତଦେଶ ମହଦେଶ ପୂର୍ବ ପଶ୍ଚିମ ବେନ
ମଧ୍ୟେ କଉଶିକ ନଦୀ ବହଇ ଉତ୍ତର ବାହିନୀ । ୯୫ ।
ମହା କଳପ ବୃକ୍ଷ ଶିଂଶୁପା ଶମୀଶିଖା
ପ୍ରତକ୍ଷରେ ଅଛଇ ସେ ହରିହର ବେନ ସାଖା । ୯୬ ।
ମହା ପବନ ରାଜ୍ୟ ସେ ମହଦେଶ ଅଛଇ
ନଗ୍ର କୋଡ଼ି ଯାହାର ଦ୍ୱାଦଶ ଗୋଗୋଷ୍ଠଇ । ୯୭ ।
ଦୁହାଂକ ଦୁଇପଦ୍ମ ଅଛଇ ଯାର ଗାଈ
କରନ୍ତ ବାରଲକ୍ଷ ମଣ୍ଡୁଳେ ବତ୍ସା ମାଈ । ୯୮ ।
ପଞ୍ଚ ଅଶ୍ୱବ୍ରତେ ଅଣ୍ଡିର ଷଣ୍ଢ଼ବତ୍ସା
ବିହରନ୍ତି ଗୋଧନେ ଯେ ଆପଣା ସ୍ୱଇଚ୍ଛା । ୯୯ ।
ଦୁହିଂବାର ବେଳେ ଚରେ ଚରେ ଭୂମିକି ପକାଇ
ସାତଖଣ୍ଡ ପରଯନ୍ତେ ରାଜ୍ୟ ବୋଡ଼ି କ୍ଷୀରନଦୀ ବହଇ । ୧୦୦ ।
ସେତେ ଗୋରୁଙ୍କର ଦେବ ପଡ଼ଇ ପାଦରଜ
ସେହେନ୍ତେକ ପବନସ୍ଥାନ ସେ ବିରାଟ ମହରାଜ୍ୟ । ୧୦୧ ।
ସ୍ୱାମୀ ନାନା ଜୀବଜନ୍ତୁ ବ୍ରତନ୍ତି କ୍ଷୀରପାନେ
ସେମନ୍ତ ପବନ ରାଜ୍ୟ ନାହିଂ ସେ ମଧ୍ୟଭୁବନେ । ୧୦୨ ।
ଗୋମତୀ ନାମେଣ ଯେ ବହଇ କ୍ଷୀରନଦୀ
ସେ ଭୁବ ମାଣ୍ଡଲେ ଦେବ ସକଳ କାର୍ଯ୍ୟ ସିଦ୍ଧି । ୧୦୩ ।
ଯୁଧିଷ୍ଠିର ବେଳେ ବୋଇଲେ ହୋଇଲା ଶୁଦ୍ଧସ୍ଥାନ
କେବଣ ବିବରକୁ ଯୋଗାଇ ଅନକୂଳ ବିଧାନ । ୧୦୪ ।

---

୧୦୨। ସେମନ୍ତ ପବନ ରାଜ୍ୟ ନାହିଂ ତ୍ରିଭୁବନେ ।—ଅ, ଘ, ଜ, ଝ

ଶୁମୂରେ ସହଦେବ କହଇ ପ୍ରଣାମି
ଯେତ ମକର ମାସ ପଡ଼ଇ ଦେବସ୍ୱାମୀ ।୧୦୫।
ମକର ମାସ ଶୁକଳ ପକ୍ଷ ତିଥି ଯେ ଚଉଠୀ
ଅର୍କବାର ରେବତୀ ନକ୍ଷତ୍ର ଚନ୍ଦ୍ରଂ ଘଟି ।୧୦୬।
ତଇତୁଲ୍ୟ ନାମେ କରଣ ଶୁଭନାମେ ଯୋଗ
ମକର ସଂକ୍ରାନ୍ତିକ ସତାଇଶ ଦିନ ଭୋଗ ।୧୦୭।
ରାତ୍ର ଦ୍ୱାଦଶ ଦଣ୍ଡକୁ ଶୁଭଲଗ୍ନ ବେଳା
ଅମୃତ ଯୋଗରେ ଦେବ ଶୁଭ ଅନୁକୂଳା ।୧୦୮।
ସହଦେବ କହଇ ସେ ମନ୍ତ୍ରୀ ଚୂଡ଼ାମଣି
ପରମ ସାନନ୍ଦ ହୋଇଲେ ଯୁଧିଷ୍ଠି ଦେବେ ଶୁଣି ।୧୦୯।
ଯୁଧିଷ୍ଠି ଦେବେ ବୋଇଲେ ଶୁଣ ରେ ଅର୍ଜୁନ
ଦ୍ରୁପଜାକ ଘେନଯାଅ ଶମୀବୃକ୍ଷ ମୂଳକୁ ପରଦିନ ।୧୧୦।
ସହଦେବକୁ ବୋଇଲେ ନକୁଳକୁ ନେମୁଟି ବାବୁ
ବେଷୁଅ ଘରକୁ ଆମ୍ଭେ ଭୀମସେନକୁ ଘେନିଯିବୁ ।୧୧୧।
ଶୁଣିଣ ସାନନ୍ଦ ଯେ ହୋଇଲେ ବେନଭ୍ରାତେ
ଯେ ଯାହାର ସ୍ଥାନକୁ ଚଳିଲେ ତୁରିତେ ।୧୧୨।

।୬୮୦୬।

# ଶମୀବୃକ୍ଷ ତଳେ ଯୁଧିଷ୍ଠିରଙ୍କର ଅଭିଷେକ ଓ ବଳଦେବଙ୍କ ଅପମାନ

ସନ୍ନ୍ୟାସୀ ରୂପେ ବିରାଟଙ୍କୁ ଖେଳାବନ୍ତି ପଶା
ସୂପକାର ରୂପେ ବୃକୋଦର ପୂରେଇ ମନାଷା । ୧ ।
ନୃତ୍ୟ ଆରମ୍ଭେ ତ ରହିଲେ ଧନୁର୍ଜୟେ
ଥାନପାଳ ରୂପେ ଯେ ମାଦ୍ରୀର ତନୟେ । ୨ ।
ଗୋପାଳ ଚୂଡ଼ାମଣି ଯେ ମନ୍ତ୍ରୀ ତନ୍ତିପାଳ
ସଇରନ୍ଧ୍ରୀ ରୂପେ ପାଞ୍ଚାଳୀ ବଞ୍ଚନ୍ତି ଦିନକାଳ । ୩ ।
ଉତ୍ତରା ବାଳୀ କୁଣ୍ଡାଇ ବସ୍ତ୍ର ମାଗିଥିଲା
ଅନେକ ରତ୍ନବସ୍ତ୍ର ଅର୍ଜୁନ ତାକୁ ଦିଲା । ୪ ।
ଉତ୍ତରା ବାଳୀକି ଦିଲା ଆବର ଉତ୍ତର କୁମାର
ରଥ ପାତାଙ୍ଗମାନ ଯେ ରତନ ଅଳଂକାର । ୫ ।
ତଦନ୍ତରେ ଉତ୍ତର କୁମାର ଯେ ବିନୟେ ଯୁଧିଷ୍ଠିରଙ୍କ
ଅଜ୍ଞାତବାସ ପାରକଲେ ତହିଁ ଦିନ ଲେଖି । ୬ ।
ମକର ଶୁକଳପକ୍ଷ ଯେ ଷଷ୍ଠୀର ଦିନ
କୋନ୍ତେ ବିଜୟେ କଲେ ଗୋଷ୍ଠୁଅ ଭୁବନ । ୭ ।
ଶ୍ରୀମସେନକଇଁ ଘେନଣ ନଶାକାଳେ
ବିଜୟେ ଧର୍ମନାନ ଯେ ଶମୀବୃକ୍ଷର ତଳେ । ୮ ।
ଦିବସ ଅବସାନେ ପାଞ୍ଚାଳୀକି ଘେନ
ଶମୀବୃକ୍ଷ ତଳେ ଯେ ବିଜୟେ ଫାଲଗୁନ । ୯ ।
ନକୁଳ ସହଦେବ ହୋଇଲେ ଏକସଙ୍ଗ
ଶମୀବୃକ୍ଷ ତଳେ ପ୍ରବେଶ ହୋଇଲେ ବେଗ । ୧୦ ।
ଯୁଧିଷ୍ଠିର ଦେବେ ବୋଇଲେ ଶୁଣ ଫାଲଗୁନ
କେମନ୍ତେ ବିଜେ କରିବେ ବ୍ୟାସ ମହାମୁନ । ୧୧ ।

ସହଦେବ ବୋଇଲା ସେ ଅଛନ୍ତି ବନଗଣି
ଋଷିମାନେ ପ୍ରବେଶ ହୋଇବେ ଯେତେକ୍ଷଣି । ୧୨ ।
ସହଦେବ କହନ୍ତେ ଯେ ବିଜୟେ ବେଦବ୍ୟାସେ
ଷାଠିଏ ସହସ୍ର ଶିଷ୍ୟ ଅଛନ୍ତି ତାହାଂକ ପାଶେ । ୧୩ ।
ଲକ୍ଷେକ ବ୍ରାହ୍ମଣ ଘେନି ଧଉମ୍ୟ ପୁରୋହିତେ
ପାଞ୍ଚସହସ୍ର ଶିଷ୍ୟ ଘେନି ବିଜେ ବିଶ୍ୱାମିତ୍ରେ । ୧୪ ।
ତେନଲକ୍ଷ ଶିଷ୍ୟ ଘେନି ବିଜେ ମାର୍କଣ୍ଡେ
ଅଷ୍ଟବ୍ରତେ ଶିଷ୍ୟ ଘେନି ବିଜୟେ ବିଭାଣ୍ଡେ । ୧୫ ।
ଲକ୍ଷେ ଶିଷ୍ୟ ଘେନଣ ଚଳଲେ ଗାଗ୍ରବେ
ପାଞ୍ଚଲକ୍ଷ ଶିଷ୍ୟ ଘେନି ବିଜୟେ ବଶିଷ୍ଠ ସୁଦେବେ । ୧୬ ।
ଅଗସ୍ତିଂକ ତୁଲେ ଯେ ପାଞ୍ଚଲକ୍ଷ ବାଳଖିଲା
ବିଜୟେ ମହାତମା କଳହପ୍ରିୟ ନାରଦ ମହାଭୋଳା । ୧୭ ।
ବାମଦେବ ସୁମନ୍ତକ ଗାଲବ ଉତଂକ
ଗଉତମ ଭରଦ୍ୱାଦଶ ଦୁର୍ବାସାଂକ ସାଙ୍ଗ । ୧୮ ।
ପଉଲସ୍ତ୍ୟ ପରାଶର କଣ୍ଡୁ ଶାଯେନ୍ତନୁ
ଜମ୍ବୁମୁନି ବାଲ୍ମୀକି ପଉଲସ୍ତ୍ୟଂକ ତନୁ । ୧୯ ।
ଯେତହାଂକର ମୁଳେ ଯେ ଅନେକ ମହର୍ଷି
ଶମୀବୃକ୍ଷ ତଳେ ସମସ୍ତେ ବିଜେକଲେ ଆସି । ୨୦ ।
ଦିଗପାଳମାନେ ଯାଇଂ କହିଲେ ଜନ୍ମୋଭେଷି
ସୁଧର୍ମାସଭା ଇନ୍ଦ୍ର ଦିଲେକ ଆଣି ସର୍ବସିଦ୍ଧି । ୨୧ ।
ଆହୋ ଯେବଣ ସଭାଯେ ତ୍ରଇଲୋକ୍ୟ ବସିଥିଲେ
ଅର୍ଦ୍ଧକକୁ ନ ଅଣ୍ଟଇ ବିଶ୍ୱରୂପ ଧଇଲେ । ୨୨ ।
ସେ ସଭା ଘେନଣ ସେ ଅଇଲା ବିଶ୍ୱକର୍ମା
ଶମୀବୃକ୍ଷ ତଳେ ଆଣି ଥାପିଲେ ସୁଧର୍ମା । ୨୩ ।
ଯେତେବେଳେ ଆସ୍ଥାନକୁ ଅଇଲା ସଭାଗୋଟି
ଅମର ବିଳାସୁଣୀ ଅଇଲେ ଚଉଷଠି କୋଟି । ୨୪ ।
ମୃଦଙ୍ଗ ତାଳ କଂସାଳ ଶରଗୁଣା ଅଧ ଟି
ଗନ୍ଧର୍ବ ପୁରୁଷେ ଅଇଲେ ଲକ୍ଷେ ଚଉଷଠି । ୨୫ ।

ସାରଙ୍ଗସ୍ୱର ମଣ୍ଡଳ ସପତସ୍ୱର ବେଣୀ
ଓଂକାର ତାଣ୍ଡବ ଯେ ଆରମ୍ଭିଲେ ଖଞ୍ଜଣୀ । ୨୬ ।
ଅଇରାବତ ପିଠିରେ ଅମରଗଣ ସେନ
ଶମୀବୃକ୍ଷ ତଳେ ଯେ ବିଜେ ସହସ୍ରଲୋଚନ । ୨୭ ।
ଆବର୍ତ୍ତକ ସମ୍ବର୍ତ୍ତକ ଦ୍ରୋଣ ଯେ ପୁଷ୍କର
ସେମାନେ ଲାଗିଲେ ଆସି ଶମୀବୃକ୍ଷ ତଳର । ୨୮ ।
ରତ୍ନ ଯୋଗାଡ଼ ସେନଗଣ ଅଇଲେ କୁବେର ଅଳକାପତି
ବାସବର ସନ୍ନିଧେ ସେ ବିଜେକଲେ ଧାଇଁ । ୨୯ ।
ଦେବବାଦ୍ୟ ଦୁନ୍ଦୁଭି ବାଜଇ ଯେତେବେଳେ
ନାରାୟଣ ପୁଚ୍ଛାକଲେ ଦେବ କାମପାଳେ । ୩୦ ।
ସ୍ୱାମୀ ଯୁଧିଷ୍ଠିର ଠାକୁର ଅଭିଷେକ ଶମୀବୃକ୍ଷ
ଦିଗପାଳମାନଙ୍କ ସେନ ବିଜେ ସହସ୍ରାକ୍ଷ । ୩୧ ।
ଅଭିଷେକ ଦେଖିବା ଚାଲ ଯିବା ଦେବହଳୀ
ବ୍ରହ୍ମା ଇନ୍ଦ୍ର ରୁଦ୍ର ଦିଗପାଳ ଅଛନ୍ତି ତହିଁ ମିଳି । ୩୨ ।
ଧର୍ମ ନନ୍ଦନଙ୍କ ଦେଖିଲେ ଅଭିଷେକ
ଅନେକ ଜନ୍ମର ଖଣ୍ଡଣ ହୋଇବ ମହାପାତକ । ୩୩ ।
ଶୁଣି ଯୋଗେଶ୍ୱରଙ୍କ ପୁରୁଷ ସେ ସଦା ମନ୍ତହେଳ
ତାଳଧ୍ୱଜ ରଥେ ବିଜେକଲେ ଦେବହଳୀ । ୩୪ ।
ନନ୍ଦ ବସୁଦେବ ଉପନନ୍ଦ ଉଗ୍ରସେନ ଉଦ୍ଧବ ଅକ୍ରୂର ପ୍ରସନ୍ନଜିତ
ବିଜୟେ ମହାଗାରେ ଯେ ଯାହାର ରଥ । ୩୫ ।
ଯଦୁବଂଶ ଭୋଜବଂଶ ବୃଷ୍ଣିବଂଶ ହଇହେୟବଂଶ
ଅନ୍ଧକବଂଶ ଚହ୍ଲାଣବଂଶ କୁକୁରବଂଶ ଅଶେଷ । ୩୬ ।
ଯେ ସନେକେ ସାତବଂଶ ହୋଇଲେ ବିଶେଷ
ରଥେ ରଥେ ଚଢ଼ି ସର୍ବେ ହୋଇଲେ ପ୍ରବେଶ । ୩୭ ।
ଯେହ୍ନାଂକର ମୂଳେ ଛପନକୋଟି ଗାରେ
ବିଜେକଲେ ଯେ ଯାହାର ବାହନ ପିଠରେ । ୩୮ ।
ରୁକ୍ମିଣୀ ଜମ୍ବୁବତୀ ସତ୍ୟା କାଳନ୍ଦୀ ତୁଳସୀ
ସତ୍ୟଭାମା ଲକ୍ଷ୍ମଣାଭଦ୍ରା ଯେ ଅଷ୍ଟ ପାଟବଂଶୀ । ୩୯ ।

ଯେତେହାଂକର ମୂଳେ ଯେ ବନ୍ଧଶସହସ୍ର ବାଳୀ
ବଇନେଣ ପିଠିରେ ବଜେ ସବୁଂକର ହାଥରେ ଅର୍ଦ୍ଧଥାଳୀ । ୪୦ ।
ଲକ୍ଷେ ଷାଠିଏ ସହସ୍ର ଅଶୀଏ ବାସୁଦେବଂକ ପୁଣ
ଯେତେହାନ୍ତ ଘେନ ଖଗେନ୍ଦ୍ରର ପିଠିରେ ବଜଏ ଜଗଭୂତ । ୪୧ ।
ପବନନ୍ତୁଂ ବେଗେ ଚଳଇ ଦ୍ୱାରକାଙ୍କୁ ଥାଠ
ଗ୍ରଣ ତଉଦ ଦଣ୍ଡରେ ହୋଇଲେ ଯାଇଂ ଭେଟ । ୪୨ ।
ଲାଗିଅଛୁ ଯେ ଅବଚ୍ଛନ୍ନେ ଦୂଳା
ଆବଚ୍ୟ କଇଣ କ ଦଶିଲ୍ଲକ କୋଟିମାଳା । ୪୩ ।
ବାଜଇ ଦମାଲୁ ଯେ ଦୁନ୍ଦୁଭି ନଶାଣ
ଭେରୀ କମ୍ବୁ କାହାଳୀ ଯେ ଯନ୍ତ୍ରିତ ନଦ୍ୱାଣ । ୪୪ ।
ବଜ୍ରଘୋଷ ଟମକ ଦମା ଯେ ବାଜନ୍ତି
ମହୁରୀ ଦୋଷରୀ ଯେ ଅଳାବେଣି ଖଣ୍ଡି । ୪୫ ।
ଅନେକ ବାଦ୍ୟମାନ ଯେ ବାଜଇ ଗହନ
ପୃଥୀ ହେଲ ଘେନଇଂ ଯେ କମ୍ପଇ ସର୍ବ ଭୁବନ । ୪୬ ।
ଯୁଦ୍ଧେଷ୍ଟି ଦେବେ ବଜେ ଯେ ବ୍ୟାସଂକର କୋଳେ
ପାଞ୍ଚଯୋଜନ ଥାଜୁଂ ଯେ ଦେଖିଲେ କୃଷ୍ଣ ଜାମପାଳେ । ୪୭ ।
ଅନେକ ସାନନ୍ଦ ଯେ ଦ୍ୱାରକାର ବାଳୀ
ଆସ୍ଥାନେ ଦେଖିକର ହେଲେ ହୁଳହୁଳ । ୪୮ ।
ଶମୀବୃକ୍ଷ ତଳକୁ ଶୁଭିଲ୍ଲ ଶବଦ ଗହନ
କସ ଶବଦ ବୋଲି ପୁଛିଲେ ମଘବାନ । ୪୯ ।
ଦେବସଭା ମଧ୍ୟରେ ସେ ନାରଦେ କହିଲେ
ଦ୍ୱାରକାର ସମ୍ପଦ ଘେନ ରାମକୃଷ୍ଣେ ବଜେକଲେ । ୫୦ ।
ଯେତେ ଦୁରୁଂ ଯୁଦ୍ଧେଷ୍ଟିଂକ ଦଶିଲ୍ଲ ଆସ୍ଥାନ
ଗରୁଡ ପିଠିରୁ ବେଗେ ଓହ୍ଲାଇଲେ ଜନାର୍ଦ୍ଦନ । ୫୧ ।

---

୪୨।୨ କଣି ବୃଦଦଣ୍ଡଠାରେ ଯାଇଂ ଶମୀବୃକ୍ଷ ମୂଳେ ଭେଟ ।—
ଙ, ଜ, ଘ, ଦ, ଣ, କ, ଥ

୪୭।୧ ଯୁଦ୍ଧେଷ୍ଟ ଦେବେ ବଜେ ଯେ ବାସବଂକର କୋଳେ ।—ଚ, ଠ

ଲକ୍ଷେ ଷାଠିଏଁ ସହସ୍ର ଅଶୀଏଁ ଯେ ସୂତ
ଆଲଟ ଗୃମର ଧରିଅଛନ୍ତି ଏଁ ସମସ୍ତେ ଯେ ହାଥ । ୫୨ ।
କନ୍ତଶସହସ୍ର ଶତେ ଅଷ୍ଟ ପାଟବଂଶୀ
ଶ୍ରୀକରେ ଅର୍ଘ୍ୟଘେନ ସେ ବିଜେକଲେ ଆସି । ୫୩ ।
ସନ୍ନଦ୍ଧେ ବିଜେକଲେ ଦେବ ବନମାଳୀ
ପଦ୍ମରେ ଯାଇଂ ଶ୍ରୀକୃଷ୍ଣ କରନ୍ତି ନିଜସ୍ଥଳ । ୫୪ ।
ଆନନ୍ଦେ ଅନେକ ଯେ ପ୍ରାର୍ଥନା ବାକ୍ୟ ବୋଲି
ସ୍ଥମୁରେ ନାରାୟଣ ଶୁଭିଲେ ଗଡଘାଲି । ୫୫ ।
ଦେଖିଣ ଯୁଧିଷ୍ଠିର ଦେବ ଉଠିଲେ ଧାଡିକାରେ
ଶ୍ରୀଭୁଜେ ନାରାୟଣଂକୁ ତୋଳି ଧଇଲେ ଯାଇଂ କୋଳେ । ୫୬ ।
ଦିଗପାଳମାନେ ସମସ୍ତେହେଂ ଉଠି
ପୂଜାବିଧି କଲେ ଶ୍ରୀନାରାୟଣ ପଦ୍ମପାଦ ଗୋଟି । ୫୭ ।
ଶ୍ରୀ ସଂକର୍ଷଣଂକ ଚରଣେ ଧର୍ମେ କଲେ ପୂଜା
ଅନେକ ବିନୋଦ୍ମୀ ସେ କଲେ ଧର୍ମରଜା । ୫୮ ।
ମୁନିଜନମାନେ କରନ୍ତି ବେଦଧ୍ୱନି
ଅନେକ ଅପଛରାମାନେ କଲେ ଯେ ହୁଳହୁଳି ଧ୍ୱନି-
କରେ ଅର୍ଘ୍ୟ ଘେନି । ୫୯ ।
ଶ୍ରୀଜଗନ୍ନାଥଂକ ପୁତ୍ରମାନେ ଚରଣେ ପରଣାମି
ପ୍ରତକ୍ଷେ ନାରାୟଣ ଅନୁଗ୍ରହ ନାଥ ସ୍ୱାମୀ । ୬° ।
ଦେବସଭାରେ ଉତ୍ସବ ଦେଖିଣ ବିଧାନେ
ମଙ୍ଗଳ ବାହାନେ ପିଟା ବିଜେ କଲେକ ଅନ୍ତର୍ଦ୍ଧାନେ । ୬୧ ।

---

୫୯।୨ ଅପଛରାଏଁ ହୁଳହୁଳି ଦ୍ୟନ୍ତି କରେ ଅର୍ଘ୍ୟଥାଳି ଘେନି ।—
ଙ, ଣ, ଅ, ଘ

୬୧।୧ "ଦେବସଭାରେ ଉତ୍ସବ ଦେଖିଣ ବିଧାନେ"
ପରେ 'ଦ, ଜ' ପୋଥିରେ ଅଧିକା ପାଠ :—
ସହଦେବ ନକୁଳ ଯେ ଭୀମ ଅରଜୁନ
ଜଗନ୍ନାଥଂକ ପଦ୍ମପାଦେ ପ୍ରଲମ୍ବିତ କଲେକ ବନ୍ଦନ ।

[ ଅବଶିଷ୍ଟାଂଶ ପରପୃଷ୍ଠାରେ ]

ପଞ୍ଚାଶକୋଟି ସେ ଯେ ସଙ୍ଗରେ ବାଲଖିଲା
ବେଦବର ନାଥ ଯେ ବିଜୟେ ଶୁଦ୍ଧବେଳା । ୬୨ ।
ବୃଷଭ ଆରୋହି ସେ ବିଜେକଲେ ଧୂର୍ଜଟି
ରୁଦ୍ରଗଣ ଭୃକୁଟୀଗଣ ଯେବେ ଚଉଦକୋଟି । ୬୩ ।
ମୟୂରବାହାନେ ଯେ ବିଜେ ଷଡ଼ାନନ
ଗଣପତି ବିଜେକଲେ ଈନ୍ଦୁର ବାହାନ । ୬୪ ।
ଗ୍ରହଗଣ ସହିତେ ବିଜୟେ ନିଶାପତି
ଶମୀବୃକ୍ଷ ଶିଖରେ ବିଜୟେ ଚଣ୍ଡି । ୬୫ ।
ଦାରୁକ ବିଜେକଲେ ନନ୍ଦୀଘୋଷରଥ ଘେନି
ସୁଭଦ୍ରା ଅଭିମନ୍ୟୁ ବସାଇଣ ବେନି । ୬୬ ।
ଅଗ୍ନି ଆରୋପଣ କଲେ ବଶିଷ୍ଠ ଉଦ୍ଦାଳକ ଦୁର୍ଭାସା ଅଗସ୍ତି
ସ୍ୱାହା ସ୍ୱଧା ମହାମନ୍ତ୍ରେଣ ପାଡ଼ିଲେ ଆହୂତି । ୬୭ ।
ପ୍ରାଣତ୍ୟାଜ ବଣ୍ୟାନର କାଳ୍ୟନଳ ଜାଲା ଯେ ପିଙ୍ଗଳ
ଦାବାନଳ ପବନା ଅନଳନ୍ତେହିତବର୍ଣ୍ଣ ଅନଳ । ୬୮ ।
କ୍ରୋଧଅନଳ ବିଶାଖାଅନଳ ଯେ ମାନଂକୁ ଘେନି
କୃଷ୍ଣମେଘାଅନଳ ଯେ ହି ଦଶ ବହ୍ନି । ୬୯ ।

---

[ ପୂର୍ବପୃଷ୍ଠାର ପାଠାନ୍ତର ]

ସୁରଭିଇଂକ କୋଳକରି ଧଇଲେ ଶ୍ରୀହରି
ମୁଖେ ଚୁମ୍ବନଦେଇ ଶ୍ରୀଭୁଜେ ଧରି ଭିଡ଼ି ।
ସନ୍ନିଧେଣ ଥିଲେ ଯେ ଦେବ ବଳଦେବ
ତାଂକ ପାଦେ ପ୍ରଲମ୍ବିତ ଗୃହ ଯେ ପାଣ୍ଡବ ।
ବସୁଦେବ ଉଗ୍ରସେନ ନନ୍ଦ ଉପନନ୍ଦ
ସମସ୍ତେ ମାନ୍ୟପାଇ ହୋଇଲେ ସାନନ୍ଦ ।

୬୩।୨ ରୁଲେଣ ରୁଦ୍ରଗଣ ଯେବେ ଚଉଦକୋଟି ।—ଗ, ଙ, ଝ

୬୫।୨ ଶମୀବୃକ୍ଷ ତଳେ ଆସି ବିଜୟେ ଚଣ୍ଡି ।—ଜ, ଗ, ଠ, ଘ

ଜାତ ଅନଳ ବଜସ୍ଥଳ ଅନଳ ଶ୍ୱେତ ଅନଳ ଗାଲିଲେ ଆହୂତି
ଆଗେ ଯାଗନଳ ହୋଇଲେ ବ୍ୟାସ ମହାଯଜ୍ଞ । ୭୦ ।
ପାରେଶ୍ୱର ବିଶ୍ୱାମିତ୍ର ବାଲମ୍ଭିକ ଅଗସ୍ତି
ବ୍ରହ୍ମା ବରଣ ହୋଇଲେ ମାର୍କଣ୍ଡ ମହାଯଜ୍ଞ । ୭୧ ।
ପ୍ରସନ୍ନ ନାରାୟଣ ହନକର ବରଞ୍ଚି
ଅଭିଷେକ ନିମନ୍ତେ ହେଲେ ଅଶ୍ୱ ରଞ୍ଚି । ୭୨ ।
ଇନ୍ଦ୍ର ଦେବତା ହେଲେକ ଅଇରାବତ ହସ୍ତୀ
ଅନେକ ଅଳଂକାର ମଣ୍ଡିଲେ ଦୁଷ୍ମନ୍ତ । ୭୩ ।
କନେକ ସିଂହାସନେ ବଜେ ଯୁଧିଷ୍ଠି ଦଣ୍ଡଧାରୀ
ହବ୍ୟ ଅଳଂକାରମାନ ଆଭରଣ କରି । ୭୪ ।
ଯୁଧିଷ୍ଠି ଭୀମ ଅର୍ଜୁନ ନକୁଳ ସହଦେବ
ରତ୍ନ ମଣି ମୁକୁଟ କୁବେର ହେଲକ ଆରମ୍ଭ । ୭୫ ।
ତାଡ ଝୁମ୍ପା ସରଳ ବାହୁଟି ଜଗଦଳା
ଶିରରେ ଶିରଭୂଷା ମୁକୁଟ ହସ୍ତେଦଣ ରତ୍ନମାଳା । ୭୬ ।
ଅମରାଧି ନାଥଂକର ଯେତେକ ଅଭିଷେକ ଯୋଗାଡ ଅଳଂକାର
ସମସ୍ତ ଆଭରଣ କଲେ ନେଇ ଯୁଧିଷ୍ଠିଂକ ଶରୀର । ୭୭ ।
ପବନ ଦେବତାର ଅଭିଷେକ ଯୋଗାଡ ଯୁଗତ
ଆପଣେ ଆଭରଣ କରଇ ଭୀମସେନର ଗାତ୍ର । ୭୮ ।
କୁବେର ଦେବତାଂକର ଯେତେ ଅଭିଷେକ ବିଧାନ
ସମସ୍ତ ଆଭରଣ କଲେ ନକୁଳ ଦେହେଣ । ୭୯ ।
ନାରାୟଣ ଦେବତାଂକ ଯେତେ ଅଭିଷେକ ରଚନ
ଅର୍ଜୁନ ଶରୀରେ ତାହା ଆଭରଣ କଲେ ଜନାର୍ଦ୍ଦନ । ୮୦ ।
ଅଶ୍ୱିନୀ କୁମାରଂକର ଯେତେ ଅଭିଷେକ ଯୋଗାଡ ଆଣି
ଶରୀରେ ଭୂଷଣ କଲେ ମନ୍ତ୍ରୀ ଚୂଡାମଣି । ୮୧ ।
ଅନେକ ଅଳଂକାର ଘେନଣ ଦେବୀ ଶଚୀ
ଦ୍ରୌପଦୀଂକ ଶରୀରେ ଆଭରଣ କଲେ ସଞ୍ଚି । ୮୨ ।

---

୭୪।୨ ହବ୍ୟ ଅଲଙ୍କାରମାନ ଅଲକା ନାଥ ଫଭର ( ଶ, କ )

ଶ୍ରୀକରେ ଦେଲା ଅମଳାଣ ବସ୍ତ୍ର ପାରିଜାତ ପୁଷ୍ପମାଳ
ଯୁଧିଷ୍ଠିରଙ୍କ ଶରୀରେ ଆଭରଣ କଲେକ ଆଖଣ୍ଡଳ । ୮୩ ।
ବୈଜୟନ୍ତୀମାଳା ଚନ୍ଦ୍ର କିରଣର ମଣି
ଶଶଧର ଦେବତା ଆଭରଣ କଲେ ଆଣି । ୮୪ ।
ସ୍ୟମନ୍ତକ ମଣି ଯେ ଦେଲାଣ ବନମାଳୀ
ଯୁଧିଷ୍ଠିରଙ୍କ ଅଙ୍ଗେ ଆଭରଣ କଲେ ଶୁଦ୍ଧଶାଳୀ । ୮୫ ।
ଅନର୍ଘ ମଣି ମୁକୁଟ ଆଣି ଦେଲେକ ଭାସ୍କର
ତମିର ନିବାରଣ ମଣି ଦେଲେକ ବେଦବର । ୮୬ ।
ଦିବ୍ୟବେଶ ଅଳଙ୍କାର ହୋଇଣ ପାଣ୍ଡବ ପଞ୍ଚୁବୀରେ
ବିଜେ ପଞ୍ଚ ଇନ୍ଦ୍ର ଯେ ବାସବର କୋଳେ । ୮୭ ।
ପାଣ୍ଡବଙ୍କ ଅବତାର କହିବ କି ପାରି
ପ୍ରତ୍ୟକ୍ଷେ ଇନ୍ଦ୍ରଙ୍କ ସେ ମଞ୍ଚେ ଅବତରି । ୮୮ ।
ପ୍ରସନ୍ନ ଅବତାର ସେ ଅଟନ୍ତି ପ୍ରତ୍ୟକ୍ଷେ
ବିଜୟେ ପଞ୍ଚମୂର୍ତ୍ତି ବ୍ରହ୍ମା ଇନ୍ଦ୍ର ବିଷ୍ଣୁ ହର କୁବେର ସାକ୍ଷେ ।୮୯।
ଦେଖିଣ ସାନନ୍ଦ ସେ ହୋଇଲେ ବୃନ୍ଦାରକେ
ଅନେକ ମନ୍ତ୍ର ଆର୍ଥନା କଲେକ ଦେବଲୋକେ । ୯୦ ।
ଆପଣେ ପଢିଆସି ପଣେଣ କେଶବ
ସଭା ନିବର୍ତ୍ତି କରନ୍ତି ଚଞ୍ଚଳ ବାସୁଦେବ । ୯୧ ।
ଅଭିଷେକ ଯେ ଗାଡ ଆଣିଦେଲେ ବିଶ୍ବକର୍ମା
ସମସ୍ତ ଖୁଆଇଲେ ନେଇ ସଭା ଯେ ସୁଧର୍ମା । ୯୨ ।
ପଞ୍ଚମୂର୍ତ୍ତି ଅବତାର ଯେ ପ୍ରତିମା ବିଧିରାଜ
ରୁଦ୍ର ଅବତାର ପ୍ରତିମା କଲେ ତହିଁ ନେଇ ସଜ । ୯୩ ।
ମୀନ କୂର୍ମ ବରାହା ନରସିଂହ ବାମନ ପ୍ରଶୁରାମ
ରାମ ହଲଧର ବଉଧ କଲକୀ ଯେ ନାମ । ୯୪ ।
ବାମେଣ ଗୁରୁ ଯେ ଡାହାଣେଣ ଧାତା
ଆଗେଣ ବ୍ରହ୍ମା ପଛେଣ ବିରଞ୍ଚି ଦେବତା । ୯୫ ।

---

୯୫।୧ ବାମେଣ ଦେବଗୁରୁ ଡାହାଣେ ରୁଦ୍ର ଯେ ଦେବତା । (ଣ, କ)

ଚତୁର୍ବଦନ ଅଷ୍ଟଲୋଚନ ମରୁଲ ବାହାନେ
ପଞ୍ଚବଂଶ ପିତୁଳ ନବାଣିଲେ ଅଷ୍ଟରତ୍ନେ । ୯୬ ।
କୁବେର ମୂରତି ପଞ୍ଚ ଯେ ପ୍ରତିମା
ବରୁଣ ଦ୍ୱାଦଶ ପ୍ରତିମା ଘଟଣ ଉପମା । ୯୭ ।
ଆଦିତ୍ୟ ମୂରତି ଦ୍ୱାଦଶ ଦେବତା
ଷୋଳହ ମୂରତି ଚନ୍ଦ୍ର ପ୍ରତିମା ଘଟିତା । ୯୮ ।
ଅନନ୍ତ ଅନଳ ଯେ ବଜାଯ୍ୟେ ପବନ
ଧାତୁବାଦ ପବନ ଯେ ଚଞ୍ଚଳ ପବନ । ୯୯ ।
ଧାପ ପବନ ଚଣ୍ଡ ପବନ ଯେ ପ୍ରଚଣ୍ଡ ପବନ
ଚରଧର୍ମି ପବନ ତାରଣ ପବନ ଯେ ଧାଯ୍ୟେ ପବନ । ୧୦୦ ।
ଊର୍ଦ୍ଧ୍ୱଗତି ପ୍ରାଣ ଅପାନ ସମାନ ବ୍ୟାନ ଉଦାନ ପବନ
ମଳଯ୍ୟ ତପତ ଚନ୍ଦ୍ରବାହ ପବନ । ୧୦୧ ।
ବକବାଳ ପ୍ରବହ ଆବହ ସଂବହ ନିବହ ପବନ
ଅକ୍ଷତ ପବନ ଯେ ଧାରଣ ଆଲୋକତ ପବନ । ୧୦୨ ।
ବଚଳିତ ପବନ କେତୁହେତୁ ଦୁର୍ଦ୍ଦଣ୍ଡ ପବନ
ନିରସ୍ତକ ପବନ ଯେ ଘୋର ଜୀବନ୍ୟାସ ପବନ । ୧୦୩ ।
ସ୍ୱବପବନ ଯୋଗପବନ ଜଳମନ୍ଥାନ ପବନ
କାରଣ ମାରଣ ଜ ରଣ ଖର ଯେ ପବନ । ୧୦୪ ।
ଘନପବନ କାଳାନ୍ତକ ଧୂମାନ୍ତକ ଯେ ପବନ
ଗୁପତ ବ୍ୟକତ ଯେ ଗ୍ୟାନ ଲକ୍ଷିତ ପବନ । ୧୦୫ ।
ଯେମନ୍ତେ ପବନ ଦେବତା ଯେ ଅଣଗୁଣ ମୂରତି
ଅଷ୍ଟରତ୍ନେ ପ୍ରତିମା ଯେ ଆଭରଣ କରନ୍ତି । ୧୦୬ ।
ବୃହସ୍ପତି ଶୁକ୍ର ଶନଶ୍ଚର ଆଦିତ୍ୟ ସୋମ ମଙ୍ଗଳ ଯେ ବୁଧ
ରାହୁ କେତୁ ନବଗ୍ରହନ୍ତ ପ୍ରତିମା କଲେ ରୂପବନ୍ତେ ପ୍ରସିଦ୍ଧ । ୧୦୭ ।
ବଶ୍ୱେଦେବା ଦ୍ୱାଦଶ ମୂରତି ପୁରୁଷ
ସନକାଦି ସପତ ମୁନି ବହନ୍ତା ଚତୁର୍ଦ୍ଦଶ । ୧୦୮ ।
ଆଦ୍ୟୋ ଚଇତନ ଯେମନ୍ତେ ପ୍ରତିମାମାନନ୍ତ ଯେ ସୁବର୍ଣ୍ଣେ ଘଟଣ
ହୀରା ମାଳା ପୋଯ୍ୟେଲା ଯେ ଅଷ୍ଟରତ୍ନେ ଭିରବାଣ । ୧୦୯ ।

ସନକ ସନାତନ ସନନ୍ତ ସନନ୍ଦନ ମନୁ ଯେ କୁମାର
ସେ ଗୃହ ପ୍ରତିମା ଯେ ବ୍ରହ୍ମା ଅବତାର । ୧୧୦ ।
ପଞ୍ଚବଂଶ ମୂରତି ଯେ ଦୁର୍ଗା ବାରେହୀ ନାରସେଣୀ
ବ୍ରହ୍ମାସେଣୀ ରୁଦ୍ରାସେଣୀ ଇନ୍ଦ୍ରାସେଣୀ ଅଷ୍ଟଭଦ୍ରାସେଣୀ । ୧୧୧ ।
କାଳିକା କାଳରାତ୍ରି ଉଗ୍ରତାରା ତ୍ରିପୁରା
ଚାମୁଣ୍ଡା ଚଣ୍ଡଘଣ୍ଟା ବରୂପା ଅଙ୍ଗିରା । ୧୧୨ ।
- ବାସେଲୀ ଭଇରୋବୀ ସେତେକ ରୂପ ଗତି
ପଞ୍ଚବଂଶ ପିତ୍ତଳ ଯେ ସମସ୍ତ ରତ୍ନେ ଜଡ଼ି । ୧୧୩ !
ଦ୍ୱାଦଶ ପ୍ରତିମା ଯେ ହଳଧର ନୀଳାମ୍ବର
ଊନବଂଶ ପ୍ରତିମା ଯମ ଦେବତା ନିଶାଚର । ୧୧୪ ।
ଦେବତା ପ୍ରତିମା ଯେ ଅଷ୍ଟରତ୍ନେ ପିତ୍ତଳ
ଚଣ୍ଡେଶ୍ୱର ବିଶ୍ୱକ୍‌ସେନ କୁଣ୍ଡୋଦର ମାତଙ୍ଗିନୈ ତେଜ ସେ
ମଞ୍ଜୁବଳୀ । ୧୧୫ ।
ବେତାଳ ତାଳପ୍ରତିମା ଯେ ଅଷ୍ଟରତ୍ନେ ଝଳ
ପ୍ରତିମାକେ ହୀରା ନୀଳା ବଇଦୁର୍ଯ୍ୟ ଓଳ । ୧୧୬ ।
କାଳ ବିକାଳ ଚିତ୍ରଗୁପତ କାଳୀ ବିକରାଳୀ ବେନି ଯେ ଭାରିଯା
ମହିଷୀ ବାହନେ ନାଶକରଗଣ ଯେନ ବିଜେ ସେ ଯମରାଜା ।୧୧୭।
ତମ୍ବାର ପ୍ରତିମା ଯେ ଲୁହାର ବେନି ଆଖି
ନବଶତ ପ୍ରତିମା ନିଶାଚରଗଣ ଲେଖି । ୧୧୮ ।
ପଞ୍ଚବଂଶ ମୂରତି ଯେ ବହୁତ ଦେବତା
ସ୍ୱାହା ସ୍ୱଧା ମନ୍ତ୍ରେ ପୂଜା ପାଇଲେ ବିହ୍ନିତା । ୧୧୯ ।
ଶଙ୍ଖପଦ୍ମ ମହାପଦ୍ମ ଶ୍ୱେତ କର୍କୋଟ କୁଳିକ ତକ୍ଷକ ଅନନ୍ତ
ଦ୍ୱାଦଶ ପ୍ରତିମା ଯେ ଅଷ୍ଟକୁଳା ନାଗନ୍ତ । ୧୨୦ ।
ନିର୍ଘାତର ମୂଳେ ଯେ ପଞ୍ଚଦଶ ମୂରତି
ନବ ପ୍ରତିମା କଲେ ଗ୍ରାମ ଯେ ଦଇବତି । ୧୨୧ ।
ଭୃଗୁପୁରୁଷ ଅଭିନ୍ନ ପୁରୁଷ ଶୂନ୍ୟ ଯେ ପୁରୁଷ
ସେହିମାନ୍ତ ଘଟଣ କଲେ ପ୍ରତିମା ଦ୍ୱାଦଶ । ୧୨୨ ।

---

୧୧୫।୨ ଚଣ୍ଡ ବିଶ୍ୱକ୍‌ସେନ ଧାପନ ଯାଚକ ପଞ୍ଚୁବଳୀ । (ଅପପାଠ)

ଅଷ୍ଟରତ୍ନେ ନିର୍ବାଣ ସୁବର୍ଣ୍ଣ କଳସ ଲକ୍ଷେଗୋଟି
କୋଟି ତୀର୍ଥଜଳ ଘେନ ତହିଁରେଣ ପୂର୍ଣ୍ଣି । ୧୨୩ ।
ସୁବର୍ଣ୍ଣର ଗୁଆପେଣୀ ଯେ କୋଟିଏ ଶ୍ରୀଫଳ
ଆକାଶେ ନିର୍ମିତ ଦେବତାଂକର ସେ ସକଳ । ୧୨୪ ।
ବ୍ରହ୍ମା ଅବତାର ସେ ସହସ୍ରେକ ଶିଳା
ମହେଶ୍ୱର ଅବତାର ପଞ୍ଚସହସ୍ର ଅନର୍ଗଳା । ୧୨୫ ।
ସହସ୍ରେକ ଶିଳା ଯେ ପିଙ୍ଗଳ ଅବତାର
ବାମନ ମୂରତି ଶିଳା ପ୍ରେକ ସହସ୍ରର । ୧୨୬ ।
କୂର୍ମ ଅବତାର ଶିଳା ଅଟଇ ସହସ୍ରେକ
ସିଂହ ବାହାନେ ଯେ ଅମ୍ବିକା ସହସ୍ରେକ । ୧୨୭ ।
ସହସ୍ରେକ ଶିଳା ଯେ ନାରାୟଣ ମୂରତି
ସହସ୍ରେକ ଶିଳା ମାଳ ଲୋହିତ ବର୍ଣ୍ଣ ଥିଡ଼ି । ୧୨୮ ।
ସହସ୍ରେକ ଶିଳା ଯେ ଶ୍ରୀରାମ ନାମ ମୁଦ୍ରା
ଅନନ୍ତ ସହସ୍ରେକ ଶିଳା ଶୁଦ୍ଧ ରୁଦ୍ରା । ୧୨୯ ।
ବ୍ରହ୍ମରୁଦ୍ର କର୍ମ ଧର୍ମ ପୃଥୀ ଆପତେଜ ବାୟୁବ ଆକାଶ
ଏ ପ୍ରତିମା ଘଟଣ କଲେ ନବ ଯେ ପୁରୁଷ । ୧୩୦ ।
ଅଷ୍ଟରତ୍ନେ ନିର୍ବାଣ କଲେ କୋଟିଏ ଦୀପକୁ କୋଟିଏ ରୂଖା
ଗୁଆଘୃତେ ପୂରାଇ ନେତର ବଳିତା ଅତି ଶିଖା । ୧୩୧ ।

---

୧୨୫।୨ ମହେଶ୍ୱର ଅବତାରେ ପଞ୍ଚସସ୍ର ମେଖଳା । ( ଘ, ଚ )

୧୨୫।୨ "ମହେଶ୍ୱର ଅବତାର ପଞ୍ଚ ସହସ୍ର ଅନର୍ଗଳା" ପାଠ ପରେ "ଣ" ପୋଥିରେ ଭିନ୍ନ ପାଠ ଅଛି :—
ସହସ୍ରେକ ଶିଳା ଯେ ପିଙ୍ଗଳ ଅବତାର
ସହସ୍ରେକ ଶିଳା ଯେ ସୁବର୍ଣ୍ଣ ଚାମ୍ରର ।
ବାମନ ମୂରତି ଶିଳା ପ୍ରେକ ସହସ୍ରେକ
କୂର୍ମ ମୂରତି ଶିଳା ଯେ ଅଟଇ ସହସ୍ର ପ୍ରେକ ।
ସହସ୍ରେକ ଶିଳା ମାଳା ନୃପତି
ସହସ୍ରେକ ଶିଳା ନୃସିଂହ ମୂରତି ।

.ଦଶଅବତାର ନେତର ଚନ୍ଦ୍ରାତପ ପାଞ୍ଚକୋଟି
ମୁକୁତା ଝରାମାଳମାନେ ଲମ୍ବନ୍ତି କୋଟି କୋଟି । ୧୩୨ ।
ସ୍ତମ୍ଭ ବନ୍ଧରେ ଯେତେ ଦେବତା ସୁବର୍ଣ୍ଣର ଖଟ୍ଟିଲ
ହୀରା ନୀଳା ମାଣିକ୍ୟ ପୋଯ୍ନେଲା ଅଷ୍ଟରତ୍ନେ ଝଳ । ୧୩୩ ।
ସ୍ୱାହା ସ୍ୱଧା ମନ୍ତ୍ରଣ କରନ୍ତି ବେଦ ହୋମ
ଋଷିମାନେ ଆରୋପଣ କଲେ ଅଗ୍ନି ସୋମ । ୧୩୪ ।
ଅନେକ ସମିଧେଣ ଘୃତ ଯେ ଅ.ହୂତ
ଦ୍ୱାଦଶ କୋଟି ମନ୍ତ୍ରେ ହବ ଦେବତା ତୋଷନ୍ତି । ୧୩୫ ।
ପଞ୍ଚବଂଶ ସ୍ଥାନେ ହୋମ କର୍ମଣ ବଧି ଆହୂତ
ମନ୍ତ୍ର ଆଧାନେ ତୋଷିଲେ ଅଗ୍ନିଦେବତାଂକ ମୂର୍ତ୍ତି । ୧୩୬ ।
ବାଜନ୍ତି ମଧୁର ସ୍ୱରେ ଦେବବାଦ୍ୟ ଦୁନ୍ଦୁଭି
କମ୍ପଇ ସପତ ପାପ ହେଲ ଯେନଇ ମହୀଦେବୀ । ୧୩୭ ।
ପଞ୍ଚକୋଶ ଅନ୍ତର ଯେ ମହାଦେଶ ପୁରୀ
ଜହ୍ନଂକ ବାଦ୍ୟ ନ ଶୁଭଇ ମାୟାକଲେ ଦେବ ଶିରୀହରି । ୧୩୮ ।
ପୁଷ୍କରକଙ୍କ ଧ୍ୟାୟେ କଲେ ନାରାୟଣ
ଆସନ କର୍ମିଲ ତାହାର ଅନ୍ତରୀକ୍ଷ ଭୁବନେଣ । ୧୩୯ ।
ଗଙ୍ଗା ଗୟା ଗୋଦାବରୀ ଗଉତମୀ କୃଷ୍ଣବେଣୀ
ହରପାଦ କେଦାର ପ୍ରୟାଗ ବୈତରଣୀ । ୧୪୦ ।
ସୁମତୀ ନର୍ମଦା ଯେ ପ୍ରାଚୀ ଚନ୍ଦ୍ରଭାଗା
ଭଗିରଥୀ ସରସ୍ୱତୀ ଯମୁନା ଗୋପ୍ୟ ଗଙ୍ଗା । ୧୪୧ ।
ମହାଅଗ୍ନି ଫଲ୍ଗୁନୀ ଯେ ଗୋମତୀ ଶୋଣଭଦ୍ରା
କାବେରୀ ଉତ୍ତରବାହିନୀ ମଣିକର୍ଣ୍ଣିକା ମାନସୀ ମାନମୁଦ୍ରା । ୧୪୨ ।

---

୧୪୦ { ବାଞ୍ଛା ଦମ୍ୟାୟେଣୀ ମାୟାମହ ଲଗି
ପାତାଳଗଙ୍ଗା ଜର୍ମିତା ନୀଳାଭୁଷି ସଉଭଗୀ । (ଣ)

୧୪୨ { ବ୍ରାହ୍ମଣୀ ନଦୀ ଦାକ୍ଷାୟେଣୀ ନଦୀ ମାୟା ମହାଅଗ୍ନି
ପାତାଳଗଙ୍ଗା ଜଇନ୍ଦ୍ରା ଆବର ବଭୁଗିନୀ । (ଜ)

ସ ଗର ସଙ୍ଗମ ଭ୍ରବାମା ଶିବାମା
କାମାକ୍ଷୀ କାଳନ୍ଦୀ ଯେ ମାତାଙ୍ଗୀ ସୀତାବେଣୀ । ୧୪୩ ।
କାଶୀକଉଶିକା ତୁଙ୍ଗଭଦ୍ରା ଅନେକ ବେଦମନ୍ତ
ଚନ୍ଦାଙ୍ଗୀ ଚନ୍ଦ୍ରଉପୃକା କମଳା ଶରଣାବନ୍ତ । ୧୪୪ ।
ବାଞ୍ଛାଦପ୍ସା ଯେ ନର୍ମାପ୍ସା ମନ୍ଦଭାଗୀ
ପାତାଳଗଙ୍ଗା ଜଇନ୍ତା ବଭ୍ରସୀ ସଉଭାଗୀ । ୧୪୫ ।
ଯେହ୍ନଙ୍କର ମୂଳେ କୋଟିଏ ଯେ ତୀର୍ଥ
ଯେନଣ ପୁଷ୍କର ଦେବତା ବଜାଏ ଭୁରତ । ୧୪୬ ।
ମୁକୁତାର ଭଣ୍ଡେ ଶୁଦ୍ଧ ସ୍ଫଟିକ ପ୍ରାଏ ପାଣି
ଅଭିଷେକକୁ ମହାଦେଶେ ଦେବତା ଯୋଗାଇଲେ ଆଣି । ୧୪୭ ।
ବାମ ଦକ୍ଷିଣେ ରହିଲେ ଯେ ଶ୍ୱେତହସ୍ତୀ ବେନ
ମୁକୁତାର ଭଣ୍ଡେ ସେ ତୀର୍ଥଜଳ-ଛନ୍ତ ଯେନ । ୧୪୮ ।
ପୁଷ୍କର ଦେବତା ଭୁଲେ ଚଉଦଶୀ ଲକ୍ଷ ବାଜା
ଅନ୍ତବେଗ ରେଖାର ତୁରଙ୍ଗମ ମହାତେଜ । ୧୪୯ ।

---

୧୪୩ କନକବେଣୀ ଯେ ଆବର ସରସ୍ୱତୀ ଧବଳାଙ୍ଗୀ ଯମୁନା
ସମସ୍ତ ତୀର୍ଥମାନ ଶ୍ରୀହର କରନ୍ତ ଭାବନା ।
ଗୋପ୍ୟାନ ଗଙ୍ଗା ଯେ ଭବାନୀ ନର୍ମଦା ଅଗ୍ନି ସୀତାଶିଂଗ
ବଶାଏ ତାର ସଂଗମ ମାତାଙ୍ଗୀ ପୁଣ୍ୟବ୍ରଣି ସିଂହ । ( ଡ, ଧ,ପ )

୧୪୬।୧ "ଯେହାଙ୍କର ମୂଳେ କୋଟିଏ ଯେ ତୀର୍ଥ" ଏହି ପଦ ପରେ
'ଜ' ପୋଥିରେ ଭିନ୍ନ ପାଠ:—
ଯେତେ ତୀର୍ଥ ମୂଳେ ଯେ ଅଛୁ କୋଟି ତୀର୍ଥ
ସକଳ ଜଳ ଆଣି ବରଷିବ ମୂର୍ଦ୍ଧେଶ୍ୱିଂକର ମାଥ ।
ବାସୁଦେବଂକ ବଚନେ ଯେ ଗୃଶବଗକୁ ମେଘେ ଯାଇଂ
ଗୃଶଦ୍ୱଗ ତୀର୍ଥରୁ ପାଣି ଆଣିଲେ ପୂରେଇ ।
ବାସୁଦେବଂକ ବଚନେ ଯେ ହୋଇଣ କୃତକୃତ
ପୁଷ୍କର ମେଘ ଆସି ବଜାଏ ତୁରତ ।

୧୪୭।୧ ମୁକୁତାର ତଳେ ଶୁଦ୍ଧସ୍ଫଟିକ ଜଳପାଣି । ( ଧ, ଡ, ପ )

ରେଡପେଡ ଦୁଇ ପରବାଣ ଦୁଇ କଣ୍ଠ
ବଜଯେ କମଳ ଆସନ ଈଶାନ ମୂରତି । ୧୫୦ ।
ହୃଦଗତେ ଆଲିଙ୍ଗନ ହୋଇଲେ ବାକ୍ୟଦେବୀ
ସାନନ୍ଦ ଚିତ୍ତେ ଯୁଧିଷ୍ଠିଂକ ଅଭୟେ ବର ଦେବ । ୧୫୧ ।
ମକରମାସ ଶୁକ୍ଳ ପକ୍ଷ ଚଉଠି ଅର୍କବ ର
ରେବତୀ ନକ୍ଷତ୍ର ଯେ ଅଟଇ ସେ ଦିନର । ୧୫୨ ।
ତୈତିଲ ନାମେ କରଣ ଶୁଭନାମେ ଯୋଗ
ତାରଚନ୍ଦ୍ର ବେଳ ଯେ ରୋହିଣୀ ଘରେ ଭୋଗ । ୧୫୩ ।
ଈଶାନେ ଯୋଗିନୀ ଯେ ମହାଲକ୍ଷ୍ମୀ ମୂରତି
ମଗର ବାହାନେ ସେ ବାମଭାଗେ ଥିତି । ୧୫୪ ।
ଯେତେହେନେକ ଶୁଭଲଗ୍ନ ମାହେନ୍ଦ୍ର ଯୋଗବେଳା
ଅଭିଷେକ ବିଧାନେ ସେ ସମସ୍ତ ଦେବେ ମେଳା । ୧୫୫ ।
ଶ୍ରୀକୃଷ୍ଣଂକ ଭଣଜା ଯେ ଅର୍ଜୁନର ତନୁ
ଯୁଧିଷ୍ଠିଂକ କୋଳେ ବିଜେ କୁମାର ଅଭିମନ୍ୟୁ । ୧୫୬ ।
ଅମର ବଳାସୁଣୀ ଯେ ଯେ ଦ୍ୟନ୍ତି ହୁଳହୁଳି
ଅରକ୍ଷେକ ସୁନ୍ଦରୀ ଯେ ଆଳଟ ଗୁମରନ୍ତ ତାଳ । ୧୫୭ ।
ପ ଟଛତ୍ର ଲକ୍ଷେ ଆଳମ୍ବ ଉଦଣ୍ଡ ଯେ ଲକ୍ଷେ
ଯେକଲକ୍ଷୀ ପାଞ୍ଚଲକ୍ଷୀ ଉଡନ୍ତ ମେ ବଳେ । ୧୫୮ ।
ସୁବର୍ଣ୍ଣର ଶଙ୍ଖ ଯେ ଫୁରଇ ବେନକୋଟି
ସଙ୍ଗେ ଚଉଷଠି କୋଟି କନ୍ୟା ତାଣ୍ଡବ ରସେ ଖଟି । ୧୫୯ ।
ବୀଣା ବାଂଯେଶୀ ଯେ ଅଧାଟି ସରଗୁଣା
ପିନାକୀ ଗଣପତି ଯେ କର୍ଣ୍ଣାଟୀ ବ୍ରହ୍ମବୀଣା । ୧୬୦ ।

---

୧୫୦ { ଟଲ ଟ୍ଟେରତ ଦୁଇ ପରବାଙ୍ଗ ଯେ ହକାରଲେ କଣ୍ଠ
ବଜେ କୋମଳ ଆସନେ ଈଶାନ ମୂରତ । ( ଠ )

୧୫୦ { ଶଂଖଚିଲ ପକ୍ଷୀ ଯେ ଉଡଇ ଚକ୍ରକଣ୍ଠ
ବଜଯେ କମଳାକ୍ଷୀ ଈଶାନ ମୂରତ । ( ଜ )

୧୫୮ { ହଦଣ୍ଡ ପାଟଛତ୍ର ଆଳମ୍ବ ଯେକଲକ୍ଷୀ
ଚୂଂତୋଳ ଶ୍ୱେତପାର ରାଜହଂସ ପକ୍ଷୀ । ( ଡଂ )

ସୁସ୍ୱର ବାଦ୍ୟ ସା ରି ଗା ମା ପା ଧା ନି ସପତ ସ୍ୱରଧୂନି
ଉରନ୍ଧରଷେ ଖଟନ୍ତି ନାରଦ ମହାମୁନି । ୧୬୧ ।
ସୁଲକ୍ଷଣି ବ୍ରାହ୍ମଣ ଲକ୍ଷେକ ଋକବେଦୀ
ବେନି ଲକ୍ଷ ବ୍ରାହ୍ମଣ ସାମବେଦୀ ପ୍ରସିଦ୍ଧି । ୧୬୨ ।
ଚୈରିଲକ୍ଷ ବ୍ରାହ୍ମଣ ଯଜୁର୍ବେଦୀ ବର
ଅଥର୍ବବେଦୀ ବ୍ରହ୍ମଣ ବରିଲେ ଲକ୍ଷେ ଚୈରି । ୧୬୩ ।
ଆୟୁର୍ବେଦରୁ ବଶିଲେ ପାଞ୍ଚଲକ୍ଷ ଦ୍ୱିଜ
ଅଷ୍ଟବ୍ରତେକ ବ୍ରାହ୍ମଣ ଜ୍ୟୋତିର୍ବେଦ ରାଜରାଜ । ୧୬୪ ।
ବେନି ଅଷ୍ଟବ୍ରତେକ ଧନୁର୍ବେଦୀ ଆଧାନ
ଶିଶୁମୁନା ବେଦୀ ଯେ ଲକ୍ଷେକ ଋଦୁଜନ । ୧୬୫ ।
ଅଜପା ଗାୟତ୍ରୀ ଯେ ପଞ୍ଚସହସ୍ର ଅଭ୍ୟାସି
ଯୋଗ ଆଧାନେ ପଞ୍ଚ ଅଷ୍ଟବ୍ରତେ ଜଙ୍ଗମ ବସି । ୧୬୬ ।
ଆହୋ ଚଇତନ ପ୍ରତକ୍ଷେ ଧର୍ମ ନିରଞ୍ଜନ ଯେଉଂଶ ଯୁଧିଷ୍ଠି
ପତିହାସ୍ଥି ରୂପେ ନାରାୟଣ ଯାହାକଇଂ ଖଟି । ୧୬୭ ।
ଯେତ୍ସ ମହୀମଣ୍ଡଳେ କଳିକାଳ ଧ୍ୱଂସିବା ନିମନ୍ତେ
ଇଦଂବୋଚ ମନୁଷ୍ୟ ଅବତାର ତହିଂ ଅର୍ଥେ । ୧୬୮ ।
ସେ ମହାରାଜାଂକର ପୁଣ୍ଡ୍ରି ଅଭିଷେକେ
ଅମରଗଣ ଘେନି ସେ ଖଟନ୍ତି ସର୍ବଲୋକେ । ୧୬୯ ।
ଯେତ୍ସସନେକ ଆରମ୍ଭ ସଞ୍ଚିତ ଦେବହରି
ଲେଖନ୍ତେ ତାହା ମୁଂ କହିବି କି ଅନ୍ତ କରି । ୧୭୦ ।
ସଞ୍ଚପି କହିବାକୁ କସ ମୋହୋର ହେତୁ
ମହାବକ୍ୟ ଆଖ୍ୟାନ ମୁଂ କହିଲି ତହିଂର ନିମନ୍ତୁ । ୧୭୧ ।
ମନୁଷ୍ୟେ ଜନ୍ମେ ଉତପତ୍ତି ମୁଂ ଯେତ୍ସ ମହୀମଣ୍ଡଳେ
ଶ୍ରୀକୃଷ୍ଣର ପଦ୍ମପାଦ ଭାବଇ ବକ୍ଷସ୍ଥଳେ । ୧୭୨ ।

---

୧୬୧।୧ ଗାୟେତ୍ରୀଯେତ୍ସ ସାରଗମ ପାଧାନି ମଧୁଧୂନି । ( ଙ )
୧୬୯।୧ ସେ ମହାରାଜାଙ୍କର ପୁଣ୍ୟ ଅଭିଷେକେ । (କ, ଚ, ଙ, ଝ, ଘ)
୧୭୦।୧ ଲେଖନ୍ତେ ଅନ୍ତ ତାହା କେହୁ କରିପାରି । ( କ, ଣ )

ଅବ୍ୟଯେ ଭଣ୍ଡାର ବଯେ କଲ ମମଗ୍ୟାନ୍
ଶଇଲ ଗ୍ରଜାର ନନ୍ଦନୀ ଭଜଯେ ମୋହର କରୁଣାନୁ । ୧୭୩ ।
ଧୀର ଧୀର ସୁଶୀତଳ ସମୀର ବହଇ
ଗୃହମେଘେ ଗୃହକଣ୍ଡ ହୋଇଲେକ ଘ୍ରଇ । ୧୭୪ ।
ମାପ୍ଲାକଲେ ତହିଂ ତେତିଶକୋଟି ଦେବତାଯେ
ହିମଋତୁ ଘୁଞ୍ଚିଲ ଗ୍ରୀଷମ ଋତୁ ପ୍ରାଯେ । ୧୭୫ ।
ନାନା ତୀର୍ଥଜଳେ ସ୍ନାନକଲେ ପଅଁଭାଇ
ସୁବର୍ଣ୍ଣ ସିଂହାସନେ ବଜଯେ ନୃପସାଈଂ । ୧୭୬ ।
ଗୃହମେଘ ଆସି ଯେ ପଖାଳ ପଞ୍ଚଶିର
ଆଣି ନଇଡଲେ ଯେ କୋଟିଯେ ତୀର୍ଥର ଜଳ । ୧୭୭ ।
ଗନ୍ଧଚନ୍ଦନ ପୁଷ୍ପ ଦବ୍ୟରତ୍ନ ବସନ
ହୃଦରେ ଆଭରଣ କରନ୍ତ ପାଣ୍ଡବ ପାଞ୍ଚଜଣ । ୧୭୮ ।
ଦବ୍ୟ ଅଳଂକାର ହୋଇ ଯେ ପାଣ୍ଡବ ପଞ୍ଚଭାରେ
ପୁଣିହିଂ ବଜେକଲେ ଯାଇ ସିଂହାସନ ଉପରେ । ୧୭୯ ।
ବେଦଧ୍ୱନି ମଙ୍ଗଳଶୁଭ ଅନୁକୂଳ ଧ୍ୱନି
ପୁଷ୍କର ଅଭିଷେକ କଲ କୋଟିଯେ ତୀର୍ଥ ଯେନ । ୧୮୦ ।
ଜୟ ଜୟ ଶବଦ ଶୁଭିଲ ଆକାଶେ
ପୁଷ୍ପ ବୃଷ୍ଟି କଲେ ବ୍ରହ୍ମ ଦଇବତ ପୁରୁଷେ । ୧୮୧ ।
ଅମୃତାକ୍ଷ ମେଘ ତହିଂ କଲ ଅମୃତ ଯେ ବୃଷ୍ଟି
କଣଯେ ବରଷିଲ ଅଷ୍ଟରତ୍ନ କୋଟି କୋଟି । ୧୮୨ ।
ସୋମପାଳ ଭଦ୍ରା ଯେ ଶଂଖଚିଲ ପକ୍ଷୀ
ଦଧିବାବନ ମଙ୍ଗଳ ବାକ୍ୟ ପକ୍ଷୀ ଯେ ଡାକନ୍ତି । ୧୮୩ ।

---

୧୮୩।୨ ଦଧିମଙ୍ଗଳ ଶବଦେ ଗମଇ ଡାକନ୍ତି । ( ପ, ଧ, ଡ )
୧୮୩।୨ ଦଧିବାବନ ମଙ୍ଗଳ ଦେବତା ସାକ୍ଷି । ( ଛ, ଘ )

କନକ ଦୀପାବଳୀ ନାଚେ ଝଳକନ୍ତି ରତ୍ନମଣି
ଦଶନ୍ତି ପଣ୍ଡୁନନ୍ଦନ ବ୍ରହ୍ମା ବିଷ୍ଣୁ ମହେଶ୍ୱର କି ଇନ୍ଦ୍ର ଚନ୍ଦ୍ର
ଜାଣି । ୧୮୪ ।

କୋଦଣ୍ଡ ଅଜଗ ପିନାକ ସାରଙ୍ଗ ଗାଣ୍ଡୀବ
ବାଆନ ବାଆନ ଗଦା ଖେନଣ ବୀର ଶ୍ରେଷ୍ଠ । ୧୮୫ ।
ଯୁଧିଷ୍ଠିର ଦେବଙ୍କର ଯେ ଅଭିଷେକ ଦେଖି
ଅନେକ ପାପୀ ତରିଲେ ପାତକ ଉପେକ୍ଷି । ୧୮୬ ।
ବହୁତ ସାନନ୍ଦ ଯେ ହୋଉଛନ୍ତି ବୃନ୍ଦା ଅର୍କେ
ଅନେକ ମଙ୍ଗଳ ଧ୍ୱନି କରନ୍ତି ଦେବଲୋକେ । ୧୮୭ ।
ସାନନ୍ଦ ପରମାନନ୍ଦ ସକଳ ସିଦ୍ଧ ଯୋଗୀ
ସଭା ସମାର୍ଜନା ଦେବ କରନ୍ତି ବେଗି ବେଗି । ୧୮୮ ।
ଅନେକ ଉଛବେ ସେ ଯାଦେବ ବୀରମାନେ
ବାବୁ ସୁଲଭ ଜୀବନ ଅଟଇ ଆମ୍ଭର ଧନ୍ୟ ଧନ୍ୟ । ୧୮୯ ।
ନାରାୟଣ ପ୍ରସନ୍ନେ ଆମ୍ଭେ ସୁଫଳେ ଅଛୁଂ
ଅନେକ ଜନ୍ମକୁ ନିର୍ମଳ ହୋଇଲା ଆମ୍ଭର ଚକ୍ଷୁ । ୧୯୦ ।
ମହା ତୀର୍ଥ କାମ୍ୟ କରିଥିଲୁ ପୂର୍ବେ
ଧର୍ମନନ୍ଦନ ଅଭିଷେକ ଦେଖିବାକୁ ସାମରଥ ହୋଇଲୁ
ସ୍ୱେ ବେ । ୧୯୧ ।

ପାଣ୍ଡବଂକ ଅଭିଷେକ ମହା ସମ୍ପଦ ଦେଖି
ବଳଦେବ ହେଠମାଥେ ବୁଜିଲେ ବେନି ଆଖି । ୧୯୨ ।
ବିରସ ବଦନ ହେ ହୋଇଲେ ଦେବ କାମପାଳ
ବହୁତ ବିସୋରିଲେ କମ୍ପିଲା ବକ୍ଷସ୍ଥଳ । ୧୯୩ ।
ଅନୁମିତେ ଧୃତରାଷ୍ଟ୍ର ପୁତ୍ରଂକର ହୋଇଲୁ ଗଦାଗୁରୁ
ଆବର ମାନଗୋବିନ୍ଦକୁ କେହ୍ନେ ରକ୍ଷା କରିପାରୁ । ୧୯୪ ।

---

୧୮୪।୨ ଦଶନ୍ତି ପଣ୍ଡୁନନ୍ଦନ ବ୍ରହ୍ମା ଇନ୍ଦ୍ର କୋବେର ଜାଣି । (ଙ, ଘ, କ)
୧୮୪।୨ ଦଶନ୍ତି ପଣ୍ଡୁନନ୍ଦନ ପଞ୍ଚ ଇନ୍ଦ୍ର ଜାଣି । (ପ, ଧ, ଡ)

ବଳରାମଂକ ବିରସ ଭୀମସେନ ଜାଣି
ଶ୍ରୀକୃଷ୍ଣଂକର ସନ୍ନିଧେ ଯାଇଂ ଯୋଡ଼ଇ ବେନିପାଣି । ୧୯୫ ।
ସ୍ୱାମି ଆମ୍ଭର ସଂପଦ ଦେଖି ତ୍ରୈଲୋକ୍ୟ ଆନନ୍ଦ
ବଳରାମ ବସିଲେ କଂପେ ମନର ବିଷାଦ । ୧୯୬ ।
ଲେଉଟି ନାରାୟଣ ଗ୍ରହ୍ନିଂଲେ ରାମ ମୁଖ
ବଳରାମ ବିରସ ଦେଖିଲେ ଶ୍ରୀବତ୍ସ ପ୍ରତକ୍ଷ୍ୟ । ୧୯୭ ।
ନାରାୟଣ ବୋଇଲେ ଭୀମସେନର ଅଗ୍ରତେ
ବୋଲୁକନା ସ୍ୱାମିହେ ବିରସ କସ ଅର୍ଥେ । ୧୯୮ ।
ନାରାୟଣଂକ ବଚନେ ବୃକୋଦର ଉଠି
ବଳରାମଂକ ଗ୍ରମୁରେ ଯୋଡ଼ଇ ବେନିକର ଗୋଟି । ୧୯୯ ।
ସ୍ୱାମି କାମପାଳ ହଳଧର ଶ୍ରୀଦେବଂକ ଅଭିଷେକ
ଅନେକ ସାନନ୍ଦ ହୋଉଅଛନ୍ତି ତ୍ରିଲୋକ । ୨୦୦ ।
ତୋହୋର ମନ କଂପା ବିରସ ବଳଦେବ
ଅଥବା ମନକୁ ଯୋଗାଇଲ କି ଆମ୍ଭର ଉଚ୍ଛବ । ୨୦୧ ।
ଯେତୁ କାର୍ଯ୍ୟେ ତୋହୋର ମନ୍ଦବୁଦ୍ଧି ପ୍ରସାଦେ
ବେଳେ ବେଳେ ମାନଗୋବିନ୍ଦ ଆମ୍ଭଂକୁ ଚିନ୍ତଇ ପ୍ରମାଦେ । ୨୦୨ ।
ଭୋ ସ୍ୱାମି ତୋହୋର ଯେତୁକା ଯେତୁ ମନ୍ଦବୁଦ୍ଧି
ବେଳେ ବେଳେ ମାନଗୋବିନ୍ଦ ହରଇ ଆମ୍ଭର ସମ୍ପଦ୍ଧି । ୨୦୩ ।
ତୋହୋର ପ୍ରସାଦେ ମୋତେ ଦିଲେ ସେ ବିଷଲଡୁ
ବାନ୍ଧି ପକାଇଲେ ମୋତେ ଅଗାଧ ସିନ୍ଧୁ ଜଳେ ପଡୁ । ୨୦୪ ।
ନାଗୁଣୀ ଖାଉ ବୋଲି ମେଲିଦେଲେ ଜଳେ
ତହୁଂ ପାରହୋଇଲି ମୁଂ ମୋହୋର ଧର୍ମବଳେ । ୨୦୫ ।

---

୧୯୫।୧ ବଳଦେବଙ୍କର ବିମନ ଭୀମସେନ ଜାଣି । ( କ, ଖ, ଗ, ଙ )

ତୋହୋର ବୁଦ୍ଧି ପାଇ ଆହ୍ମେ ଗବେଲେ ଆମ୍ଭେ ଜଣନ୍ତେ କଲେ କୃଷ୍ଣ
ଘରେକ ଭୁଆଇଲେ ଜଉ ସଜଳସ ଗୁଆଘୃତ ଛଣପଟ । ୨୦୬ ।
ପାଣ୍ଡବେ ମରନ୍ତି ବୋଲି ପୋଡ଼ିଦେଲେ ନିଶାକାଳେ
ତହିଂରୁ ପାର ହୋଇଲୁ ଆମ୍ଭେ ପୁଣ୍ୟବଳେ । ୨୦୭ ।
କପଟ ପଶା ଯେତେକ ଯେ ଭୁଆଇଲେ ଆପଣ
ଯେତେହେଲେକ କୃଷ୍ଣବୁଦ୍ଧି ତୋହୋର ବଡ଼ପଣ । ୨୦୮ ।
ଘୋଷଯାତ୍ରା ବୋଲି ଯେ ରଚ୍ଛିଲେ ଉପାୟେ
ସକଳ ଅମାନ୍ତ କଲେ ଯେ ତୋହୋର ଭରସାୟେ । ୨୦୯ ।
ଯେ ତୋହୋର ପରସାଦେ ପାଇଲୁ ଯେତେ କଷ୍ଟ
ଯେତେ ବାଗେ ବ୍ରସ ତୋହୋର ନ ଫୁଟିଲା ପେଟ । ୨୧୦ ।
ହରଷ ଗୁଡ଼ କଂପେ ବରସ ତୋହୋର ମନ୍ତ୍ର
ତୋହ ବଯରିଲେ କସ ହୋଇବ ହୃଲପନ୍ତ । ୨୧୧ ।
ତୁମ୍ଭର କର୍ମେଣ ଯେତେ କୃତ୍ୟମାନ କଲି
କାଳେଣ କାମପାଳ ଜଣନ୍ତୁ ନୋହିଲଟି ଭଲ । ୨୧୨ ।
ଦ୍ରୌପଦୀର କେଶ ଯେ ଧରିଲା ଧୂଶାସନ
କେଶ ନ ବାନ୍ଧିଲା ଦେବୀ ଚଉଦ ବରଷ ଷଡ଼ମାସ ତେରଦିନ ।୨୧୩।
ଧୂଶାସନ ରେ଼ଧିରେ ଯେବେ କେଶ ଯେ ପଖାଳି
ତେବେ ସେ କେଶବନ୍ଧନ କରିବ ପାଞ୍ଚାଳୀ । ୨୧୪ ।

---

୨୦୬।୨ "ଘରେକ ଭୁଆଇଲେ ଜଉ ସଜଳସ ଘୃଆଘୃତ ଛଣପଟ" ପରେ
ପ, ଦ, ତ ପୋଥିର ଅଧିକା ପାଠ :—
ପୁରନ୍ତ୍ରନ ପଣ୍ଡା ସେ ଘର ଦଲ ପୋଡ଼ି
ଆମ୍ଭର ଧର୍ମବଳେ ଯେ ଆସିଲି ଉତ୍ତରି ।
ତୁମ୍ଭର ବୁଦ୍ଧିରେ ଯେ ଯେତେକ କୃତ୍ୟ କଲି
କାଳେଣ କାମପାଳ ନାକ ନୋହିଲଟି ଭଲ ।

୨୦୯ { ଘୋଷଯାତ୍ରା ବୋଲିକରି ରଚ୍ଛିଲ ପଉମାଦେ
ସକଳ ଅଜାତ କଲେ ତୋହୋର ପରମାଦେ । (କ,ଖ,ଠ,ଝ)

୨୧୩।୨ କେଶ ନ ବାନ୍ଧିଲା ଯେ ତେରବର୍ଷ ଚଉଦଦିନ । (ଘ,ଢ,ଥ,ଧ)

ସ୍ୱାମି ଧୃତରାଷ୍ଟ୍ର ପୁଅନ୍ତ ମୁଂ କହାଇବ ଯୁଦ୍ଧେ
କେଉଂଣ ବାଗେ ତାହାନ୍ତ ରକ୍ଷା କରିବ ରଣ ମଧ୍ୟେ । ୨୧୫ ।
ସବୃତ ଦେଖିଥିବ ଭୁମ୍ଭେ ଦୁଇଭାଇ ଥାଇ
ତାହାର କେତେ ପ୍ରାକର୍ମ ବୃଝିବ ଗୋସାଇଂ । ୨୧୬ ।
ମୁହିଂତ ସତ୍ୟ କରୁଛୁ ଭୁମ୍ଭର ପାଦ ଛୁଇଂ
ନଷ୍ଟପ୍ର କଉରବେନ୍ତ ସଂହ ରିବ ମୁହିଂ । ୨୧୭ ।
ଅନ୍ୟହନ ପ୍ରାୟେ କ ଭୁମ୍ଭେ ବୁଝିଲ ବଳେବର
ଯେ ପାନ୍ତୁକ ବ୍ରତପିଠେ ଯେତେକ ସନ୍ୟ ତାର । ୨୧୮ ।
କର୍ଣ୍ଣ କୃପ ଅଶ୍ୱତ୍ଥାମା ଶଲ୍ୟ ଭୀଷ୍ମ ଦ୍ରୋଣ
କେବଣ ବାଗେ ସେହିନ୍ତ ରକ୍ଷା କରିବ ସଂକ୍ଷିପେଣ । ୨୧୯ ।
ଯଦ୍ୟପି ହୋଇବେଟି ସହସ୍ରେକ ବଳରାମ
ତଥାପି କଉରବେନ୍ତ ରକ୍ଷା କରି ନ ପାରିବେଟି ସଂଗ୍ରାମ ।୨୨୦।
ଯେବଣ ବେଳେ ଅର୍ଜୁନ ଗଲେକ ଦ୍ୱାରକା
ଭଗ୍ନୀକ ଭୁମ୍ଭର ହରି ଆଣିଲେଟି ସେହିକା । ୨୨୧ ।
ସାତବଂଶ ଯେନ ଭୁମ୍ଭେ କଲ ଯେ ସଂଗ୍ରାମ
ସେହିକା ଅର୍ଜୁନକୁ ଜିଣି ନୁଆରିଲ ବଳରାମ । ୨୨୨ ।
ପାଣ୍ଡବ ବନ ଦହନେ ସେ ଇନ୍ଦ୍ରେଣ ବବାଧି
ଅମରଗଣ ଜିଣି ଅଗ୍ନିକ ହେଲ ଯେ ମଉଷ୍ଠି । ୨୨୩ ।
ଗ୍ରଣ ନବାଚ କପଟକୁ ବଧକଲା ସେହିବେ ।
ଅମରଗଣନ୍ତ ଯେନ ପୂଜାକଲେ ବାସବେ । ୨୨୪ ।
ଆପଣେ ଜାଣନା କ ଜାରାସନ୍ଧ ରଜାନ୍ତ ଥିଲ ବନ୍ଦୀକରି
ଅଷ୍ଟାଦଶବେଳେ ସେ ଭୁମ୍ଭନ୍ତ ହେଲ ଧାଡ । ୨୨୫ ।
ମହୀଅଳେ ରହି ନୁଆରିଲ ଭୁମ୍ଭେ ତାହାର ଡରେ
କୁଟୁମ୍ବ ଘେନଣ ଯାଇ ପଶିଲ ସାହେର ଭିତରେ । ୨୨୬ ।
ଜାରାସନ୍ଧ ବଧକଲୁ ଭୁମ୍ଭର ନିମନ୍ତେ
କେବଣ ଭଗତ ନୋହିଲୁ ହୋ ଆମ୍ଭେ ତୋତେ । ୨୨୭ ।
ଗୋସିଂଘ ଦଇତ ଭୁମନ୍ତ ଅବା ନ ହେଲ କେତେ କଷ୍ଟ
ସେହିକାସେ ଅର୍ଜୁନ ତାଙ୍କୁ କଲ ପ୍ରାଣଭ୍ରଷ୍ଟ । ୨୨୮ ।

କଉରବେବାନ୍ତ ନେଲା ଯେ ପାଣ୍ଡବାସୁର ଧରି
ମାନଗୋବନ୍ଧ ଉଦ୍ଧରିଲୁ ପାଣ୍ଡବାସୁର ମାରି । ୨୨୯ ।
ପଞ୍ଚାଳଦେଶେ ଅର୍ଜୁନ ରାଧାଚକ୍ର ବିନ୍ଧି
ଦୁଷ୍ଟମନ୍ତ ଯେନ କଉରବେ ହୋଇଲେ ବିବାଦୀ । ୨୩୦ ।
ଚନ୍ଦ୍ର ସମସ୍ତେ ନ ପାଇଲେ କେତେ ଯେ ଅବସ୍ଥା
ଲକ୍ଷେକ ରାଜାନ୍ତ ଜିଣି ଦ୍ରୌପଦୀଂକ ଅଣି ରୁହାଇଲୁ କଥା ।୨୩୧।
ଘୋଷଯାତ୍ରା କଲେ କାମ୍ୟେକ ଯେ ବନେ
ଚିତ୍ରସେନ ବନ୍ଦୀକରି ନେଲା ଦୁର୍ଯୋଧନେ । ୨୩୨ ।
ସମସ୍ତ କଉରବେ ଯେ ପଳାଇଲେ ଡରେ
ଅର୍ଜୁନ ବନ୍ଧନୁ ମୁକତ କଲା ଜିଣି ବିଦ୍ୟାଧରେ । ୨୩୩ ।
ନିଗର୍ତ୍ତ ଅଇଲା ଯେ ସମଦଣ୍ଡ ବାନ୍ଧି
ମୁହିଂ ସେ ବନ୍ଧନ କଲି ବିରାଟକୁ ପରଧାଇ । ୨୩୪ ।
ଦଣ୍ଡ ଭଗ୍ନ ଦେଖି କୋପ କଲାକ ଦୁର୍ଯୋଧନ
ଆପଣେ ବାହିଲା ଅଷ୍ଟାଦଶ କ୍ଷେଉଣୀ ଯେନ ସୈନ୍ୟ । ୨୩୫ ।
ଗୋ ଦୋହନ ବେଳେ ଗୋଷ୍ଠେ ବେଢିଲା ରଯେ୍ତ ଆସି
ସ୍ଥେକା ସହଦେବ ବଳ ପକାଇଲା ଧ୍ୱଂସି । ୨୩୬ ।
ପୁଣ ବଜେକଲା ଆସି ଅର୍ଜୁନ ସମରେ
ସ୍ଥେକା ରଥୀକେ ହେ ଯେ ଜିଣିଲା କୁରୁସାଗରେ । ୨୩୭ ।
ଶତେ ସିଂହର ପ୍ରାକର୍ମ କୀଞ୍ଚକ ଭାଇ ସତେ
ତାହାନ୍ତ ବଧକଲି ମୁହିଂ ମହାଭାର ନିବାରିବା ନିମନ୍ତେ । ୨୩୮ ।
ପ୍ରତକ୍ଷେ ଦେଖିଲା ଅଛ ସ୍ୱାମି ମହିମା ଆପଣା
ଦେଖୁ ଦେଖୁ ବଳଦେବେ ହେଉଅଛ ବଣା । ୨୩୯ ।

---

୨୨୯ { କଉରବେବନ୍ତ ଜିଣି ପାଣ୍ଡେବାସୁର ମାରି
ଦୁର୍ଯୋଧନ ଶତେ ଭ୍ରାଥ ଦେଲୁଟି ଉଦ୍ଧରି । ( ଘ, ଛ ) }

୨୩୪।୨ ମୁହିଂ ସେ ଜିଣିଲ ପରଧାଇ ରୋକ୍ଷ ବନ୍ଧି । ( ଥ, ଠ )

୨୩୮।୨ ତାହାନ୍ତ ବଧ କଲି ଦେବ ସଇନ୍ଧ୍ରୀ ନିମନ୍ତେ । ( ଗ, ଞ, ଝ )

୨୩୯।୨ ଚକ୍ଷୁ ଥାଉଂ ବଳରାମେ ହେଉଅଛୁ କଣା । ( କ, ଧ )

ସୋଦୋଦ୍ର ଭଗିନୀ ତୋ'ର ଅର୍ଜୁନ ଭାର୍ଯ୍ୟା
ଅଭିଷେକ ବିଧାନେ ବସିଅଛୁ ଯେ ଅଭିମନ୍ୟୁ ତୋହୋର
ଭଗିନୀକା । ୨୪୦ ।
କାଦମ୍ବରୀ ପାନ କଲେ କହିନ୍ତି ନ ବଗ୍ଗୁ
ଯେଝଥାଇଁ ବଳରାମେ ପିଠିକି କୋଳକରୁ । ୨୪୧ ।
ଦେଖି ଦେଖି ଉପେକ୍ଷା କରୁ ତୁ ଅମୃତ
ସ୍ୱାମି ସ୍ୱସ୍ୱାଦୁ ମଣି ଫଷ ତୁ କରୁ ଗର୍ଭଗତ । ୨୪୨ ।
ତୁ ଯାହା ବିଗ୍ରହ କରୁ ରାମ ମନଇଚ୍ଛା
ଜାଣିମାନା କଉରବେନ୍ଦ୍ର କେଉଣ ବାଟେ କରୁ ରକ୍ଷା । ୨୪୩ ।
କହୁଂ କହୁଂ ବୃକୋଦର ରକତ କୁମୁଦ ଦୃଷ୍ଟି
ରାଗେ ଶ୍ରୀ ବଳଦେବେ ଗଲେ ତହୁଂ ଉଠି । ୨୪୪ ।
ତାଳଧ୍ୱଜ ରଥ ଆରୋହଣ କଲେ ଦେବରାଜେ
ଦ୍ୱାରକା ପୁରକୁ ଦେବେ କଲେ ତହୁଂ ତଜେ । ୨୪୫ ।
ବଳରାମ କୋପେ କେହି ରହି ନୁଆରିଲେ ଆଗ
ଭୀମସେନର ହିଂସାସେ ପାଇଲେ ବଡ ରାଗ । ୨୪୬ ।
ଯହୁଂ ସେ ପ୍ରସର ଆସି ହୋଇଲାକ ରାତ୍ର
ହବକ ତୋଷିଣ ଯେ ଢଳେ ପୂର୍ଣ୍ଣାହୁତ୍ତ । ୨୪୭ ।
ଉତ୍ତରୀ ପଇତା ଯେ ସୁବର୍ଣ୍ଣ ଲେଖନ
ଯୁଧିଷ୍ଠିରଙ୍କ ଶରୀରେ ଖଞ୍ଜିଲେ ମୁନିଗଣ । ୨୪୮ ।
ଆରୋଗ୍ୟ ଆଶିଷ୍ୟ କଲ୍ୟାଣ କଲେ ବାଞ୍ଛା
ପଞ୍ଚୁ କଣ୍ଟକ ପ୍ରାପତ ହେଉ ପୂରୁ ମନଇଚ୍ଛା । ୨୪୯ ।
ପ୍ରେବେ ବନସ୍ତରେ ଯେ ନିବାରିଲ ଦଇତ ଦୁଷ୍ଟନ୍ତ
ଶତ୍ରୁ ନାଶକର ତୁମ୍ଭେ ହୋଅ ପ୍ରେକଛନ୍ଦ । ୨୫୦ ।
ପୃଥିବୀ ଭାରମାନ ତୁମ୍ଭରେ ହେଉ ଲୀନ
ଅନେକ କଲ୍ୟାଣ ଯେ ଯେ କଲେ ଦେବ ମଘବାନ । ୨୫୧ ।
ଅନେକ ରତ୍ନମାଳା ପଞ୍ଚଙ୍କର କଣ୍ଠେ ଲାଇ
ଉଠିଲେ ବୃନ୍ଦାଅର୍କେ ରଜନୀ କଟାଇ । ୨୫୨ ।

ଅମର ବିଳାସୁଣୀ ଅପର୍ଣ୍ଣା ମହା ସରସ୍ୱତୀ
ଦ୍ରୌପଦୀ ଦେବୀଂକ ଶିରେ ନେଇ ଅର୍ଘ୍ୟ ବନ୍ଦାପନ୍ତି । ୨୫୩ ।
ଆମ୍ଭର ଚିତ୍ତ୍ କି ଯେ ଅଛୁ ମହାସତୀ
ପୃଥ୍ୱୀଭାର ନିବାରଣେ ତୁ ମାନୁଷେ ଉତପତ୍ତି । ୨୫୪ ।
ଭାର ନିବାରଣ ତୁ ଆକାଶରେ ବସ
ପୁଣ କାଳ ଅନ୍ତରେ ତୁ ହୋଇବୁ ପ୍ରକାଶ । ୨୫୫ ।
ଅଭିଷେକ ଯୋଗାଉନ୍ତି ଦେଇଣ ଦେବସ୍ତ୍ରି ଗି
ସ୍ୱାମୀଂକର ତୁଲେ ସେ ବାହାନେ ବିଜେକର । ୨୫୬ ।
ବିଜୟେ ବୃନ୍ଦାଅର୍କେ ସେ ଯେ ଯାହା ବାହାନେ
ପ୍ରବେଶ ହୋଇଲେ ଯାଇଂ ଯେ ଯାହାର ଭୁବନେ । ୨୫୭ ।
ଐରାବତ ଗଜ ଘେନି ଗଲେ ମଘବାନ
ଉଚ୍ଚୈଶ୍ରବା ଅଶ୍ୱ ନେଲେ କମଳ ଲୋଚନ । ୨୫୮ ।
ବନ୍ଧୁବର୍ଗ ଘେନଣ ଯେ ବିଜୟେ ଦେବରାଜେ
ଗରୁଡ଼ ନନ୍ଦଘୋଷ ରଥେ କଲେ ସର୍ବେ ବିଜେ । ୨୫୯ ।
ଗୋବିନ୍ଦ ଚଳିଲେ ଯାଇଂ ଅଭିଷେକ ସାରି
ଅଷ୍ଟକୁଳା ନାଗେ ଗଲେ ଯେ ପାତାଳ ସ୍ୱର୍ଗପୁର । ୨୬୦ ।
ଯେତୁ ଅନନ୍ତରେ ଯେ ପାଣ୍ଡୁଲକ ଗତ
ଶମୀବୃକ୍ଷ ତଳେ ରହିଲେ ପଞ୍ଚ ପାଣ୍ଡବ ଦ୍ରୌପଦୀ । ୨୬୧ ।
ସୁଧର୍ମା ସଭା ଯେ ନେଲକ ବିଶକର୍ମା
ଅଭିମନ୍ୟୁ ସୁଭଦ୍ରାକୁ ଘେନିଗଲେ ସତ୍ୟଭାମା । ୨୬୨ ।
ଯୁଧିଷ୍ଠିରଦେବେ ଯେ ବ୍ୟାସଂକୁ କଲେ ପୁଚ୍ଛା
ବିରାଟ ରାଜ୍ୟକୁ ମୋର ଯାଇବେ ଦେବ ଇଚ୍ଛା । ୨୬୩ ।

---

୨୫୫।୨ "ପୁଣ କାଳ ଅନ୍ତରେ ତୁ ହୋଇବୁ ପ୍ରକାଶ" ଏଇ ପାଠ ପରେ "କ, ଣ"ପୋଥିରେ ଅଧିକା ପାଠ :—

ଦେବଲୋକେ ବ୍ରହ୍ମଲୋକେ ବାଞ୍ଛିନ୍ତି ଆଶିଷ
ମାହେଶ୍ୱରୀ ମାତା ଗୋ ହୋଅ ତୁ ସନ୍ତୋଷ ।

ବ୍ୟାସେ ବୋଇଲେ ବାବୁରେ ହୋଇଥିଲା ବିପଦ
ଯେବେ ସେ ଭୂମିର ବାବୁ ହୋଇଲା ସମ୍ପଦ । ୨୬୪ ।
ଅଗ୍ୟାନେ ବିରାଟ ଯେ ହୋଇଥିଲା ଅଭଗତ
ଅଭିଷେକ ବିଧାନ ଦେଖିଲେ ହୋଇବ ମୁକତ । ୨୬୫ ।
ସକଳ ଋଷିମାନଂକୁ ହୋଇଲେ ପ୍ରଣମିତ
ଶୁଭଯୋଗ ଆସି ମୋତେ ହୋଇଲା ଉପଗତ । ୨୬୬ ।
ସମସ୍ତ ଋଷି ଗଲେ ବହୁତ କଲ୍ୟାଣ ଯେ କରି
ଚଳିଲେ ତୀର୍ଥବାସେ ଆଶ୍ରମେ ଯେ ଯାହାରି । ୨୬୭ ।

—————

## ବିରାଟ ସିଂହାସନେ ଯୁଧିଷ୍ଠିରଙ୍କ ଉପବେଶନ ଶୁଣି, ବିରାଟର କୋପ ଓ ଉତ୍ତର କର୍ତ୍ତୃକ ପରିଚୟ ପ୍ରଦାନ

ଯୁଧିଷ୍ଠିରଦେବେ ବୋଇଲେ ଶୁଣସି ସହଦେବ
ଅଭିଷେକ ହୋଇ ପୃଥୀରେ ଦେଇ ନ ଯୋଗାଇ ପାଦ । ୧ ।
ଯାନ ବାହାନ ତ ଆମ୍ଭର ନାହିଁ କିଛି
ଭୀମସେନ ବୋଇଲା ଦେବ ବୁଦ୍ଧି ଯେ ମୋହୋର ଅଛି । ୨ ।
ସମସ୍ତେହେଁ ବିଜେ କରିବା ଯେ ମୋହୋର ଅଙ୍ଗେ
ବିରାଟ ରାଜ୍ୟେ ଯାଇଂ ପଶିବା ଆମ୍ଭେ ବେଗେ । ୩ ।
ଅଭିଷେକ ବିଧାନ ହୋଇଥିଲେ ଯେବଣ ମତେ
ଯୁଧିଷ୍ଠିରଦେବ ବିଜେକଲେ ଭୀମସେନର ମାଥେ । ୪ ।
ଦିବ୍ୟ ଅବତାର ଯେ ହୋଇଣ ପାଞ୍ଚାଳୀ
ଯୁଧିଷ୍ଠିର ଦେବଂକ କୋଳେ ବିଜେ ଦ୍ରୋପଦ ରାଜାଂକ ଦୁଲାଳୀ ।୫।
ଛୀରସିନ୍ଧୁ ମନ୍ଥନେ ଯେସନ୍ତେ ଲକ୍ଷ୍ମୀ ନାରାୟଣୀ
ଗମନ୍ତି ବଇକୁଣ୍ଠେ ଖଗବର ଆରୋହଣ । ୬ ।
ଧନୁ ଶୋଣ ଭାର ଯେନ ଦିବ୍ୟ ଅଳଂକାର
ଯେନଣ ସକଳେ ସେ ପାଣ୍ଡବ ପଞ୍ଚଭାଇ । ୭ ।

କରେଣ କୋଦଣ୍ଡ ସେ କ୍ଷୋଣିଶ୍ୱର ଘେନ
ଭୀମସେନ ଡାହାଣ ପଖାସ୍ତେ ବିଜୟେ ଫାଲଗୁନ । ୮ ।
ଦିବ୍ୟ ଅବତାର ସେ ନକୁଳ କୁମାର
ଧବଳ ଛତ୍ର ଘେନେଣ ବିଜୟେ ଭୀମସେନ ବାମ ଯେ ପାଖର । ୯ ।
ଧନୁଶର ଧରଥି ଦିବ୍ୟ ଅବତାର କରେଣ ମନ୍ତ୍ରପୋଥି
ଭୀମସେନ ବାମ ପଖାସ୍ତେ ସହଦେବ ମହାମନ୍ତ୍ରୀ । ୧୦ ।
ଅନେକ ଭୂଷଣ ଯେ ସର୍ବୁଂକର କାୟେ
ଦିବ୍ୟ ଅବତାର ସେ ଦିଶନ୍ତି ଦିଗପାଳ ପ୍ରାୟେ । ୧୧ ।
ମେରୁ ଆସନେ ଯେହ୍ନେ ବ୍ରହ୍ମା ବିଷ୍ଣୁ ମହେଶ୍ୱର
ଅସକନ୍ଦ ଦେବତା ଭୁଲେ ଯେହ୍ନେ ବିଜୟେ ବୈଶ୍ୱାନର । ୧୨ ।
ଶରଦ ଆଦିତ୍ୟ ପ୍ରାୟେ ତେଜେଣ ବିକାଶି
ବେଲ ବେନ୍ନଦଣ୍ଡ ମଧ୍ୟେ ଯାଇଂ ମତ୍ସ୍ୟଦେଶେ ପଶି । ୧୩ ।
କଣସ୍ତ ଗିର ଜାଣି ଭୀମସେନ ଗୃଲନ୍ତେ ଶୋହଇ
ପାଞ୍ଚାଲୀ ଅର୍ଜୁନ ରୂପ ଜଗୁଜନ ମୋହଇ । ୧୪ ।
ଦେଖିଣ ବିଷାଦ ଯେ ହୋଇଲେ ପୁରଜନେ
ସ୍ୱେସନେକ ବିଧାନ ସ୍ୱେ ହୋଇଲେ କେସନେ । ୧୫ ।
ମୂର୍ଖଲୋକେ ବୋଲନ୍ତି ସ୍ୱେତ ସଭାପଣ୍ଡା କୋଲ୍ତଭଟ୍ଟ
ଦିଗପାଳ ପ୍ରାୟେ ତ ଦିଶନ୍ତି ଅତି ଶ୍ରେଷ୍ଠ । ୧୬ ।
କେ ବୋଲଇ ଶତେ କୀଚକକୁ ଖାଇଲା ସଇରନ୍ଧ୍ରୀ
କୋଲ୍ତଭଟ୍ଟ ଭୁଲେ ଯେହ୍ନ ଦଶେ ଅଭିଷେକୀ । ୧୭ ।
କେ ବୋଲଇ ଉତ୍ତର କୁମାରୀ ସ୍ୱେ କରଉଥିଲା ନୃତ୍ୟ
ନପୁଂସକ ରୂପ ଛାଡ଼ି ସ୍ୱେତ ଇନ୍ଦ୍ରସ୍ୱରୂପ ଫଜାତ । ୧୮ ।
କି ଅବା ନାରାୟଣ ଦେବତା ଚକ୍ରପାଣି
ସ୍ୱେହାଂକର ଚରିତ ଯେ ନୁଆରିଲୁ ଜାଣି । ୧୯ ।

---

୯।୧ ଦିବ୍ୟ ବେଶ ଅଲଂକାର ନକୁଳ କୁମାର । (ଙ, ପ, ଗ, ଞ୍ଜ, ଧ, ଛ)
୧୮।୨ ନପୁଂସକ ରୂପ ଛାଡ଼ି ସ୍ୱେତ କନ୍ଦର୍ପ ସ୍ୱୟେଂ ଜାତ । ( ଦ, ଜ )

କେହୁ ସ୍ୱୈହାର ଯେ ନ ଗୃହ୍ଣନ୍ତି ଥିଲା ମୁଖ
ଦିବ୍ୟ ଅବତାର ସ୍ୱୈତ କନ୍ଦର୍ପ ସ୍ୱରୂପ । ୨୦ ।
କେ ବୋଲଇ ଠାକୁରଂକୁ ସ୍ୱୈ ଅଶ୍ୱ କରାଉଥିଲା ଲାଗି
ସେ ଚନ୍ଦ୍ରିକାର ବାଜପାଳ ସୁନ୍ଦର ମହାଭୋଗୀ । ୨୧ ।
ଶରୀରେ ଆଭରଣ ଯେ କଣସ୍ୱ ଅମୂଲ୍ୟ
ଲକ୍ଷ୍ମୀର ଭଣ୍ଡାର ତହିଁଂକ ନୋହଇ ସମତୁଲ । ୨୨ ।
କେ ବୋଲଇ ତନ୍ତୀପାଳ ଗୋପାଳ ରୂପ ଦେଖ
ଆକାଶ ତେଜଣ କ ହଜସ୍ୱୈ ହିଁ ଅମ୍ବକ । ୨୩ ।
ମନ୍ତ୍ରୀର ବିଧାନ ତ କରେଣ ମନ୍ତ୍ରପୋଥି
ଦଣ୍ଡକ୍ଷତ କରେ ଧରି ସ୍ୱୈତ ଅଭିଷେକୀ ପ୍ରାସ୍ୱୈକ ଦିଶନ୍ତି । ୨୪ ।
କେ ବୋଲଇ ସ୍ୱୈତ ରାନ୍ଧ ଦେଉଥିଲା ବଲ୍ଲବ
ଦେଖ ଯେ ସ୍ୱୈହାର ହୋ ମହିଂମା ଦୁଲଭ । ୨୫ ।
ସ୍ୱୈହାଂକର ଚରିତ ତ ନ ପାରିଲୁ ଜାଣି
ହିଗପାଳ ପୁରୁଷ ସ୍ୱୈ ଗଗନ ଚୂଡ଼ାମଣି । ୨୬ ।
ସ୍ୱୈକା ଦେହକେ ଯେ ପାଞ୍ଚଗୋଟି ଦେଖି
ହସନ୍ତି କଉତୁକେ ଯେ ଲଜାନ୍ତି ଉପେଖି । ୨୭ ।
ମୁଣ୍ଡେ କାନ୍ଧେ କାଖେ ହସ୍ତେ ସେ ବହଇ
ସ୍ୱୈକକୁ ଆରେକ ସେ ରୋଷଭରେ କହି । ୨୮ ।
କେହୁ ହସନ୍ତି କେହୁ ପାଉନ୍ତି କୁତୁକ
କେହୁ ମଙ୍ଗଳ ଧ୍ୱନି କରନ୍ତି ଦିଅନ୍ତି ହୁଳହୁଳି । ୨୯ ।
ମୂର୍ଖ ଲୋକେ ବୋଲନ୍ତି କେମନ୍ତ ସ୍ୱୈ ଭାଇ
ସ୍ୱୈମନ୍ତ ପ୍ରପଞ୍ଚେ ସ୍ୱୈ ବୁଲନ୍ତି କସପାଇଂ । ୩୦ ।
ଦେଖିଣ ବିଚାରନ୍ତି ରାଜ୍ୟର ଗଣିତ ଭାଗ୍ୟଂଲୋକେ
ସ୍ୱୈ ରାଜ୍ୟରେ ପଶିସ୍ୱୈତ ମୂର୍ଦ୍ଧନା ଅଭିଷେକେ । ୩୧ ।
କେ ବୋଲଇ ବିରାଟ ଯେ କଲା ମନ୍ଦକୃତ୍ୟ
ଅନ୍ତଅନ୍ତ ବିଶ୍ୱାସେ ଯେ ପୋଷିଲା ସ୍ୱୈହାନ୍ତ । ୩୨ ।

---

୨୦ { କେହୁ ସ୍ୱୈହାର ଅଙ୍ଗ ନ ଛୁଅନ୍ତି ନପୁଂସକ ବୋଲି
ଦିବ୍ୟ ଅବତାର ଦିଶଇ ଇନ୍ଦ୍ରରୂପ ସରି । (କ, ଝ)

କୀଚକ ନାଶଗଲା ରାଜ୍ୟତ ଅଣରେଖ
କାଳରେ ବିରାଟଙ୍କୁ ରାଜ୍ୟ ମାଡ ବସିବେ ପ୍ରତ୍ୟକ୍ଷ । ୩୩ ।
କରେଣ ଅର୍ଘ୍ୟ ଯେହ୍ନ ସୁଲଭ କାମିନୀ
ଦେବ ବନ୍ଦେ କଲା ପ୍ରାୟେ ଦିଅନ୍ତି ହୁଳହୁଳି ଧ୍ୱନି । ୩୪ ।
ମାହେନ୍ଦ୍ର ଯୋଗେ ସେ ଯେ ଶୁଭ ଅନୁକୂଳେ
ଆସ୍ଥାନ ମାଡ ବସିଲେ ପ୍ରଭିଗ୍ୟାଂ ମହାବଳେ । ୩୫ ।
କଣସ୍ତୁ ସିଂହାସନେ ଯେ ବଜସ୍ତେ ଧର୍ମଶିଷି
କୋଳେଣ ପାଞ୍ଚାଳୀ ଯେହ୍ନ ଆସ୍ଥାନେ ଛନ୍ତି ବସି । ୩୬ ।
ପାବଚ୍ଛକର ତଳେ ସହଦେବ ମହାମନ୍ତ୍ରୀ
ଭୂତ ଭବିଷ୍ୟ ଜାଣଇ ସେ କରେଣ ମନ୍ତ୍ରପୋଥି । ୩୭ ।
ଆରେକ ପାବଚ୍ଛ ତଳେ ବଜସ୍ତୁ ପାଳଗୁମୀ
ବାମକରେ ଗାଣ୍ଡିମ ଡାହାଣ କରେ ଖଡ୍ଗ ଯେହ୍ନ । ୩୮ ।
ଆବର ପାବଚ୍ଛ ତଳେ ନକୁଳ କୁମାର
ନବନଶି କୋନ୍ତ ଯେହ୍ନ ସମାର୍ଜଇ ବାଜପାଳ । ୩୯ ।
ବାଆନ ବାଆନ ଭର ଗଦା ଯେହ୍ନଣ ବେନକରେ
ଭୀମସେନ ଆବୋର ଯେ ବସିଛନ୍ତି ସିଂହଦ୍ୱାରେ । ୪୦ ।
କାଳଚକ୍ର ପ୍ରାୟେକ ଭ୍ରମଇ ବେନଡୋଳା
ଯମ ଦେବତା ପ୍ରାୟେକ ଦିଶଇ ଅନର୍ଗଳା । ୪୧ ।
ମୂର୍ତ୍ତିକ ଗୃହଂ କେହ୍ବ ନୁଆରନ୍ତି ଉରେ
ଭୟେ ସବଲୋକେ ଯେ ଅନାବନ୍ତି ଧୂରେ । ୪୨ ।
ଦେବାର୍ଚ୍ଚନ ମଧ୍ୟରେ ଯେ ବଜସ୍ତେ ବିରାଟ
ଗୁରଗଣେ ଜଣାଇଲେ ରାଜ୍ୟ ତୋହୋର କୋନ୍ତଭଟ୍ଟ । ୪୩ ।
ଯେବଣ ସଇରନ୍ଧ୍ରୀ ମୋତୀ ହେଲୁ କୀଚକ ନାଶଗଲା
ଅଭିଷେକ ହୋଇଣ ସେ କୋନ୍ତଭଟ୍ଟ କୋଳରେ ବସିଲା । ୪୪ ।
ଅଭିଷେକ ଯୋଗାଡ ଦେବେ ସେ ପାଇଲେ ଅବା କାହ୍ନିଂ
ସେ ରତ୍ନମାଳମାନ ମଧ୍ୟପୁରେ ଦେଖିଲ ଆମ୍ଭର ନାହିଂ । ୪୫ ।

---

୩୪।୨ ଦଗବନ୍ଦେ ପ୍ରାୟେ ଦିଅନ୍ତି ହୁଳହୁଳି ଧ୍ୱନି । (ଝ, ଗ, ଙ୍କ, ଦ, ବ)

ସ୍ୱାମି ଦ୍ୱିତ୍ୟ ଅବତାର ସେ ଯେ ତନ୍ତ୍ରୀପାଳ ଗୋପାଳ
ମନ୍ତ୍ରୀପଣେ ପୋଥିଯେ ବେଦ କହଇ ଭୂତ ଭବିଷ୍ୟ ସକଳ ।୪୬।
କନକ ଦଣ୍ଡ ଛତ୍ର ଧବଳ ଚାମରଛତ୍ର କରେ ବେନ
ଧନୁଦ୍ରୋଣ ଭରଥି ବାଜପାଳ ବୃହନ୍ନଳା । ୪୭ ।
ଦ୍ୱାର ଆବୋରି ଦେବ ରହିଛି ବଳବ
ତ୍ରୈଲୋକ୍ୟ ମୂରତି ତାର ଅଟଇ ଦୁଲଭ । ୪୮ ।
ତାହାଂକର ଗୁପତ ଦେବ ନୁଆରଲୁ ଜାଣି
ଦିଗପାଳ ପୁରୁଷ ସେ ଗଗନ ଚୂଡ଼ାମଣି । ୪୯ ।
ଉଗର ମୁଖୁଂ ଯେସନ ବାରତା ଶୁଣିଣ ବିରାଟ
କରେ ଅସିପତ୍ର ଧରି ଅଧର କଲ୍ପ ପୁଷ୍ଟ । ୫୦ ।
ଧାମଇଂ ମହୀଧିପ କରେ ବେନ ଖଣ୍ଡା
ଯେମନ୍ତ ଦର୍ପ କମ୍ପେ ବଳ୍ବଲ କୋନ୍ତପଣ୍ଡା । ୫୧ ।
ଆଜ ତାହାର ମୁଣ୍ଡ ମୁଂ ପକାଇବି ହାଣି
କୋଳକରି ଧଇଲା ଶ୍ରୀକୃଷ୍ଣା ପାଟରାଣୀ । ୫୨ ।
ସ୍ୱାମି ରହ ରହ ବୋଲି ସେ ଶ୍ରୀକୃଷ୍ଣାଯେ ବୋଲି
ରାଗେଣ ବିରାଟେଶ୍ୱର ଶ୍ରୀକୃଷ୍ଣାଂକୁ ଢଳେ ପେଲି । ୫୩ ।
ଅନ୍ତପୁରୁଂ ରାଜା ଯେ ହୁଅନ୍ତେଣ ବାହାର
ପିତାର ଭୁଜ ଧଇଲା ଉତ୍ତର କୁମର । ୫୪ ।
ରହ ରହ କୋପ ସଂହର ରାଯେ ମହୀ
ଅନାଦି ପୁରୁଷଂକୁ ତୁ ଭେଟିଲୁ ପ୍ରତ୍ୟକ୍ଷ । ୫୫ ।
ବିରାଟ ବୋଇଲା ରେ ଖଡ଼ଗ ଗୁଡ଼ ବାବୁ
ବିଚକ୍ଷଣ ପୁତ୍ର ବୋଲି ତୋତେ ସମର୍ପିଲି ସବୁ । ୫୬ ।
ବାବୁ ଅଦଭୁତେ କାହୁଂ ଆସି ପଶିଲେ ଭୃତ୍ୟପଣେ
ମୋହର ସମ୍ପଧି ମାଡ଼ି ବସିଲେ ଅକାରଣେ । ୫୭ ।
ଅତିହିଂ ଆଶ୍ୱାସ କରି ପୋଷିଲିଇଂ ଶ୍ୱାନ
ଅନ୍ତେ ସେ ମୋହୋର ମୁଖେ ଦିଲକ ଚୁମ୍ବନ । ୫୮ ।
ବାବୁ ଯେବେ ଜାଣିଲ କୋନ୍ତଭଟ ବଡ଼ ଲଘୁ
କିଂପାଇଂ ସହି ନୁଆରିଲ ନପୁଂସକ ଲଘୁ । ୫୯ ।

ଅନନ୍ତଂ ରାଗେ ପିନ୍ଧା ମାଇଲ ପଶାକାଠି
ବାଜଣ ଫାଟିଲ ତାହାର ଲଲାଟ ଯେ ପାଟି । ୭୦ ।
ସ୍ୱେଦେ ପାମରଙ୍କୁ ତୁ କଂକେ ସମାର୍ଜନା କଲୁ
ରୁଣ୍ଡାଳ ପୃଷ୍ଠରେ ତାହା ରୁରଙ୍କୁ ମୋତେ ପ୍ରଳମ୍ବ କରାଇଲୁ । ୭୧ ।
ତେତେ ବେଳହୁଂ ମୋତେ ଦେଖିଲନ୍ତି ତେଜ
ତେଣୁକରି ମାଡିବସିଲ ସେ ମୋହୋର ରାଜ୍ୟ । ୭୨ ।
ବାବୁ ଭୀଷ୍ମ ଦ୍ରୋଣ ଜିଣିମାକୁ ତୁ ହୋଇଲୁ ସାମରଥା
କେମନ୍ତେ ସର୍ବ୍ବଅଚ୍ଛୁ ପୂର୍ବ ସ୍ୱେଦେଙ୍କ ମନ୍ଦକଥା । ୭୩ ।
ଉତ୍ତର କୁମର ବୋଇଲ ପିତା ଦଣ୍ଡେକ ଥିରହୋଇ ବସ
ଶ୍ରୀଭୁଜୁଂ କୃପାଣ ଥୋଇ ଥିର କର ନିଶ୍ୱାସ । ୭୪ ।
ସାବଧାନ ହୋଇ ତୁମ୍ଭେ କ୍ଷଣେ ଶୁଣ ମୋର ବାକ୍ୟ
ସମ୍ପଦ ହରିବାକୁ କି ପ୍ରତାପ୍ୟଂ ତୋର ସାତା । ୭୫ ।
ସ୍ୱାମି ସାବଧାନେ ଶୁଣ ହୋ ସେ କୋନ୍ତଂକ ମହିମା
ସ୍ୱେ ମହୀମଣ୍ଡଳେ ସେ ପୁରୁଷ ଉତ୍ତମା । ୭୬ ।
ସ୍ୱାମି ରାଜସୂି ଯାଗ ସେ ଯେ ଆରୋପଣ କଲ
ଗୃହଜଣା ଲକ୍ଷେ ରାଜା ଯାହାର ଚରଣେ ସେବିଲ । ୭୭ ।
ସ୍ୱାମି ତ୍ରୈଲୋକ୍ୟ ଠାକୁର ସେ ଦେବ ମଧୁହାରି
ଯାହାର ଯଶ୍ୟଂଶାଳେ ସେ ଅନନ୍ତ ପଢିହାରି । ୭୮ ।
ସ୍ୱାମି ଦେଖିଲୁଟିକ ଲକ୍ଷେ ରାଜା ସନ୍ତୁଖେ ନାରାୟଣ
ଯାହାର ପାଦ ଆର୍ଦ୍ଧନା କରନ୍ତି ପ୍ରତିକ୍ଷଣେ । ୭୯ ।
ପାତାଳପୁର ସେ ଅନନ୍ତ ନାଗରାଜା
ଯେବଣ ସ୍ୱାମି ପାଦେ କଲକ ପାଦପୂଜା । ୮୦ ।
ପାଞ୍ଚ ଉତ୍ତର ଶତେରଥ ପାଣିଦ୍ରବ୍ୟ ଘେନରାଲୁଂ
ସାତକ୍ଷଉଣୀ ଦଳ ଯେନ ଛଷଶାଳେ ଅନ୍ନ ଭୁଞ୍ଜିଲୁ । ୮୧ ।

---

୭୫ { ଅବଧାନ ହୋଇ ତୁମ୍ଭେ କ୍ଷଣେ ଶୁଣ ମୋର ବାକ୍ୟ
{ ସମ୍ପଦ ହରିବାକୁ ତାହାର ପ୍ରତାପ୍ୟଂ ନୋହଇ ସାତା । ( ଜ )

ଅନୁବ୍ରତେ ବୋଲ ଯେ ପାଉଥିଲ ପଶ୍ଚିମଦ୍ୱାରେ
କେହ୍ନ ଜାଣନ୍ତା ନୋହିଲ ଯେ ସ୍ୱାମିଂକ ଛଦ୍ମରେ । ୭୨ ।
ଭାଇ ତାହାଂକର ତୋହର ଗଣ୍ଡସ୍ଥଳେ ଦେଇ ହାଥ
ତାହାଂକର ପାଦତଳେ ତୋତେ କରାଇଲେ ପ୍ରଣିପତ୍ୟ । ୭୩ ।
ଉଠ ବୋଲି ସ୍ୱାମି ଗୃହ ଦେଲେ ପଞ୍ଚଲହ
ବହ୍ମମୁଦ୍ର ଦେଖିବାକୁ ନୋହିଲୁ ତୁ ରହ । ୭୪ ।
ଭୋ ପିତା ହାଥର ସୁଖେ ସେ ଖେଳିଲେକ ପଶା
ସହୋଦ୍ରେ ସମ୍ପଦ ଦେଇ ଅରଣ୍ୟେ କଲେ ବସା । ୭୫ ।
ଅଜାତଶତ୍ରୁ ଯେବଣ ଧର୍ମବ୍ୟେ ଯୁଧିଷ୍ଠି
କର ଲେଉଟାଇଲେ ଉଠେ ନବସୃଷ୍ଟି । ୭୬ ।
ସ୍ୱାମି ଅଗ୍ୟାଂତବାସ ତାଂକ ଗୋପ୍ୟାନ ନିମନ୍ତେ
ସତ୍ୟେଣ ନାମ ସେ ଯେ ବୋଲାଇଲେକ କୋନ୍ତେ । ୭୭ ।
କୋଇନ୍ତା ଦେବୀଂକର ଯେ ଅତ୍ୟନ୍ତ ଜ୍ୟେଷ୍ଠବତ୍ସ
କୋନ୍ତୁଭଛ ନାମ ବହିଲେ ନ କହିଲେ ମିଛ । ୭୮ ।
ସ୍ୱାମି ପାଣ୍ଡ୍ରବାସୁରକୁ ଯେ ବଧକଲେ ରଣେ
ପାଣ୍ଡ୍ରବ ନାମ ସେ ଯେ ବହିଲେ ପାଞ୍ଚଜଣେ । ୭୯ ।
ବିଷଲଡ଼ୁ ଖାଇ ଯେ ପାରକଲ ପ୍ରତକ୍ଷେ
ନାଗୁଣୀ ବଳ ଜିଣିଲ ସେ ପବନର ବଳେ । ୮୦ ।
ଯଦୁର ଘରୁ ଉବୁରିଲେ ପୋଡିଲ ନିଶାକାଳେ
କୁର୍ମ୍ମାଶ ନାମେ ଦାନବ ଯେ ନିପାତିଲେ ଜଳେ । ୮୧ ।
ମଧୁବନ ତୋଟାରେ କିର୍ମ୍ମଶ ନାମେ କଉଣୋପ
ବିନା ଯୁଦ୍ଧରେ ଯେ ହରିଲେ ତାହାର ଦର୍ପ । ୮୨ ।
ବକ ହିଡମ୍ବିକା ମାରି ଯେ ଏକଚକ୍ରା ନଗ୍ର ରଖି
ହିଡମ୍ବିକା ପ୍ରଦାନେ ଯାହାର ପ୍ରତଗ୍ୟାଂ ରହିଅଛି । ୮୩ ।

---

୭୮ { କୋଇନ୍ତା ଦେବୀଂକର ଯେ ଅତ୍ୟନ୍ତ ଜ୍ୟେଷ୍ଠ ବତ୍ସା ।
ଧର୍ମେଣ ଯୁଧିଷ୍ଠିର ସେ ପ୍ରତଗ୍ୟାଂ କହିଛା । ( ତ, ଧ, )

ତୋଷି ଶିବପୁରେ ସେ ଶୃଣ୍ଡାଳ ବଳ ଧ୍ୱଂସି
କୁମ୍ଭେକ ନବାରଲେ ନରସ୍ତକ ବନେ ପଶି । ୮୪ ।
ଗୃପତ ନମନ୍ତେ ସେ ବଲ୍ଲଭ ସୂପକାର
ବ୍ରାଘ ମାଲ ମାଇଲ ଯେ କଉତୁକ ସମର । ୮୫ ।
ସ୍ୱାମି ପାଞ୍ଚାଳ ଦୁର୍ହ ସଙ୍କନ୍ଧୀ ବାକ୍ୟ କର
ଶତେ ମାତୁଳ ମୋର କୀଚକଙ୍କ ରଣେ ମାର । ୮୬ ।
ଯେ ତୋତେ ପାରକଲ ନିଗର୍ଭିର ବନ୍ଧନୁ
ବଲ୍ଲଭ ସୂପକାର ସେ ଯେ ପବନର ତନୁ । ୮୭ ।
ଶୁଣି ପିତାମହ ପ୍ରତଗ୍ୟାଂ କରନ୍ତି
ପର ଦୁଃଖେ କାତର ସେ କଇଲ୍ଲା ଜଗଜ୍ଜେଠୀ । ୮୮ ।
ସ୍ୱାମି ଉତ୍ତର ହଗ ବଳେ କଲକ ଯେ ସାଧି
ଜଣିଲ୍କ ଗୃଳଣ ସହସ୍ର ମହାଯୋଧୀ । ୮୯ ।
ଲିଦ୍ୱ ପୋଛନ୍ତେ ଯେବଣ ପ୍ରାଣ କରଇ ନଷ୍ଟ
ସମରେ ଜଣିଲ୍ଲ ଯେତୁ ନୃପତ ସମାଗୋଷ୍ଟ । ୯୦ ।
ପୁଣିହ୍ୱଂ ହଗବଳେ ତାତ କଲକ ପାତାଳେ
ସପତ ଦ୍ୱୀପା ପୃଥିବୀ ସେ ଧଇଲ୍ ଧନୁହୁଳେ । ୯୧ ।
ଦେଖିଣ ସାନନ୍ଦ ଯେ ହୋଇଲେ ନାଗରାଜା
ଦୁହିତା ଦେଇଣ ଯେବଣ ସ୍ୱାମୀକ କଲ ପୂଜା । ୯୨ ।
ପାଞ୍ଚାଳ ଦେଶେଣ ଯେତୁ ମହାଲକ୍ଷ ବନ୍ଧ
ବ୍ରହ୍ମ ରୂପେଣ ସେ ଜଣିଲେ ସର୍ବ ଯୋଧୀ । ୯୩ ।
ବସନ୍ତ ଉତ୍ସବେ ଯେ ହର ଆଣିଲେ ସଭଦ୍ରେ
ଅନେକ ଦ୍ୱନ୍ଦକର୍ମ ଯେ ହାରିଲେ ରାମଚନ୍ଦ୍ରେ । ୯୪ ।
ଶ୍ରୀକୃଷ୍ଣକଇଂ ଭସୁକର ପଳାଇଲ୍ ଶତଧନୁ
ଶରଣ ପଶିଲ୍ ସେ ପିତା ଅଭିମନ୍ୟୁ । ୯୫ ।
ଅନେକ ସମର ସେ କଲେକ ଚକ୍ରଧାଗ୍ର
ନାଗପୁଣେ ଜଣିଲ୍ ସେ ସମରେ କଷାକର । ୯୬ ।

---

୯୬।୧ ଅନେକ ସମର ସେ କଲେକ ଗସ୍ତାଧାଗ୍ର । ( ଗ, କ, ଙ୍କ )

ଖାଣ୍ଡବ ବନ ଦହନେ ସେ ଜିଣିଲ ଆକାଶ
ଅଗ୍ନି ଦେବତାଙ୍କୁ ତାରିଲେ ସେ ବ୍ୟାଧି ଗଲା ନାଶ । ୯୭ ।
ଅନେକ ସମର ସେ କଲାକ ଜମ୍ଭଭେଦୀ
ଇନ୍ଦ୍ର ଜିଣି ଅଗ୍ନି ଦେବତାର ହରିଲାକ ବ୍ୟାଧି । ୯୮ ।
ନିବାତ କବଚଙ୍କୁ ସେ ମାଇଲା ଆକାଶେ
ଅନେକ ପୂଜା ପାଇଲା ଅମର ସ୍ୱର୍ଗବାସେ । ୯୯ ।
କିରୀଟ ମୁକୁଟ ଇନ୍ଦ୍ର ବାନ୍ଧିଲେକ ଶିରେ
କିରୀଟୀ ନାମ ପାଇଲା ଅମର ସ୍ୱର୍ଗପୁରେ । ୧୦୦ ।
ସ୍ୱାମି କିରାତ ରୂପେଣ ସେ ହରଙ୍କୁ ଯେ ଜିଣି
ଭଯ୍ୟେଣ ପ୍ରସନ୍ନ ଯେ ହୋଇଲେ ଶୂଳପାଣି । ୧୦୧ ।
ସାନନ୍ଦେ ବର ସେ ଦିଲେକ ଦେବହର
ଅକ୍ଷୟେ ତୋଣ ପାଶୁପତ ଅସ୍ତ୍ର ଦିଲେ ପାଥର । ୧୦୨ ।
ହନୁମନ୍ତର ଭୁଲେଣ ସେ ହୋଇଲା ବିବାଦୀ
ଶରେ ଶରେ ସାଗରେ ସେତୁ ସେତୁବନ୍ଧ ବାନ୍ଧି । ୧୦୩ ।
ରାଧାଚକ୍ର ବିନ୍ଧିଲାକ ଦେଖିଲୁ ମହିମା
ଲକ୍ଷେ ରାଜା ଦେଖି ଲଂଘି ନ ପାରିଲେ ଯାହାର ସୀମା । ୧୦୪ ।
ମେରୁଶୂଳ ବଧ କଲେ ଯେତୁ ହରିହର ଛଳେ
ଶରଣ ପଞ୍ଜର ସ୍ୱାମୀ ସେ ଅନ୍ତ ସର୍ବକାଳେ । ୧୦୫ ।
ଗୋପ୍ୟାନ ନିମନ୍ତେ ସେ ନପୁଂସକ ରୂପ ଧରି
ଉର୍ବଶୀର ଶାପେ ସେ ଦିନ ପାରି କରି । ୧୦୬ ।
ଗୋଧନ ହରଣେ ମୁଂ ତାହାନ୍ତ ଗଲି ଘେନି
ସମୁଦ୍ର ପ୍ରାୟେ ମଣିଲି ମୁଂ କଉରବ ସଇନ । ୧୦୭ ।
ଭୟେଣ ପଳାଇ ମୁଂ ରଥ କଲି ତେଜ୍ୟା
ମୁକୁ ନିର୍ଭୟ କରି ବୋଇଲା ତୁ ସାରଥି ହୋଇଥାଅ ଯା । ୧୦୮ ।

୧୦୫।୧ ମେରୁଶୂଳ ବଶ କଲେ ଯେତୁ ହରିହର ଛଳେ । (ଗ, ଙ, ଞ)
୧୦୮।୨ ମୋତେ ବୋଇଲେ ରେ ସାରଥି ହୋଇଥାଅ ଯା ।
( ଅଧିକାଂଶ ପାଠାନ୍ତର )

ମୁହିଂ ସେ ସାରଥି ଆପଣେ ହୋଇଲେ ରଥୀ
ଦେବେ ସେ ଅଗୋଚର ଦେଖିଲି ତାହାଂକର ମୂର୍ତ୍ତି । ୧୦୯ ।
ଅଠାର କ୍ଷଉଣୀ ବଳକୁ ସେ ପାର୍ଥ ରଥୀ ଏକା
ଜିଣିଲେ ଭୀଷ୍ମ ଦ୍ରୋଣ ସେ ମନେ ନ ହିଂ ଶଂକା । ୧୧୦ ।
ମନବେଗ ନାରାଚକୁ ବିନ୍ଧିଲେ ସେ ବେନି
ତେର ଯୋଜନ ମାତ୍ର ପଡିଲେ ଯେ ଯେ ଅଷ୍ଟାଦଶ କ୍ଷଉଣୀ
ସଇନ । ୧୧୧ ।
ରଥୀ ମହାରଥୀଏ ପଡିଲେ ମହାଦୁଃଖେ
ଶ୍ରୀଭୂଷା ମଣି ମୁକୁଟମାଳ ତାତ ଆଣିଲି ମୁହିଂ ସୁଖେ । ୧୧୨ ।
ମରଣକୁ ଇଚ୍ଛା ଯେବେ କରଅଛୁ ତାତ
କାହାକଇଂ କୋପ ଯେ କରୁଅଛୁଂ ମହନାଥ । ୧୧୩ ।
ଏକା ଯୋଦ୍ଧାକେ ତାତ ଜିଣିଲେ ସ୍ୱର୍ଗ ତିନ
ବୃହନ୍ନଳା ବୋଲୁ ଯାହା ସେ ପ୍ରତ୍ୟକ୍ଷେ ଫାଲଗୁନ । ୧୧୪ ।
ମାଦ୍ରୀର ନନ୍ଦନ ନକୁଳ କୁମାର ଯାହାକୁ ବୋଲୁ
ରାଜସୀ ଯଗ୍ୟଂରେ ଯାହାର ମହିମା ଦେଖିଲୁ । ୧୧୫ ।
ଅଶ୍ୱିପୁ ସୁକୁମାର ଅଟଇ ତାହାର ଅଙ୍ଗ
ଲକ୍ଷେ ରାଜା ମଧ୍ୟରେ ଯେ ବୋଲାଇ ଭୁଜଙ୍ଗ । ୧୧୬ ।
କୋଳମୁନେ ପୃଥୀ ଯେ ଧରିବାକୁ ସାମରଥା
କୁମାର ମୁଖେ ଯାକୁ ଆକାଶେ ପାଟ ଯଥା । ୧୧୭ ।

---

୧୧୨। "ଶ୍ରୀଭୂଷା ମଣି ମୁକୁଟମାଳ ତାତ ଆଣିଲି ମୁହିଂ ସୁଖେ" ଏଇ ପାଠ ପରେ "ଗ ଓ ଠ" ପୋଥିରେ ଭିନ୍ନ ପାଠ :—

ମୋତେ ବୋଇଲେ ରତ୍ନ ଅଲଂକାରମାନ
ବାଛି ବାଛି କର ନଅ ରାଜାର ନନ୍ଦନ ।
ତାହାର ବଚନେ ମୁଂ ଯେ ରଥରୁ ଓହ୍ଲାଇ
ଶ୍ରୀଭୂଷା ମୁକୁଟମାନ ଆଣିଲି ଛଡାଇ ।
ମରଣକୁ ଇଚ୍ଛା କଂପା କରଅଛୁ ତାତ
ତାହାଂକ କୋପକୁ ନାଶିବୁତ ଗାର ବନ୍ଧ ।

ଦକ୍ଷିଣଦିଗ ରାଜାନ୍ତ ସେ ସାଧିଲେକ ଅବହେଳେ
ଚନ୍ଦ୍ରପୁର ଧ୍ୱଂସିଲା ସେ ଯାହାର ବୁଦ୍ଧିବଳେ । ୧୧୮ ।
ଗ୍ରନ୍ଥିକାର ମତେ ଅନପାଳ ସରୂପେ
ଅସାଧ୍ୟକୁ ସାଧିକଲା ଯାହାର ମନ୍ତ୍ର ମହାଦର୍ପେ । ୧୧୯ ।
ନ ଭୁଞ୍ଜି ଅନମିତେ ଯାହାକୁ କୋପକରୁ
ଦେଖ ତାତ ଜୀଉଁ ଜୀଉଁ ମରଣକୁ କଂପେ ଇଚ୍ଛାକର ଲୋଡ଼ୁ ।୧୨୦।
ମନ୍ତ୍ରୀଚୂଡ଼ାମଣି ସହଦେବ ଯାହାକଇଁ ବୋଲି
ମନ୍ତ୍ରେଣ ସାଧିଲା ସେ ପୃଥିବୀ ଗୋରୁପଲି । ୧୨୧ ।
ପୂର୍ବଦିଗ ରାଜାନ୍ତ ସେ ସାଧିଲେକ ହେଳେ
ସାତ ସହସ୍ର ରାଜା ସେ ଖଟିଲେ ଯାହାର ପାଦତଳେ । ୧୨୨ ।
ଯେବେ ଅଷ୍ଟାଦଶ କ୍ଷଉଣୀମାନ ଗୋବନ୍ଧର କୂଳେ
ପ୍ରଥମ ସମରେ ଆସି ଗୋଧନ ବେଢ଼ିଲେ । ୧୨୩ ।
ଯେଉଁ ଗୋପ ଲକେ ବହୁତ ସମର ସେ ହାଦେକଲା
ମାନଗୋବନ୍ଧ ଦର୍ପ ଚୂର୍ଣ୍ଣ ସେ ଗୋଧନ ଛଡ଼ାଇ ଆଣିଲା । ୧୨୪ ।
ଯେଉଁ ଯେଉଁ ଜଣକେ ତାତ ଅପାର ମହିମା
ଦେବଦାନବେ ଲଂଘି ନୁଆରନ୍ତି ଯାହାର ସୀମା । ୧୨୫ ।
ଅଗ୍ୟାନେ ଯେ କୋପ ଜାତ କରୁ ପିତ ମହ
ସିଂହର ଗୁମ୍ଫରେ ଶ୍ରିକାଳ କାହିଁ ରହ । ୧୨୬ ।
ଅନାଦି ଅପର୍ଣ୍ଣା ସେ ଦ୍ରୌପଦ ଦୁଲାଳୀ
ସଙ୍କଳକ୍ଷ୍ମୀ ରୂପେ ସେ ସତ୍ୟବ୍ରତ ପ୍ରତିପାଳି । ୧୨୭ ।
ଯେ ମହୀଭାର ସେ ଅଟଇ ନବାରଣୀ
ପ୍ରତ୍ୟକ୍ଷେ ଅନପୂର୍ଣ୍ଣା ସେ ସ୍ତ୍ରିରାକୁଳ ଶିରୋମଣି । ୧୨୮ ।
କଉରୋବ ବଳ କ୍ଷୟନ୍ତା ସେ ଦ୍ରୋପଦ ଅବଳା
ଯେଉଁମାନର ନମନ୍ତେ ଯାହାର କେଶଟି ମୁକୁଳା । ୧୨୯ ।

---

୧୨୯ { ଶତେ କୀଚ୍ଚକ ଯାହାର ନାଶଗଲେ
ଗୋପ୍ୟାନ ମନ୍ତ୍ର ଦୁର୍ଗନ୍ଧ ସହିଲା । ( କ, ଣ )

କାଞ୍ଚନର ମୂଳେ ଯାହାର ଶତେକ ସହୋଦ୍ର ନାଶି
ଗୋପେ୍ୟ ରହିଲେ ସେ ସମସ୍ତ ଦୁର୍ଦ୍ଧର୍ଷି । ୧୩୦ ।

ଉତ୍ତର କୁମାର ଯନ୍ତ୍ରଂ ସେ୍ୱମନ୍ତ କଲା ପୂଜା
ଖଡ୍ଗ ଗୁଡ ବିରାଟ ପଣ୍ଡୁଲକ ମୂର୍ଚ୍ଛା । । ୧୩୧ ।

କୋଳକର ବିରାଟକୁ ଧଇଲା କୁମରମଣି
ମୁଖେ ଉତ୍ତର କୁମାର ସିଞ୍ଚିଲାକ ନେଇ ପାଣି । ୧୩୨ ।
ସାଷ୍ଟାମ ହୋଇଣ ସେ ବସିଲା ମତ୍ସ୍ୟପତି
ବାବୁ କଂପେଇ ରହିଲ ରେ ମୋହୋର ଜୀବନ୍ତି । ୧୩୩ ।

ମୁହିଂ ମୂର୍ଖପଣେ ସେ୍ୱହାଂକୁ ନୁଆରିଲି ଜାଣି
ମୋହର ପୁରେ ରହିଲେ ଠାକୁର ଠାକୁରାଣୀ । ୧୩୪ ।

ସ୍ୱାମିତ ପଣେ ମୁହିଂ ଅନେକ ଭୁକାର କୋଇଲି
ଆବର ଶ୍ରୀଖଣ୍ଡ କପାଳକୁ ପଶାକାଠି ଘାତକଲି । ୧୩୫ ।

ବାବୁ ଯେତେକ ଭର୍ଚ୍ଛନା ରେ ବୋଲିଅଛି ମୁହିଂ
ଖୀମସେନ ଠାକୁରେ ମୋତେ ସହିବେ କସ ପାଇଂ । ୧୩୬ ।

ଜଗବନ୍ଦନ ନାଥ ମୋହୋର ପୁରେ ବିଜେକଲେ
ସେବା କରିବାକୁ ମୋତେ ବିଧାତା ନ ଦିଲେ । ୧୩୭ ।

କେବଣ ବାଗେ ନନ୍ଦନ ରେ ଗୃହିଂବି ତାଂକ ମୁଖ
ସେ୍ୱହିକ୍ଷଣି ଶିର ମୋର ଛେଦିବେ ବିକଣ୍ଠ । ୧୩୮ ।

ଖୀମସେନ ଠାକୁରେ ଅଛନ୍ତି ଦୁଆର ଆବୋରି
ଯାହାର କୋପକୁ ତ୍ରୈଲୋକ୍ୟ ଭେସେ୍ୱ କରି । ୧୩୯ ।

ଉତ୍ତର ବୋଇଲା ତାତ ନୋହିଇ ସେ୍ୱମନ୍ତ
ଅଜାତଶତ୍ରୁ ଅଟନ୍ତି ସେ ପରମ ପଣ୍ଡିତ ମହନ୍ତ । ୧୪୦ ।
ତାହାଂକର ଚିତ୍ତେ ଯେବେ କୋପ ତୋତେ ଥାନ୍ତା
କାଞ୍ଚନର ବଧକାଳେ କେ ତୋତେ ରଖନ୍ତା । ୧୪୧ ।

ତାହାଂକର ମନେ ଯେବେ ତୋତେ ଥାନ୍ତା କଛି କନ୍ତୁ
ନିଗର୍ତ୍ତି ବନ୍ଦୀରୁ ମୁକତ ହୋଇ ତୁ କେମନ୍ତେ ଆସନ୍ତୁ । ୧୪୨ ।
ତାହାଂକର କୋପ ଯେବେ ଥାଆନ୍ତା ବରାଟ
ପଶାକାଠି ମାଇଲୁ ଯେ କୋନ୍ତଂକ ଲଲାଟ । ୧୪୩ ।
ଭୂମିରେ ପଡନ୍ତା ଯେବେ ତାହାଂକର ରୁଧିର ଫୁଟି
ତୋହୋର ରାଜ୍ୟରେ ସେ ହୁଅନ୍ତା ଅନାବୃଷ୍ଟି । ୧୪୪ ।
ତାହାଂକର ଯେବେ କୋପ ଥାଆନ୍ତା ହେ ତୋତେ ତାତ
ମୋହୋର ଭୁଲେ କଂପେ ପଣି ନ ଦିଲେ ସେ ପାଥ । ୧୪୫ ।
ଯୁଧିଷ୍ଠିରଂକର ରୋଧିର ସେ ଯେବେ ଦେଖନ୍ତା ସେ ଧାପ୍ୟେ
କ୍ଷଣେହେଂ ସମ୍ପଦ ତୋହୋର ଗୋ ଥାନ୍ତା କ ଧନୁର୍ଜପ୍ୟେ ।୧୪୬।
ଅହନଶି ଝଣକୋପିତ କୋପ ଯାହାର ନାହିଂ
ତାହାଂକୁ ମନଭ୍ରାନ୍ତ ଦେଖିବୁ ତାତ କାହିଂ । ୧୪୭ ।
ବରାଟ ଅଗ୍ରତେ ସେ ଉତ୍ତର ପ୍ୟେମନ୍ତ ବୋଇଲେ
ପର୍ବତ ଚୂର ହୋଅଇ କ ନାଥ ଟେଳା ଯେ ମାଇଲେ । ୧୪୮ ।
ସମୁଦ୍ର ପୋତ ହୋଅଇ କ ପକାଇଲେ ବାଲି
ଯଷ୍ଟି ପିଟିଲେ କ ଭାଙ୍ଗଇ ଲୁହାର ଲଉଡ଼ି । ୧୪୯ ।
ଯଦ୍ୟପି ଉତ୍ତଙ୍ଗବଳ ହୋଇବେ ଅପ୍ରମିତ
ସେ କ ତ୍ରୈଲୋକ୍ୟ ଗ୍ରାସିବେ କୋପିଲେ ବୈନେହ । ୧୫୦ ।
ଯଦ୍ୟପି ପ୍ରତାପୀ ହୋଇବେ ଗଜ ଯୂଥ
କେଶରୀ ଧର୍ଷୀ ସେ ପାରଇ ତାହାନ୍ତ । ୧୫୧ ।

---

୧୪୨।୨ "ନିଗର୍ତ୍ତି ବନ୍ଦୀରୁ ମୁକତ ହୋଇ ତୁ କେମନ୍ତେ ଆସନ୍ତୁ" ପାଦାଂଶ ପରେ ଡ, ଧ, ପରେ ଅଧିକା ପାଠ :—

ତାହାଂକର ଚତ୍ତେ ଯେବେ ତୋତେ କୋପ ଥିଲା
ୱାରବାହୁ ଗ୍ରାମୁରୁ ତୋତେ କେହୁ ରେ ଆଣିଲା ।

୧୪୮ { ବରାଟ ଅଗ୍ରତେ ସେ ଉତ୍ତର ବୋଇଲା
ସ୍ୱୟେଂ ଜଗନ୍ନାଥ ଯାହାର ଚରଣେ ସେବିଲା । (ଗ, ଡ)

ପୃଥୀର ଠାକୁର ଅଟନ୍ତ ବିପ୍ରେ ଶିରୋମଣି
ଯାହାର ପାଦପୂଜା କରନ୍ତ ଚକ୍ରପାଣି । ୧୫୨ ।
ଉଠ ଉଠ ତାତ ତୁ ଯେ ତ୍ୟଜ ମନୋଭ୍ରାନ୍ତ
ମହନ୍ତ ଦର୍ଶନେ ତାତ ପାଇବୁ ପରମଗତି । ୧୫୩ ।
ମକର ମାସ ଶୁକ୍ଳପକ୍ଷ ପଞ୍ଚମୀ ଚନ୍ଦ୍ରବାର
ଅଶ୍ୱିନୀ ନକ୍ଷତ୍ର ଯେ ଯୋଗ୍ୟ ସେ ଦିନର । ୧୫୪ ।
ଶଶୀ ଅଶ୍ୱିନୀ ନକ୍ଷତ୍ରକୁ ଅମୃତ ଯୋଗ ଯେ ଅଟଇ
ଉତ୍ତରାଷାଢା ଧନୁ ଯେ ଗୁପ୍ତେ ବିରାଟଇ । ୧୫୫ ।
ଅଶ୍ୱିନୀ ନକ୍ଷତ୍ର ଉତ୍ତରାଷାଢ଼ା ନକ୍ଷତ୍ର ଅଟଇ ମୈତ୍ର ତାର
ମୀନ ଲଗ୍ନ ବେଳା ଯେ ନବଦଣ୍ଡ ଉପର । ୧୫୬ ।
ସୋମର ଗୁରୁଦଣ୍ଡ ଶନିଚର ଦଣ୍ଡ ଗୁରୁ
ବୃହସ୍ପତି ବେଳାରେ ଉଠିଲ ଦଣ୍ଡଧାରୀ । ୧୫୭ ।
ଉତ୍ତର କୁମାର ବଚନେ ଶୁଣିଲ ଭୂପମାନ
ମାରୁ କି ତାରୁ ଅବା ଯାଇଂ କରିବା ଦରଶନ । ୧୫୮ ।
ଜୀବନ ଯେବେ ପାଇବାଟି ହୋଇବା ବିଦ୍ୟମାନ
ବୋଲିବେ ପାଣ୍ଡବେ ବିରାଟେ ନେଲେ ଦିନ । ୧୫୯ ।
ଅଥବା ବୃକୋଦର କୋପେ କରିବେ ପ୍ରାଣଘାତ
ଇହଲୋକେ ଗତି ମୁକତି ମଲେ ବୈକୁଣ୍ଠ ହୋଇବ ପ୍ରାପତ[1] ।୧୬୦।
ସେତେ ସୁଲଭ ବାବୁ ଗୁଞ୍ଜିତ କି ପାର
ସେହୁ ବଚ୍ଛର ଗଳାରେ ବିରାଟ ଲମ୍ବାଇଲ କୋଠାରୀ । ୧୬୧ ।
ଦନ୍ତରେ ଝରଣ ଦଶନହ ଭରି ଅଧରେ
ଶ୍ରୀକୃଷ୍ଣା ମହାଦେଈଙ୍କ ଉତ୍ତର କୁମର ସଙ୍ଗତରେ । ୧୬୨ ।
ହାହା ହାହା ବୋଲି ଫୁତ୍କାରଇ ମହାଧିପ
ଦେଖିଲକ ମାରୁତି ହାରେଣ ମହାକୋପ । ୧୬୩ ।

---

୧୬୦।୨ ଇହଲୋକେ ନାଶ ମୁକତି ମଲେ ବୈକୁଣ୍ଠ ହୋଇବ ପ୍ରାପତ । (ଙ)

ମହାଭୟେ ଉପୁଜିଲା ବିରାଟେଶ୍ୱର ଦେଖି
କାଳଚନ୍ଦ ପ୍ରାୟେ ଭୀମ ବୁଲାଇ ବେନ ଆଖି । ୧୬୪ ।
ବିରାଟ ବୋଇଲା ଉତ୍ତର ନ ରହୁ ମୋର ପ୍ରାଣ
ସଞ୍ଚୟେ ଶରୀର ମୋହୋର ବିଧଜିବ ଯେତୁକ୍ଷଣ । ୧୬୫ ।
ବିରାଟ ଶ୍ରୀକୃଷ୍ଣା କୁମାର ବିରାଟୀ
ଦୁହୁହିଁ ଭୀମସେନର ଛାମୁରେ ପ୍ରଣିପତ୍ୟେ ଲୋଟି । ୧୬୬ ।
ପାୟେ ଯାଇଁ ବିରାଟ କରଇ ନଉଚ୍ଛାଳ
ଝାଳେଣ ନିପଣ୍ଡ ଭୂମିରେ ପଡ଼ ଶରୀର ଯେ ଧୂଳ । ୧୬୭ ।
ଅେକାୟେ ଧୂରେ ଛିନହେଁ ଅଛନ୍ତ ପରଣାମି
ଦଶଦୋଷ ଅପ୍ରାଧ କ୍ଷମା କରିବା ଦେବ ସ୍ୱାମୀ । ୧୬୮ ।
ମୁହିଁ ଅଗ୍ୟାନୀ ମୂର୍ଖ ଅଟଇ ବଡ଼ ଦୋଷୀ
ଠାକୁରଂକ ଛାମୁରେ ମୁଁ ଆସ୍ଥାନ ମାଡ଼ ବସି । ୧୬୯ ।
ସ୍ୱାମି ତୁମ୍ଭେ ଡଙ୍କ ହୋଇଲ ମୋହର ଆସ୍ଥାନର ତଳେ
ଛନ୍ଦ ଦୋଷ ମୋହୋର ନ ଧରିବାକ ଯେ ବେଳେ । ୧୭୦ ।
ସ୍ୱାମି ଅଥବା ସମୁଦ୍ର ଯେବେ ଲଂଘିବାକ ମହୀ
ପୃଥୀ ମାନବକେ ପାରିବେ କେ ରହି । ୧୭୧ ।
ସ୍ୱାମି ଜଳବୃଷ୍ଟି ନ କରଇ ଯେବେ ମଘବା ପୃଥ୍ୱିଗତେ
ସଚରାଚର ମେଦନୀ ବ୍ରତିବେ କେମନ୍ତେ । ୧୭୨ ।
ସ୍ୱାମି ଅଗ୍ନି ବରଷିବ ଯେବେ ଆଦିତ୍ୟ ଦେବତାୟେ
ସଚରାଚର ବ୍ରତିବ କେଉଂଣ ଉପାୟେ । ୧୭୩ ।
ଦଶନଦ ମୁଖେ ଭରି ଅନେକ ବିନୟ ଯେ ବୋଲି
ଗତ ସହସ୍ରଦଣ୍ଡ ପ୍ରଣପତ୍ୟେ ଶୁତିଲା ଗଡ଼ାଗଳି । ୧୭୪ ।
ଦେଖିଣ ବୃକୋଦର ଦ୍ରହସିତ ମୂରତି
ମନଭ୍ରାନ୍ତ ଛାଡ଼ିଲା ନିର୍ଭୟେ ମତ୍ସ୍ୟପତି । ୧୭୫ ।
ଅଦ୍ୟାପି ହୃଦଗତେ ବିକୃତ ନ ଥାଇ ଯାହାକୁ
ଦେଖିଲେ ଦ୍ରହସିତ ବଦନେ ତାହାକୁ । ୧୭୬ ।

ବିରାଟ ଦେଖିଲା ଯହୁଁ ପ୍ରହସିତ ବଦନଗୋଟି
ଛାମୁରେ ମତ୍ସ୍ୟେଶ୍ୱର ରହିଲା ପରମେଷ୍ଠି । ୧୭୭ ।
ଭୀମସେନ ବୋଇଲା ବିରାଟ ତୁ ଦ୍ୱାରେ ଥାଅ ରହି
ଠାକୁରଂକ ଆଜ୍ଞାଂ ହୋଇଲେ ଭିତରକୁ ଛାଡ଼ିପାରଇ ମୁହିଂ ।୧୭୮।
ଯେମନ୍ତର ସମୟେ ଅର୍ଜୁନ ଗୃହିଂଙ୍କ ଯେ ଆସ୍ଥାନ ତଳେ ଥାଇ
ଦେଖିଲାକ ବିରାଟ ଦ୍ୱାରେ ଅଛି ରହି । ୧୭୯ ।
ଅର୍ଜୁନ ବୋଇଲା ସ୍ୱାମି ବିରାଟ ଅଛି ଦ୍ୱାରେ
ଭିତରକୁ ପଶି ନୁଆରି ଭୀମସେନ ଠାକୁରଂକ ଡରେ । ୧୮୦ ।
ଯୁଧିଷ୍ଠିର ଦେବ ବୋଇଲେ କହ ଯାଇଂ ଭୀମସେନକୁ
ଦ୍ୱାର ଛାଡ଼ି ଦେଉ ବିରାଟ ରାଜାଂକୁ । ୧୮୧ ।
ଯେତେ ଲୋକନ୍ତି ସେନ ସେ ଆସଇ ବିରାଟ
ମୁଖେ ଦ୍ରଶନ କରୁ ସେ ନିଷେଧ ନ କର ବାଟ । ୧୮୨ ।
ଅର୍ଜୁନ ବିଜେକଲେ ଦିବ୍ୟ ଅବତାରେ
ଗାଣ୍ଡିବ ଧନୁ ବାବଲ ନାରାଚ ଅଛି କରେ । ୧୮୩ ।
କିରୀଟୀ ମୁକୁଟ ଯେ ଅଷ୍ଟରତ୍ନ ବାନ୍ଧୁଛି
ଦ୍ୱିତୀ କୃଷ୍ଣ ଅବତାର ସେ ପ୍ରତ୍ୟକ୍ଷେ କିରୀଟୀ । ୧୮୪ ।
ଉତ୍ତର ବୋଇଲା ସ୍ୱାମି ବିଜୟେ ଫାଲଗୁନ
ପ୍ରଲମ୍ବି କଲେ ବିରାଟ ପୁଣି ଶରଯାନ୍ତ ସେନ । ୧୮୫ ।
ଅର୍ଜୁନ ବୋଇଲା ହୋ ବିରାଟ ଉଠ ଉଠ ରାୟେ
ଆସ ଆସ ସ୍ୱାମୀଂକର ଅଭିଷେକ ଦେଖି ପାତକ କର କ୍ଷୟେ ।୧୮୬।
ବିରାଟ ବୋଇଲା ସ୍ୱାମି କରଇ ମୁହିଂ ଭୀତ
ଅପାର ଦ୍ରୋହ ମୁଂ କଲଇ ଅତି ଅଜ୍ଞାନ ମୂଢ଼ମତି । ୧୮୭ ।
ଅର୍ଜୁନ ବୋଇଲା ସେ ସ୍ୱାମୀ କ୍ଷମା ଯେ ସାଗର
ଶତ୍ରୁହିଂ କୋପ ନ ବସଇ ଯାହାର ହୃଦପୂର । ୧୮୮ ।
ଭୀମସେନ ବୋଇଲା ତୁ ଯାଅ ଯା ମହାପତି
ବାମଦେବ ପୁରୋହିତେ ଯାଚେକଶ୍ୱର ମନ୍ତ୍ରୀ । ୧୮୯ ।

•••

ଅର୍ଜୁନ ବୋଇଲା ଯେ ବିରାଟ ମୁଖ ଗୃହିଂ
ସ୍ୱାମିଂକର ଶତ୍ରେ ଯେ ତୋତେ ଆନ ବିକୁତ ନାହିଂ । ୧୯୦ ।
ଆସ ଆସ ବିରାଟ ହୋ ଦ୍ରୂଶନ ବେଗେ କର
ଅନେକ ଜନ୍ମର ତୋ ଦୁଷ୍କୃତମାନ ହର । ୧୯୧ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଇନ୍ଦ୍ର ଯମ କୁବେର ସହିତେ
ଯାହାର ଅଭିଷେକ ଦେଖିଲେ ନଷ୍ଟିନ୍ତେ । ୧୯୨ ।
ଦ୍ରୂଶନେ ପ୍ରସନ୍ନ ପ୍ରସନ୍ନେ ପାପ ମୋକ୍ଷ
ଧର୍ମ ଅର୍ଥ କାମ ମୋକ୍ଷ ପ୍ରାପତ ପ୍ରତକ୍ଷ । ୧୯୩ ।
ବିରାଟ ଶ୍ରୀକୃଷ୍ଣା ଉତ୍ତର କୁମାର ଆବର ମନ୍ତ୍ରୀ ଅମନାତ୍ୟେ
ଘେନଣ ଚଳଇ ସେ ବାସବର ସୁତେ । ୧୯୪ ।
ଦେଖିଲେ ଆସ୍ଥାନେଣ ବିଜୟେ ଦେବଧର୍ମେ
ଯଶୋବନ୍ତୀପୁର ତେଜ କ ବିଜୟେ କଲେ ବ୍ରହ୍ମେ । ୧୯୫ ।
ଶ୍ରୀଚରଣ ଦେଖି ସେ ବିରାଟ ମହୀପାଳ
ଶତେ ସହସ୍ରବାର ଦଣ୍ଡ ଦୃଲମ୍ବି ଆସ୍ଥାନର ତଳ । ୧୯୬ ।
ସ୍ୱାମି ସାଧୁ ମୋହୋର ପୂର୍ବ ଜନ୍ମ ଧର୍ମ କର୍ମ
ପ୍ରସନ୍ନ ନଗକାର ସମସ୍ତରାଜ୍ୟ ବିଜୟେ ଦେବଧର୍ମ । ୧୯୭ ।
ସ୍ୱାମି ଯେ ମୋହୋର ରାଜ୍ୟ ବସନ୍ତି ଯେତେ ଜନ
ତାହାଂକର ଜୀବନ ସାଧୁ ସେ ଯେ ଦେଖିଲେ ନୟନ । ୧୯୮ ।
ଅପାର ଦୋଷ ସ୍ୱାମୀ କଲଇଂ ମୁହିଂ ମନ୍ଦ
ଚହ୍ନି ନୁଆରି ଦେବ ଚନ୍ତୁଲ ପରମାଦ । ୧୯୯ ।
ଭୁକାର ବଚନ ମୁଂ ବୋଇଲା ସ୍ୱାମୀପଣେ
ଅନେକ ଭର୍ତ୍ସନା ମୁଂ ବୋଇଲି ଆପଣେ । ୨୦୦ ।
ସ୍ୱାମି ହିଗର୍ତ୍ତି ପୟାଣ କାଳେ ବୋଇଲି ମୁଂ ଦଣ୍ଡ ଯେ ସାଜନ୍ତେ
ଆନ ରାଜ୍ୟକୁ ମନ୍ତ୍ରୀପଣେ ଯୋଗାଅ ବୋଇଲି
ହୋ କୋନ୍ତେ । ୨୦୧ ।
ସହଦେବ ପ୍ରତିକାର ବିରାଟ ବଚନକୁ
ଯେଉଁଥିକୁ ଭୀମସେନ ଠାକୁରେ ଘୁଞ୍ଚିଲେ ହିଗର୍ତ୍ତି
ବାନ୍ଧନେଲ ଭୂକୁ । ୨୦୨ ।

ବିରାଟ ବୋଇଲେ ଲଳେକ ଖଞ୍ଜଣି ଯେବଣ ଲଲାଟ ପାଟି
ସଂଗେଣ ପ୍ରହାର ମୁଂ କଲଇଂ ପଶାକାଠି । ୨୦୩ ।
ସ୍ୱାମି ଅଗ୍ୟାନ ପଣେ ମୁଂ ନ କହିଲି କାହା
ମୋ ଚନ୍ଦ୍ରଂ ସଂସାରେ ଦେବ ଆନ ନାହାଂନ୍ତି ଦୋଷେହା । ୨୦୪ ।
କିଂକର ହୋଇ ବିରାଟ ଯେ ବହୁତ ବିନଯ ବୋଲି
ମାଷ୍ଟାଙ୍କେ ମହାପନ୍ତ ଯେ ଶୁଣିଲି ଗଡଘାଲି । ୨୦୫ ।
ସ୍ୱାମି ଅନେକ ଅପ୍ରାଧ କଲଇଂ ମୁହିଂ ଦୋଷ
ତାହା ଉପେକ୍ଷା କରିବା ନିର୍ଲମ୍ବ ପୁରୁଷ । ୨୦୬ ।
ପାଦ୍ରେ ଆସି ବିରାଟ ଯେ କରଇ ନିଉଚ୍ଛଳ
ଶରୀରୁ ନିପଣ୍ଡ ଯେ ମହାଶ୍ରମ ଗଲ । ୨୦୭ ।
ଧୂଳି ଝାଡିଲେଣ ଯେ କର୍ଦମ ତାର କାୟେ
ଆନନ୍ଦେ ଅଶ୍ରୁ ଜଳ ଗଳଇ ମସ୍ତଗଯ୍ୟେ । ୨୦୮ ।
ମଥାରେ ବେନି ହାଥ ଦେଇଣ ମହାପନ୍ତ
କହଇ ବିରାଟେଶ୍ୱର ବିନଯ ଭଗନ୍ତ । ୨୦୯ ।
ତୁ ଦେବ ନିରଞ୍ଜନ ଆତ୍ମା ଅବତାର
ତ୍ରୈଲୋକ୍ୟ ଚିନ୍ତାମଣି ପ୍ରକୃତି ଯାହାର । ୨୧୦ ।
ତୁ ଦେବ ଅଜାତ ଶତ୍ରୁ ପର ଦୁଃଖେ ଚିନ୍ତା
ତୁ ଦେବ ଅବ୍ୟଗତ ଭୂତ ଭବିଷ୍ୟତ ଗ୍ୟାଂତା । ୨୧୧ ।
ତୁ ଦେବ ଯୋଗେଶ୍ୱର ପରମ ବ୍ରହ୍ମ ଅବତାର
ତୁ ଦେବ ଖଣ୍ଡିବୁ ନାଥ ଅଶେଷ ମହାଭାର । ୨୧୨ ।
ସ୍ୱାମି ସୌଭଦ୍ର ନାମେ ବ୍ରହ୍ମା ବୈକୁଣ୍ଠ ଭୁବନ ତେଜ
ଯେ ମୃତ୍ୟୁ ମଣ୍ଡଳେ ନାମ ତୋହୋର ସେ ଭଜ । ୨୧୩ ।
ତ୍ରିଜଗତ ଅଳଂକାର ଯାହାର ନାମଗୋଟି
ପଞ୍ଚାନ୍ତର ବାକ୍ୟେ ଶୁଭଇ ଧର୍ମ ଯେ ଯୁଧିଷ୍ଠି । ୨୧୪ ।
ସ୍ୱାମି ପୃଥ୍ୱୀ ଆପ ତେଜ ବାୟୁବି ଆକାଶ
ଯେ ପଞ୍ଚଧାତୁ ତୋହୋର ଗର୍ଭରେ କଲେ ବାସ । ୨୧୫ ।

ସ୍ୱାମି ପ୍ରାଣ ଅପାନ ବ୍ୟାନ ସମାନ ଉଦାନ ପଞ୍ଚୁ ଆତ୍ମା
ଧାତୁବାଦ ପୁରୁଷ ତୁ ସାଧିଲୁ ସର୍ବ ମହାତମା । ୨୧୬ ।
ତୁହି ସେ କଞ୍ଚିଲୁ ନାଥ କାଳ କାମ ନିଦ୍ରା
ପରଯୋଗୀ ପୁରୁଷ ତୁ ସାଧିଲୁ ସର୍ବମୁଦ୍ରା । ୨୧୭ ।
ସ୍ୱାମି ପାପ ଆତ୍ମା ତେଜିଲୁ ଟେକିଲୁ ଅଜପାଙ୍ଗୀ
ତତ୍ତ୍ୱଧର୍ମ ପୁରୁଷ ତୁ ଅବ୍ୟୟ ପରମ ଯୋଗୀ । ୨୧୮ ।
ସ୍ୱାମି ପାପଆତ୍ମା ଜଣିମାକୁ ଯେଉଂଣ ପୁରୁଷଂକ ଇଚ୍ଛା
ତେଣୁ କର ଶ୍ରୀମୁଖେ ନ ଫୁରିଲକ ମିଥ୍ୟା । ୨୧୯ ।
ସତ ରଜ ତମ ଆଶ୍ରିତ ଯେ ତିନ
ସତେ ବିଷ୍ଣୁ ରଜେ ବ୍ରହ୍ମା ତମେ ରୁଦ୍ରନାମ ଘେନି । ୨୨୦ ।
ସତବାକ୍ୟ ଅନ୍ତର ନୋହିଲ କଦାଚତେ
ନାରାୟଣ ବନୋପି ଲେଟିଲେ ତତ୍ତ୍ୱଂର ନିମନ୍ତେ । ୨୨୧ ।
ସ୍ୱାମି କାଳ ବର୍ତ୍ତମାନ ଜାଣି ତନ୍ତ୍ରଣ ଦେବ ବର୍ତ୍ତୁ
ତେଣୁ ବ୍ୟାପିଲୁ ସ୍ୱାମି ନାରାୟଣ ହୃଦଗତୁଂ । ୨୨୨ ।
ସ୍ୱାମି ଯୋଗ ପବନ ତପନ ତାପନ ଆଧାନ ଅଧ୍ୟାପନ
ସ୍ୱେ ନବ ପୁରୁଷ ଦେବ ତୋହୋର ଅଟଇ ଅଭିନ୍ନ । ୨୨୩।
ସ୍ୱାମି କାଳ ଉଚତ ଜାଣନ୍ତା ଯେବଣ ମହାତମା
ତାହା ପ୍ରାନ୍ତକର ନୁଆରିଲ ବେଦବ୍ରହ୍ମା । ୨୨୪ ।
ସ୍ୱାମି ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସୁତଳ ରସାତଳ
ଅତଳ ନିତଳ ଯେ ମହାତଳ । ୨୨୫ ।

---

୨୨୩ { ସ୍ୱାମି ଯୋଗଭୁବନ ତପନ ତପନ ଅଧ୍ୟାପନ
ସ୍ୱେ ନବ ପୁରୁଷ ତୋର ଅଟଇ ଅଭିନ୍ନ । (କ)

୨୨୩ { ସ୍ୱାମି ଯୋଗଭୁବନ ଯେ ଆଧାନ ସ୍ୱଦ୍ଧାନ
ନବ ପୁରୁଷ ତୋର ଅଟଇ ଅଭିନ୍ନ । (ଖ)

୨୨୪ { କାଳ ବଞ୍ଚିବାକୁ ଯେବଣ ମହାତମା
ତାହା ପ୍ରାନ୍ତ କରି କହିବାକୁ କାହାର ମହିମା । (ଧ, ପ)

ସ୍ବାମି ସ୍ୱେତେକ ତଳ ମଧ୍ୟେ ଯେ ଭୁବନ ସର୍ଜନଧି ।
ତହିଁ ତୋହୋର ଭୁବନ ଅଟଇ ଦେବବଧି । ୨୨୭ ।
ଯହିଁ ଗୁହାର ତୋତେ କଲାକ ପଦ୍ମଯୋନ
ସ୍ୱେ ମୃତ୍ୟୁ ମଣ୍ଡଳେ ଉତପତ୍ତି ତୁ ମାନବ ଶରୀର ଘେନ । ୨୨୭ ।

---

୨୨୭।୨ "ତହିଁ ତୋହୋର ଭୁବନ ଅଟଇ ଦେବବଧି" ଏହି ପାଠ ପରେ
"ଜ" ପୋଥିରେ ଅଧିକା ପାଠ ଅଛି :—
ସତ୍ୟଯୁଗରେ ତୁ ଅଛୁ ଶ୍ୱେତବ୍ରହ୍ମା
ନିରାକାର ନିରଞ୍ଜନ ବିଷ୍ଣୁ ସ୍ୱେ ବୁଧୋଧନ ମହାତମା ।
ପନ୍ନଗା ନାରାୟଣଂକୁ ଦେଖିଣ ତୁ ଗଲୁ
ଗର୍ବ ବହିଲୁ ସ୍ୱେ ତୋତେ ଭେଟ ନ ପାଇଲୁ ।
କୋପେଣ ଅଭିଶାପ ତୁ ଦିଲୁ ଶ୍ୱେତବ୍ରହ୍ମା
ଶତେବାର ମୃତ୍ୟୁମଣ୍ଡଳେ ତୁ ହୋଅ ଜନ୍ମା ।
ଶୁଣିଣ ପନ୍ନଗା ବିଷ୍ଣୁ କହନ୍ତି ଉତ୍ତର
ସ୍ୱେତେ ଅଭିଶାପ ତୁ ଦିଲୁ ହୋ ବେଦବର ।
କରପତ୍ର ଯୋଡି ତୋତେ ବିଷ୍ଣୁ ବହୁତ କଲେ ଜ୍ରୁତି
ହେ ଶ୍ୱେତବ୍ରହ୍ମା ମୋତେ କଲୁ ତୁ ଅନୀତ ।
ଶତେବାର ଜନ୍ମ ହୋଅନ୍ତେ ହୋଇବ ନର୍କ ଘୋର
ଶୁଣିଣ ବୋଇଲେ ଯେ ବେଦବ୍ରହ୍ମା ଉତ୍ତର ।
ଶତେ ଜନ୍ମ ସ୍ୱେକା ବାରେକ ହେବୁ ଯାଇ
ଶତେଗୋଟି ସେ ଯେ ମାନବ ଜନ୍ମ ବହି ।
ଦ୍ୱାପର ଯୁଗେ ଯେ ଆମ୍ଭେ ହୋଇବୁଂ ଯୁଧିଷ୍ଠି
ସ୍ୱେକା ଥରକେ ତୋତେ ମାରିବ ଶତେଗୋଟି ।
ତେଣୁକରି ଶ୍ୱେତବ୍ରହ୍ମା ତୁ ହୋଇଲୁ ଯୁଧିଷ୍ଠି
ପନ୍ନଗା ନାରାୟଣ ସେ ହୋଇଲା ଧୃତରାଷ୍ଟି ।
ମୁନିମାନଂକର ତହୁଂ ଅଛଇ ମୁହିଂ ଶୁଣି
ସ୍ୱେଣୁକରି ହେ ଦେବ ତୋର ଆଗେ ବଚନ ଭଣି ।
ଗୁହାରି ତୋତେ ଯାଇଂ କଲେକ ପଦ୍ମଯୋନି
ସ୍ୱେ ମୃତ୍ୟୁମଣ୍ଡଳେ ଉତପତ୍ତି ତୁ ମାନବ ଶରୀର ଘେନ ।

ଜଗତପତି ପ୍ରଳୟ ଯାହାର ପ୍ରତ୍ୟକ୍ଷେଣ ସଞ୍ଜ।
ମହୀ ଉଦ୍ଧାରଣ ପୁରୁଷ ତୁ ଅନନ୍ତ କାଳ କଞ୍ଜା । ୨୨୮ ।
ସ୍ୱାମି ଯାବତ ସ୍ୱେ ପୃଥୀ ଚନ୍ଦ୍ର ଦିବାକର ଆଦି
ତବ ନାମଗୋଟି ସ୍ୱାମି ଉଦିତ ହେବ ଭୁବ । ୨୨୯ ।
ସ୍ୱାମି ଅନଳେକ ନାମେ ବସୁ ଥିଲେ ଅନ୍ଧ ହୋଇ
ଦିବ୍ୟ ଚକ୍ଷୁ ପାଇଲ ସେ ତୋତେ ଦର୍ଶନ ପାଇ । ୨୩୦ ।
ମହାସର୍ପ ହୋଇଥିଲେ ନରେନ୍ଦ୍ର ନ ଘୋଷ
ତୁ ମହାପ୍ରଭୁ ଖଣ୍ଡିଲୁ ତାହାଂକର ଦୋଷ । ୨୩୧ ।
ଧର୍ମବକ ମୋକ୍ଷ ପାଇଲ ତୋହୋରେ
ହରିଣ କପଟ ବଧକଲ ଅଣ ଉପୁଗାରେ । ୨୩୨ ।
ତ୍ରୈଲୋକ୍ୟ ବନ୍ଦନ ଯାହାର ନାମଗୋଟି
କର ନେଉଥାନ୍ତେ ନେଇଥଇ ନବସୃଷ୍ଟି । ୨୩୩ ।
ତୁ ଦେବ ଯୋଗୀଜନଂକର ହୃଦୟ ଯେ ରଞ୍ଜି
ପାପୀ ପୁରୁଷଂକର କାଳ ଦର୍ପ ଗଞ୍ଜି । ୨୩୪ ।
ପରମ ନିରାକାର ପ୍ରତକ୍ଷେ ଦେବଧର୍ମ
ଦଶ ଦୋଷ ଅପ୍ରାଧ କରିବା ଦେବ କ୍ଷମ । ୨୩୫ ।
ଅପାର ମହିମା° ଯାହାର ନ ସରଇ କହନ୍ତେ
ଗୁଣ ସାଗର ନାଥ ତୁ ହାହ୍ମ କରିବା ମୋତେ । ୨୩୬ ।
ଶ୍ରୀଧର୍ମ ନନ୍ଦନ ଯୁଧିଷ୍ଠି ଚରଣ କମଳେ
ଚନ୍ଦ୍ରମୁନ ସାରଳ ଦାସ ପ୍ରଣପତ୍ୟ ସର୍ବକାଳେ । ୨୩୭ ।

---

## ବିରାଟଙ୍କର ଯୁଧିଷ୍ଠିରଙ୍କ ନିକଟରେ ଅନୁନୟ, ଯୁଧିଷ୍ଠିରଙ୍କର ପୁନର୍ବାର ଅଭିଷେକ ଓ ଉତ୍ତରା କୁମାରୀର ବିବାହ ନିର୍ବନ୍ଧ

ବିରାଟ ପ୍ରଣପତ୍ୟ ବହୁତ ବିନୋଦ୍ଧୀ
ହରଷିତ ବଦନ ଯେ ବୋଲନ୍ତ ଧର୍ମସାଇଂ । ୧ ।

ଇଦଂ ମହାବାକ୍ୟ ଯେ ବଦନ୍ତୁ ସୁପ୍ରସନ୍ନେ
ଉଠ ଉଠ ବିରାଟ ହୋ ଭ୍ରାନ୍ତ ଛାଡ଼ି ମନେ । ୨ ।
ଏହି ମହୀମଣ୍ଡଳେ ଅନେକ ରାଜା ଭଲ
କେହି ସହି ନୁଆରିଲେ ଆମ୍ଭର ଆନ୍ଦୋଳ । ୩ ।
ଏତେକ ମହିମା ତୋହୋର ଏହି ମତ୍ସ୍ୟରାଜ୍ୟ ପୁରୀ
ବାରୁ ମହତ ଏହି ତୋ ଭୁବନର ନରନାରୀ । ୪ ।
ଆମ୍ଭେ ଦୋଷ ତୋତେ କଲୁ ମତ୍ସ୍ୟପତି
ଶଳାକୁ ବଧକଲୁ ତୋହୋର କୀଚକ ସେନାପତି । ୫ ।
କୀଚକ ବଧେ ତୋତେ କଲଲ ବଇର
ଦଣ୍ଡ ଘେନ ତ୍ରିଗର୍ତ୍ତେଶ୍ୱର ତହୁଂ ହଲ ଧାଡ଼ି । ୬ ।
ଏହିଣେ କଳପି ରାଜା ଯେ ଅଇଲ ଶୀରବାହୁ
ଜାଣନ୍ତା ହୋଇଲେ ତୋତେ ଛାଡ଼ନ୍ତା ଅବା କେହୁ । ୭ ।
ଆମ୍ଭର ବିଗ୍ରହରେ ତୋତେ କେତ୍ତୁ ନାହିଂ ଦୋଷ
ଆମ୍ଭେ ସେ ତୋହୋର ରାଜ୍ୟ କରାଇଲୁ ନାଶ । ୮ ।
ଭୀମସେନ ବୋଲିକରି ଆମ୍ଭର ଯେଉଂଣ ଭ୍ରାଥଗୋଟି
ବେଳେକେ ଅନ୍ନ ଲଗଇ ତାକୁ ଷାଠିଏ ପଉଟି । ୯ ।
ଏତେକ ଆଧାରେ ତ୍ରିପୃତ ନୋହଇ ତାର ମନ
ସାଂଗ୍ରାମ ପାଇଲେ ସେ ତ୍ରିପୃତ ଭୀମସେନ । ୧୦ ।
ଯାହାର କୋପକଲେ କଂପଇ ମହୀଆଳ
ତୁହି ସେ ସହି ପାରିଲୁ ତାହାର ଆନ୍ଦୋଳ । ୧୧ ।
ମୋତେ ଅସଂଖ୍ୟ ହୋ ରାଜା ତୋହୋର ମହିମା
ପ୍ରତ୍ୟକ୍ଷେ ପିତା ମୋହୋର ତୁ ପଣ୍ଡୁ ମହାତମା । ୧୨ ।
କଲ ଉପୁରାର ଯେ ଅବା ନ ସୁମରି
ପ୍ରତ୍ୟକ୍ଷେ ଜାଣିମ ସେ ବ୍ରହ୍ମହତ୍ୟା ଦୋଷ ସରି । ୧୩ ।
ଆହୋ ବିରାଟ ଯେତେକାଳ ପରଯନ୍ତେ ଆମ୍ଭେ ବ୍ରତିଥାଉଂ ହାଦେ,
ତୋହୋର ଗୁଣଗୋଟି ଯେ ଲହିଥିବୁ ହୃଦେ । ୧୪ ।
ତୋହୋର ଅନ୍ନ ଖାଇ ଯେ ବଞ୍ଚିଲୁ ଦୁର୍ଗତି
ତୋହୋର ଅନ୍ନବଳେ ଆମ୍ଭେ ମହୀତଳେ ଏକ ଛତ୍ରୀ । ୧୫ ।

ଚୋଡ଼ୋର ଅନ୍ନ ଖାଇ ଆମ୍ଭେ ମାଇଲୁ ବ୍ରାଘ ମାଲ
ଚୋଡ଼ୋର ଅନ୍ନ ଖାଇ ମାଇଲୁ କାଞ୍ଚେକ ମହାମଲ୍ଲ । ୧୬ ।
ଆହୋ ବରଟ କଂସ କେଶୀ ଚାଣୁର ମୁଷ୍ଟିକ ଯେ ତୃଣୂର ଯାମଳା
ପ୍ରଲମ୍ବା ଅଘା କଦମ୍ବା ବକୀ ଘୋର ମହାବଳା । ୧୭ ।
ଜାଗ ନାରକା ଆଦ ଯେ ଶିଶୁପାଳ ଗାଲୁ
ଦନ୍ତବକ୍ର ଦ୍ୱିବିଦେକ ଯାହାକଇଂ ବୋଲୁ । ୧୮ ।
ନର୍କାତ କପଟ ହ୍ୱରଣ କାଳନଉମି ମେରୁଶୂଳ
ଗୋସିଂହ ଜୟେସିଂହ କୁମ୍ଭ ନକୁମ୍ଭ ବାଣା ବଜ୍ରନାଭ
ମହାମଲ୍ଲ । ୧୯ ।
ଲୋହାସୁର ଅମ୍ବାସୁର କାଳଯବନ ଯାହା ଜାଣି
ଯେହାଂକର ଭୁଲେ ଚୋଡ଼ୋର କାଞ୍ଚକ ନାମ ଗଣି । ୨୦ ।
ଯେହାଂକର ଭର ଯେ ନ ସହିଲ୍ଲ ବସୁଧା
ମୁଖେ ରୁଧିର ବହି ସେ ଯେ ହେଲେ ମହାକ୍ରୋଧା । ୨୧ ।
ମୁଖେଣ ରୁଧିର କରେ କମ୍ପ ଧର
ଦେବ ସଭାତଳେ ସେବଇ ବସୁନ୍ଧର । ୨୨ ।
ପୃଥୀର ବକଳ ସେ ସମସ୍ତ ବ୍ରହ୍ମାଅର୍କେ
କ୍ଷୀର ସମୁଦ୍ରେ ସେ ଗୁହାର କଲେ ଦେବଲେକେ । ୨୩ ।
ଦେବତାଂକର ବକଳେ ସେ ଶ୍ରୀରାମ ଲଇକ୍ଷଣ
ଦ୍ୱାପରେ ଜନମିଲେ ଆସି କାହ୍ନୁ ସଂକର୍ଷଣ । ୨୪ ।
ନକୁଳ ସହଦେବ ଭୀମ ଅରଜୁନ
ଯେହାନ୍ତ ଆଣିଲେ ହରି ସଉନଧି ବଇକୁଣ୍ଠ ଭୁବନ । ୨୫ ।
ଯେ ଷଡଜଣ ଯେ ଜନମ ମହୀତଳେ
ନର ନାରାୟେଣେ ଭାର ନବାରନ୍ତ ସର୍ବକାଳେ । ୨୬ ।
ସଦା ଗୋପ୍ୟାନ ପୁରୁଷ ଯେ ଅଟନ୍ତ କୁରୁଶାନୁ
ଦେବଂକୁ ଗୋଚର ନୋହଇ ତୁ ସେ ଯେହାନ୍ତ
କାହ୍ନୁଂ ଚନ୍ଦ୍ରଂ ।୨୭।

ଆମ୍ଭର ଦେହୁଂ ତୁ ପୂର୍ବେଣ ହୋଇଲୁ ଜାତ
ଉପର ଜନ୍ମେ ନାମ ତୋହୋର ଅଟଇ ଶ୍ୱେତ । ୨୮ ।
ଧର୍ମର ଆଜ୍ଞାଂ ମୋତେ ହୋଇଲା ଆକାଶେ
କୀଚକ ବଧକର ପଶି ଅଜ୍ଞାଂତ ବନବାସେ । ୨୯ ।
କାହାରେ ମେଣ୍ଟଣ ହୋଇବ ସେ ଦେବତାଂକ ଆଜ୍ଞାଂ
କୀଚକ ବଧକର ଆମ୍ଭେଂସେ ରୁହାଇଲୁ ପ୍ରତଜ୍ଞାଂ । ୩୦ ।
ତୁ ମୋହୋର ଧର୍ମପିତା ଅଟୁ ନା ବଗୃରେ
ଆରେ ବାବୁ ନକୁଳ ବିରାଟକୁ ବସା ଆସ୍ଥାନ ଉପରେ । ୩୧ ।
ସ୍ୱାମି ମୁହିଂ ମାନବା ଯେ ଅଟଇ ଦେବ ଆସ୍ଥାନ
ଯେଉଁଥାନେ ବସିବାକୁ କ ମୁଂ ହୋଇବି ଭାଜନ । ୩୨ ।
ଆସ ଆସ ବିରାଟ ହୋ ନକୁଳ ବୋଇଲେ
ସ୍ୱାମି ବଡଭାଗ୍ୟ ମୁଂ ଅରଜଇ ଯେତ୍ହିଠାରେ ଥିଲେ । ୩୩ ।
ଯୁଧିଷ୍ଠିର ଦେବେ ବୋଇଲେ ତୁ ମନେ ନ ଧର ବିକୃତ
ଆମ୍ଭେ ପଞ୍ଚ ସହୋଦ୍ର ତୋତେ ଲଇ ହୋଇଲୁ ଷଷ୍ଠଭ୍ରାଥ ।୩୪।
ଯେତ୍ହେ ମହୀମଣ୍ଡଳେ ତୁ ହୋଇବୁ ଆଧିପତ୍ତ
ପଶ୍ଚିମେ ନବସହସ୍ର ରାଜାରେ ତୁ ଶିରୋମଣି ଚକ୍ରବର୍ତ୍ତୀ । ୩୫ ।
ଆସ ଆସ ବିରାଟ ହୋ ତୁ ଘେନ ମୋହର ଶାଢୀ
ଯେତ୍ହେ ମହୀମଣ୍ଡଳେ ତୁ ହୋଇବୁ ଅଧିକାରୀ । ୩୬ ।
ଶ୍ରୀକରେ ଶାଢୀ ଯେ ତାକୁ ତୋଳ ଦଲେକ ଧର୍ମରାଯ୍ୟେ
ପୁଣ ପୁଣ ପ୍ରଣପତ୍ୟ ହୋଇ ଶାଢୀ ବାନ୍ଧିଲା ମଥାୟେ । ୩୭ ।
କୋନ୍ତେ ବୋଇଲେ ବିରାଟେ ମାଗ ଯାହା ଇଚ୍ଛା
ଯେତ୍ହିକ୍ଷଣି ଦେବ ତୋତେ ଯାହା ମନବାଞ୍ଛା । ୩୮ ।
ବିରାଟ ବୋଇଲା ସ୍ୱାମି ଯାହା ଦେବୁ ବର
ଯେତ୍ହେ ମନକୁ ଯେ କଳ୍ପଇ ମୋହୋର । ୩୯ ।
ମୋହୋର ଦୁହିତା ସେ ଉତ୍ତରା ବାଳୀକ
ତାହାକଇଂ ପ୍ରଦାନ କରିବ ବୃହନ୍ନାରୀକ । ୪୦ ।
ଲଭିବ ପରମଗତ୍ତ ସେ ଦୁହିତା ପରସାଦେ
ତେବେ ସେ ସଦଯ୍ୟେ ବୋଲ ଜାଣିମାନା ହୃଦେ । ୪୧ ।

ଯେତେବେଳେ ଉତ୍ତରା ପ୍ରଦାନ କରିବ କିରୀଟୀ
ତେବେ ସେ ମୋହୋର ମନଭ୍ରାନ୍ତି ଯିବ ଯିନା ଫିଟି । ୪୨ ।
ଯୁଧିଷ୍ଠିର ବୋଇଲେ ଅର୍ଜୁନର ସୁଭଦ୍ରା ଭାରିଜା
ତାହାଂକର ସହୋଦ୍ର ଯେ ରାମକୃଷ୍ଣ ଦେବରାଜା । ୪୩ ।
ଆହୋ ଉତ୍ତରା ପ୍ରଦାନ କଲେ ଯେ ଅର୍ଜୁନ
ଅପ୍ରୀତି ଭାବ ହୋଇବନା ତୋହୋର କୃଷ୍ଣଂକୁ ଯେ ରାମ । ୪୪ ।
ଯେତେ ଯଶ ଅର୍ଜିଲୁ ଆମ୍ଭନ୍ତ ସମ୍ଭାଳି
ତୋତେ ଚିତ୍ତେ ଅନ୍ତର ଧରିବେନା ରାମ ବନମାଳୀ । ୪୫ ।
ଅର୍ଜୁନ ବୋଇଲା ଦେବ ଯେମନ୍ତ ନ କହ
ଆରେକ କଥାଯେ ଦେବ ଅଛଇ ସନ୍ଦେହ । ୪୬ ।
ହୁଡ଼ ବିରାଟ ବୋଇଲା ଯେ ଯେହାର ଗ୍ୟାନ ନାହିଂ
ବିଦ୍ୟାଗୁରୁ ଶିଷ୍ୟ ପୁତ୍ରୀ ସଙ୍ଗତି ଅଛୁ କାହିଂ । ୪୭ ।
ଅର୍ଜୁନ ବୋଇଲା ସେ ମୋ ଅଟଇ ଶିଶୁ ପୁତ୍ରୀ
ତାହା ମୋହୋର କାହିଂ ମିଳଇ ପୀରତି । ୪୮ ।
ଯୁଧିଷ୍ଠିର ଦେବେ ତୁ ଯେବେ କରୁ ଅପରତେ
ବନ୍ଧୁ ହୋଇଲେ ସେ ନଭ୍ରାନ୍ତ ହୋଇବ ତୋତେ । ୪୯ ।
କୁମାରେକ ଅଛୁ ସେ ଯେ ଅର୍ଜୁନର ତନୁ
ରାମ କୃଷ୍ଣଂକ ଭଣଜା ତାର ନାମ ଅଭିମନ୍ୟୁ । ୫୦ ।
ଅଭିମନ୍ୟୁକୁ ପ୍ରଦାନ କର ତୋହୋର କୁମାରୀ
ବରକନ୍ୟାଯେ ସେ ହୋଇବେ ଯେକ ସରି । ୫୧ ।
ବିରାଟ ବୋଇଲା ସ୍ୱାମି ମୁଂ ନିସ୍ତରିଲି ନିସ୍ତରିଲି
ଯେ ଦୋହିତା ପ୍ରସନ୍ନେ ମୁଂ ପରମ ଗତି ପାଇଲି । ୫୨ ।
ଯେହାଙ୍କ ସୁଲଭ ମୁଂ ଯେ ଅରଜିବି କିସ
ଯେବେ ସେ ଜାଣିଲି ମୋହୋର ସୁକର୍ମ ସୁଯଶ । ୫୩ ।

---

୪୮।୨ "ତାହା ମୋହର କାହିଂ ମିଳଇ ପୀରତି"
ପରେ "ଛ" ପୋଥିରେ ଅଧିକା ପାଠ :—
ମୁହିଂ ତାକୁ ନାଟବିଦ୍ୟା ଶିକ୍ଷା ଦେଇଅଛି
ଗୁରୁ ଶିଷ୍ୟରେ ପତି ପତ୍ନୀ କାହିଂ ଗଚ୍ଛାଗଚ୍ଛି ।

ସାନନ୍ଦେଣ ଆଜ୍ଞାଂ ସେ ଦିଲେ ଦେବରାଜା
ବିଭର ଯୋଗାଡ଼ ଯେ ବହନ କର ଯା ଯା । ୫୪ ।
ବିରାଟ ବୋଇଲା ମୁଂ ମାଗଇ ଅଭିରଥି
ରାଜ୍ୟେ ଭ୍ରମଣି ମୋହୋର କରିବା ସୈନ୍ଯ ମୂର୍ତ୍ତି । ୫୫ ।
ମତ୍ସ୍ୟଦେଶେ ମଘଦେଶେ ଦେଖନ୍ତୁ ଅଭିଷେକ
କୋଟି କୋଟି ଜନ୍ମର ସେ ଖଣ୍ଡନ୍ତୁ ପାତକ । ୫୬ ।
ଯୁଧିଷ୍ଠି ଦେବଂକର ଅଭିଷେକ ବାରତା ଶୁଣି
ମରୁତ ଦେଶର ଶିବରାଜା ଥାଠ ଯେ ପଲାଣି । ୫୭ ।
ଶ୍ରେଷ୍ଠାର ଶ୍ୱେତଅଶ୍ୱ ପଲାଣି ପାଞ୍ଚ ଅବ୍ରତ ତୁଲେ
କ୍ଷଣକେ ଆକାଶ କ୍ଷେପି ପାରନ୍ତ ଗମିଲେ । ୫୮ ।
ପାଣିଦ୍ରବ୍ୟ ଶତେରଥ ଘେନ ଶିବରାଜା
ଯୁଧିଷ୍ଠି ଦେବଂକ ଅଗ୍ରତେ କଲେକ ପାଦପୂଜା । ୫୯ ।
ସାଧୁ ମୋହୋର ଜୀବନ ବୋଲଇ ରାଜେ ଶିବ
ହୃଦଗତେ କଲ୍ପନା କଲି ଦେଖିବି ଠାକୁରଂକ
ଅଭିଷେକ ସମ୍ଭବ । ୬୦ ।
ପୂର୍ବେ ଯେତେକ ମୁଁ ବାମ୍ୟ କରଥିଲି
ଯୁଧିଷ୍ଠି ଠାକୁରଂକ ଅଭିଷେକ ଦେଖିଲି । ୬୧ ।
ସହସ୍ରେ ଜନ୍ମର ମୁଂ ପାତକ ଛଡ଼ାଇଲି
ସାକ୍ଷାତ ପରବ୍ରହ୍ମ ମୁଂ ନୟନରେ ଦେଖିଲି । ୬୨ ।
ପୁଣ୍ୟର ବଳେ ମୋତେ ହୋଇଲା ପରାପତ
ଅନେକ ହରଷେ ମହାରାଜା ହୋଇଲା କୃତ କୃତ । ୬୩ ।

---

୫୪।୨ "ବିଭର ଯୋଗାଡ଼ ଯେ ବହନ ନେଇ ଯା ଯା"
ଏହି ପୋଥି ପରେ "ଦ"ରେ ଅଧିକା ପାଠ :—
ବିରାଟ ବୋଇଲା ସ୍ୱାମି ମୋହୋର ପୁରେ ହୁଅ ଅଭିଷେକ
ମୋହର ରାଜ୍ୟରେ ଯେ ଦେଖନ୍ତୁ ସର୍ବଲୋକ ।
ଆନନ୍ଦେ ଯୁଧିଷ୍ଠି ଯେ ପଞ୍ଚ ଭ୍ରାଥ ଘେନ
ଅଭିଷେକ ଯୋଗାଡ଼ ବିରାଟ ଦିଲା ଆଣି ।

ଶିବରାଜା ଶ୍ୱେତହସ୍ତୀ ଉପରେ ଯୁଧିଷ୍ଠି ଦେବ କଲେ ବିଜେ
ଭ୍ରମନ୍ତି ମଗଧଦେଶ ମଥୁରଦେଶ ବେଳନରାଜ୍ୟେ । ୬୪ ।
କରେଣ ଅର୍ଘ୍ୟ ଘେନ ସୁଲଭ କାମେମା
ଜୟେ ମଙ୍ଗଳେ କରନ୍ତି ହୁଳହୁଳ ଧ୍ୱନି । ୬୫ ।
ଅଭିଷେକ ବିଧାନ ଯେ ଦେଖିଣ ଯୁଧିଷ୍ଠି
ଆକାଶୁଂ ଦେବତାଯେ କଲେକ ପୁଷ୍ପ ବୃଷ୍ଟି । ୬୬ ।
ଦେଖଗହର ପର୍ଯ୍ୟନ୍ତେ ବରଷିଲା ରତ୍ନମାନ
ସମରାଜ୍ୟେ ଲୋକେ ଯେ ସାଉଂଟିଲେ ସର୍ବଧନ । ୬୭ ।
ଦେଖିଣ ମୂକତ ଯେ ହୋଇଲେ ସର୍ବଜନ
ଦାରିଦ୍ର୍ୟ ଫିଟିଲା ସେ ବରାଟ ଭୁବନ । ୬୮ ।
ମଥୁରଦେଶ ମଗଧଦେଶ ଦୁହେଂ ହୋଇଲେ ଉଦିତ
ବହୁତ ଦେଶେ ଦେଶାନ୍ତରେ ବାରତା କଲେ ତୁରିତ । ୬୯ ।
ପାଞ୍ଚାଳ ଦେଶ ରାଜା ଦ୍ରୋପଦ ଦେଶ ରାଜେ
ଶିଖଣ୍ଡୀ ଧୃଷ୍ଟଦ୍ୟୁମନ ଘେନଣ ସଙ୍ଗେ ବିଜେ । ୭୦ ।
ପଦ୍ମେକ ରଥୀ ଯେ ବେନି ପଦ୍ମ ହସ୍ତୀ
ଖରପଦ୍ମ ମୁକୁଟବନ୍ଧା ଯୋଦ୍ଧା ତୁଲେଣ ସେନାପତି । ୭୧ ।
ନବଅକ୍ଷଉଣୀ ବଳ ଘେନ ପଞ୍ଚାଳେଶ୍ୱର ନାଥ
ତୁଲେଣ ଘେନିଲା ସେ ପଞ୍ଚାଳ କୁମାରନ୍ତ । ୭୨ ।
ବଟାଇ ସମ୍ଭବେ ସେ ଘେନଣ ରତ୍ନ କୋଶ
ଚଳନ୍ତି ଦଣ୍ଡ ଘେନ ମଥୁରଦେଶ ମଗଧଦେଶ । ୭୩ ।
ଶୁଭେଣ ପ୍ରବେଶ ହୋଇଲେ ଦଣ୍ଡଧାରୀ
ଆସ୍ଥାନେ ଦେଶାନ୍ତରେ ବାରତା ଯାଇଂ କରି । ୭୪ ।
ସ୍ୱାମି ପାଞ୍ଚାଳ ଦେଶର ରାଜା ଦ୍ରୋପଦେ
ଧୃଷ୍ଟଦ୍ୟୁମନ ପଞ୍ଚାଳ କୁମାର ସହିତେ । ୭୫ ।
ଜଣାଇ ଦରଶନ କରେ ଯାଇଂ ସ୍ୱାମୀ
ଦୁରନ୍ତୁଂ କୁମାରମାନେ ହୋଇଲେ ପରଣାମୁଂ । ୭୬ ।

ଶ୍ୱେତ ହସ୍ତୀ ଉପରେ ଯେ ବିଜେ ଧର୍ମସୁତେ
କୋଳେଣ ପାଞ୍ଚାଳୀ ଯେ ଦ୍ରୁପଦ ଦୁହିତେ । ୭୭ ।
ପାଞ୍ଚାଳ କୁମାର ଯେ ଦ୍ରୋପଦୀ କୋଳେ
ଆନନ୍ଦେ ଅଶ୍ରୁଜଳ ବହଇ ବେନି ଡୋଳେ । ୭୮ ।
ଗଜେକ ଆରୋହି ସେ କରେଣ ଗଦା ଘେନି
ଡାହାଣ ପାଖରେ ସେ ଚଳଇ ପାବେନି । ୭୯ ।
କରିଟୀ ମୁକୁଟ ସେ ଶ୍ରୀକରେ ଗାଣ୍ଡିମ ଧନୁ
ବାମ ପଖାଏ ବିଜଏ ବାସବର ତନୁ । ୮୦ ।
ହସ୍ତୀଏକ ଆରୋହି କରେ ଧନୁଶର ଭାରଥୀ
ଭୂତ ଭବିଷ୍ୟ ଜାଣନ୍ତା ସେ ସହଦେବ ମନ୍ତ୍ରୀ । ୮୧ ।
ଗଜେକ ଆରୋହି ସେ ବୀର ଯେ ନକୁଳ
ପଛୁଆଣ ଥାଟ ଆବୋରି ରହିଅଛି କ୍ଷତ୍ରିୟ ଅଗର୍ଗଳ । ୮୨ ।
ଅଶ୍ୱେକ ଆରୋହି ବିରାଟର ନନ୍ଦନ ଯେ ଉତ୍ତର କୁମାର
ପାଞ୍ଚଲକ୍ଷ ଯୋଦ୍ଧା ଘେନି ଚଳଇ ଯୁଧିଷ୍ଠିରଙ୍କ ଆଗର । ୮୩ ।
ଗଜେକ ଆରୋହି ସେ ବିରାଟ ମହୀପାଳଇ
ଗୃମରେକ ଧରି ସେ ଅବିଛନ୍ନେ ଢାଳଇ । ୮୪ ।
ଯାଚକେଶ୍ୱର ମନ୍ତ୍ରୀ ସେ ବାମଦେବ ପ୍ରୋହିତ
ହସ୍ତୀଏ ହସ୍ତୀଏ ଗୃମରେ ଗୃମରେକ ହସ୍ତ । ୮୫ ।
ଦ୍ରୋପଦର ନନ୍ଦନ ନାମ ଯେ ଶିଖଣ୍ଡୀ
ଲକ୍ଷେକ ଯୋଦ୍ଧା ଘେନି ସେ ଡାହାଣ ପଖାଏ ମଣ୍ଡି । ୮୬ ।
ଶ୍ୱେତହସ୍ତୀ ଚଢିଣ ସେ ପଞ୍ଚାଳ ଦେଶ ଦ୍ରୋପଦେ
କନକ ଦଣ୍ଡ ଗୋଟାଏକ ଘେନିଅଛି ଶ୍ରୀହସ୍ତେ । ୮୭ ।
ମରୁତ ଦେଶ ରାଜା ଶିବନାମେ ନୃପତି
ଗଜେକ ଆରୋହଣ କରେ ଧରିଛନ୍ତି ଧବଳଛତ୍ରୀ । ୮୮ ।
ଯୁଧିଷ୍ଠି ଦେବଙ୍କର ରାଜ୍ୟ ପରିକଳିବା ସମୟେ
ଦ୍ରୁଶନ କଲି ଆସି ଖାଞ୍ଚକର ପିତା ସଂକୋଚନ ରାୟେ । ୮୯ ।

---

୮୬।୨ ଲକ୍ଷେକ ଯୋଦ୍ଧା ଘେନି ସେ ଡାହାଣ ପଖାଏ ନଇଣ୍ଡି । (ଗ, ଙ)

ହନ୍ତେ ଝରଣ ସେ ହଣନହ ଭରି ମୁଖେ
ଅଶ୍ରୁଜଳ ବହଇ ବେନି ନୟନ୍ଙ୍କ ପୁତ୍ରଂକର ଦୁଃଖେ । ୯୦ ।
ବରଦେଶ୍ୱର ରଜା ଗ୍ରାମୁରେ ପରିଣାମି
ସଂକୋଚନ ରଜା ଗ୍ରାମୁରେ ଦ୍ରଶନ କରୁଅଛି ଦେବ ସ୍ୱାମୀ । ୯୧ ।
ଦେଖିଣ ସାନନ୍ଦ ଯେ ଜଗତ ଅଧିକାରୀ
ଶ୍ରୀଭୂଜେ ସଂକୋଚନକୁ ହଲେ ଦେବ ଶାଢୀ । ୯୨ ।
ଆହୋ ସଂକୋଚନ ଆମ୍ଭଂକୁ ଆଗ୍ୟାଂ ହଲେ ଦେବତାସ୍ୱେ
ଚେଣୁକର ପୃଥିବୀକ ଭର ତୋହୋର ତନୟେ । ୯୩ ।
ତାହାନ୍ତ ଆମ୍ଭେ ନାଶକଲୁ ମହାଭାର ନିମନ୍ତେ
ସେ ପୁତ୍ର ତୋତେ ଦେଇ ନ ପାରୁଛୁଂ କଦାଚତେ । ୯୪ ।
ସଂକୋଚନ ବୋଇଲ ସ୍ୱାମି ଦୁଷ୍ଟ ନିଶୋଧନ
ସଜ୍ଜନ ପାଳକ ତୁ ଭାର ନିବାରଣ । ୯୫ ।
ସ୍ୱାମୀର ମୁଖେ ଯେ କ୍ଷୀଅକ ନାଶଗଲା
ପୂର୍ବ ଜନ୍ମେଣ ସେ ଯେ ଅଶ୍ୱମେଧ ଯାଗ କରିଥିଲା । ୯୬ ।
ଅନେକ ରତ୍ନମାନ ସଂକୋଚନ ରଜାକୁ ସେ ହଲେ
ଅନେକ ପୁରସରି ସେ ବଚନ କହିଲେ । ୯୭ ।
ସେସନେକ ସଂପଦେ ଯେ ମଣଦେଶେ ମହ୍ରଦେଶେ ଭ୍ରମି
ଦେଖିଣ ମୁକତ ଜନେ ସେ ଧର୍ମରାୟେ ସ୍ୱାମୀ । ୯୮ ।
ମହ୍ରଦେଶେ ମଘଦେଶେ ହୋଅଇ ଉତ୍ସବ
ରଜାକୁ ମୁଣୋହି ଯୋଗାଡ କଲେକ ମହ୍ରଦେବ । ୯୯ ।
ସମରଜ୍ୟ ଭ୍ରମିଣ ସେ ଅଭୟେ ଚକ୍ରବର୍ତ୍ତୀ
ବିଜୟେ ଧର୍ମନନ୍ଦନ ବାହାର ଜଗତି । ୧୦୦ ।

---

୯୪।୨ "ସେ ପୁତ୍ର ତୋତେ ଦେଇ ନ ପାରୁଛୁଂ କଦାଚତେ" ଏହି
ପାଠ ପରେ "ଜ"ରେ ଅଧିକା ପାଠ :—
ଆବର ଲେଉଟଲେ ଦେବୁ ରଜ୍ୟଭାର ସିଂହାସନ
ଧନ ଧାନ୍ୟ ଗୋଧନ ଦେବୁଂ ଲକ୍ଷେ ପରମାଣ । (ଜ)

୯୫।୨ ଅର୍ଜୁନକୁ ସଙ୍ଗେ ଘେନିଣ ଭାର ନିବାରଣ । (ଡ, ଧ, ପ)

ସ୍ନାହାନ ମାଜଣା ସେ ସାରଣ ନିତ୍ୟକର୍ମ
ରାଜାନ୍ତ ଘେନି ମୁଣୋହ୍ନିଂ ବିଜେ ଦେବ ଧର୍ମ । ୧୦୧ ।
ମୁଣୋହ୍ନିଂ ଉତ୍ସରେଣ ଆଂଗ୍ରୈବନ ସାରି
କପୂର ତାମ୍ବୋଳ ଯେ ଭୋଜନ ଦେବ କରି । ୧୦୨ ।
ଯୁଧେଷ୍ଠି ଦେବେ ବୋଇଲେ ସହଦେବଂକୁ ରାଇ
ଦ୍ୱାରକା ପୁରକୁ ତୁ ଯାଅସି ବେଗ ହୋଇ । ୧୦୩ ।
ବିଭା ସନ୍ଦେଶ କହ ଯାଇଂ ରାମକୃଷ୍ଣ ବେନି
ବଧୂକୁ ଅଭିମନ୍ୟୁକୁ ଆସ ବେଗ ଘେନି । ୧୦୪ ।
ଯେସନେକ ଆଗ୍ୟାଂ ହେଲେ ଦେବସ୍ୱାମୀ
ବେଗ ଆସ ଘେନି ତୁ ଅଭିମନ୍ୟୁ ଖାରେ ଘେନି । ୧୦୫ ।

---

## ଅଭିମନ୍ୟୁର ଉତ୍ତରା ସହିତ ବିବାହ

ସ୍ୱାମୀଂକର ଆଗ୍ୟାଂସ୍ୟେ ସେ ମନ୍ତ୍ରୀ ଚୂଡ଼ାମଣି
ଚଳଇ ଦ୍ୱାରିକାକୁ ଶ୍ୱେତ ଅଶ୍ୱ ପଲାଣି । ୧୦୬ ।
ତକ୍ଷଣେ ସହଦେବ ଯେ ହୋଇଲେ ଦ୍ୱାରିକା
ଜଗନ୍ନାଥ ଜାଣିଲେ ସହଦେବ ଆସୁଅଛୁ ଯେକା । ୧୦୭ ।
ବୈନେତ୍ର ଆରୋହଣ ସେ ଦେବ ନାରାୟଣ
ସହଦେବକଇଂ ଭେଟିଲେ ସେ ହଂସବଳା ପର୍ବତେଣ । ୧୦୮ ।

---

୧୦୮।୨ "ସହଦେବକଇଂ ଭେଟିଲେ ସେ ହଂସବଳା ପର୍ବତେଣ" ଏହି ପାଠର "ହଂସବଳା ପର୍ବତେଣ" ସ୍ଥାନରେ ଭିନ୍ନ ଭିନ୍ନ ପୋଥିରେ ଭିନ୍ନ ପାଠ

ଆଶାବଳୀ ପର୍ବତେଣ । ( କ, ଟ )
ଶଂସାବଳୀ ପର୍ବତେଣ । ( ଭ, ଧ୍ର, ପ )
ରମ୍ଭାବଳୀ ପର୍ବତେଣ । ( ଛ, ଘ )
ବଂଶାବଳୀ ପର୍ବତେଣ । ( ଦ )
ହସ୍ତାବଳୀ ପର୍ବତେଣ । ( ଥ )
ଦ୍ରୁମାବଳୀ ପର୍ବତେଣ । ( ଣ )

ସନ୍ନିଧେ ସହଦେବକ ଶତେ ଦଣ୍ଡ ପରଣାମି
ମତ୍ସ୍ୟଦେଶକୁ ବଜେ କରିବା ଦେବସ୍ୱାମୀ । ୧୦୯ ।
ବିରାଟର ନନ୍ଦନୀ ଯେ ଉତ୍ତରା କୁମାରୀ
ଅଭିମନ୍ୟୁଙ୍କୁ ପ୍ରଦାନ କରିବା ଦେବ ହରି । ୧୧୦ ।

---

୧୦୯।୧ "ସନନ୍ଧେ ସହଦେବ ଶତେ ଦଣ୍ଡ ପରଣାମି"
ଏହି ପାଦ ପରେ "ଛ" ପୋଥିରେ ଅଧିକା ପାଠ :—
ଦେଖିଣ ଜଗନ୍ନାଥେ ସହଦେବଙ୍କୁ କୋଳ କଲେ
ସକଳ କୁଶଳମାନ ଆନନ୍ଦେ ପଚାରିଲେ ।
ସହଦେବ ପଚାରଇ ଶୁଣିମା ଦେବସାଇଁ
ତୋହର କୃପାରୁ ଆମ୍ଭେ ବଞ୍ଚିଲୁ ଗୋସାଇଁ ।
ବିରାଟ ରାଜ୍ୟରେ ଅନେକ ଦ୍ୱନ୍ଦ୍ୱ ପଡ଼ିଲା
ଦୁର୍ଯୋଧନ ଗୋଧନ ହରିନେବାକୁ ଆଇଲା ।
କୌରବ ବଳକୁ ଯେ ଜିଣିଲେ ଅର୍ଜୁନ
କୀରବାହୁ ଆଠକୁ ଯେ ମାଇଲେ ଭୀମସେନ ।
ରାଜାଧି ଅଭିଷେକ କରାଇଲେ ଆପଣେ ତହିଁ
ବିରାଟ ରାଜ୍ୟକୁ ଆମ୍ଭେ ଅଇଲୁ ଗୋସାଇଁ ।
ଆସ୍ଥାନ ମାଡ଼ି ବସନ୍ତେ ବିରାଟ କଲା କୋପ
ଉତ୍ତର କୁମାର ତାକୁ କହିଲା ସରୂପ ।
ତେଣୁ ଯାଇଁ ବିରାଟ ଯେ ପଶିଲା ଶରଣ
ବୋଇଲା ହେ ଦେବ ମୋତେ କରସି କାରଣ ।
ମୋହର ଦୁହିତା ଯେ ଅଛଇ ଉତ୍ତରାବାଳୀ
ଅଭିମନ୍ୟୁଙ୍କୁ ପ୍ରଦାନ ମୁଁ କରିବି ହସ୍ତ ତୋଳି ।
ତେବେ ମୋର ଅପରାଧ ହୋଇବ ଖଣ୍ଡଣ
ଏମନ୍ତ ବୋଲି ବିରାଟ ବୋଇଲା ବଚନ ।
ଶୁଣିଣ ଠାକୁର ଯେ ସନମତ କଲେ
ରାମକୃଷ୍ଣଙ୍କୁ ଆଣ ଯା ବୋଲି ମୋତେ ପ୍ରମନ୍ତ୍ରିଲେ ।
ବିରାଟ ଦୁହିତା ଯେ ଉତ୍ତରା କୁମାରୀ
ଅଭିମନ୍ୟୁଙ୍କୁ ପ୍ରଦାନ ହେ କରିବ ଦେବହରି ।

ଯେ ଏମନେକ ଯତ୍ନଂ ଶୁଣିଲେ ମୁରାରି
ବୈନେଶ ପିଠିରେ ଅଛନ୍ତି ବଜେକରି । ୧୧୧ ।
ଯେ ମନ୍ତର ସମୟେ ସେ ଆରଣ୍ୟ ଆଧିପତି
ହଂସଧ୍ୱଜ ରାଜା ଆସି ଦ୍ୱାଶନ କରନ୍ତି । ୧୧୨ ।
ଦେଖିଣ ସାନନ୍ଦ ସେ ଦେବାଧି ଦେବରାଜା
ଆହେ। ହଂସଧ୍ୱଜ ରାଜା ତୁ ଅଶ୍ୱଗୋଟି ଘେନ ଯା ଯା । ୧୧୩ ।
ଯେତେବେଳେ ଯୁଧିଷ୍ଠି ଦେବ ବାରୁଣାବନ୍ତକଇଂ ଯିବେ
ସମ୍ପର ସଂପଦେ ସେ ହସ୍ତିନା ରାଜ୍ୟରେ ବସିବେ । ୧୧୪ ।
ତେତେବେଳେ ଯେ ଅଶ୍ୱଗୋଟି ନେଇ ଦେବୁ
ଯେବେ ଅଶ୍ୱଗୋଟିକୁ ଯତନେ ଥୋଇଥିବୁ । ୧୧୫ ।
ଯେତେକ ବଚନେ ସେ ହଂସଧ୍ୱଜ ନୃପତି
ହଂସାବଳୀ ପର୍ବତକୁ ସେ ଅଶ୍ୱ ଘେନ ଗଲେକ ତତ୍‌ଷଣି । ୧୧୬ ।
ସେ ହଂସଧ୍ୱଜ ରାଜା ଚଳ୍ପିଂ ଗୁଡ଼ିଲ ଅଶ୍ୱଗୋଟି
ସହଦେବକଇଂ ଘେନ ଦେବ ବଜୟେ ବୈନେଶର ପିଠି । ୧୧୭ ।
କୋଲେ ସହଦେବ ମନ୍ତ୍ରୀ ଚୂଡ଼ାମଣି
ଦ୍ୱାରକା ପୁରେ ଯାଇଂ ବିଜୟେ ଚକ୍ରପାଣି । ୧୧୮ ।
ସମ୍ପ୍ରେ ବଜୟେ କରି ଅଛନ୍ତି ବଳଦେବ
ଯେ ମନ୍ତର ସମୟେ ବଜୟେ କଲେ ବାସୁଦେବ । ୧୧୯ ।
ଦେଖିଲେ ସମ୍ପରେ ଯେ ବଜୟେ ହଲପତି
ଶ୍ରୀକୃଷ୍ଣ ସହଦେବ ଶତେ ସହସ୍ରଜଣ ପ୍ରଲମ୍ବ କରନ୍ତି । ୧୨୦ ।
ଆସ୍ଥାନର ତଳେ ସେ ସହଦେବ ମହାମନ୍ତ୍ରୀ
କରପଦ୍ମ ଯୋଡ଼ି ବହୁତ ବନୋସ୍ତୀ କରଇ ସ୍ତୁତି । ୧୨୧ ।
ସ୍ୱାମି ସମଦଣ୍ଡ ଘେନଣ ମତ୍ସ୍ୟଦେଶକୁ ଯିବା
ବିରାଟ ଦୋହିତା ଅଭିମନ୍ୟୁକୁ ପ୍ରଦାନ କରାଇବା । ୧୨୨ ।
ବଳଦେବ ମଉନବ୍ରତ ହୋଇଲେ ତାହା ଶୁଣି
ସୁଭଦ୍ରା ଅଭିମନ୍ୟୁକୁ ଘେନ ବଜୟ କର ଚକ୍ରପାଣି । ୧୨୩ ।
ଗୋବିନ୍ଦେ ବୋଇଲେ ସ୍ୱାମି ଉଠ ହୋ ଚଳ ଯିବା
ସାତବଂଶ ଘେନ ଦେବ ବଜୟେ କରିବା । ୧୨୪ ।

ସହଦେବ ବୋଇଲା ଯେ ରାମ ଚରଣେ ପରଣାମି
ତୁମ୍ଭର ନ ଗଲେ ବଳ ନୋହଇ ଦେବ ସ୍ୱାମୀ । ୧୨୫ ।
ମନ୍ତ୍ରଭେଳ ପୁରୁଷ ତୁ ସଦା ପରମ ଯୋଗୀ
କ୍ଷଣକେ ଦୟାସାଗର କ୍ଷଣକେ ମହାରାଗୀ । ୧୨୬ ।
ଶ୍ରୀ ଜଗନ୍ନାଥଂକ ବଚନେ ରାମ ଗଡଦୋଷ କଲେ ତେଜ୍ୟା
ସମଦଣ୍ଡ ସାଜ ବୋଲି ଆଗ୍ୟାଂ ହେଲେ ଦେବରାଜା । ୧୨୭ ।
ଯଦୁବଂଶ ରାଜା ଉଗ୍ରସେନ ମହୀପତି
ସାଜିଲେ ସମଦଣ୍ଡ ଚଉଦକୋଟି ରଥୀ । ୧୨୮ ।
ଭୋଜବଂଶ ରାଜା ଯେ ସମର୍ଥକଜିତ
ସାଜିଲା ସମଦଣ୍ଡ ସେ ତିନଖର୍ବ ରଥ । ୧୨୯ ।
ସୁରସେନ ନୃପତି ଯେ ବୃଷ୍ଣିବଂଶରେ ମହାରାଜା
ପାଞ୍ଚଖର୍ବ ରଥୀ ଯୋଦ୍ଧା କଲା ସଜ୍ଜା । ୧୩୦ ।
କୁକୁର ବଂଶର ରାଜା ଯେ ଅଟେ ଅନାଧୃଷ୍ଟ
ପାଞ୍ଚଲକ୍ଷ ରଥୀ ସାଜିଲା ସମ୍ଭରେ ମହାଥାଠ । ୧୩୧ ।
ଅନ୍ଧକ ବଂଶେ ଯେ ଗୋପାଳସେନ ନୃମତି
ପଞ୍ଚ ମନ୍ତ୍ରିତ ରଥ ଯେ ତାହାର ସଂଗତି । ୧୩୨ ।
ହୈହେୟ ବଂଶେ ସେ ରାଜା ଯେ ଉଦ୍ଧବ
ପଦ୍ମେକ ଯୋଦ୍ଧା ଘେନ ସେ ବଢାଇ ସମ୍ଭବ । ୧୩୩ ।
ଚୌହାଣ ବଂଶର ରାଜା ଯେ ଅଟେ ଉପନନ୍ଦ
ସାଗରେ ରଥୀ ତାହାର ମୁକୁଟ ବନ୍ଧା ଯୋଦ୍ଧା ତିନବୃନ୍ଦ । ୧୩୪ ।
ଯେ ବିଧିରେ ସାତବଂଶ ରାଜାମାନେ ରଥ ମଣ୍ଡି
କରେଣ ଛେଳ ଚକ୍ର ଅସିପତ୍ର କୋନ୍ତ ଯେ ଭୁଷଣ୍ଡି । ୧୩୫ ।
ଅଷ୍ଟରନ୍ଧ୍ରେ ମଣ୍ଡିତ ଯେ ସବୁଂକର ରଥ
ଉଦେଗିର ପ୍ରତିକ୍ଷଣେ ଯେହ୍ନେ ହଣଇ ଆଦିତ୍ୟ । ୧୩୬ ।
ନନ୍ଦୀଘୋଷ ରଥ ଯେ ମଣ୍ଡିଲା ଦାରୁକ
ଉପରେ ଶୋଭାବନ ଯେ କଣପୁ ଅନେକ । ୧୩୭ ।
ତାଳଧ୍ୱଜ ରଥ ଯେ ଦାରୁକ ସାଜଇ
ଶ୍ରୀ ବଳଦେବ ହଳମୂଷଳ ଘେନ ବଜେ କରନ୍ତ ଯତ୍ନଂ । ୧୩୮ ।

ଷୋଡଶସହସ୍ର କନ୍ୟା ଶତେ ଅଷ୍ଟ ପାଟବଂଶୀ
ଚାହାନ୍ତି ଯେମନ୍ତ ବିଜୟେ କଲେ ହୃଷୀକେଶି । ୧୩୯ ।
ଲକ୍ଷେକ ଷାଠିଏ ସହସ୍ର ଅଶୀଶୀ ନନ୍ଦନ
ଆରୋହିଲେ କୁମାରେ ଯେ ପୁଷ୍ପକ ବିମାନ । ୧୪୦ ।
ଯେ ଯାହାର ଆୟୁଧ ସେ ଧରିଛନ୍ତି କରେ
ଅନେକ ରତ୍ନ ଅଳଂକାରମାନ ଯେ ଆଭରଣ ଶରୀରେ । ୧୪୧ ।
ଦକ୍ଷିଣେ ସୌନନ୍ଦ ମୂଷଳ ଯେ ବାମକରେ ବଜ୍ରହଳ
କାଦମ୍ବରୀପାନେ ସ୍ୱାମୀ ସଦା ମତ୍ତ ଭୋଳ । ୧୪୨ ।
କୋଟି କୋଟି ସିଂହର ଯାହାର ପରାକ୍ରମ
ତାଳଧ୍ୱଜ ଆରୋହଣ ବିଜୟେ ବଳରାମ । ୧୪୩ ।
ଦ୍ୱାରକା ରକ୍ଷାପାଳକ ସୈକା ପ୍ରସନ୍ନାଜିତ
ସମଦଣ୍ଡ ଯେମନ୍ତ ଚଳିଲେ ଜଗନ୍ନାଥ । ୧୪୪ ।
ଅନ୍ତଅନ୍ତ ସଂପଦେ ଯେ ଦେବ ହୃଷୀକେଶ
ମତ୍ସ୍ୟଦେଶେ ନାରାୟଣ ହୋଇଲେ ପ୍ରବେଶ । ୧୪୫ ।
ବାରତା ପାଇଣ ଦେବ ଧର୍ମ ଯେ ଯୁଧିଷ୍ଠିର
ସମଦଣ୍ଡ ଯେମନ୍ତ ଆପଣେ ଆସନ୍ତି ପାଶ୍ଚେଟି । ୧୪୬ ।
ମଧ୍ୟଦେଶ ମତ୍ସ୍ୟଦେଶ ପାଞ୍ଚାଳ ମରୁତ ଦେଶର ସଇନ
ବିରାଟ ପାଶ୍ଚେଟି ହୋଇଲୁ ସୈତେ ଯେମନ । ୧୪୭ ।
ଯୁଧିଷ୍ଠିରଙ୍କ ଚରଣ ତଳେ କେଶବ ପରଣାମି
ଅନୁଗ୍ରହ ନାଥ ପ୍ରସନ୍ନ ହୋଅ ଦେବ ସ୍ୱାମୀ । ୧୪୮ ।
ସମଦଣ୍ଡ ଯେମନ୍ତ ସେ ନୃପତି ପଞ୍ଚାଳେ
ବିରାଟ ଦ୍ରୋପଦ ପ୍ରଣପତ୍ୟ ଶ୍ରୀବଳରାମଙ୍କ ପାଦତଳେ । ୧୪୯ ।
ପୁଣ ପୁଣ ପ୍ରଣପତ୍ୟ ଜଗନ୍ନାଥଙ୍କ ପାଦତଳେ
ସ୍ୱାମି ଲଭିଲ ପରମଗତି ଧର୍ମର ସୁଫଳେ । ୧୫୦ ।
ଗୋବିନ୍ଦେ ବୋଇଲେ ବିରାଟ ଅନ୍ତଅନ୍ତ ଭାଗ୍ୟ ତୋହୋର ପୂର୍ବେ
ଯୁଧିଷ୍ଠିର ଠାକୁର ଯେ ବିଜେକଲେ ଆସି ସୈବେ । ୧୫୧ ।

ବିଜୟେ ଅସ୍ଥାନେ ଧର୍ମ ଯେ ନୃପତି
ଶ୍ରୀ ବଳରାମେ ବିଜେ ଧର୍ମ ଯୁଧିଷ୍ଠିରଂକ କତି । ୧୫୨ ।
ଯୁଧିଷ୍ଠିର ବଳରାମଂକ ଶ୍ରୀମୁଖରେ ବିଜୟେ ଦେବ ହରି
ମସ୍ତକେ ହସ୍ତଦେଇ ଅଛନ୍ତି ପୁରସରି । ୧୫୩ ।
ବିରାଟ ଦ୍ରୋପଦ ଶିବରାଜା ଆସ୍ଥାନର ତଳେ
ବିରାଟ ପ୍ରତିବାକ୍ୟ କହଇ ମଧ୍ୟକାଳେ । ୧୫୪ ।
ବେଳେ ମୁହିଂ ସ୍ଵାମୀଂକ ସେବା କରିବି ସନ୍ନିଧାନୁ
ସ୍ଵାମି ଉତ୍ତରାକୁ ପ୍ରଦାନ କରିବି ଅଭିମନ୍ୟୁ । ୧୫୫ ।
ଗୋବିନ୍ଦେ ବୋଇଲେ ହୋ ତୋହୋର ଯେତ୍ତେ ଭାଗ୍ୟ
ତୋହୋର ଆମ୍ଭର ପୂର୍ବେ ଅଛଇ ସ୍ନେହନେକ
ବନ୍ଧୁ ଯୋଗ । ୧୫୬ ।
କର ଯାଇଂ ଉତ୍ସବ ହୋ ବିଭାର ବିଧାନେ
ଚଳଇ ବିରାଟ ଯେ ସାନନ୍ଦ ତୋଷମନେ । ୧୫୭ ।
ରୂପ୍ୟା ମଣ୍ଡୋପ ଯେ ନିର୍ମାଣିଲେ ନୃପମଣି
ପାଞ୍ଚକୋଶ ଆୟତନ ରୂପ୍ୟା ମଣ୍ଡୋପେ ପରିମାଣି । ୧୫୮ ।
ଶୁଦ୍ଧ ସ୍ଫଟିକ ସ୍ତମ୍ଭ ଯେ କଣପୁ ରୂପ୍ୟେଣି
ତହିଁର ଉପରେ ପନ୍ତି ପନ୍ତି ମୁକୁତା ରତ୍ନମଣି । ୧୫୯ ।
ପାଞ୍ଚ ଅହ୍ଵବ୍ରତେକ ଖମ୍ବ ସଭାପ୍ୟେଣ ରଞ୍ଜି
ଶତେ ଶତେ ପନ୍ତି ହୀରା ମାଣିକ୍ୟ ଜହ୍ନିଂ ସଞ୍ଜି । ୧୬୦ ।
ମାରଗର ଶେଣୀ ମର୍କତର କୋଣକାଣ୍ଡ
କଣପୁ ପନ୍ଦେ ରୂପ୍ୟେଣୀ ଯେତ୍ତେ ଦିଶଇ ମାର୍ତ୍ତଣ୍ଡ । ୧୬୧ ।

---

୧୫୯।୧ ଶୁଦ୍ଧ ସ୍ଫଟିକ ସ୍ତମ୍ଭ ଯେ ମରକତ ରୂପ୍ୟେଣି ।

୧୬୦ { ରୂପ ସମ୍ଭବ ମଧ୍ୟରେ ଚନ୍ଦ୍ରାତପ ଗୋଟି
ସ୍ନେହ ରତନେ ନବଲକ୍ଷ ଘର ତହିଂ ଉଠି ।

୧୬୦।୨ ସ୍ନେହ ବିଧିରେ ନବଲକ୍ଷ ଆଠ ଅମ୍ବୁ ତନକୋଟି । (ଣ, ଦ)

କନକର ରୁଅ ପଟା ମାଳା ରତ୍ନେ ଶୋଭା
ଜଳଧର ମେଘେ ଯେହ୍ନେ ବିଜୁଳିର ପ୍ରଭା । ୧୬୨ ।
ମର୍କତର ପଦ୍ମ ଯେ କେଶର ବଇଡୂର୍ଯ୍ୟ
ପାଖୁଡ଼ା ମାଳା ମୁକୁତା ଫେରରେ ବିରାଜ । ୧୬୩ ।
ହସ୍ତୀଦନ୍ତ କମଟଲେଣ ପାଣି ପାଟି
ଚନ୍ଦ୍ରାଂର ଉପରେ ଯେ କଣପୁ ରସାଣ ପଥ ଘଟି । ୧୬୪ ।
ଅନେକ ଧନ ଭଣ୍ଡାର ଯେ ଧ୍ୱଂସିଲି ବିରାଟଇ
ବିପୁଳ ଭୁବନ ଜାଣି ସଭିଗୋଟି ଘଟଇ । ୧୬୫ ।
ଗୃହଖମ୍ଭ ଭିତରେ ଯେ ନନ୍ଦାବ୍ରତେକଗୋଟି
ଯେତେ ବିଧିରେ ନବଶତ ପାଟିଆ ତିନକୋଟି । ୧୬୬ ।
ପାଣି ପାଟିଆ ତଳେ କଣପୁର ବେଣ୍ଟୁଳି
ହୀରା ମାଳା ବଇଡୂର୍ଯ୍ୟ ମାଣିକ୍ୟ ଖଚୁଳି । ୧୬୭ ।
କୋଟିକେ ସୁବର୍ଣ୍ଣ କଲଶ ଗୋଟିଯେ ବସଇ
ସେ କଲଶ ଗୋଟିକେ ଲକ୍ଷେମାତ୍ର ସୁବର୍ଣ୍ଣ କୋଷଇ । ୧୬୮ ।
ସେ କଲଶ ଉପରେ ନେତ ପତାଙ୍ଗ ଗୋଟିଯେ
ଦେବ ବିଳାସ ପତମ୍ପ ଆଲମ୍ବ ଷାଠିଯେ । ୧୬୯ ।
ଯେସନେକ କରଣ ସଞ୍ଚିତ କଲା ବିରାଟେ
ଅଲକାପୁର ଜାଣି କୁବେରର ଘଟେ । ୧୭୦ ।
ତଳେ ସଷ୍ଟିକର ପୀଠ କନକବନ୍ଧ ବିଳା
ପାବଚ୍ଛେ ବିରାଜନ୍ତି ମାଣିକ୍ୟ ଝରା ପୋଯେଲା । ୧୭୧ ।
ଗୁମ୍ଫାମଣ୍ଡୋପ ଘଟିତ ଯେସନେକ ବିଧି
କ ଅବା ରତନ ଯେ ଲଗିଲି ପଞ୍ଜୁ ନିଧି । ୧୭୨ ।
ପୋଯେକାର ବନ୍ଧେ ଯେ ମୁକୁତା ଚଉସରି
ଲମ୍ବନ୍ତି ନିରନ୍ତରେ ମାଣିକ୍ୟର ଝରି । ୧୭୩ ।
ଯେସନେକ ସୁସଞ୍ଜେ ଯେ ସଭା ନିରବାଣି
ଦେଖିଣ ପ୍ରଶଂସା କଲେ ଦେବ ଚକ୍ରପାଣି । ୧୭୪ ।
ଚତୁର୍ଦ୍ଦିଗ ରାଜାନ୍ତ ନିମନ୍ତ୍ରିଲି ମହାପତି
ଉତ୍ତରା ବିଭା ବୋଲି ଜଗତେ ଦେଶାଉରେ କହନ୍ତି । ୧୭୫ ।

ନଇଷେଧ ଦେଶର ନୃପତି ଭୂବ ଯେ ବାହାନ
ଦଣ୍ଡ ସାଜ ଅଇଲା ସେ ଭୁଲେ ବହୁତ ଧନ । ୧୭୬ ।
କଞ୍ଚଣ ଦେଶର ରାଜା ଯେ ଉଦେମାଳ
ବଢ଼ାଇ ସମ୍ପରେ ସେ ରାଜା ଅଇଲକ ଚଳ । ୧୭୭ ।
ବ୍ରହ୍ମପୁର ରାଜା ନାମ ଅଟଇ କେତନ
ଦଣ୍ଡ ଘେନ ଅଇଲା ସେ ଭୁଲେଣ ଲକ୍ଷେଘର ଧନ । ୧୭୮ ।
ଭାନୂପୁର ରାଜା ନାମ କର୍ଣ୍ଣ ଯେ କେଶରୀ
ସମଦଣ୍ଡ ଘେନ ସମ୍ପବେ ଅଇଲା ପାଣିଦ୍ରବ୍ୟ ରଥ
ଶତ ଭର । ୧୭୯ ।

ମଧୁପୁର ରାଜା ଯେ ଜୀମୂତ ବାହାନ
ଅତୁଟ ଅବନ୍ଧ୍ୟା ଆଣିଲା ସେ ଶତଲକ୍ଷ ଗୋଧନ । ୧୮୦ ।
ପାଣି ମଣ୍ଡଳର ରାଜା ପଦ୍ମ ଯେ କେଶରୀ
ଅନେକ ସମ୍ପବେ ସେ ଅଇଲା ଦଣ୍ଡଧାରୀ । ୧୮୧ ।
ବେଦପୁରର ରାଜା ନାମ ଯେ ଧର୍ମଦାସ
ବହୁତ ଆଣିଲା ସେହୁ ପାଣିଦ୍ରବ୍ୟ ରତ୍ନକୋଷ । ୧୮୨ ।
ଶୈଳ ମଣ୍ଡଳର ରାଜା ନାମ ହରନାଥ
ସଙ୍ଗେ ଆଣିଲା ସେ ପାଣିଦ୍ରବ୍ୟ ସାତ ରଥ । ୧୮୩ ।
ବିଜୟ ନଗରର ରାଜା ଯେ ଋତୁପର୍ଣ୍ଣ
ଶତଲକ୍ଷ ଶ୍ୱେତ ଅଶ୍ୱ ଆଣିଲା ରାଜନ । ୧୮୪ ।
ଉଦୟ ଦେଶର ରାଜା କଉତୁକ ସେନ
ବଢ଼ାଇ ସମ୍ପରେ ସେ ଅଇଲକ ରାଜନ । ୧୮୫ ।
ମହେନ୍ଦ୍ର ମଣ୍ଡଳର ଯେ ଧନାଧିପି ରାଜା
ସହସ୍ରେକ ମତ୍ତହସ୍ତୀ ଦନ୍ତା ମହାତେଜା । ୧୮୬ ।
ରଣପୁର ନଗ୍ର ରାଜା ନାମ ଦୀକ୍ଷାପତି
ବହୁତ ସୈନ୍ୟ ଘେନ ସେ ଅଇଲା ତଡ଼ତି । ୧୮୭ ।
ସେନାବଳୀ ନଗ୍ରେ ସେ ବଶିକେସନ ରାଜା
ଲକ୍ଷେ ରଥ ସୁବର୍ଣ୍ଣର ଘେନ କଲା ପାଦପୂଜା । ୧୮୮ ।

ଯୁଧିଷ୍ଠିର ବୋଇଲେ ଶୁଣିମା ବିରାଟ
ହସ୍ତିନାକୁ ଦୂତ ପଠାଅଣ ଆସନ୍ତୁ ଧୃତରାଷ୍ଟ୍ର । ୧୮୯ ।
ଭୀଷ୍ମ ଦ୍ରୋଣ ଶଲ୍ୟ ଭୂରିଶ୍ରବା ବାହୁଲୀରେ
କର୍ଣ୍ଣ ଶକୁନି ବାହ୍ଲିକ ତୁଲେ ଆସନ୍ତୁ କୁରୁବାରେ । ୧୯୦ ।
ଆପଣେ ଲେଖନ କଲେ ଶ୍ରୀହସ୍ତେ ସନ୍ତକଗୋଟି
ଯେହ୍ନା ନେଇ ଦେବୁ ତୁ ରାଜା ଧୃତରାଷ୍ଟ୍ରି । ୧୯୧ ।
ବଢାଇ ସମ୍ବନ୍ଧେ ସେ ଆସନ୍ତୁ କୁରୁପତି
ଯୋଗେଣ ବିଭା ହୋଇବ ତାହାଂକର ନାତି । ୧୯୨ ।
ଯୁଧିଷ୍ଠିର ଦେବଂକର ବଚନେ ବିରାଟର ଅକ୍ଷତ
ଘେନିଣ ଚଳିଲେ ସେ ବାମଦେବ ପ୍ରୋହିତ । ୧୯୩ ।
ସହସ୍ରେ ଯୋଦ୍ଧା ଯେ ପ୍ରୋହିତଂକ ତୁଲେ
ବାରୁଣାବନ୍ତେ ଯାଇଂ ପାଞ୍ଚହିନେ ମିଳିଲେ । ୧୯୪ ।
ଗୋଧନ ହରଣୁଂ ସେ ଯେ ପଳାଇ ଅଇଲ କୁରୁପତି
ଧୃତରାଷ୍ଟ୍ର ଦେଖିଲେ ଯେ ସଭୁଂକର ଶାନ୍ତି । ୧୯୫ ।
ଇନ୍ଦ୍ରପ୍ରସ୍ଥେ ବିଜୟେ ଗାନ୍ଧାରୀର ସୁତ
ଅକ୍ଷତ ଘେନି ଯାଇଂ ପ୍ରବେଶ ବାମଦେବ ପ୍ରୋହିତ । ୧୯୬ ।
ମତ୍ସ୍ୟଦେଶର ବାରତା ବୋଲି ଯାଇଂ ଉଗର ଜଣାଇଂ
ଆସ୍ଥାନୁ ଆଗ୍ୟାଂ ହେଲା ଆସନ୍ତୁ ବେଗ ହୋଇ । ୧୯୭ ।
କାମ୍ଭୂତି କାରଣ ଯେ ପଚାରି କୁରୁପତି
ବଚନୁ ଉତ୍ତର ହେଲେକ ନେଇ ବାମଦେବ ଧାତି । ୧୯୮ ।
ଧୃତରାଷ୍ଟ୍ରଂକୁ ଯୁଧିଷ୍ଠିର ଦେବଂକର ନମସ୍କାର
ଶତେସହସ୍ର ଦଣ୍ଡ ପ୍ରଳମ୍ବ ଶତେବାର । ୧୯୯ ।

---

୧୯୯।୨ "ଶତେ ସହସ୍ର ଦଣ୍ଡ ପ୍ରଳମ୍ବ ଶତେବାର" ପାଦାଂଶ ପରେ "ଦ"ରେ ଭିନ୍ନ ପାଠ .—
ଆରୋଗ୍ୟ କୁଶଳ ଯେ ଆମ୍ଭର ସମସ୍ତ
ତୁମ୍ଭର କଲ୍ୟାଣେ କ୍ଷେମେ ଆମ୍ଭେ ବର୍ତ୍ତୁଛୁଂ ପଞ୍ଚ ଭ୍ରାତ ।
( ପର ପୃଷ୍ଠାରେ ଅବଶିଷ୍ଟାଂଶ )

ଓହୋକୁଳ କୁଶଳ ବାରତା ଜଣାଇଂ
ଆରୋଗ୍ୟ କ୍ଷେମେଣ ଆମ୍ଭେ ଅଛୁଂ ପାଞ୍ଚଭାଇ । ୨୦୦ ।
ଅଭିମନ୍ୟୁକୁ ବିଭା ଦବ ବିରାଟ କୁମାରୀ
ତୁମ୍ଭେ ସେ ଯେତଥିକୁ ଯେ ଅଟ ଅଧିକାରୀ । ୨୦୧ ।
ତୁମ୍ଭେ ମୋହୋର ପିତା ଥିବନା ଉତ୍ସବର କାଳେ
ଯେମନ୍ତ ବୋଲି ଲେଖ ଦେଇଛନ୍ତି ଯୁଧିଷ୍ଠିର ମହୀପାଳେ । ୨୦୨ ।
ଅଭିମନ୍ୟୁ ବିଭା ଯହୁଂ ଶୁଣିଲେ ଶୁଭକଥା
କର୍ଣ୍ଣ ଶକୁନ ଧୂଶାସନ ପାଇଲେ ବଡ ବ୍ୟଥା । ୨୦୩ ।
ଶୁଣିଣ ଆନନ୍ଦ ଯେ ହୋଇଲେ ଧୃତରାଷ୍ଟ୍ର
ସଞ୍ଜୟକୁ ଆଜ୍ଞାଂ ଦଲେ ସାଜ ବେଗେ ଥାଠ । ୨୦୪ ।
ପାଣ୍ଡବେ ଉଦିତ ଯେ ଅଭିମନ୍ୟୁର ବିଭା
ସାଜହୁଅ ଭୀଷ୍ମ ଦ୍ରୋଣେ ବହନ ହୋଇ ଯିବା । ୨୦୫ ।
ଭୀଷ୍ମ ଦ୍ରୋଣେ ବୋଇଲେ ଶୁଣ କୁରୁପତି
ଅଭିମନ୍ୟୁ ବିଭା ମତ୍ସ୍ୟଦେଶେ ଯିବା କି ତଜତି । ୨୦୬ ।
ମାନଗୋବିନ୍ଦ ବୋଇଲା ଯାଅ ହୋ ତୁମ୍ଭେ ତାତ
ସମର ଶ୍ରମେ ଅଇଲୁ ଆମ୍ଭର ଅବସ୍ଥା ବହୁତ । ୨୦୭ ।
ନାସ୍ତି ବୋଲି କରି ରାଜା ପଶିଲା ଅନ୍ତପୁରେ
ଯୋଦ୍ଧାଯେ ସଜ ହୋଇ ଆଉ ନ ଆରନ୍ତି ଡରେ । ୨୦୮ ।
ଧୃତରାଷ୍ଟ୍ର ବିଦୁର ସଞ୍ଜୟେ ଭୂରିଶ୍ରବା
ଯେତେକ ଘେନ ବିଜୟେ ବ୍ୟାସଂକର ସମ୍ଭବା । ୨୦୯ ।

---

( ପୂର୍ବପୃଷ୍ଠାର ପାଠାନ୍ତର )

ଅଭିମନ୍ୟୁକୁ ବିରାଟ କୁମାରୀ ହୋଇଛୁ ବିଭାଯୋଗ
ହେ ପିତା ଶୁଣିଣ ତୁମ୍ଭେ ଆସିବ ଉଦବେଗ ।
ଆପଣେ ବିଜୟେ ଯେଠାରେ କରିବ ଦଣ୍ଡଧାରୀ
ତୁମ୍ଭେ ପିତା ବରଲେ ଭାଗ୍ୟ ହୋଇବନା ମୋହରି ।

ଦଶ ସହସ୍ର ରଥ ବତିଶ ସହସ୍ର ହସ୍ତୀ
ଲକ୍ଷେକ ତୁରଙ୍ଗମ ତିନ ଶରାୟୁଧ ପାଦାନ୍ତି । ୨୧୦ ।
ଏମନ୍ତକ ସୈନ୍ୟ ଘେନ ଯେ ଅମ୍ବିକାର ସୁତ
ଭୀଷ୍ମ ଦ୍ରୋଣେ ଘେନ ରଜା ଚଳଇ ଏମନ୍ତ । ୨୧୧ ।
ତୁମ୍ଭେ ଯାଇ କହ ଯା ଦୁଯୋଧନର ଆଗେ
କାର୍ଯ୍ୟକୁ ମାନବଣା ନୋହୁ ଆମ୍ଭରାଗେ । ୨୧୨ ।
ଅଗ୍ୟାନେ ସମର ଅବା କଲେ ଅପରତେ
ଯୋଦ୍ଧାମାପଣେ କି ଅଛୁ ଅଭ୍ୟନ୍ତର ବାଚ୍ୟେ । ୨୧୩ ।
ସମଦଣ୍ଡ ଘେନ ଚଳ ଯିବାକ ଆରମ୍ଭେ
ଅଭିମନ୍ୟୁକୁ ବିଭା ଯାଇଂ କରାଇବା ସମ୍ଭବେ । ୨୧୪ ।
ଯଦୁବଂଶେ ଜାତ ରାମ କୃଷ୍ଣଂକ ଭଣଜା
ସମଦଣ୍ଡ ସମ୍ଭରେ ଘେନ ଦ୍ୱାରକାଇଂ ଗଲେକ ଦେବରାଜା ।୨୧୫।
ଭୀଷ୍ମେ ଜଣାଇଲେ ଯାଇଂ ମାନ ଚକ୍ରବର୍ତ୍ତୀ
ବାବୁ ସହୋଦ୍ରେ ଅଭିବ ତୁ ନୋହନା ଅପ୍ରୀତି । ୨୧୬ ।
ଚଳ ମତ୍ସ୍ୟଦେଶେ ବିଭା କରିବା ଅଭିମନ୍ୟୁ
ଶୁଣିଣ ପ୍ରତିବାଚ କହଇ କୁରୁସାନୁ । ୨୧୭ ।
ଭୀଷ୍ମ ଦ୍ରୋଣ ଘେନଣ ବେଗେ ଯାଅ ତାତ
ମୋତେ ଯିବାକୁ ଆଜ ନ ବୋଲ ବହୁତ । ୨୧୮ ।
ରଜାର ଆଗ୍ୟାଂଏ ସେ ଚଳଇ ଧୃତରାଷ୍ଟ୍ର
ଭୀଷ୍ମ ଦ୍ରୋଣ ତୁଲେ ଘେନଣ ଯେ ଥାଠ । ୨୧୯ ।
ବାମଦେବ ପ୍ରୋହିତେ ଅଛନ୍ତି ଯେ ପାଶେ
ଶୁଭ ଯୋଗେ ଧୃତରାଷ୍ଟ୍ର ଚଳିଲେ ମତ୍ସ୍ୟଦେଶେ । ୨୨୦ ।
ଏଥୁ ଅନନ୍ତରେ ମତ୍ସ୍ୟଦେଶର କଥନ
ପ୍ରବେଶ ହୋଉଛନ୍ତି ସକଳ ରାଜାମାନ । ୨୨୧ ।
ଦଶଲକ୍ଷ ବ୍ରାହ୍ମଣ ତୁଲେ ସୁଦେବ ସନାତନେ
ଅମୃତ ରସ ପାକ କରନ୍ତି ବିଧାନେ । ୨୨୨ ।
ଅନେକ ପବନ ପଦାର୍ଥେ ଅନ୍ନେ ଗର୍ଭ ସୁଖୀ
ଦେବେ ଭୋଳ ହୋଉଛନ୍ତି ଯେବଣ ଅନ୍ନ ଦେଖି । ୨୨୩ ।

ସ୍ନାହାନ ସାଉଣ ସେ ସକଳ ଭୂଅପତି
ମୁଣୋହ୍ୱ ମଦ୍ଧରେ ବସି ସେ ଭୋଜନ କରନ୍ତି । ୨୨୪ ।
ସୁଦେଦ୍ଧ ବୋଲ ବ୍ରାହ୍ମଣେକ ଯେ ସୂପକାର ବଂଶ
ଦୋହରୁଂକ ପ୍ରସନ୍ନେ ତାଂକର ସମସ୍ତ ଅମୃତ ପାକରସ । ୨୨୫ ।

କ୍ଷୀର ସମୁଦ୍ରେ ଯେ ବିରାଟ ପଣ୍ଡଜା
ଗୋରସେଣ ହିପୃତ ଯେ ହୋଇଲେ ସର୍ବରାଜା । ୨୨୬ ।
ଭୁଞ୍ଜିଣ ହିପୃତ ଯେ ସକଳ ମହୀପତେ୍ୟ
ଯେଦ୍ଧଣ ରାଜାର ଯୋଦ୍ଧା ଯାଏ ଅମନାତେ୍ୟ ଯେତେ । ୨୨୭ ।

ଆଞ୍ଚୋବନ ସାଉଣ ହପୂର ତାମ୍ବୁଳ ଭୁଞ୍ଜି
ବିଜୟେ ଅସ୍ତ୍ରାନେ ଯେ କଉତୁକେ ରଞ୍ଜି । ୨୨୮ ।
ନୃତ୍ୟଗୀତ ତାଣ୍ଡବ ଯେ କରନ୍ତି ବିଳାସୁଣୀ
ବଳଦେବ ସହିତେ ବିଜୟେ ଚକ୍ରପାଣି । ୨୨୯ ।

କଣପୁ ମଦ୍ଧର ଯେ ବିରାଟ ରହିଲା
ତହିଂ ଯାଇଂ ଜଗନ୍ନାଥର କୁଟୁମ୍ବ ରହିଲା । ୨୩୦ ।
ସମସ୍ତେ ପ୍ରଶଂସା କଲେ ବିରାଟ ସାଧୁ ସାଧୁ
ଅନାଦ୍ୟ ପୁରୁଷକୁ ତୁ ପାଇଲୁ ସ୍ନେହେ ବନ୍ଧୁ । ୨୩୧ ।

ସ୍ନେହା ଦୋହିତାଗୋଟି କୁଳ ଉଦ୍ଧାରଣୀ
ସୋମବଂଶର ହୋଉ ସେ ଓହୋକୁଳର ମଣ୍ଡଣି । ୨୩୨ ।
କୁମ୍ଭମାସ କୃଷ୍ଣପକ୍ଷ ପଞ୍ଚମୀର ଦିନ
ଚନ୍ଦ୍ରବାର ହସ୍ତା ନକ୍ଷତ୍ର ଯେ ବିଦ୍ୟମାନ । ୨୩୩ ।

ବାଣିଜ୍ୟ ନାମେ କରଣ ଶୁଭ ନାମେ ଯୋଗ
ତାରଚନ୍ଦ୍ର ବେଳା ଯେ ରୋହିଣୀ ଘରେ ଭୋଗ । ୨୩୪ ।
ବିଧିର ଅନୁକୂଳ ଥଇଲେ ପୁରୋହିତେ
ବାରତା ପାଇ ବିଜେକଲେ ବ୍ୟାସ ତପୋବନ୍ତେ । ୨୩୫ ।

ଲକ୍ଷେକ ବ୍ରାହ୍ମଣ ଘେନ ଧୌମ୍ୟ ପୁରୋହିତେ
ମତ୍ସ୍ୟଦେଶେ ପ୍ରବେଶ ଆସି ହୋଇଲେ ତୁରିତେ । ୨୩୬ ।

ବେଦ ଲକ୍ଷ ବ୍ରାହ୍ମଣ ଯେତେଣ ମାର୍କଣ୍ଡ ବ୍ରହ୍ମବେତ୍ତା
ଆସିଣ ପ୍ରବେଶ ହୋଇଲେ ଭାର୍ଗବ ମହାଭାଗ୍ୟାଂତା । ୨୩୭ ।
ତିନ ଅଷ୍ଟବ୍ରତେକ ସେ ଯେତେଣ ବ୍ରହ୍ମର୍ଷି
ଆସି ପ୍ରବେଶ ହୋଇଲେ ଶାସ୍ତ୍ରନ୍ତୁ ମହର୍ଷି । ୨୩୮ ।
ଅଷ୍ଟବ୍ରତେକ ବ୍ରାହ୍ମଣ ଯେତେଣ ଉଦ୍ଧାଳେକ ପ୍ରୋଷ୍ଟତେ
ମତ୍ସ୍ୟଦେଶେ ପ୍ରବେଶ ଆସି ହୋଇଲେ ଭୂରତେ । ୨୩୯ ।
ଯଦୁଋଷି କଣ୍ଡୁଋଷି ପାରେଶ୍ୱର ଋଷି
ଅଭିମନ୍ୟୁ ବିଭା ଶୁଣି ପ୍ରବେଶ ହୋଇଲେକ ଆସି । ୨୪୦ ।
ସନକ ସନାତନ ସନନ୍ଦ ଯେ ମନୁ ବଶିଷ୍ଠକ
ଅଗସ୍ତି ଜନକ ସୁମନ୍ତକ ବିଶ୍ୱାମିତ୍ର ପୌଲସ୍ତି ଅନେକ । ୨୪୧ ।
ଏମନ୍ତେ ଅଠାଶୀ ସହସ ଅଇଲେ ମହର୍ଷି
ବିଭା ଉତ୍ସବକାଳେ ସମସ୍ତେ ପ୍ରବେଶ ହୋଇଲେକ ଆସି । ୨୪୨ ।
ଅନେକମତେ ନୃପତି ଦେଖି କଲେ ପାଦପୂଜା
ବସି ଋଷିମାନେ ସମସ୍ତେ ବିପ୍ର ଦ୍ୱିଜା । ୨୪୩ ।
ଧୃତରାଷ୍ଟ୍ର ପ୍ରବେଶ ହୋଇଲେ ମତ୍ସ୍ୟଦେଶେ
ବିନୟ ଭାବେ ଗଟନ୍ତି ଯୁଧିଷ୍ଠିର ତାଂକ ପାଶେ । ୨୪୪ ।
ଅନେକ ପ୍ରଶଂସା ଯେ କଲେକ କଉରବେ
ଯୁଧିଷ୍ଠିର ବନୋଇ ଭୀଷ୍ମ ଦ୍ରୋଣଂକର ପାଦେ । ୨୪୫ ।
ଅନେକ କୁଶଳ ଯେ ବାରତା ପରସ୍ପର
ସମସ୍ତ କ୍ଷେମ ବୋଇଲେ ତହୁଂ ଦଣ୍ଡଧାରୀ । ୨୪୬ ।
ବନସ୍ତେ ପଡିଲ ଯେତେକ କଷ୍ଟମାନ
ପ୍ରସ୍ତାବ ବାକ୍ୟେ ତାହା କହିଲେ ଧର୍ମନନ୍ଦନ । ୨୪୭ ।
ଅନେକ ସାନନ୍ଦ ଯେ ହୋଇଲେ ଧୃତରାଷ୍ଟ୍ରେ
ଅନେକ କଲ୍ୟାଣ କଲେକ ଭୁଷ୍ଟରାଜେ । ୨୪୮ ।

---

୨୩୭।୨ ଆସିଣ ପ୍ରବେଶ ହୋଇଲେ ଭାର୍ଗବର ମହାଭାଗ୍ୟାଂତା । (ଣ, ଛ)

ଛନପଯ୍ୟେ ପୁଚ୍ଛାକଲେ ଧର୍ମଂକ ନନ୍ଦନ
ଭୋ ତାତ ଦସ୍ତା ମୋତେ କଂପା ଗ୍ଭଡଲ ଦ୍ରୁଯୋଧନ । ୨୪୯ ।
ସେ ମୋହର ସୋଦର ମୁଂ ତାକୁ କଲଇ କେବଣ ଦୋଷ
ପୁତ୍ର ବଷ ଶୁଣି ସେ କଂପେ ନୋହିଲ ହରଷ । ୨୫୦ ।
ଯୁଷ୍ଠେଷ୍ଟିଂକ ଅଗ୍ରତେ କହିଲେ ଧୃତରାଷ୍ଟ୍ର
ତୁ ଅବା କ ନ ଜାଣୁ ସେ ସମସ୍ତ ବଡ ଦୁଷ୍ଟ । ୨୫୧ ।
ଯୁଷ୍ଠେଷ୍ଟି ବୋଇଲେ ତାତ ଦୁଷ୍ଟ ଯେ ହୋଇଲେ
ସମସ୍ତ ସେ ବ୍ରତଇ ନା ଅସଜ୍ଜନ ହୋଇଲେ । ୨୫୨ ।
ମହାମହା ଦୁଷ୍ଟ ତ ତାତ ଥିଲେ ଯେତେ ଭୂମି
କଂସ କେଶୀ ଅଘା ପ୍ରଳମ୍ବା କଦମ୍ବା ଅମ୍ବା କାଳ ଯେ
ନଉମି । ୨୫୩ ।
ଜାଗ୍ ନାରକା କାଳ ଯବନ ବାଣା ବକ୍ରନାଭ
ପାଣ୍ଡବାସୁର ନବାତ କପଟ ଯେମାନେ ପାଇଲେ ପରାଭବ ।୨୫୪।
ଯେମାନେ ସଭ୍ୟେଂ ନାଶ ଗଲେକ ନାହିଂକ ତାତ
ଅନ୍ତେ ଦୁଷ୍ଟପଣ ବସୁଧା ନ ସହଇ ବହୁତ । ୨୫୫ ।
ଗୋବନ୍ଦେ ବୋଇଲେ ଯୁଷ୍ଠେଷ୍ଟି ବନେ ପାଇଲ କ ବଡ ଦୁଖ
ଧୃତରାଷ୍ଟ୍ର ଅଗ୍ରତେ ହେଉଛନ୍ତ ବମୁଖ । ୨୫୬ ।
ସ୍ୱାମି ଆମ୍ଭେ ସେ ନାଶିଲୁ କଂସ ଉଗ୍ରସେନ ଗୃହେ
ଅବନ୍ତୀପୁରେ ଶାନ୍ତପନୀ ପଣ୍ଡା ଆମ୍ଭଂକୁ ପଢାଇଥିଲେ
ପାଠ । ୨୫୭ ।
ଦୁଇଭାଇ ହୋଇ ଆମ୍ଭେ ଯେ ଗଲୁ ପାଠ ପଢି
ଆମ୍ଭନ୍ତ ଅନେକ ଦୟାକଲେ ଶାନ୍ତପନୀ ବ୍ରହ୍ମଋଷୀ । ୨୫୮ ।
ପୁତ୍ରହୁଂ ଅଧିକ କରି ପାଠ ସେ ପଢାଇ
ନଅଳ ସେ ଅନେକ ବଦ୍ୟା ଆମ୍ଭେ ସାଧି କଲୁ ତହିଂ । ୨୫୯ ।
ହେତୁମନ୍ତ ଦେଖିଣ ସେ ପ୍ରଶଂସିଲେ ଗୁରୁ
ହୃଦଗତେ ବସ୍ମରଇ ସେ ଆମ୍ଭର ପାଠ ପଢଂ । ୨୬୦ ।
ଶ୍ରାବଣ ମାସ କୃଷ୍ଣପକ୍ଷ ଚଉଠି ଭୃଗୁବାର
ହସ୍ତାନକ୍ଷତ୍ର ବେଳ ପାଞ୍ଚ ଘଡ ଭିତର । ୨୬୧ ।

ଶାନ୍ତିପଣୀ ପଣ୍ଡାପ୍ତେ ନାହାନ୍ତି ନିଜ ବାସେ
ସୁହୃଦେ ନିମନ୍ତେ ଗମିଲେ ବିଦେଶେ । ୨୬୨ ।
ଶାନ୍ତିପଣୀ ପଣ୍ଡାଂକ ଭାରିଯା ନାମ ଶ୍ରିୟା
ସେହିଦିନ ଆମ୍ଭଙ୍କୁ ଡାକିଣ ବୋଇଲେ ଗୁରୁପ୍ରିୟା । ୨୬୩ ।
ବାବୁ ଜାଳ ନାହିଂ ଆଜ ଯିବ କ ଭାଇ ବେନି
ଶୁଖିଲା କାଠ କିଛୁ ଆଣ ହୋ ବନୁ ଘେନି । ୨୬୪ ।
ଆମ୍ଭେ ଯେ ବୋଇଲୁଂ ତାହାଂକର ବଚନେ
ଉପବାସ କରିବା କି ଜାଳର ବିହୁନେ । ୨୬୫ ।
କୋଠାର ଖଣ୍ଡିଏ ଆମ୍ଭନ୍ତ ହିଅସି ଗୋ ମାଏ
ଯେତେକ୍ଷଣି ଆଣିବୁ ଆମ୍ଭେ କାଠ ଯେ ଗୁଡ଼ାଏ । ୨୬୬ ।
ଯେବଣ ସ୍ୱାମୀ ସେ ତ୍ରୈଲୋକ୍ୟ ଅଧିପତି
କୃତିହୋଇ ମନ୍ତ୍ରିଂମାକୁ ଯେ ସନେକ କୃଷ୍ଣ । ୨୬୭ ।
ଗୁରୁପତ୍ନୀଂକର ବୋଲ ନ ଭାଙ୍ଗିବା ନିମନ୍ତେ
ସର୍ବସମ୍ପଳ ନାଥ ଗମନ୍ତି ବନସ୍ତେ । ୨୬୮ ।
ଇଦାନି ମାନବଲୋକେ ଗୁରୁବଚନ ଭାଙ୍ଗନ୍ତି
ସଂସାରକା ଦୋଷେ ସେ ବହୁତ ଦୁଖ ଲଭନ୍ତି । ୨୬୯ ।
ସେ ଗୁରୁଂକ ପତ୍ନୀ ବଚନେଣ କରି
ବନସ୍ତ ଭିତରକୁ ସେ ଗଲୁ କାଠ ପାଡ଼ି । ୨୭୦ ।
କହୁଁ କୋଠାର ଆବର ଆଂକୁଡ଼ିଗୋଟି ଆଣିଦେଲେ
ବାଉଏ ଦୁହେଂ ଦୁଇଗୋଟି କାଠ ଆଣିମ ବୋଇଲେ । ୨୭୧ ।
ବେଲ ଦେଡପ୍ରହରେ ପ୍ରବେଶ ହୋଇଲୁ ବନେ
ମେଘେକ ଯୋଟି ଆସି ବରଷିଲା ଗହନେ । ୨୭୨ ।
ମୂଷଳଧାର ପ୍ରମାଣେ ବରଷଇ ଅଗୋଚର
କ୍ଷଣକେ ବିଶ୍ରାମ ସେ ନ କଲା ସେହିଦିନର । ୨୭୩ ।
ବୃକ୍ଷର ତଳେ ଗୋଟିଏ ଗୋଟିଏ ହୋଇ
ବେନିଭାଇ ପଶିଅଛୁଂ ବେନିକୋଟେ ଯାଇଂ । ୨୭୪ ।
ମହାଶାଳବୃକ୍ଷ ଯେ ଗୋଟାଏ ଘୋର ଗହନ ଯେ ଶାଖା
ଜନ ମନୁଷ୍ୟ ନାହିଂ ବେନିଭାଇ ବସିଅଛୁ ଏକା । ୨୭୫ ।

ବଳସ୍ତମେ ଝୋଟେ ଥାଇଂ ଡାକ ଦଅନ୍ତି ମୂକୁ
ମୂହ୍ନିଂ ଉଚ୍ଚସ୍ୱରେ ଡାକ ଦଅଇ ତାହାଂକୁ । ୨୭୬ ।
ବାଆ ବରଷଣେ ସେ ଗର୍ଜନ ଦଅନ୍ତି ମେହା
ନ ଶୁଭଇ ବାକ୍ୟମାନ ଦଶଇ ବହୁରେହା । ୨୭୭ ।
ଉପବାସେ ମହାଶୀତେ ଝୋଟେ ଅଛୁଂ ବସି
ବରଷୁଂ ବରଷୁଂ ପ୍ରସର ହୋଇଲାକ ନଶି । ୨୭୮ ।
ରସୁଣୀ ପ୍ରଭାତେ ଯେ ରହିଲାକ ବୃଷ୍ଟି
ଉଚ୍ଚବୃକ୍ଷେ ପିଚ୍ଛୁଳା ହେଲା ନୁଆରିଲୁ ଉଠି । ୨୭୯ ।
ଶୀତବାତ୍ୟେ ଭୋଗେ ହାତ ଗୋଡ କମ୍ପଇ ଶରୀର
ଆରନ୍ଧନ ବେଳ ହୋଇଲା କ ଆସି ଦେତ ଯେ ପ୍ରହର । ୨୮୦ ।
ଦୁଇଭାଇ ବସି ଭାନ୍ତୁଅଛୁ ସେହି ବନେ
କାଲି ଗୁରୁଘରେ ଉପବାସେ ଜାଳର ବହୁନେ । ୨୮୧ ।
କ ବୋଲବେଟି ଗୁରୁଂକ ଭାରଯା
କାର୍ଯ୍ୟକରି ନୋହିଲା କଷ୍ଟ ପାଇବା ବଡ ଲଜ୍ଜା । ୨୮୨ ।
ପାଇଲୁ କଞ୍ଚା ଡାଳ ଶାଳବୃକ୍ଷ ଯେ ଗୋଟିଏ
ଚରଣ ଦୁଇଭାଇ ଯେ ଘେନିଲୁ ଗୋଟିଏ ଗୋଟିଏ । ୨୮୩ ।
ଆରନ୍ଧନ ହୋଇଲା ବେଳ ସ୍ଥିର ଦୁଇ ଯେ ପ୍ରହର
କାଠ ଘେନି ହେଲା ନ କରି ଧାଇଂଲୁ ଧାତିକାର । ୨୮୪ ।
ଦୁଇଗୋଟି କାଠ ଦୁଆରେ ପକାଇଲୁ ଆଣି
ଆମ୍ଭନ୍ତ କୋଡେ ବସାଇ କାନ୍ଦିଲେ ମହାମ୍ନାଣି । ୨୮୫ ।
ତାହାଂକର କାନ୍ଦନ୍ତେ ଯେ ଆମ୍ଭେ ପାଇଲୁ ବଡ ଲଜ୍ଜା
ଅପାରମତେ କହନ୍ତେ ସେ ଶୋକ କଲେ ତେଜ୍ୟା । ୨୮୬ ।

---

୨୮୪ { ଆରନ୍ଧନ ହୋଇଅଛୁ ଥିର ଅର୍ଦ୍ଧ ବେଳା
ଘେନଣ ଅଇଲୁ କାଠ ଘେନି ନ କରଣ ହେଲା ।
( ଝ, କ, ଣ, ଦ, ଛ, ଠ, )

ଶ୍ରୀ ବାସୁଦେବଙ୍କ ଯେ କଥାର ପ୍ରସ୍ତାବେ
ବିରାଟର ଆଗେ ଯେ କହନ୍ତି ବାସୁଦେବେ । ୨୮୭ ।
ସମସ୍ତେହେଁ ହାହାକାର କଲେ ତାହା ଶୁଣି
ଦୁଃଖ ସୁଖ ଯେତେକତ କରଇ ମହତ ପ୍ରାଣୀ । ୨୮୮ ।
ଶରୀର ବନ୍ଧଥିଲେ ହୋଇଥାଇ ଯେତେମାନ
ପରସ୍ତାପ ବାକ୍ୟେ ଯେହା କହନ୍ତି ଜନାର୍ଦ୍ଦନ । ୨୮୯ ।
ବଳରାମ ବୋଇଲେ ହୋ ନ ପାଞ୍ଚ ଯେତେକଥା
କଲାକର୍ମମାନ କେବେହେଁ ଯେ ନୋହଇ ଅନ୍ୟଥା । ୨୯୦ ।
ବିଭାର ବିଧାନ ଯେ ପଣ ଯେତେବେ ଶୁଭେ
ବିରାଟ ଧନ୍ଦ ହୋଇଲାଣି ଦୋହିତା ପରସ୍ତାବେ । ୨୯୧ ।
ବେଦଯୁକ୍ତି ଅଗସ୍ତି ଯେ ବୈବସ୍ୱତ ମନୁ
ସୀଡ଼ିକାର ବରଣ ଯେ ହେଉଅଛୁ ଅଭିମନ୍ୟୁ । ୨୯୨ ।
ରତ୍ନମଣ୍ଡପ ଯେ ଅନେକ ସମ୍ଭରେ
ରାଜାଗଣମାନେ ବସିଅଛନ୍ତି ସଭାରେ ନିରନ୍ତରେ । ୨୯୩ ।
ଯଦୁବଂଶନ୍ତ ଯେଜନେ ବିଜେ କଲେ ରାମକୃଷ୍ଣେ
ପାଣ୍ଡବ ସମେତେ ଯେ ବସିଲେ ଧୃତରାଷ୍ଟ୍ରେ । ୨୯୪ ।
ମଧ୍ୟେଣ ବେଦିଯେତେକ ଯେ ଅଛଇ ଆରମ୍ଭିଲ
ଉପରେ ଚନ୍ଦ୍ରାତପ ଅଛଇ ଖଞ୍ଜିଲ । ୨୯୫ ।
କଣସୁ ରତ୍ନମୁଣ୍ଡିଆ ଯେ ସଷ୍ଟିକର ପୀଢ
ମୁକୁତାର ଝୁଅାଳି ଅଛଇ ତଥିର ଉପର । ୨୯୬ ।
ରୂପାର ପାବଛ ଯେ କଣସୁ ତାଂକୁଣି
ହାଥେଣ ଖଞ୍ଜିଲ ଯେ ଯେ ମାରାଗ ଶୁଦ୍ଧମଣି । ୨୯୭ ।

---

୨୮୭।୨ "ବିରାଟର ଆଗେ ଯେ କହନ୍ତି ବାସୁଦେବେ" ଏହି ପାଠ ପରେ
"ଛ, ଠ" ରେ ଅଧିକା ପାଠ :—
ଧୃତରାଷ୍ଟ୍ର ମୂର୍ଚ୍ଛିତ୍ତି ଆବର ଭୀଷ୍ମ ଦ୍ରୋଣ
ମନେ ମହାଦୁଃଖିତ ଯେ କଲେକ ଆପଣ ।

ସେ ସଭା ମଧ୍ୟେ ଯେ ବିଜୟେ ଯୁଧେଷ୍ଠି ଦେବ ଆଦି
ପାଞ୍ଚଲକ୍ଷ ରତ୍ନ ଖଞ୍ଜିତ କଣସ୍ଥ ଦିବ୍ୟ ବେଦୀ । ୨୯୮ ।
ତହିଁ ତଳେ ବସିଛନ୍ତି ନନ୍ଦ ଉପନନ୍ଦ ଉଗ୍ରସେନ ବସୁଦେବ
ରାମକୃଷ୍ଣ ଆଦି କରି ପାଞ୍ଚୁ ଯେ ପାଣ୍ଡବ । ୨୯୯ ।
ସେ ବେଦୀର ଉପରେ ଯେ ଋଷିମାନନ୍ତ ଘେନି
ବସିଲେ ଶୁଭଯୋଗେ ବ୍ୟାସ ବଶିଷ୍ଠ ମହାମୁନି । ୩୦୦ ।
ଦ୍ରୋପଦ ଶିଖଣ୍ଡୀ ଧୃଷ୍ଟଦ୍ୟୁମନନ୍ତ ଘେନି
ପାଞ୍ଚାଳ କୁମରନ୍ତ ସେ କୋଳେ ଛନ୍ତି ଶୋଭି । ୩୦୧ ।
ଅଭିମନ୍ୟୁ ବିଜୟେ ଯେ ଜଗନ୍ନାଥଙ୍କର କୋଳେ
ମଧ୍ୟେଣ ବସିଲେ ବେଢ଼ି ସକଳ ନୃପବରେ । ୩୦୨ ।
ପୂର୍ବେଣ ବିରାଟ ଯେ ପଶ୍ଚିମେ କଣାଠୀ
ସନ୍ନିଧେ ଅର୍ଘ୍ୟ ଆଣି ଦିଅଇ ବିରାଟି । ୩୦୩ ।
ବିରାଟ ରାଜା ତହିଁ ବିନୟଭାବ ହୋଇ
ସଭାରେ ଉଭା ହୋଇଲା ମସ୍ତକେ ହସ୍ତଦେଇ । ୩୦୪ ।
ସମସ୍ତ ନୃପ ଋଷି ମୋତେ ଆଗ୍ୟାଂ ଦେବା
ସର୍ବ ଶୁଭେ ଦୁହିତାକୁ କରାଇବି ବିଭା । ୩୦୫ ।
ହେଉ ହେଉ ବୋଲିଣ ଯେ ସର୍ବେ ଆଗ୍ୟାଂ ଦିଲେ
ଶୁଣିଣ ବିରାଟ ଯେ ସନ୍ତୋଷ ହୋଇଲେ । ୩୦୬ ।
କୁଶହସ୍ତ ହୋଇଣ ଯେ ଶ୍ରୀକୃଷ୍ଣର ସାଇଂ
ବରଣ ବେଢ଼ା ମଧ୍ୟେ ସେ ବିଜେ କଲେ ଯାଇଂ । ୩୦୭ ।
ଧୌମ୍ୟ ପୁରୋହିତେ ଯେ ପଢ଼ିଲେ ହରଷେ ବେଦଧ୍ୱନି
ଦେଶକାଳ ମହାବାକ୍ୟ କରନ୍ତି ସର୍ବ ମୁନି । ୩୦୮ ।
ଶଶୀଧର ଗୋତ୍ର ଯେ ଦେବ ଅରଜୁନ
କଉଶିକ ଗୋତ୍ର ଯେ ବିରାଟ ରାଜନ । ୩୦୯ ।
ଓହୋକୁଳ ଗୋତ୍ର ପଢ଼ନ୍ତି ପ୍ରୋହିତେ
ଦେବପୂଜା ବିଧିମାନ ଯେସନ ଯୁଗତେ । ୩୧୦ ।

ପ୍ରୋକ୍ତେ ବୋଇଲେ ହୋ ଜଳଭଳ ଭର
ବରଣ ବିଧିରେ ଦେଶକାଳ ବାକ୍ୟକୁ ଉଚ୍ଚାର । ୩୧୧ ।

---

୩୧୧।୨ "ବରଣ ବିଧିରେ ଦେଶକାଳ ବାକ୍ୟକୁ ଉଚ୍ଚାର" ଏହି ପାଠ ପରେ "ଝ, କ, ଦ, ଗ, ଙ୍ଗ, ଝ, ପୋଥିରେ ଅଧିକା ମହାବାକ୍ୟ ସଂକଳ୍ପ ଅଛି :—

ଓଁ ବିଷ୍ଣୁର୍ବିଷ୍ଣୁର୍ବିଷ୍ଣୁଃ
ଗଙ୍ଗାଦ୍ୟାଃ ସରିତୋଽତ୍ରାଗଚ୍ଛତ୍ତା
ଗଙ୍ଗେଚ ଯମୁନେ ଚୈବ ଗୋଦାବରି ସରସ୍ୱତି,
ନର୍ମଦେ ସିନ୍ଧୁ କାବେରି ଜଲେଽସ୍ମିନ୍ ସନ୍ନିଧିଂକୁରୁ ॥
କୁରୁକ୍ଷେତ୍ର ଗୟା ଗଙ୍ଗା ପ୍ରଭାସ ପୁଷ୍କରିଣି ଚ ।
ଏତାନି ପୁଣ୍ୟତୀର୍ଥାନି ସଂକଳ୍ପକାଳେ ଭବନ୍ତ୍ୟିହ ॥
ଓଁ ବିଷ୍ଣୁର୍ବିଷ୍ଣୁର୍ବିଷ୍ଣୁଃ ।
ଶୁକ୍ଲାମ୍ବରଧରଂ ବିଷ୍ଣୁଂ ଶଶୀବର୍ଣ୍ଣଂ ଚତୁର୍ଭୁଜମ୍ ।
ପ୍ରସନ୍ନବଦନଂଧ୍ୟାୟେତ୍ ସର୍ବବିଘ୍ନୋପଶାନ୍ତୟେ ॥
ସ୍ମୃତେ ସକଲକଲ୍ୟାଣଂ ଭାଜନଂ ଯତ୍ର ଜାୟତେ ।
ପୁରୁଷଂ ତମଜଂ ସଂ ନିତ୍ୟଂ ବ୍ରଜାମି ଶରଣଂ ହରିମ୍ ॥
ଶଙ୍ଖଚକ୍ରଗଦାପାଣେ ଦ୍ୱାରକାନିଲୟାଚ୍ୟୁତ ।
ଗୋବିନ୍ଦ ପୁଣ୍ଡରୀକାକ୍ଷ ରକ୍ଷ ମାଂ ଶରଣାଗତମ୍ ॥
ଓଁ ବିଷ୍ଣୁର୍ବିଷ୍ଣୁର୍ବିଷ୍ଣୁ ।
ଅଦ୍ୟ ଇହ ପୁଣ୍ୟେହନି ବିଶିଷ୍ଟ ଭୂପ୍ରଦେଶେ
ମକର ମାସେ ଶୁକ୍ଳପକ୍ଷେ ନବମ୍ୟାଂତିଥୌ ବୃହସ୍ପତିବାସରେ
ରୋହିଣୀନାମ ନକ୍ଷତ୍ରେ ମକରରାଶୌସ୍ଥିତେ ଭାସ୍କରେ
ବୃଷରାଶୌସ୍ଥିତେ ଚନ୍ଦ୍ରମସି ଲେକଂ ଯଥାସ୍ଥାନାବସ୍ଥିତେଷୁ
ଭୌମାଦିଗ୍ରହଯୋଗ ଲଗ୍ନକରଣ ମୁହୂର୍ତ୍ତିକାଂ ଶତେଷୁ
ଏବଂ ବିଧିବିଶେଷଣ ବିଶିଷ୍ଟାୟାଂ ପୁଣ୍ୟତିଥୌ
କୌଶିକଗୋତ୍ର ଶ୍ରୀମାନ ବିରାଟଦେବ ଶର୍ମାହଂ କୌଶିକଗୋତ୍ରାୟାଃ
ମମ ଦୁହିତୁଃ ଉତ୍ତରା କନ୍ୟାୟାଃ ପ୍ରଦାନାୟ ବରଣବିଧି କର୍ମାଙ୍ଗ-
ସଂକଳ୍ପମହଂକୁର୍ବୀୟ ।

ଦେଶକାଳ ବାକ୍ୟଯେ କରାଇଲେ ପ୍ରୋହିତେ
ଶଙ୍ଖ ମହୁରୀ ଯେ ଫୁରଇ ସୁଲଳିତେ । ୩୧୨ ।

ଦୁବା ଅକ୍ଷତ ଘେନି ବରାଟ ମହାରାଜା
ପ୍ରୋହିତେ ବାକ୍ୟ ପଢ଼ନ୍ତି କଲେ ପଞ୍ଚ ଦେବତା ପୂଜା । ୩୧୩ ।

ବସ୍ତର ବଧାନ ଯେ ବସିଲେ ବର୍ଗୃର
ପ୍ରୋହିତେ ବୋଇଲେ ହୋ ବରାଟ ଦଣ୍ଡଧାରୀ । ୩୧୪ ।
ସଭାର ମଧ୍ୟକୁ ତୋହୋର ଆଣସି କୁମାରୀ
ରାଜାର ଆଜ୍ଞାଂଯେ ଯେ ଚଳଲେ ପରିବାରୀ । ୩୧୫ ।

ଅନ୍ତପୁରୁ ବାହାର ହୁଅନ୍ତେ ଉତ୍ତରା ବାଳୀ
ଶୁଭ ଯୋଗେ କାମିନୀମାନେ ଦଅନ୍ତି ହୁଳହୁଳି । ୩୧୬ ।
ସଭାରେ ସୁନ୍ଦରୀ ଆସି ହୋଇଲାକ ଉଭା
ସତୀ ସାବିତ୍ରୀ ଯେସନ୍ହେ ଦିଶଇ ତେସନ୍ହେ ଶୋଭା । ୩୧୭ ।

ହାର ନଅଲୀ ଯେ ମୃକୁତା ସରି ଭରି
ତ୍ରିଭୁବନେ ଅନୁପମ ଯେ ବରାଟ କୁମାରୀ । ୩୧୮ ।
ମଙ୍ଗଳ ଅଷ୍ଟକ ଯେ ପଢ଼ନ୍ତି ଗ୍ରନ୍ଥକାରୀ
ନଟ ଭଟମାନେ ଯେ କଯ୍ବେବାର କରି । ୩୧୯ ।
ନାରୀଗଣମାନେ ମଙ୍ଗଳ ଗୀତ ଗାବନ୍ତି
ବ୍ରାହ୍ମଣଗଣେ ଯେ ବେଦଧ୍ୱନି ଉଚ୍ଚାରନ୍ତି । ୩୨୦ ।
ଶଙ୍ଖ ମହୁରୀ ଯେ ବିବିଧ ତୂରି ବାଦ୍ୟ
ବାଜଣା ବାଜୁଅଛି ଯେ ପଞ୍ଚମ ଶବଦ । ୩୨୧ ।
ଆଶିଷ ଘେନଣ ସେ ଧୌମ୍ୟ ପୁରୋହିତେ
ନେଇଣ ସମର୍ପିଲେ ଯେ କନ୍ୟାର ନିଜ ମାଥେ । ୩୨୨ ।

---

୩୧୩।୨ "ପ୍ରୋହିତେ ବାକ୍ୟ ପଢ଼ନ୍ତି କଲେ ସ୍ୱେଠାରେ ବରଣ ପୂଜା ।
( କ, ଦ, ଟ, ଗ, ଞ )

ଚନ୍ଦନ ଚତୁଃସମ କାଯ୍ୟେ ଲେପନ କରି
ଦିବ୍ୟ ଅଳଂକାର ଭୂଷଣ ଶରୀରେଣ ଭରି । ୩୨୩ ।
ଯେମନ୍ତ ବିଧାନେ ଯେ ବାଞ୍ଛା କଲ୍ୟାଣ ଘେନି
ଅନ୍ତଃପୁରେ ଯାଇ ବିଜେ ବିରାଟ ନନ୍ଦିନୀ । ୩୨୪ ।

ପ୍ରୋହିତେ ବୋଇଲେ ହୋ ବର ଆସୁ ଯେବେ
ଚଳନ୍ତି ଉଗର ଯେ ଅଭିମନ୍ୟୁ ଠାବେ । ୩୨୫ ।
ଅର୍ଜୁନ କୁମାର ଯେ ଦିବ୍ୟ ବେଶ ହୋଇ
ବେଦୀର ମଧ୍ୟେ ବିଜେ କରାଇଲେ ନେଇ । ୩୨୬ ।

କି ଅବା ଦିଶଇ ଅଳକାର ପତି
କି ଅବା ଐରାବତ ତେଜି ଆସଇ ସୁରପତି । ୩୨୭ ।
କି ଅବା ରତି ତେଜ୍ୟା କରି ଅଇଲା ଅନଙ୍ଗ
ଯେସନେକ ଦିଶୁଅଛି ଯେ ଅଭିମନ୍ୟୁ ଦିବ୍ୟ ଅଙ୍ଗ । ୩୨୮ ।

ହାର ନଆଳୀ ପଦକ ତାଡ଼ ଯେ ତୋଡର
ଅନେକ ରତ୍ନ ଆଭରଣ ତାହାର ଶରୀର । ୩୨୯ ।

ଗୁରୁ ଦେବତାଙ୍କୁ ନମସ୍କାର କରି
ବିଜେକଲା କୁମର ଦଧି ମଂଗଳ ସୁମରି । ୩୩୦ ।
ଅଭିମନ୍ୟୁ ପୂର୍ବମୁଖେ ବିରାଟ ପଶ୍ଚିମ ମୁଖେ
ପାଦ ଶଉଚ କଲା ପ୍ରୋହିତଙ୍କର ବାକ୍ୟେ । ୩୩୧ ।

ପଇଡ଼ ପାଣି ପତ୍ରରେ ପଞ୍ଚାମୃତ ବିଧି
ପାଦ ଶଉଚ କରାଇଲେ ସେ ଯେନ୍ହେକ ପୂଜାବିଧି । ୩୩୨ ।
ପାଦରଜ ଉଦକ ଯେ ବିରାଟେଶ୍ୱର ରାଜା
ମଥାରେ ଧରିଲା ଟେସ କରିଣ ଦିବ୍ୟ ପୂଜା । ୩୩୩ ।

ଶ୍ରୀକରେ ପାଣି ଘେନି ଉତ୍ତର କୁମାର
ଗଡୁମୁଖେ ଗଡାଇଦେଲା ଅଭିମନ୍ୟୁର ପତ୍ରର । ୩୩୪ ।
ପତ୍ରର ପୂଜା ସାରିଣ ଘେନିଲା ସୁସଞ୍ଚ ଦିବ୍ୟ ଗନ୍ଧ
ଅଭିମନ୍ୟୁ ଗଳାରେ ଲମ୍ବାଇଲା ବିରାଟେଶ୍ୱର ରାଜା । ୩୩୫ ।

ସମସ୍ତ ବ୍ରାହ୍ମଣେ ଯେ କଲେକ ବେଦଧ୍ୱନି
ପ୍ରୋହିତ ଅଭିମୁଖେ ଧମସ୍ତ ମହାମୁନି । ୩୩୬ ।
ଚନ୍ଦନ ଚନ୍ଦ୍ରୁସମ ଲେପନ କାପ୍ପୁ କରି
ଅଭିମନ୍ୟୁ ମୁଖେ ନେଇ ସୀଉକାର କରି । ୩୩୭ ।
ବେଦବରଣ ବାକ୍ୟ ଗୋଟିଏ୍କ ଉଚ୍ଚାରଣ କଲେ
ବସ୍ତ୍ର ଶ୍ରୀଫଳ ଗୁବାକ ଯେ ଅଭିମନ୍ୟୁ ହସ୍ତେ ଦିଲେ । ୩୩୮ ।
ବାଟିଲ କୁଂକୁମ ଯେ ଅଛଇ ଅପାର
ଚନ୍ଦନ ଚନ୍ଦ୍ରୁସମ ଯେ ତଥିର ସଂଗର । ୩୩୯ ।
ଥୋକାଏକ କାଢି ସେ ଥୋଇଲେ ଧାନ୍ୟକରି
ଦେବାଦେବୀମାନନ୍ତ ଦିଲେ ଉପଚ୍ଚର ପୂଜାରେ ଭରି । ୩୪୦ ।
ନବଚନ ବସନ ଯେ ଝୀନ ମଡିଆଲ
ପ୍ରୋହିତ ମନ୍ତ୍ରି ଦିଲେ ତାହା ପିନ୍ଧିଲେ ଅର୍ଜୁନର ବାଳ । ୩୪୧ ।
ଝୀନ ବସନ ଗୋଟିଏକ କରେ ଋଷି ଘେନି
ମନ୍ତ୍ରି ପିନ୍ଧାଇଲେ ନେଇ ବିରାଟର ନନ୍ଦିନୀ । ୩୪୨ ।
ପ୍ରୋହିତେ ବୋଇଲେ ହୋ ଶୁଣ ମତ୍ସସାଇଂ
ସଭାକଇଂ ଆଣ ହୋ ତୋହୋର ତନଇ । ୩୪୩ ।
କୁମର କୁମାରୀ ଯେ ବସିଲେ ଏକସ୍ଥାନେ
ମଙ୍ଗଳ ହୁଳହୁଳି ଉଚ୍ଛୁଳିଲା ଗଗନେ । ୩୪୪ ।
କରନ୍ତି ମଙ୍ଗଳ ଯେ ବିବିଧ ବିଧାନେ
କନ୍ୟାକୁ କନ୍ଦଭୂଷଣ ଯେ କରନ୍ତି ସନ୍ନିଧାନେ । ୩୪୫ ।
କୁଂକୁମ ଲେପନ ଯେ କରନ୍ତି କୁମାରୀ
ବିରାଟ କୁଂକୁମ ନେଇ ଲିପିଲେ ହଳଧାରୀ । ୩୪୬ ।
ଗୁଆ ଶ୍ରୀଫଳ ଯେ ବିଲେହିଣ ସରି
ଅନ୍ତପୁରକୁ ଗଲା ସେ ବିରାଟ କୁମାରୀ । ୩୪୭ ।
ଶ୍ରୀ ଜଗନ୍ନାଥେ ଯେ ଯଦୁବଂଶ ଘେନି
ବିରାଟକୁ କୁଂକୁମ ଲେପନ କରନ୍ତି ଆଣି । ୩୪୮ ।

ଭୀଷ୍ମ ଧୃତରାଷ୍ଟ୍ର ବିଦୁର ସଞ୍ଜୟେ ପାଞ୍ଚାଳ ଦେଶ ରାୟେ
ପାଞ୍ଚପାଣ୍ଡବ ଯେ ସମସ୍ତ ରାଜା କୁଂକୁମମୟେ । ୩୪୯ ।
କୁଂକୁମ ଲେପନ ଯେ ହୋଇଛନ୍ତି ଅପ୍ରମିତ
ଯେତେକ ଆରକେ ପରିହାସ ଲଗିଲା ବହୁତ । ୩୫୦ ।

ଲଗିଲା ପଡିହାସ ହୋଇଲା ମହାଗୋଳ
ବୋଲୁ ଧନ୍ୟଧନ୍ୟ ପୁଣି ସେ ବିରାଟ ମହୀପାଳ । ୩୫୧ ।
ଦେବତାମାନେ ଯହିଂ କରୁଛନ୍ତି କ୍ରୀଡା
ଚନ୍ଦନ ପରିହାସେ ନେଇ ତହିଂ ଦିଲେ ଛଡା । ୩୫୨ ।

ଅଭିମନ୍ୟୁ ବିଭାକାଳେ ମତ୍ସ୍ୟଦେଶେ ପନ୍ଦର ସହସ୍ର ନୃପତି
ଯେତେ ରାଜା ସମସ୍ତରେ ମିଳିଲେ ଘର ବରଜାତି । ୩୫୩ ।
ରଥ ଗଜ ଅଶ୍ୱ ପାଦାନ୍ତି ଅନେକ
ଗହଳେ ଅନ୍ତ ନୋହଇ ରାଜାଂକର ଲୋକ । ୩୫୪ ।

କୁଂକୁମ ଲେପନ ସବୁ ପୁରୁଷ ଯେ ସ୍ତିରି
ରାଜା ପାଟ ଯୋଦ୍ଧା ଅମାତ୍ୟ ବାଦ୍ୟକାର ଆଦିକରି । ୩୫୫ ।
କୁଂକୁମ ଲେପନ ସାରି ତୈଳ ଅୟୋଂଳା ମରଦି
ସମସ୍ତେ କଉତୁକେ ପଶିଲେ ବେଣୀଭଦ୍ରା ନଦୀ । ୩୫୬ ।

ନଦୀଗୋଠିଯାକ ବହିଲ କୁଂକୁମମୟେ
ପଞ୍ଚଦଶ ଯୋଜନ ପାଣି ଅଖାଇଦ ହୋୟେ । ୩୫୭ ।
ସ୍ନାହାନ ସାରିଣ ଯେ ଆସନ୍ତି ଦେବରାଜେ
ବିଚିତ୍ର ଦେବ ନବରେ ଦେବ ମୁଣୋହ୍ୱରେ ବିଜେ । ୩୫୮ ।

ସୁବର୍ଣ୍ଣ ପଇଲମ ସବୁଂକୁହିଂ ଦେଇ
ସୁଯତ୍ନେ ସମ୍ପାଦି ଅଚ୍ଛି ମତ୍ସ୍ୟଦେଶ ସାଇଂ । ୩୫୯ ।
ପରଶନ୍ତି ବ୍ରାହ୍ମଣେ ଭଗ୍ୟଂ ବେଦଗୃସ୍ତି
ନିଜ ମନ୍ଦରେ ମୁଣୋହ୍ୱରେ ବିଜୟେ କଲେ ରାମହରି । ୩୬୦ ।

ପରଶନ୍ତି ବ୍ରାହ୍ମଣେ ଅମିୟୁ ରସପାନ
ସୁଖେଣ ଭୋଜନ କରନ୍ତି ବଳଦେବ ଜନାର୍ଦ୍ଦନ । ୩୬୧ ।

ଭୋଜନର ସମ୍ପଦ କହିବେ କି ପାରି
ସହିଂରେ ସେ ନାୟକ ଯେ ଅଟନ୍ତି ଦେବହରି । ୩୬୨ ।
ଦୁହାଂଶ ଦୁଇପଦ୍ମ ଯାହାର ଅଛନ୍ତି ଧେନୁଗାଈ
ନିତି ପାଞ୍ଚଲକ୍ଷ ଘର ଯାହାର ଦୁଧ ଦହି । ୩୬୩ ।
ତିନିଲକ୍ଷ ଘର ଯାହାର ହୋଇ ଘୃତ
ତାହାଂକର ଭୋଜନ ଅବା କେ କରିବ ଅନ୍ତ । ୩୬୪ ।
ଯାହାର ଉପୁଜିଅଛି ଅମୃତ ଲକ୍ଷେଘର
ମାନବ ଜନଂକୁ ସେ ଅସଂଖ୍ୟ ଅଗୋଚର । ୩୬୫ ।
ଯେସନେକ ମହିମା ଯେ ମହାଦେଶ ପୁରୀ
ତାହାକୁ ଭୋଜନେ ଯେ କେହୁ କଳପାରି । ୩୬୬ ।
ଯାହାର ଯେତେକ ଇଚ୍ଛା ସେ ଭୁଞ୍ଜନ୍ତି ସମସ୍ତେ
ଜନେ ସେ ପ୍ରଶଂସା କରନ୍ତି ଅପ୍ରମିତେ । ୩୬୭ ।
ପିଠାର ବର୍ଣ୍ଣମାନ କେ କରୁ ହାଦେ ଲେଖା
କେଉଂଣ ଅପୂର୍ବ ତାହାଂକୁ ଯେ ଶ୍ରୀକୃଷ୍ଣ ଯାହାଂକୁ ସାଖା ।୩୬୮।
ଭୋଜନ ଶେଷେଣ ସେ କଲେକ ଆଚମନ
ଉଠିବାକୁ ଶକତି ନାହିଂନା ଘର୍ଜନ । ୩୬୯ ।
ଆଚମନ ସାରଣ କର୍ପୂର ତାମ୍ବୁଲ ଭୁଞ୍ଜି
ଚନ୍ଦନ କୁସୁମ ଦେଇ ଥୋକାଏ କେଶ ରଞ୍ଜି । ୩୭୦ ।
ଭୋଜନ ସାରଣ ସେ କଲେ ସନ୍ଧ୍ୟା ଅବକାଶେ
ସୀଉକାର ବରଣ ପେଷିଲେ ଅତି ହରଷେ । ୩୭୧ ।
ଯେସନେକ ସନମାନେ ରାଜାଂକୁ ଦେଲେକ କୁଂକୁମ
ତହୁଂ ଅଧିକ କରି ଦେଲେକ ଚଉସମ । ୩୭୨ ।
ତାମ୍ବୁଲ କର୍ପୂର ଦେଲେକ ଜଣେ ଜଣେ
କୁସୁମ ଭୂଷଣ ସେ ଦେଲେକ ସକଳ ରାଜାଗଣେ । ୩୭୩ ।
ଯେତେକ ବସିଅଛନ୍ତି ଯଦୁବଂଶ ଭୋଜବଂଶ କୃଷ୍ଣବଂଶ
ଜଣକେ ଲକ୍ଷେ ମାତ ଦେଲେକ ରତ୍ନକୋଷ । ୩୭୪ ।

ସମସ୍ତ ରାଜାଂକୁ ଯେ ଅଲଂକାର ସ୍ୱେ ବିଧି
କି ଅବା ପ୍ରାପତ ହୋଇଛନ୍ତି ବାରାନିଧି । ୩୭୫ ।
ବିରାଟ ଅର୍ଜୁନର ସମ୍ବନ୍ଧ ବାକ୍ୟମାନ
ଉଭୟେ ଅନୁମତେ କୋଲ ସମ୍ଭାଷଣ । ୩୭୬ ।
ବରଣ ବିଧିମାନ ସାରିଲେ ସମ୍ପରେ
ଅଭିମନ୍ୟୁ ବସାଇଲେ ଅର୍ଜୁନ କୋଳରେ । ୩୭୭ ।
ସୀଉକାର ବରଣ ଯେ ସାରିଣ ମହୀପତ୍ୟେ
ବୋଇଲା ସ୍ୱେ ମୋହୋର ସତ୍ୟ ସତ୍ୟ ଜସୁବାର ସତ୍ୟେ । ୩୭୮ ।
ଶ୍ରୀକରେ ଅର୍ଘ୍ୟ ଘେନିଣ ଅନ୍ତେଗ୍ୟଂ ସର୍ବବାଳୀ
ମଙ୍ଗଳ ଗୀତ ଗାଇଣ ଦିଅନ୍ତି ହୁଳହୁଳି । ୩୭୯ ।
ଗାବନ୍ତି ଗୀତ ଯେ ମିଳି ସର୍ବଗଣିକା ପ୍ରିୟା
ଅଭିମନ୍ୟୁଂକ ଉତ୍ତରା କରାଇବା ବିହା । ୩୮୦ ।
ବିଭାବରଣକୁ ଯେ ସାରିଲେ ପ୍ରୋହିତେ
ଯେ ସେ ପୂର୍ବବିଧି ସମସ୍ତ ଶାହାସ୍ତ୍ର ଯୁଗତେ । ୩୮୧ ।
ସୀଉକାର କରିଣ ସେ ଗଲେ ବରକନ୍ୟା
ବାନ ଅର୍ଦ୍ଧକୁ ସେ ମିଳିଲେ ସମସ୍ତ ବରାଙ୍ଗନା । ୩୮୨ ।
ଅନେକ ନୃତ୍ୟ ଗୀତ କରି ତ କି ପାରି
ରଜନୀ ପାହିଲା ତହିଂ କଉତୁକ କରି । ୩୮୩ ।
ଋଷିମାନଂକୁ ଫଳ ଯୋଗାଉମାନ ସଞ୍ଚା
ରଯୁଣୀ ପ୍ରଭାତେ କଲେ ବିଭା ଯୋଗାଉକୁ ପଞ୍ଚା । ୩୮୪ ।
ଋଷିମାନଂକୁ କୃଷ୍ଣାଜିନ ଗ୍ରାଳ ବସିତେ ଆସନ
ପାଦାର୍ଘ୍ୟ ପୂଜା ପୁଷ୍ପ ଅକ୍ଷତ ଗନ୍ଧ ଯେ ଚନ୍ଦନ । ୩୮୫ ।
ଲକ୍ଷେ ଲକ୍ଷେ ସୁବର୍ଣ୍ଣ ଋଷିଂକ ପାଦପୂଜା
ସମାସ୍ୟା ବିନୋଇ ବୋଲଇ ମତ୍ସ୍ୟଦେଶ ରାଜା । ୩୮୬ ।
ପରମ କଲ୍ୟାଣ ଯେ ମୁନିମାନେ ବାଞ୍ଛି
ଧର୍ମ ତୋତେ ପ୍ରାପତ ହୋଇ ଯେ ବିଧି ଶାହାସ୍ତ୍ରେ ଅଛି । ୩୮୭ ।

ଲକ୍ଷେକ ବ୍ରାହ୍ମଣ ଯେ ଘେନ ଧୌମ୍ୟ ପୁରୋହିତେ
ବିହିର ଯୋଗାଡ଼ ବସିଲେ ବିରାଟ ସହିତେ । ୩୮୮ ।
ଯେ ବିଧି ବିଧାନେ ଦେଶକାଳ ବାକ୍ୟ ମନ୍ତ
ପୂରଣ ଦେଖନ୍ତି ଯେ ରାଜାମାନେ ରାଜ୍ୟଲୋକ ସମସ୍ତ । ୩୮୯ ।
କଣସ୍ଥ ବେଦୀରେ ବସିଲେ ଯେ ବିରାଟ ମହାରାଜା
ପ୍ରୋହିତେ ଅଭିମୁଖେ ସାରିଲେ ଦେବପୂଜା । ୩୯୦ ।
ଆସନ ପାଦାସନ ଯେ ଗଣପତି ସ୍ଥାନ
ବ୍ରହ୍ମା ସନକ ସନାତନ ବିଶ୍ୱେଦେବା ବରୁଣ । ୩୯୧ ।
ପୃଥୀ ଆପ ତେଜ ଯେ ବାୟୁବି ଆକାଶ
ଅଷ୍ଟାଦଶ ମାତୃଗଣ ପୂଜ ଉତ୍ସର୍ଗିଲେ ନବ ଯେ ପୁରୁଷ । ୩୯୨ ।
ଯେ ବିଧି ଶୁଭକଥା ବ ଞ୍ଛିତ ମଙ୍ଗଳେ
ଅଷ୍ଟକୁଳା ନାଗନ୍ତ ବିଧିରେ ପୂଜିଲେ । ୩୯୩ ।
ଶଙ୍ଖପଦ୍ମ ମହାପଦ୍ମ କୁଳୀକ କର୍କୋଟକ ଅନନ୍ତ ତକ୍ଷକ
ବାସୁକୀ ଅଷ୍ଟକୁଳା
ଦଧିବାମନ ଦୁର୍ଗା ବସୁଧା ଜଳ ଯେ ଅନଳା । ୩୯୪ ।
ଦଶଦିଗପାଳ ମେଘ ଆବର ଶୂନ୍ୟ ସପତମ
ପ୍ରାଣ ଅପାନ ବ୍ୟାନ ଉଦାନ ସମାନ ଭୂତ ଯେ ପଞ୍ଚମ । ୩୯୫ ।
ଯେତେ ଦେବତାଙ୍କୁ ଆସନ ପାଦାସନ ନଇବେଦ୍ୟ ଅନ୍ନବଳ
ପୂଜଇ ବିରାଟ ରାଜା କାମ୍ୟାର୍ଥେ ଉତ୍ତର ବାଳୀ । ୩୯୬ ।
ହିରଣଦାନ ବସ୍ତ୍ରଦାନ ମୁକୁତା ରତ୍ନମଣି
ଦୋହିତା ଆରୋଗ୍ୟ ଅର୍ଥେ ଦିଅ ନୃପମଣି । ୩୯୭ ।
ବିଷ୍ଣୁ ଆଳେ ପୁରାଣ ଶିବଆଳେ ଦିଲେକ ଶତେଦଳ
ଦେବୀମାନଂକୁ ଯେ ବିଧି ଉପଚାର ଶୀତଳ । ୩୯୮ ।
ଜୀବଘାତ ନ କରଇ ବିରାଟେଶ୍ୱର ରାଜା
ଉପନ ଉପହାରେ ଦେଇ ସେ ଦେବୀଂକ କରଇ ପୂଜା । ୩୯୯ ।
ଗ୍ରହଶାନ୍ତି ମନ୍ତ ଯେ କରନ୍ତି ଗ୍ରହପୂଜନେ
ରଙ୍ଗପୁଷ୍ପ ରଙ୍ଗବସ୍ତ୍ର ରଙ୍ଗମାଳ ଯେ ସମସ୍ତେ । ୪୦୦ ।

ଶିଳା ଦେବତାଙ୍କୁ ଯେ ବିଧି ସ୍ନାହାନ
ଚଣ୍ଡୀପୁରାଣ ସଂହିତା ମାରକଣ୍ଡ ଆଖ୍ୟାନ । ୪୦୧ ।

ଅନେକ ନୃତ୍ୟ ଗୀତ କଉତୁକ ମହାସବ
ଯେସନେକ ଶୋଭବନ ଅଳକାପୁର ପ୍ରଭା । ୪୦୨ ।
ଯେତେ ଇଚ୍ଛା ତେତେ ଦିଅନ୍ତ ଅନ୍ନଦାନ
ଦରିଦ୍ରେ ଅପାରତେ ଯେ ହୋଇଲା ଦାନ ଧ୍ୟାନ । ୪୦୩ ।

ମକର ମାସ ଶୁକ୍ଳ ପକ୍ଷ ଦଶମୀ ଗୁରୁବାର
ରୋହିଣୀ ନାମେ ନକ୍ଷତ୍ର ଭୋଗ ସେ ଦିନର । ୪୦୪ ।
କିଂସ୍ତୁଘ୍ନ ନାମେ କରଣ ଆୟୁଷ୍ମାନ୍ ନାମେ ଯୋଗ
ତାର ଚନ୍ଦ୍ର ବଳଆର ରୋହିଣୀ ଘରେ ଭୋଗ । ୪୦୫ ।

ଶୁକ୍ରର ଅନ୍ତେ ଯେ ବୁଧର ବେଳଦଣ୍ଡ
ଅମୃତଯୋଗ ଯେ କୁମ୍ଭ ଲଗ୍ନ ହେଲକର । ୪୦୬ ।
ରାହୁ ଶନିଚର ଯେ ଆଦିତ୍ୟ ମଙ୍ଗଳ
ଯେମାନେ ନାହାନ୍ତି ଯେ ବର୍ଜିତ ଶୁଭବେଳ । ୪୦୭ ।

ଘୁମୂଣ୍ଡିଆ ଈଶାନ କଣର ମଧ୍ୟସ୍ଥାନେ
ବୈଶାଳା ଆରମ୍ଭ କଲେକ ବଦ୍ୟମାନେ । ୪୦୮ ।
ଶଙ୍ଖା ଅଳତା ଯେ ଗନ୍ଧଣ ଯୋଗାଡ଼ ସର୍ବ
ଅଷ୍ଟକୁଳା ନାଗଙ୍କୁ ସେ ତେଷିଲେ ବାକ୍ୟଭାବ । ୪୦୯ ।

ଉଦବେଗେ ବରାଟେଶ୍ୱର କରପତ୍ର ଯୋଡ଼
ମୃତ୍ତିକା ପୂରେଇ ବୈଶାଳ ମନ୍ତ୍ର ଛନକାଣ୍ଡି ଗଢ଼ି । ୪୧୦ ।
ଅଧିକାମ୍ୟ ବାକ୍ୟେ ଯେ ଅସରଳା ସୂତା
ମହାମନ୍ତ୍ରେ ବର କାନ୍ଧେ ଦିଲେ ବାଞ୍ଛା ଯେ ପଇତା । ୪୧୧ ।

କନ୍ୟାର ବାହେ ଅସରଳା ସୂତା ବାନ୍ଧିଲେ ପ୍ରୋହ୍ନତେ
ସମଯୋଗ କଲେ ଦୁବ ବରକୋଳ ପନେ । ୪୧୨ ।

---

୪୦୪।୧ ମକର ମାସ କୃଷ୍ଣ ପକ୍ଷ ନବମୀ ଗୁରୁବାର। (ପ, ଧ, ତ)

ବରକଇଂ ଦଅନ୍ତି ସମସ୍ତ ନାରୀଗଣେ ମିଳି
ନାରୀଗଣେ ଦଅନ୍ତି ଯେ ମଙ୍ଗଳ ହୁଳହୁଳି । ୪୧୩ ।
ଦ୍ୱାରକାର ନାରୀମାନେ ଧାଆନ୍ତି କୁତୂହୋଳି
ଗାବନ୍ତି ଗୀତ ସେ ଯେ ଦଅନ୍ତି ହୁଳହୁଳି । ୪୧୪ ।
ଘୁମୁରେ ଖଟନ୍ତି ଯେ ବଳାସୁଣୀ ବାଳୀ
ବାଜନ୍ତି ବଜଘୋଷ ମହୁରୀ ଘମଚାଳି । ୪୧୫ ।
ନଗ୍ରର ବାହାରେ ଯେ ରହିଛନ୍ତି ଲିଙ୍ଗରାଜା
ଘୁମୁରେ ଶାକାମ୍ବରୀ ଦେବୀ ଯେ ଗିରିଜା । ୪୧୬ ।
ଶ୍ରୀଭୁଜେ ଶୋଭିବନ କଣପୁ ଅଂକୋଳି
କନ୍ୟାକଇଂ ଅହ୍ନିରାଂ ନମନ୍ତେ ନେଉଛନ୍ତି ନାରୀ ମିଳି । ୪୧୭ ।
ମଙ୍ଗଳ ଗୀତ ଗାଇ ଦଅନ୍ତି ହୁଳହୁଳି
ଯାଆନ୍ତେଣ ମୁକୁତା ବଅନ୍ତି ସର୍ବବାଳୀ । ୪୧୮ ।
କନ୍ୟାର ଚଉକଣ୍ଠ କଣପୁ କଲେ ବୃଷ୍ଟି
ଜନମନ ମୋହଇ ସୁନ୍ଦରୀ ଚଉକଣ୍ଠ । ୪୧୯ ।
କନେକର ହାନ୍ଦୋଳାରୁ ଧାତ୍ରୀମାନେ ଓହ୍ଲାଇ
ଶୁଭେଣ ଦ୍ରଶନ କଲେ ବରାଟ ତନୟୀ । ୪୨୦ ।
ଘୁମୁରେ ସୁନ୍ଦରୀପେ ଥୋଇଲେ ଅର୍ଦ୍ଧ୍ୟସ୍ଥାଳୀ
ଗୋସାମଣିଂକ ବହୁତବାଗେ ଖଟନ୍ତି ମନର ହରିଆଳି । ୪୨୧ ।
ଜୟ ଜୟ ମାନଧାରୀ ଗୋ ଅଭୟେ ଅପର୍ଣ୍ଣା
ଆପାଦ କାଳକୁ ମାଗୋ ଭୁହ୍ନି ସେ ବଜ୍ରସେନ୍ହା । ୪୨୨ ।
ଅମଳାଣ ଆରୋପଣ ଗୋରକତ ପୀତବାସୀ
ମତ୍ତମାତାଙ୍ଗୀ ମାଗୋ କୁହୁକୁହୁ ହାସୀ । ୪୨୩ ।
ଖେଚରୀ ଭୂଚରୀ ମାଗୋ ଗବନେଣ ଲୀଳା
ଅହିରୁଦ୍ର ବାସିନୀ ଗୋ ନାମ ତୋ ସୁଶୀଳା । ୪୨୪ ।
ଖାଂକର ଚକୁର ଗୋ କୁରୁଳ ଉର୍ଦ୍ଧ୍ୱକେଶୀ
ଅପାଙ୍ଗନେତ୍ରୀ ଗୋ ବନ୍ଦରବେ ହାସି । ୪୨୫ ।

କଣପୂ ମେଖଳା ଗୋ ଲମ୍ବିତ କ୍ଷୁଦ୍ରଘଣ୍ଟି
କାକୁସ୍ଥ ବିନ୍ଧ୍ୟବାସିନୀ ଗୋ ବଉଳମାଳା କଣ୍ଠି । ୪୨୬ ।
ପିଙ୍ଗଳ ବଦନୀ ଗୋ ଆରକ୍ତ ବିମ୍ବଓଷ୍ଠୀ
ଅରୂପା ଅଜପା ମାଗୋ ବିନାଶୁଂ ଅରିଷ୍ଟି । ୪୨୭ ।

କାମିନୀ କାମମୁଦ୍ରା ଗୋ ପ୍ରସନ୍ନ କାମାକ୍ଷୀ
ମାତା ଅବତାରେ ଅନାଗତ ଫଳ ବାଞ୍ଛି । ୪୨୮ ।
କୋଟିଏ ଯୁଗ ଗଲେ ମାଗୋ ବାକୃତ ଯାହାର ବେଶ
ମୋହନ ଧରଣ ଧାରଣ ସ୍ତମ୍ଭନବିଦ୍ୟା ଯାହାର ବଶ । ୪୨୯ ।

ଶରଣ ଉଦ୍ଧାରଣୀ ମାଗୋ ଅପର୍ଣ୍ଣା ସର୍ବମଙ୍ଗଳେ
ଶୂଦ୍ରମୁନି ସାରଳା ଦାସ ବିନଏ ଶ୍ରୀ ଦୁର୍ଗାଂକ ପାଦତଳେ ।୪୩୦।
ଶୁଣ ହେ ଚଇତନ କହନ୍ତି ମନୁ ମହାବୀର
ଗୋସାମଣିଂକ ବହୁତ ସ୍ତୁତି ବିନଏ କଲକ ଉତ୍ତର । ୪୩୧ ।

ବିରାଟ ନନ୍ଦନୀର ବହୁତ ବିନଏ ଦେଖି
ପ୍ରସନ୍ନେ ବର ଦିଲେ ପିଙ୍ଗଳା ରୁଦ୍ରମୁଖୀ । ୪୩୨ ।
ବାନ୍ତୁତ ରୂପ ହୋଇ ଯେବେ ମୋତେ ଯେହେନେକ ସ୍ତୁତି
ଯାଆ ତୁ ସୋମବଂଶେ ହୁଅ ତୁ ପୁତ୍ରବନ୍ତୀ । ୪୩୩ ।

ପ୍ରସନ୍ନେ ବର ଯହୁଂ ଦିଲେକ ଭଦ୍ରକାଳୀ
ବାହୁଡଣ ବିଜେ କଲକ ଉତ୍ତରବାଳୀ । ୪୩୪ ।
ମକରମାସ ଶୁକ୍ଳପକ୍ଷ ଦଶମୀ ଗୁରୁବାର
ରୋହିଣୀ ନକ୍ଷତ୍ର ଯେ ଅଟଇ ସେ ଦିନର । ୪୩୫ ।

କୌସ୍ତୁଭନାମେ କରଣ ଶିବନାମେ ଯୋଗ
ତାର ଚନ୍ଦ୍ରବେଳା ଯେ ରୋହିଣୀଘରେ ଭୋଗ । ୪୩୬ ।
ସ୍ତମ୍ଭମଣ୍ଡପ ଯେ ଅନେକ ବିସ୍ତାର
ସମସ୍ତ ରାଜାମାନେ ବସିଲେ ସଭାରେ ସମ୍ଭର । ୪୩୭ ।
ରାମକୃଷ୍ଣ ଦ୍ରୋଣ ବିଜଏ ଧୃତରାଷ୍ଟ୍ର
ଭୀମ ଅର୍ଜୁନ ନକୁଳ ସହଦେବ ଯୁଧିଷ୍ଠି । ୪୩୮ ।

ନରନାରୀମାନେ ସମସ୍ତେ ଗହଣେ
ପୂରଣ ଦେଖନ୍ତି ଯେ ବଭ୍ରର ବଧାନେ । ୪୩୯ ।
ଗାବନ୍ତି ଗୀତ ଯେ ସମସ୍ତ ଶୁଭପ୍ରିୟ
ଅଭିମନ୍ୟୁ ଉତ୍ତରା ଯେ ଦୁହିଁଙ୍କର ବେଢ । ୪୪୦ ।
କଟମ୍ବା ମାଡବସିଲ ବରାଟ ମହୀପତ
କୋଳେ ବସାଇଲେ ଆଣି ଆପଣା ଦୋହିତ । ୪୪୧ ।
ଅର୍ଜୁନର କୋଳେ ଯେ କୁମାର ଅଭିମନ୍ୟୁ
ତ୍ରୈଲୋକ୍ୟ ମୋହଇ ସେ ସୁଭଦ୍ରାର ତନୁ । ୪୪୨ ।
ଅନେକ ବିବର୍ଣ୍ଣେ ଗନ୍ଧପୁଷ୍ପମାଳ
ବରକନ୍ୟାଙ୍କ ଶିରେ ଆଭରଣ କଲେ ମୁକୁଟ ଦୋଳ । ୪୪୩ ।
ଲମ୍ବିତ ମଲ୍ଲୀମାଳା ଚମ୍ପକ ଚଉସରୀ
ସେବତୀ ପାଖୁଡା ଯେ ବେଷ୍ଟିତ ରତ୍ନହୀରା । ୪୪୪ ।
ବେଦ ଆଧାନ ଯେ କରନ୍ତି ସୁପଣ୍ଡିତେ
ମଙ୍ଗଳ ସାଉକାର ପଢନ୍ତି ଚଣ୍ଡୀପୁରେ । ୪୪୫ ।
ବଦସୃନ୍ତି ଅଗସ୍ତି ଶୁଣ ମନୁ ରାଜନ
ରୁଦ୍ରୀ ମଣ୍ଡପଗୋଟି ପଞ୍ଚକୋଣ ଆପ୍ରେଉନ । ୪୪୬ ।
ଯୁଧିଷ୍ଠିରଙ୍କ କୋଳେ ଯେ ବିଜୟ ଫାଲଗୁନୀ
ଅର୍ଜୁନ ବସିଅଛି ଯେ ଅଭିମନ୍ୟୁକୁ କୋଳେ ଘେନ । ୪୪୭ ।
ଶୁଭ ଅବଧାନେ ପୂର୍ବ ନିଜ ମୂର୍ତ୍ତି
ପଚ୍ଛିମ ମୂରତି ଯେ ବୈରାଷ୍ଟ୍ର ନୃପତିର ସନ୍ତତି । ୪୪୮ ।
କନକ ଆଞ୍ଜୋଳି ଦଧିବାମନ ସୁମର
ପିତାର କୋଳେ ବିଜୟେ କଲିକ ଉତ୍ତରାକୁମାରୀ । ୪୪୯ ।
ମଧ୍ୟେଣ ବ୍ରାହ୍ମଣ ଯେ ଧୌମ୍ୟ ପୁରୋହିତେ
ଉଦ୍ଧାଳେକ ବାମଦେବ ସୁମନ୍ତେ ଗାର୍ଗବ ସହିତେ । ୪୫୦ ।
ଯେ ବିଧି ଦେଶକାଳ ବାକ୍ୟ ସେ ଉଚ୍ଚର
ସତ୍ୟ ସତ୍ୟ ହସ୍ତିବାର ବାକ୍ୟ ସାଉକାର । ୪୫୧ ।
ଚନ୍ଦ୍ରଦୈବତର ଗୋଟିଏ ବାର ଫାଲଗୁନୀ
ମହାବାକ୍ୟ ପଦ ଉଚ୍ଚାରନ୍ତି ପୁରୁଷ ତିନ । ୪୫୨ ।

ଇଦଂ ବାକ୍ୟେ ପିତାମହ ତିନ ଯେ ପୁରୁଷ
ବିଚକ୍ଷଣାର୍ଥ୍ୟ ପଣ୍ଡୁ ଅର୍ଜୁନ ନାମ ଘୋଷ । ୪୫୩ ।
ଅସ୍ମତ୍ ପିତୃ ପିତାମହ ପ୍ରପିତାମହ
କନ୍ୟାର ତିନପୁରୁଷ ନାମ ଏମନ୍ତେ କହ । ୪୫୪ ।
ମୁଦ୍ରା ଆସନ ପାଞ୍ଚ ବଜନ୍ତେ ବରଟେ
କୋଳେ ଉତ୍ତରା ବାଳୀ ବଜନ୍ତେ ଶୋହଇ ଜଗୁରାସ୍ତେ । ୪୫୫ ।
ଶଙ୍ଖ ଶ୍ୱେତ ଉତ୍ତର ମନ୍ମଧେ ପୁତ୍ର ତିନ
ବିଭା ସଂଯୋଗ କଲେ ବ୍ୟାସ ମହାମୁନି । ୪୫୬ ।
ବୃଦ୍ଧ ଭାର୍ଗବ ଗୋତ୍ର ରାଜେ ମହେଶ୍ୱର
ଦେଶକାଳ ମହାବାକ୍ୟେ ଉଚ୍ଚାରନ୍ତି ମୁନୀଶ୍ୱର । ୪୫୭ ।
ଅସ୍ମତ୍ ପିତାମହ ପ୍ରପିତାମହ ବୃଦ୍ଧ ପ୍ରପିତାମହ
ଏମନ୍ତ ବିଧାନ କନ୍ୟାର ତିନ ପୁରୁଷ ନାମ କହ । ୪୫୮ ।
ଚନ୍ଦ୍ରଦୈବତ ଗୋତ୍ରସ୍ୟ
ଅର୍ଜୁନ ନାମ ପୁତ୍ରସ୍ୟ । ୪୫୯ ।
ବୃଦ୍ଧ ଭାର୍ଗବ ଗୋତ୍ରସ୍ୟ ବିରାଟ ଦେବ ପୁତ୍ରୀ
ଏମନ୍ତ ବାକ୍ୟେଣ ତିନପୁରୁଷ ନାମ ଧରି । ୪୬୦ ।
ପ୍ରୋହିତେ ମହାବାକ୍ୟ ନାମ ଯେ ଉଚ୍ଚାରି
ଇଦଂ ବାକ୍ୟ ସେ ଯେ ବିବାହ ପୂରଣ କରି । ୪୬୧ ।
ଚୌଷଠୀ ଅପର୍ଣ୍ଣାଙ୍କର ନାମ ଅବଧାରି
ଦେଖିଣ ସାନନ୍ଦ ଯେ ହୁଅନ୍ତି ନରନାରୀ । ୪୬୨ ।
ଅଖଣ୍ଡିତ ମନ୍ତ୍ରେ ଦୁବ ଚଉଷଠୀ
ମହାମନ୍ତ୍ର ଅବଧାନେ ପାଉଛନ୍ତି ଗଣ୍ଠି ମୁଠି । ୪୬୩ ।
ଆଇଷ୍ୟ ମନ୍ତ୍ରେ କନ୍ୟାକୁ ଯୋଜିଣ ପୁରୋହିତେ
ବରହସ୍ତ ଉପରେ କନ୍ୟାର କରପତେ । ୪୬୪ ।
ଶଙ୍ଖ ମହୁରୀ ଯେ ବାଜଇ ଭେରୀ ତୁରୀ ଘୋରନାଦେ
ବ୍ରାହ୍ମଣମାନେ ଉଚ୍ଚାରନ୍ତି ବେଦ ଯେ ଶବଦେ । ୪୬୫ ।
ହୁଳହୁଳି ଜୟ ଜୟ ଶବଦ କଲେକ କାମିନୀ
ଶୁଭବାର୍ତ୍ତା ପଢ଼ିଲେ ସୁମନ୍ତ ମହାମୁନୀ । ୪୬୬ ।

ଆପେଣ ଅପଛରାପ୍ସେ ନୃତ୍ୟ ଗୀତ ଆରମ୍ଭି
ମର୍ଦ୍ଦଳ କଂସାଳ ବାଜଇ ଘୋର ଯେ ଦୁନ୍ଦୁଭି । ୪୬୭ ।
ବରକନ୍ୟାଂକର କର ଧରି ମଧ୍ୟଗତେ
କୁଶ ବନ୍ଧନ କଲେ ଯେ ଧୌମ୍ୟ ପୁରୋହିତେ । ୪୬୮ ।
ବର ହସ୍ତ ଉପରେ କନ୍ୟା ହସ୍ତଗତେ
ହସ୍ତବନ୍ଧନ କଲେ ଯେ ଶାହାସ୍ ସଙ୍ଗତେ । ୪୬୯ ।
ପ୍ରୋହିତେ ବୋଇଲେ ହୋ ହବଟେଶ୍ବର ରାଜା
ଯଉତୁକ ବେଳ ହୋଇଲା କର ହବିର ପୂଜା । ୪୭୦ ।
ଡାହାଣବ୍ରତେକ ଶଙ୍ଖେ ଜଳ ତିଳ ଭରି
ହଅଇ ଯଉତୁକ ଯେ ବରାଟ ଦଣ୍ଡଧାରୀ । ୪୭୧ ।
କନ୍ୟାର ପରିବାରୀ ଯେ ସହସ୍ରେକ ଦାସୀ
ଲକ୍ଷେକ ଧେନୁ ଗାଈ ଧବଳ କମଳ ଆଶ୍ବାସୀ । ୪୭୨ ।
ଲକ୍ଷେକ ଭାର ସୁବର୍ଣ୍ଣ ପଇଲମ ଯୋଗାଡ଼ ରନ୍ନ
ଉପାଧି ଶତେ ରଥ ହଲା ଯଉତୁକ ଯନ୍ନ । ୪୭୩ ।
ଲକ୍ଷେକ ରଥୀ ଯୋଦ୍ଧା ହଲାକ ଆଦ କରି
ବେନିଲକ୍ଷ ଶ୍ବେତହସ୍ତୀ ଶ୍ବେତଅଶ୍ବ ଲକ୍ଷ ଗୁରି । ୪୭୪ ।
ଆଲମ୍ବ ଉଦଣ୍ଡ ଯେ ଛନ୍ନ ପାଞ୍ଚଲକ୍ଷୀ
ଗୁରିଲକ୍ଷ ଗୁମର ଯେ ହଲାକ ସେ ବାଛି । ୪୭୫ ।
ଗାରତୂରି ହକଘୋଷ ଟମକ ନିଶାଣ
ଗାର ଢୋଲ ମୃଦଙ୍ଗ କାହାଳ ଯେ ପାଞ୍ଚ ଲକ୍ଷ ପୁଣ । ୪୭୬ ।
ଘଣ୍ଟ ମର୍ଦ୍ଦଳ ଗାର କାହାଳୀ ମହୁରୀ
ଏମାନ ଗୁରିଲକ୍ଷ ଗୁରି ସହସ୍ର ହଲାକ ଅଗୁଳ । ୪୭୭ ।

---

୪୭୨।୨ ଲକ୍ଷେକ ଧେନୁ ଦୁହଂାଳ ଲକ୍ଷେକ ମହିଷି । (ଦ)
୪୭୨।୨ ଲକ୍ଷେକ ଧେନୁ ଗାଈ ଧବଳ କମଳ ବର୍ଣ୍ଣ ରାଶି । (କ)

ପଞ୍ଚ ପରସ୍ଵଧ ଦିଲ ପାଦାନ୍ତ ସଙ୍ଗନ
ପଞ୍ଚପାରଦଣ୍ଡ ଦିଲ ଗ୍ରୁଡ଼ଲକ ପ ଶ୍ରୀ ଯେନ । ୪୭୮ ।
ଅନେକ ଦେଶର ଯେ ଥିଲେ ମସ୍ଥାପତ୍ୟେ
ଗୃହ ଭଣ୍ଡାର ଧନ ଦିଲେକ ଅପ୍ରମିତ । ୪୭୯ ।
ଅଶ୍ୱ ଗଜ ଦଣ୍ଡଛତ୍ର କହ୍ୱତ କେତ୍ସ ପାଶ
ଅସଂଖ୍ୟ ଅଗୋଚରର ଦିଲ ଯଉତୁକ ବଧିକର । ୪୮୦ ।
ବିରାଟ ଭାରଯା ଯେ ଶ୍ରୀକୃଷ୍ଣା ମହାଦେଈ
ଅନେକ ଯଉତୁକ ଦିଲେ ହରଷ ମନ ହୋଇ । ୪୮୧ ।
ବିରାଟ ପୁତ୍ର ଯେ ଶଙ୍ଖ ଶ୍ୱେତ ଉତ୍ତର
ସେମାନେ ଯଉତୁକ ଦିଲେ ଅପାର ଅପାର । ୪୮୨ ।
ଯଉତୁକ ଶେଷେଣ ବୋଇଲେ ଧୌମ୍ୟ ଗୁରୁ
କନ୍ୟା ହାତଗୋଟି ଯେ ଆଣସି ଅନୁପୁରୁଂ । ୪୮୩ ।
ବର କନ୍ୟାର ହାତ ଫେଡ଼ନ୍ତୁ ସେ ଆସି
ଶଂକୁଚ ମନେ କନ୍ୟାମାନେ ଆସନ୍ତ ହସି ହସି । ୪୮୪ ।
ଗୁପ୍ତ ମଣ୍ଡୋପ ତଳେ ମିଳଲେ କାମ୍ୟନାରୀ
କର କନ୍ୟାଂକର ହସ୍ତ ଫେଡ଼ିଲେ ଶୁଭେଣ ସେ କର । ୪୮୫ ।
କରପତ୍ର ଗ୍ରୁଡ଼ଣ ଉଠିଲା ଉତ୍ତର ବ ଳୀ
ବର ସନ୍ନିଧେ କନ୍ୟାକଙ୍କଂ ବସାଇଲେ ତୋଳ । ୪୮୬ ।
ନବତନ ଝୀନବସ୍ତ୍ର ଦିଲେକ ବଧାଇ
ଅନେକ ଧନରତ୍ନ ଭିକ୍ଷୁକଜନେ ଦେଇ । ୪୮୭ ।
ନବତନ ବସ୍ତ୍ର ପିନ୍ଧି ବେଶ ବେଶନ ହୋଇ
ବରକନ୍ୟା ବସିଲେ ଯେକ ଆସନେ ଯାଇଂ । ୪୮୮ ।
କୁମର କୁମାରୀ ଯେକଇ ଅସ୍ଥାନେ
ବିରାଟ ପ୍ରଣପତ୍ୟ ଅର୍ଜୁନ ସନ୍ନିଧାନେ । ୪୮୯ ।

---

୪୭୮।୨ ପଞ୍ଚ ପାରଦଣ୍ଡ ଛଡ଼ାଇଲେ ଜଳଢଳ ଯେନ । (ଗ, ଡ)

ବିଷ୍ଣୁ ମାତୁଳ ଯାହାର ଲକ୍ଷ୍ମୀ ଯାହାର ମାଇଁ
ମୁଂ ତାକୁ ଯଜ୍ଞଭୁକ ଦେବାକୁ କସ ଭଜନ ହୋଇବଇଁ । ୪୯୦ ।
ଯେ ମହୀମଣ୍ଡଳେ ଯେ ଠାକୁର ସୋମବଂଶୀ
ଦୁହିତାଏ ଦେଇ ମୁ ଶରଣ ଅଛୁ ପଶି । ୪୯୧ ।
ଯେ ହୋଇବ ସ୍ୱାମୀ ଦଣ୍ଡ ଦୋଷ ମୋହର ଥିଲ ହାଦେ ପୂର୍ବେ
ଦୋହିତା ଗୋଟି ଯେ ଦେଇ ମୁଂ ନଭ୍ରାନ୍ତ ହୋଇଲ
ଯେବେ । ୪୯୨ ।

ଦୋହିତା ଗୋଟିଏ ଦେଇଣ ମୁଂ ହୋଉଛୁ ସମର୍ପି
ସମୁଦ୍ର ଆଶ୍ରିତ ମୁଂ କଲ୍ୟାଇଂ ଅଦ୍ୟାପି । ୪୯୩ ।
ଅନେକ ବଚନୋୟୀ ସେ ମହୀଧିପ ସ୍ୱାମୀ
ଯୁଧିଷ୍ଠିରଙ୍କ ଚରଣ ତଳେ ସହସ୍ରେ ଦଣ୍ଡ ପରଣାମି । ୪୯୪ ।
ଯୁଧିଷ୍ଠିର ବୋଇଲେ ଉଠ ଉଠ ହୋ ମହାତମା
ତୁ ମୋହର ଅଭେଦ ଯେ ଅଟୁ ପଞ୍ଚଭୂତ ଆତ୍ମା । ୪୯୫ ।
ଅର୍ଜୁନର ବଦନ ଯେ ଗୃହ୍ନିଂଲେ ଯୁଧିଷ୍ଠିର
ବଭ୍ରଟକୁ ଅର୍ଜୁନ ଯେ କୋଳକଲ୍ ଉଠି । ୪୯୬ ।
କନ୍ୟାକଇଂ ସମର୍ପଇ ସେ ଗଲେ ମହୀସ୍ୟଭଯେ
ପ୍ରୋହିତେ ଲଜାହୋମ କରିବନ୍ତ ଉପାଯେ । ୪୯୭ ।
ଶ କଗୁଆ ଅଖଣ୍ଡିତ ପଞ୍ଚଗୋଟି ଦେନ
ବରକନ୍ୟାଂକ ଲୁଗାରେ ବନ୍ଧନ କଲେ ଆଣି । ୪୯୮ ।
ଗଣ୍ଠିଓଲା ଯୁଗଳେଣ ହୋଇଲେ ବରକନ୍ୟା
ବସିଲେ ବରବେଶେ ତାହାଂକ ଜୀବନ ଧନ୍ୟା ଧନ୍ୟା । ୪୯୯ ।
ବାତ ଅନଳ ନାମେଣ ସେବଣ ହୁତ
ସ୍ୱାହା ସ୍ୱଧା ମନ୍ତ୍ରେ ଯେ କଲେକ ଉପଗତ । ୫୦୦ ।
ଇଦଂବାକ୍ୟେ ପୁରୋହିତେ ଆରାଧିଲେ ବାଭବଧି ଯେ ବହନ୍ତି
ଗୁଆଘିଅ ମାଘୀଡିଲେ ଦଲେକ ଆହୂତି । ୫୦୧ ।
ସ୍ୱାହା ସ୍ୱଧା ମନ୍ତ୍ରେଣ ଯେ କଲେକ ଅବଧାନ
ଅଗ୍ନି ଦେବତାଂକର ନୋହିଲ୍ ଉଦ୍ୟାନ । ୫୦୨ ।

ମାର୍କଣ୍ଡ ବୋଇଲେ ହୋ ଧୌମ୍ୟ ପୁରୋହିତେ
ଅଗ୍ନିର ଶିଖା ତ ନ ଦର୍ଶିଲ ଲେଖିତେ । ୫୦୩ ।
ତୋହୋର ପ୍ରାୟେ ବ୍ରାହ୍ମଣ ଦଲୁ ଯେ ଆହୂତି
ବାଟ ତ ନୁଅଟଲି ଅଗ୍ନି ଦେବତାଙ୍କ ମୂର୍ତ୍ତି । ୫୦୪ ।
ଆହୋ ଜାତ ଅନଳ ବୋଲି ଯେଉଁଣ ବୈଶ୍ୱାନର
ତିନିବଦନ ପନ୍ଦର ଲୋଚନ ତାହାଙ୍କର । ୫୦୫ ।
ଦ୍ୱାଦଶ କପାଳ ଚତୁର୍ବିଂଶ ଯେ ଶ୍ରବଣ
ନାଭି ଗଣ୍ଡସ୍ଥଳ ଚତୁର୍ଦ୍ଦଶ ବକ୍ଷସ୍ଥଳ ପୁଣ । ୫୦୬ ।
ପଞ୍ଚବିଂଶ ଊର୍ଦ୍ଧ୍ୱର୍ଗ ତିନି ନାସିକା ପଞ୍ଚକୁକ୍ଷି
ତ୍ରିଶିଖା ଆକର୍ଷଣ ସହସ୍ରେ ପିଙ୍ଗଳାକ୍ଷି । ୫୦୭ ।
ଏକଇ ବଦନ ହୋ ଚତୁର ଅନଳ ମୂରତି
ତିନି ବଦନ ଦ୍ୱାଦଶ ରୂପ ଯେ ବହନ୍ତି । ୫୦୮ ।
ଚତୁର୍ଦ୍ଦଶ ଓଷ୍ଠ ଦ୍ୱାଦଶ ଯେ ଜିହ୍ୱା
ଏକ ଚରଣ ତିନି ପିଠି ଶତେ ଊର୍ଦ୍ଧ୍ୱପ୍ରଭା । ୫୦୯ ।
କପାଳେ ଆହୂତି ଯେ ପଡ଼ଇ ବହନ
ସର୍ବ ଶୁଭ ହୋଇ ଯେ ବରକନ୍ୟାଏ ବ୍ରତନ୍ତ ପୁଣି । ୫୧୦ ।
ଆହୂତି ପଡ଼ଇ ଯେବେ ଅଗ୍ନିଙ୍କର ଆଖି
କନ୍ୟାକଇଂ ବରକ୍ଷେ ନ ପାରଇ ଦେଖି । ୫୧୧ ।
ଯେବେ ଆହୂତି ପଡ଼ଇ ଅଗ୍ନିଙ୍କର ନାସିକା
ସର୍ବେ ପୁତ୍ର ଗୋଟିଏ ଉପୁଜଇ ତାହାର ଏକା । ୫୧୨ ।
ଅଗ୍ନିର କର୍ଣ୍ଣେ ଯେବେ ଆହୂତି ପଡ଼ିବ
ସନ୍ତାନ ଉପୁଜିଲେ ସେ କର୍ଣ୍ଣ ବଧିର ହୋଇବ । ୫୧୩ ।
ଗଣ୍ଡସ୍ଥଳ ମଧ୍ୟେ ଯେବେ ପଡ଼ଇ ଆହୂତି
ବର ଉପରେ କନ୍ୟା ଯେ ହୋଇବ ହତ୍ୟାଟି । ୫୧୪ ।

---

୫୧୦ { କପାଳେ ଆହୂତି ଯେ ପଡ଼ଇ ବହନ୍ତ
ଭିକ୍ଷୁକ କର୍ମେଣ ଯେ ବର କନ୍ୟା ଯେ ବ୍ରତନ୍ତ । (ଘ, ଝ)

ଆହୂତି ପଡଇ ଯେବେ ଅଗ୍ନିଙ୍କ ହୃଦେ
ବର କନ୍ୟାଙ୍କର ଉପୁଜଇ ବଡାଇ ସୁହୃଦେ । ୫୧୫ ।
ଅହିଓ ସୁଲକ୍ଷଣୀ ହୁଅଇ ସୌଭାଗ୍ୟବନ୍ତୀ
ପୁତ୍ର ଉପୁଜିବ ଦୋହିତା ବହୁତ ଉପୁଜନ୍ତି । ୫୧୬ ।
ଆହୂତି ପଡଇ ଯେବେ ବଶ୍ୟାନର କନ୍ଧେ
କନ୍ୟା ବିଧବା ହୁଅଇ ତୁଟଇ କାମ ସନ୍ଧେ । ୫୧୭ ।
ବାମ ଭୁଜେ ଯେବେ ପଡିବ ଆହୂତି
ପର ଦାରେଣୀ ସେ କନ୍ୟା ହୁଅଇ କରେ ବେଶ୍ୟାବୃତ୍ତି । ୫୧୮ ।
ଡାହାଣ ଭୁଜେ ଯେବେ ଆହୂତି ପଡିବ
ସୁନ୍ଦର କନ୍ୟା ହୋଇଲେ ବର ଘେନ ଘର କରିବ । ୫୧୯ ।
ଯେବେ ଆହୂତି ପଡିବ ଅଗ୍ନିଙ୍କର କୁକ୍ଷି
ପୁତ୍ର ଦୋହିତା ଉପୁଜିବ ଅନ୍ତେ ହୋଇବ ବଡ ସୁଖୀ । ୫୨୦ ।
ଅଗ୍ନିଙ୍କ ପିଠିରେ ଯେବେ ପଡିବ ଆହୂତି
ବରଷକେ ବିଧବା ହୋଇବ ସେ ଯୁବତି । ୫୨୧ ।
ଆହୂତି ପଡିବ ଯେବେ ଅଗ୍ନିଙ୍କ ମେଖଳେ
ଅପାର ଦୁହିତା ହୋଇବେ କର୍ମର ଅବଳେ । ୫୨୨ ।
ଜାନୁର ମଧ୍ୟେ ଯେବେ ପଡିବ ଆହୂତି
ବର କନ୍ୟାଙ୍କର ହୋଅଇ ଅପାର ପୀରତି । ୫୨୩ ।
ପୁତ୍ର ଦୋହିତା ନୋହିବ ଜୀବ ଥିବା ଯାଏ
ଅପୁତ୍ରିକ ହୋଇଣ ମରିବେ ବାପମାଏ । ୫୨୪ ।
ପାଦେ ପଡିବ ଯେବେ ଅଗ୍ନିଙ୍କର ଆହୂତି ଭାଗ
ଦେଶାନ୍ତରୀ ହୋଇ ବୁଲିବେ ହୋଇବ ଭିକ୍ଷା ଯୋଗ । ୫୨୫ ।
ଅପାର ଉତପତ୍ତି ହୋଇବେ ପୁତ୍ରବାଳୀ
କର୍ମେ ଦରିଦ୍ର ହୋଇବେ ସେ ନୁଆରିବେ ସମ୍ଭାଳି । ୫୨୬ ।
ଆପଣା ଶକତି ହମେ ନ ପାରିବ ପୋଷି
କଷ୍ଟ ବକଷ୍ଟ କରି ଆପଣା ପେଟ ପୋଷି । ୫୨୭ ।

---

୫୨୬। କର୍ମେ ଦରିଦ୍ର ନୋହିବ ଅନ୍ନଶାଳୀ ।

ଶୁଣ ହୋ ପୁରୋହିତେ ବଦନ୍ତି ମାରକଣ୍ଡେ
ଆହୁତି ପଡ଼ିଲା ହୋ ଅଗ୍ନି ଦେବତାଙ୍କ ମୁଣ୍ଡେ । ୫୨୮ ।
ମହାମନ୍ତ୍ର ବାକ୍ୟେ ପ୍ରକ୍ଷେପିଲେ ତାନ୍ତୁ
ଅଶ୍ଳେଗ୍ୟ ହୋଇବ କନ୍ୟା ସନ୍ତାନ ହୋଇବେ ହେନ୍ତୁ । ୫୨୯ ।
ବଢ଼ାଇ ଦୁହିପଦେ ରହିବ ତାର ବଂଶ
କନ୍ୟାକଇଂ ଭୋଗ ସର୍ବେ ହୋଇବ ତେରମାସ । ୫୩୦ ।
ଜନ୍ମ କର୍ମ ଆଧାନ ବେନାସିକ ନାଡ଼ୀ
କର୍ମ ନାଡ଼ୀରେ ଯେବେ ପୂର୍ଣ୍ଣ ଅଭ୍ୟାସ କରି । ୫୩୧ ।
ମାରକଣ୍ଡେ କହିଲେ ଆଗତ ଗ୍ରନ୍ଥଖଣ୍ଡି
କର୍ମେ ଲାଗି କହିଲେ ଯେ କନ୍ୟା ହୋଇବ ପେଟଗଣ୍ଡି । ୫୩୨ ।
ବ୍ୟାସେ ବୋଇଲେ ମାରକଣ୍ଡ ସ୍ୱରୂପ ଆମ୍ଭେ କହୁଂ
ଚଉଦ ବରଷ ଯେ ନାଶିପିବେ ଯେହୁଁହାର ପ୍ରଭୁ । ୫୩୩ ।
ମାରକଣ୍ଡେ ବୋଇଲେ ବ୍ୟାସେ ଯେହୁଁହା ନ କର ଉଦ୍ଧତ
ପାଣ୍ଡବ କୁଳେ ବ୍ୟଥା ଉପୁଜିବ ବହୁତ । ୫୩୪ ।
ଅଗ୍ନିଙ୍କ ପ୍ରତକ୍ଷଣ ତହିଂ କଲେକ ବରକନ୍ୟା
କରେଣ ଗଣ୍ଡୁଷ କଲେ ଘୃତ ଯେ ପାରଣା । ୫୩୫ ।
ଅଗ୍ନି ଦେବତାଙ୍କୁ ଯେ ବହୁତ ଶୀତଳ ଦ୍ରବ୍ୟମାନ
ବର କନ୍ୟା ବେନଯେହୁଁ ଯେ କଲେକ ଆଞ୍ଜୋବନ । ୫୩୬ ।
ଉତ୍ତର କୁମାର ଅଗ୍ନି ଶୀତଳ ପରଖି
ପୁରାଣ ସଂହିତାରେ ଯେହ୍ନେ କେହ୍ନର ଅଛି । ୫୩୭ ।
ଯେହୁଁ ବୁଧଜନେ ଯେହୁଁ ବହିବଧି କ୍ରମେଣ
ପଞ୍ଚଭୂତ କରି ଲୟେହୁଁ କରି ଦେଖ ଅଗ୍ନିର କାରଣ । ୫୩୮ ।

---

୫୩୧ { ଜନମ କରମ ସେ ଆଧାନ ବୈନାସୀ । ( କ, ଦ )
କର୍ମ ସମ୍ପାଦଯେହୁଁ ଅଟନ୍ତି ଚଉରାଶି । ( ଠ )

୫୩୭।୧ ଉତ୍ତର କୁମାର ଅଗ୍ନି ଶୀତଳ ପରଶି । ( ଙ )

୫୩୭।୧ ଉତ୍ତର କୁମାର ଅଗ୍ନି ଶୀତଳ ପରଖି । ( କ, ଣ, ଦ, ତ )

ଜାତ ଅନଳ ଅଗ୍ନି ଯେ ଅଟଇ ସପତ ଜିହ୍ୱା
ଅଗ୍ନିର ବର୍ଣ୍ଣ ଜାଣି ଆହୁତି ଦେଉଥିବା । ୫୩୯ ।
କନ୍ୟାଗୋଟି ହୋଇବାକ ଅଷ୍ଟଓ ସୁଲକ୍ଷଣୀ
ସୁର ଦୁହିତା ଉପୁଜବ ଅନଙ୍ଗ ରମ୍ଭା ଜାଣି । ୫୪୦ ।
ଧନ ବସ୍ତ୍ର ପାଇବ ପଣ୍ଡିତ ହୋଇବ ଯୁଗତେ
ରୋଗ ଆପଦ ଉତପତ୍ତି ନୋହିବ କଦାଚତେ । ୫୪୧ ।
ଯେମନ୍ତ ଯାଗ୍ୟଂ କଲେ ଯେ ମନୁଷ୍ୟ ହୋଇବ ସୁଖୀ
ଅଗ୍ନିଂକର ବର୍ଣ୍ଣ ଚିହ୍ନ ଜାଣି ଆହୁତି ଦେବ ଦେଖି । ୫୪୨ ।
ଓଷ୍ଠର ମଧ୍ୟେ ଯେବେ ଆହୁତି ପଡିବ
ଯେଥର ଫଳଶ୍ରୁତି ଅଧିକ ହୋଇବ । ୫୪୩ ।
ଜନ୍ମର ପ୍ରତିଷ୍ଠା ହୋଇବାକ ବଡଯୋଗ
ଯେହ୍ନା ବଶ୍ୱର ଅଗ୍ନିକ ଦେବ ହବର୍ଭାଗ । ୫୪୪ ।
ଚନ୍ଦ୍ର ବଚଳିତ ଯେବେ ଆହୁତି ଦେବାବେଳେ
ସେ ଦୋଷର କାରେଣି ବ୍ରାହ୍ମଣ ବରକନ୍ୟା ଦୁଖ ପାଇଲେ । ୫୪୫ ।
ଯେସନେକ ବିଧାନ ବଭାର ଚରିତ
ଯେହ୍ନା ବର୍ଣ୍ଣଣ କାର୍ଯ୍ୟ କରନ୍ତି ପଣ୍ଡିତ । ୫୪୬ ।
ବିଭବିଧି ସାରଣ ଯେ ଅଗ୍ନିର ହମେଣ
ଆରୋଗ୍ୟ ଅଶିଷ ବାଞ୍ଛିଲେ ସକଳ ବ୍ରାହ୍ମଣ । ୫୪୭ ।
ଶୁଭ ଅବଧାନେ ଚଳିଲେ ବରକନ୍ୟା
ରାହ ପାଇଲ ସେ ସ ରଲେ ଭୋଜନ । ୫୪୮ ।
ଭୁଞ୍ଜନ୍ତି ଘର ବର ଜାତି ଯେ ସମସ୍ତ
ଅନେକ ବିଧାନେ ଭୋଜନ ଦଅଇ ମହାନାଥ । ୫୪୯ ।
ରାମକୃଷ୍ଣ ଘେନ କର ଧୃତରାଷ୍ଟ୍ର ରାଘେ
ପଞ୍ଚ ପାଣ୍ଡବନ୍ତ ଘେନ ଭୋଜନ ସର୍ବ କଘେ । ୫୫୦ ।

---

୫୪୩।୨ ଯେଥର ଫଳଶ୍ରୁତି ମଧ୍ୟମ ହୋଇବ । ( ଧ, ପ )

ଆଂଗ୍ଲେବନ ସାର ସେ କର୍ପୂର ତାମ୍ବୁଳ ଭୁଞ୍ଜନ୍ତି ଜନେ
ଅନେକ ଅକ୍ଷତ ଦେଲେ ବିରାଟ ଗୁରୁଜନେ । ୫୫୧ ।
ଶୁଣ ହୋ ବୈବସ୍ବତ ମନୁ ବଦଯୂକ୍ତ ଅଗସ୍ତି
ବନ୍ଧାଇଣ ବରକନ୍ୟା ସେ ଅନ୍ତପୁରେ ନିଅନ୍ତି । ୫୫୨ ।
ଭୂମିରେ ଲକ୍ଷଣ ମଣ୍ଡନ୍ତି ପରହାସେ
ଜୂଆ ଖେଳାବନ୍ତି ଆଣି ମନର ହରଷେ । ।୫୫୩ ।
ସୁବର୍ଣ୍ଣର କଉଡ଼ ଯେ ରୂପାର କେଘା କେନ
ଜୂଆ ଖେଳାବନ୍ତି ମିଳି ସକଳ କାମିନୀ । ୫୫୪ ।
ବର ଦଅଇ ଯେ କନ୍ୟାର ହାଥେ ତୋଳି
ନଗ୍ର ନରନାରୀମାନେ ସମସ୍ତେହେଂ ମିଳି । ୫୫୫ ।
ପୁଣ ପୁଣ ଲେଉଟାଇ ପାଂଡନ୍ତି ଅନୁମତେ
ଖେଦ ଅନୁସର ପୁଣ ଧରନ୍ତି ହୃଦଗତେ । ୫୫୬ ।
ପୁଣ ଭୁଷ୍ଟ ଚଢେ଼ ପାଡନ୍ତି ବେନମତି
ତମାଳ ଗୀତ ଗାବନ୍ତି ଅନେକ ଯୁବତୀ । ୫୫୭ ।
ହରଷେଣ ଜୂଅ ଖେଳାନ୍ତି ବିରାଟ କୁମାରୀ
ଦେଖିଣ ହରଷ ହୋଇଲେ ସମସ୍ତ ନରନାରୀ । ୫୫୮ ।
ଦୁବା ଅକ୍ଷତ ଶିରେ ଦେଲେକ ବରକନ୍ୟା ବେନି
ଭିତର ପୁରକୁ ବରକନ୍ୟା ନେଲେକ କାମିନୀ । ୫୫୯ ।
ବିରାଟର ଭାରଜା ଶ୍ରୀକୃଷ୍ଣା ମହାଦେଈ
ଏକ ଆସନେ ବରକନ୍ୟାକୁ ଭୁଞ୍ଜାଇ । ୫୬୦ ।
ଷଡରସ ଭୋଜନ ପରଶନ୍ତି ଆଣି ଆଗ
ଶରୀର ପୁଷ୍ଟିକର ଭୁଞ୍ଜିଲେ ଅତି ବେଗ । ୫୬୧ ।
ଭୁଞ୍ଜିଣ ନିପୃତ ଯେ ହୋଇଲେ ବରକନ୍ୟା ବେନି
ଦିବ୍ୟ ଅବତାର ସେ ଦିଶନ୍ତି ଯୁବା ବୟସ ଘେନି । ୫୬୨ ।
ଆଞ୍ଚୋବନ ସାରଣ କର୍ପୂର ତାମ୍ବୁଳ ଭୁଞ୍ଜି
ରାତ୍ରି ଦେଢ ପ୍ରହର ଶୟନ ସ୍ଥାନେ ରଞ୍ଜି । ୫୬୩ ।

ଉତ୍ତରାକୁ ଯେନଣ ରାମକୃଷ୍ଣଙ୍କର ଭଣଜା
ବହୁତ ମଙ୍ଗଳ ଆରୋପଣେ ସଜେ ମଧୁଶଯ୍ୟା । ୫୬୪ ।
ଗଣିକାଗଣମାନେ ଦ୍ୱାରେ ହାତେ ମିଳି
ଶପୁନ ଗୀତ ଗାଇ ଦିଅନ୍ତି ହୁଳହୁଳି । ୫୬୫ ।
ପଡ଼ିଲା କବାଟ ସେ ଦୁଆରେ ସୁବର୍ଣ୍ଣ
କୁମାର କୁମାରୀଙ୍କର ବହୁତ ପୀରତି । ୫୬୬ ।
ନଖ ଦନ୍ତଘାତ ଚୁମ୍ବନ ପରିହାସ
ସେବକକୁ ଆରେକ ବଢ଼ିଲା ନାନା ରତିରସ । ୫୬୭ ।
ଉଦ୍ଦାମ ଶୃଙ୍ଗାର ହୋଇଲା ବେନଜନ
କେହି ନ ଜାଣନ୍ତି ନଖଦନ୍ତ ପାଦଚିହ୍ନ । ୫୬୮ ।
ବିବିଧ ଶୃଙ୍ଗାରେ ଯେ ପାହିଲା ରଜନୀ
ସ୍ନାହାନକୁ ଆରମ୍ଭ ସେ ବରକନ୍ୟା ବେନି । ୫୬୯ ।
ବିଭାର ଦ୍ୱିତୀୟ ଦିନ ହୋଇଲେ ବନ୍ଦାପନା
ତୃତୀୟ ଦିବସ ଉତ୍ସବ ହୋଇଲା ପ୍ରସନ୍ନା । ୫୭୦ ।
ଇନ୍ଦ୍ରାୟେଣୀ ଶାହାସ୍ତ୍ର ଯେ ପଢନ୍ତି ପୁରୋହିତେ
ବରକନ୍ୟା ଆରୋଗ୍ୟ ହୋଇବେ ଯେମନ୍ତେ । ୫୭୧ ।
ଚତୁର୍ଥ ଦିବସେ ଯେ ନଗ୍ର ଉତ୍ସବକରି
ସହସ୍ରେ ଦ୍ୱିଜବର ଚତୁର୍ବେଦ ଦ୍ୱାରେ ପଢ଼ି । ୫୭୨ ।
ବହୁତ ଉତ୍ସବେ ସେ ପ୍ରସର ହୋଇଲାକ ରାତି
କୁମାର କୁମାରୀ ଗୁପ୍ତା ମଣ୍ଡୋପେ ବସନ୍ତି । ୫୭୩ ।
ରଜନୀ ପ୍ରଭାତେ ସେ ଚନ୍ଦନ ବହୁତ ଘୋରି
ସେବକ ଆରେକ ଲେପନ କରନ୍ତି ଚତୁରୀ । ୫୭୪ ।
ବେଳୁଂବେଳ ପରିହାସ ଲାଗିଲା ବହୁତ
ଚନ୍ଦନ ଗୁଣ୍ଡ ବୃଷ୍ଟି କଲେ କୁଂକୁମନ୍ତ । ୫୭୫ ।

---

୫୭୧।୧ ରୁଦ୍ରାୟେଣା ଶାହାସ୍ତ୍ର ଯେ ପଢନ୍ତି ପୁରୋହିତେ । (ଜ, ଦ)

୫୭୩।୨ କୁମାରୀ କୁମାର ଶେଯ୍ୟା ମଣ୍ଡୋପେ ଆସନ୍ତି । (କ, ଝ, ଢ, ଥ)

କୁଂକୁମ ଧସାଧସିର ବହୁତ କଲେ କେଳି
ଶ୍ରୀଖଣ୍ଡି ବିରାଟକୁ ପିଙ୍ଗିଲି ପରସ୍ପରେ ଧୂଳି । ୫୭୬ ।
ଚନ୍ଦନ କସ୍ତୁରୀ କର୍ପୂର ଚତୁସମ ମିଶା
ରସ ପରସ୍ପରେ ଯେ ସମସ୍ତେ ମାଟିମିଶା । ୫୭୭ ।
ଦାଣ୍ଡେକ ହନେ ଯେ ହୋଇଲି ସମସ୍ତ
ଯେତେକ ନଉଡ଼ଇ ନେଇ ଆରେକର ମାଥ । ୫୭୮ ।
ରାମକୃଷ୍ଣ ଆଦିକରି ଉଗ୍ରସେନ ବସୁଦେବ
ସୁଦେଷ୍ଣି ଦ୍ରୌପଦ ଆଦି କରି ଯେତେକ ରଙ୍ଗଭାବ । ୫୭୯ ।
କର୍ଦ୍ଧନ ଉଦ୍ଭବ ଗୁଣ୍ଡକରି ଲେପନ ସୁଗନ୍ଧ ଅପ୍ୟେଂଳା
ଜଳେ ପଶନ୍ତେ ସେ ନଦୀ ହୋଇଲାକ ଗୋଳା । ୫୮୦ ।
ସ୍ନାହାନ ସାରି ଉଭା ହୋଇଲେକ କୂଳେ
ସବୁନ୍ତହିଂ ନବରତନ ବସ୍ତ୍ର ଦିଲେ ବିରାଟ ମଣ୍ଡପାଳେ । ୫୮୧ ।
ଦେବାଙ୍ଗ ବସନ ଯେ ଯେତେକବର୍ଣ୍ଣ ପାଟ ଯେ ପଠମ
ନେତବସ ଦୋସତ୍ତା ସବୁଂକୁହିଂ ଦିଲି ଆଣି । ୫୮୨ ।
ଠାକୁର ସେବକ ବାଦ୍ୟକାର ପରଯନ୍ତେ
ସବୁଂକୁହିଂ ଯେତେକ ଯେ ଗକରି ଦିଲି ନାନାବସ୍ତ୍ର ସହିତେ । ୫୮୩ ।
ଅନେକ ଯୋଗାଡ଼ ସେ ଦିଲେକ ଭୋଜନ
ଜଣକେ ଅଳଂକାର ଅହିବ୍ରତେକ ମାତ୍ର ସୁବର୍ଣ୍ଣ । ୫୮୪ ।
ବସୁଦେବ ନନ୍ଦ ଉପନନ୍ଦ ମହାଖୁନ୍ଦ୍ର ଉଗ୍ରସେନ ବଳରାମେ
ସାତବଂଶ ଯେନ ବିଜେ ପୁରୁଷଂକ ଉତ୍ତମେ । ୫୮୫ ।

---

୫୭୬ { କୁଂକୁମନ୍ତ ଗୋଳି ତହିଂ କୁସୁମନ୍ତ ମେଳି
ଯେତେକର ଉପରେ ଆରେକ ପକାଦନ୍ତ ତୋଳି । (ଝ)

୫୭୬।୨ କୁଂକୁମ ବୃଷ୍ଟି ଛୁଟିଲା କଉତୁକ ମେଳି । (ଟ)

୫୮୨।୨ ଶ୍ୱେତ ବସ୍ତ୍ର ଦୋସତ୍ତା ସବୁଂକୁହିଂ ଦିଲା ଆଣି । (ଣ, ଦ)

୫୮୨।୨ ପୀତ ବସ୍ତ୍ର ଦୋସତ୍ତା ସବୁଂକୁହିଂ ଦିଲା ଆଣି । (ଣ, ଜ)

୫୮୩।୨ ସବୁଂକୁହିଂ ଯେତେକଯୋଗ କରି ବିଲେହିଲେ ରାଜା ସନ୍ୟ ସହିତେ । (କ)

ବଶିଷ୍ଠ ଦ୍ରୁପଦ ରାଜା ଧୃଷ୍ଟ ଯେ ଦ୍ୟୁମନେ
ସଞ୍ଜପନ୍ତେ ବିଦୁର ଯୁଧିଷ୍ଠି ଭୀମସେନ ଅରଜୁନେ । ୫୮୬ ।
ସୁବାହୁ କେଶବ ଯେ ମାଧବସେନ ମେଳେ
ଆସ୍ଥାନର ତଳେ ଆସି ବଜପନ୍ତେ ସକଳେ । ୫୮୭ ।
ସଭାରୁ ଉଠିଣ ସେ ନୃପତି ଧୃତରାଷ୍ଟ୍ରେ
ପ୍ରଣପତ୍ୟ ହୋଇ ବୋଇଲେ ଅବଧାନ ରାମକୃଷ୍ଣେ । ୫୮୮ ।
ସ୍ୱାମି ପୂର୍ବର ପାତକେଣ ମୋହୋର ଭ୍ରଷ୍ଟ ହେବନ ଅାଖି
ପୁତ୍ରଂକର ସମ୍ପଦ ମୂଂ ନୁଆରିଲ ଦେଖି । ୫୮୯ ।
ସ୍ୱାମି ବିନୟ ହୋଇଣ ଯୁଧିଷ୍ଠିଂକ ପୁଛି
ଦ୍ରୁଯୋଧନର ପୂର୍ବ ଦୋଷ ନ ଘେନିବା କିଛି । ୫୯୦ ।
ମୁହିଂତ ଜାଣଇ ଯୁଧିଷ୍ଠି ଅଣକୋପୀ
ଅର୍ଜୁନ ମଧ୍ୟମାନ ଭୀମସେନ ପରତାପୀ । ୫୯୧ ।
ସକଳ ଅର୍ଚ୍ଚନା ଯେ ଯୁଧିଷ୍ଠି ମହାତମା
ଦଶ ଦୋଷ ଅପ୍ରାଧ କରିବା ମୋର କ୍ଷମା । ୫୯୨ ।
ଯେତେ ଦୋଷମାନ ବାବୁ ସବୁ ମୋତେ ଦେବା
ଶୁଭ ଅନୁକୂଳେ ଗୃହ ହସ୍ତିନାକୁ ଯିବା । ୫୯୩ ।
ଯୁଧିଷ୍ଠି ବୋଇଲେ ଦେବ ଯାହା ବୋଇଲ ଅାସ୍ଥାନେ
ଅନୁଗ୍ରହେ କୋପ ଆମ୍ଭଂକୁ ତୋହୋର ଦ୍ରୁଯେ ଧନ
ଦୁଶାସନେ । ୫୯୪ ।

---

୫୯୧।୧ "ଅର୍ଜୁନ ମଧ୍ୟମାନ ଭୀମସେନ ପରିତାପୀ" ପାଠ ପରେ "ଖ" ପୋଥିରେ ଅଧିକା ପାଠ :—

ନକୁଳ ତ ସୁକୁମାର ସହଜେ ଅଟଇ
ମନ୍ତ୍ରୀ ସହଦେବ ଗତ ଅାଗତ ଜାଣଇଂ । (ଖ)

୫୯୨।୧ ସକଳ ରଞ୍ଜନା ଯୁଧିଷ୍ଠି ମହାତମା । (ଣ, କ)

୫୯୨।୧ ସକଳ କାମ କରଇ ଯୁଧିଷ୍ଠି ମହାତମା । (ପ, ଧ, ତ)

୫୯୨।୧ ସର୍ବଗ୍ୟଂ ସହୋଦ୍ର ସ୍ନେହ ଯୁଧିଷ୍ଠି ମହାତମା (ଜ, ଦ)

ତନ୍ୱଂକ ପ୍ରତିକଛ ଶଲ୍ୟ କର୍ଣ୍ଣ ଶଂକୁନ
ଓହୋକୁଳ ନାଶ କରିବେ ଜଣ ତିନ । ୫୯୫ ।
ମଙ୍ଗଳ ରାହୁ ଶନିଶ୍ଚର ତିନହେଂ ଯ୍ୟେକଘରେ
ସୁବିଧାନେ ନୁଆସନ୍ତି ଯ୍ୟେ ଶାହାସ୍ତ୍ର ବେଭରେ । ୫୯୬ ।
କୁରୁପାଣ୍ଡବେ ତାତ ଯ୍ୟେଦ୍ୱକ୍ଷଣି ନୋହେ ସନ୍ଧି
ଶଇଲ ଶକୁନିକ ବାହାର୍‌କରି ପାରିବୁ କଯ୍ୟେ ତୋହୋର
ଅଛୁ ବୁଦ୍ଧି । ୫୯୭ ।
ଭୀମସେନ ବୋଇଲା ଦେବ କହିଲ ଅଭବ
ତୁମ୍ଭେ ଗୁଡ ପାରିବ କି ସହଦେବ ବାସୁଦେବ । ୫୯୮ ।
ଭୀମସେନ ବଚନେ ହସିଲେ କାମପାଳେ
ପଣ୍ଡିତ ପ୍ରାଯ୍ୟେକ ଭୀମା କହିଲା ଯ୍ୟେତେବେଳେ । ୫୯୯ ।
ଶକୁନି ଯେତେବେଳୁଂ ହୋଇଲା ତାଂକ ମନ୍ତ୍ରୀ
ପୃଥିବୀରେ ଦୁର୍ଯୋଧନ ହୋଇଲା ଯ୍ୟେକ ଛତ୍ରୀ । ୬୦୦ ।
ଯେତେବେଳେ ସଖା ହୋଇଲା ଶଲ୍ୟ ମହାରାଜା
ପୃଥିବୀରେ ଲକ୍ଷେ ରାଜାଂକ ମଧେ ପାଇଲା ପାଦପୂଜା । ୬୦୧ ।
ପ୍ରାଣହୁଂ ସଖା ଶଲ୍ୟ ଶକୁନି ମନ୍ତ୍ରୀ କର୍ଣ୍ଣ
ଯ୍ୟେହାନ୍ତି ଗୁଡତେ ଯୁଝେଷ୍ଟି କେମନ୍ତେ ବାଞ୍ଛାକର ମନ । ୬୦୨ ।
ବଳରାମେ ବୋଇଲେ ହେ ଶୁଣିମା ଧୃତରାଷ୍ଟ୍ର
ଦୁର୍ଯୋଧନ ଅଟଇ ତୋହୋର ପୁତ୍ର ଶ୍ରେଷ୍ଠ । ୬୦୩ ।
ତୁ ତାହାର ବଚନ ପାରିବୁ କି ଲଂଘି
ପାଣ୍ଡବେ ଥାଆନ୍ତୁ କନା ଯାଅ ଯା ଯ୍ୟେଥିଂ ବେଗି । ୬୦୪ ।

---

୫୯୫।୨ ଓହ୍ନୋକୁଳ ନାଶ କରିବେ ପଞ୍ଚ ଜଣ ଯେନ । (ଙ)
୫୯୬।୧ ଯମଯାମ୍ୟ ଶନିଚର ତିନହେଂ ଯ୍ୟେକ ଘରେ । (କ, ଦ, ଘ)
୫୯୬।୧ ଯମ ରାହୁ ଶନିଶ୍ଚର ତିନହେଂ ଯ୍ୟେକ ଘରେ । ( ଚ )
୫୯୬।୧ ଯମ ମଙ୍ଗଳ ଶନିଶ୍ଚର ତିନହେଂ ଯ୍ୟେକ ଘରେ । ( ଛ )
୫୯୭।୧ କୁରୁପାଣ୍ଡବେ ତାତ ଯ୍ୟେଦ୍ୱକ୍ଷଣି ହୋଅନ୍ତୁ ସନ୍ଧି । (ଛ,ଘ,ଚ,ଥ,ଫ)

ଦୁର୍ଯୋଧନକୁ ମଣାଇଂ ପଡଆ ଦଅ ସଞ୍ଜୟେ
ତେତେବେଳେ ଯାଆନ୍ତି ପିନା ପଣ୍ଡୁର ତନୟେ । ୬୦୫ ।
ଯେସନେକ ଶୁଣି ସବୃନ୍ଦ ଭଆରଣୀ ଅମ୍ବିକାର ସୁତ
ସମଦଣ୍ଡ ଘେନ ଧୃତରାଷ୍ଟ୍ର ଚଳଳ୍ପ ତୁରତ । ୬୦୬ ।
ବରାଟ ରାଜା ସେ ଅନେକ ପୂଜା କର
ହେ ସମୁଧି ହୋହ୍ନତା ଦେଇ ମୁ ସମର୍ପି ହୋଇଲ ଦୋଷ
ନ ଧରବ ମୋହର । ୬୦୭ ।
ଧୃତରାଷ୍ଟ୍ର ବୋଇଲେ ତୋହୋର ଜୀବନ ଧନ୍ୟ ଧନ୍ୟ
ଯେ ଦୋହ୍ନତା ଉପୁଜାଇ ତାରଲ୍ପ ଅପଚୟେମାନ । ୬୦୮ ।
ଆପଣେ ତରଲୁ ତୁ ଲଭଲୁ ବୈକୁଣ୍ଠ ଭୁବନ
ପୂର୍ବ ଭାରଯା ନାଭ ଘେନ ତୋହୋର ପୁରେ ବଜସେ
ଭଗବାନ । ୬୦୯ ।
ଆହେ ସମ୍ବନ୍ଧୀ ତୁମ୍ଭେ ଅଟ ବଡ଼ ରାଜା
ବହୁତ ଧନମାନ କଲୁ ପାଇଲୁ ବହୁତ ପୂଜା । ୬୧୦ ।
ବରାଟେ ଧୃତରାଷ୍ଟ୍ର ମଧୁର ବାକ୍ୟ କହି
ହସ୍ତିନା ପୁରକଇଂସେ ଚଳଲେ ରାଜସାଇଂ । ୬୧୧ ।
ଦ୍ୱାରକାର ସଇନ ଘେନ ବାସୁଦେବ ସଜ
ନଜପୁରେ ବଜେକଲେ ଦେବାଧି ଦେବରାଜ । ୬୧୨ ।

---

୬୦୫।୧ ଦୁର୍ଯୋଧନକୁ ମଣାଇଂ ପଠିଆଇ ଦଅ ସଞ୍ଜୟେ ।
( ଛ, ଥ, ଠ, ଟ, ଥ, ଙ ) (ଅପପାଠ)

୬୦୬ { ବଲରାମେ ତଆରି ଅମ୍ବିକାର ବଳା
ସମଦଣ୍ଡ ଘେନ ଧୃତରାଷ୍ଟ୍ର ଚଳଗଲ । (ଜ, ଦ)

୬୧୨।୨ "ନଜପୁରେ ବଜେକଲେ ଦେବାଧି ଦେବରାଜ" ପାଠ ପରେ
"କ" ପୋଥିରେ ଅଧିକା ପାଠ :—
ବରାଟ ବୋଇଲ ହେ କୃଷ୍ଣ ମୁହିଂ ବନଚର ମୋହୋର
ଗ୍ୟାନ ନାହିଂ
ହେ ଦେବ ମୁହିଂ ତୋହୋର ଭଗତ ହୋଇବଇଂ କାହିଂ ।
ମୋହୋର କପ ସଖ୍ୟ ମୁହିଂ ତୋତେ ଭଗତ ହୋଇବ ।

ହେ କୃଷ୍ଣ ମୁଂ ବଚନେ କସ ଭଗତ ହୋଇବି
ମୋହୋରେ ଦୟା କରିବା ପ୍ରଭୁ ସତ୍ୟ ଭାବି । ୬୧୩ ।
ଜୟତୁ ଜୟତୁ ଜନାର୍ଦ୍ଦନ ସତ୍ୟଜନ ନିଧି
ଜୟତୁ ଜୟତୁ ଦେବ ସଂସାର ବାରିନିଧି । ୬୧୪ ।
ଜୟତୁ ଜୟତୁ ଦେବ କେଶୀ ଦର୍ପ ଗଞ୍ଜା
ଜୟତୁ ଜୟତୁ ଦେବ ସକଟାସୁର ଭଞ୍ଜା । ୬୧୫ ।
ଜୟତୁ ଜୟତୁ ଦେବ ଦୁଖୀ ଜନ ତାରଣ
ଜୟତୁ ଜୟତୁ ଦେବ ପାପ ନିଶୋଧନ । ୬୧୬ ।
ଜୟତୁ ଜୟତୁ ଦେବ ଦୁଷ୍ଟ ନିବାରନ୍ତା
ଜୟତୁ ଜୟତୁ ଦେବ ଶରୂଳ ଜନ ଚିନ୍ତା । ୬୧୭ ।
ଅନେକ ସ୍ତୁତି କରଇ ବିରାଟ ନୃପତି
ଗଡଗାଲ ଶୁଣ୍ଡ ବୋଇଲା ମୋତେ ଉଦ୍ଧାର ଶ୍ରୀପତି । ୬୧୮ ।
ଅନେକ ତୋଷ ସେ ହୋଇଲେ ଦେବ ଜନାର୍ଦ୍ଦନ
ପ୍ରବେଶ ଜଗନ୍ନାଥ ଦ୍ୱାରକା ଭୁବନ । ୬୧୯ ।
ସମସ୍ତ ଦେଶର ଯେ ରାଜାଗଣମାନେ
ଚଳିଲେ ଦଣ୍ଡ ଘେନି ଯେ ଯାହା ଭୁବନେ । ୬୨୦ ।
ପାଞ୍ଚାଳ କୁମାରନ୍ତ ସୁଉଣ ଦ୍ରୋପଦେ
ପଞ୍ଚାଳ ଦେଶକୁ ବିଜେ ଶିଖଣ୍ଡୀ ଧୃଷ୍ଟଦ୍ୟୁମନ ସହିତେ । ୬୨୧ ।
ରହିଲେ ପାଣ୍ଡବ ଯେ ମତ୍ସ୍ୟଦେଶ ପୁରି
ବହୁତ ବିନୟେ ଖଟିଛନ୍ତି ବିରାଟ ଦଣ୍ଡଧାରି । ୬୨୨ ।
ଧପ୍ରମ ଦିବସ ଅନ୍ତରେ ଅଷ୍ଟ ମଙ୍ଗଳା ସାରି
ଅନେକ ଉତ୍ସବ କଲା ବିରାଟ ଦଣ୍ଡଧାରି । ୬୨୩ ।
କୁମ୍ଭମାସ ଶୁକ୍ଳପକ୍ଷ ତୃତୀୟା ଶୁକ୍ରବାର
ଉତ୍ତର ଭାଦ୍ରବ ନକ୍ଷତ୍ର ଅଟଇ ସେ ଦିନର । ୬୨୪ ।
ଚନ୍ଦ୍ର ଉତ୍ସବ ବନ୍ଦାପନା ହୋଇଲା ସେ ଦିନରେ
ନଗ୍ର ନରନାରୀମାନେ ମିଳିଲେ ସମ୍ଭ୍ରରେ । ୬୨୫ ।

ଭାଟ ବେନ ଘଡ ଉତ୍ତରେ ଚନ୍ଦ୍ର ବନ୍ଧାପନା
ପ୍ରୋହ୍ମତେ ବାକ୍ୟ କଲେ ବେଦ ଯେ ଆଧାନା । ୭୨୬ ।
ନାରୀଗଣମାନେ ଯେ ଦଅନ୍ତି ହୁଳହୁଳି
ମଙ୍ଗଳ ଗୀତ ଗାବନ୍ତି କାମିନୀଗଣ ମିଳି । ୭୨୭ ।
ଶଙ୍ଖ ମହୁରୀ ଯେ ଶୁଭଇ ବାଦ୍ୟ ଧ୍ୱନି
ବନ୍ଧାପନା ବେଦୀ ଆଣିଲେ ବରକନ୍ୟା ବେନି । ୭୨୮ ।
ଅଭିମନ୍ୟୁ କୁମର ଯେ ଦିବ୍ୟ ବେଶ ହୋଇ
ଉତ୍ତରା ବାଳୀ ଯେ ତିନି ଭୁବନ ମୋହଇ । ୭୨୯ ।
ବରକନ୍ୟାଙ୍କୁ ଲେଲ ମୁକୁଟ ଯୁଗତେ
ଯେସନକ ବେଦୀର ଅଛୁ ଶାହାସ୍ର ସଙ୍ଗତେ । ୭୩୦ ।
ଆଶିଷ୍ୟ ବାକ୍ୟ ବାଞ୍ଛାକଲେ ଯେ ଶୁଭଗତେ
ନାରୀମାନେ ବନ୍ଧାବନ୍ତି ଯେ ଯାହାର ମତେ । ୭୩୧ ।
ଧନବସ୍ତ୍ର ଶ୍ରୀଫଳ ଅନେକ ବଳେହନ୍ତି
ହରଷେ ଦଅଇ ଯେ ବିରାଟ ନୃପତି । ୭୩୨ ।
ବରକନ୍ୟାଂକୁ ସେ ଦୁବ ଅକ୍ଷତ ଦେଇ
ଶ୍ରୀକୃଷ୍ଣ ମହାଦେଈ ଅର୍ଘ୍ୟ ଘେନି ବନ୍ଧାଇ । ୭୩୩ ।
ପିଠାପଣା ଖଣ୍ଡଖିରସା ନାନା ଦ୍ରବ୍ୟ ଭୁଞ୍ଜି
ନିଦ୍ରା ଅଳସେଣ ଶେଯ୍ୟାଙ୍କୁ ମନରଞ୍ଜି । ୭୩୪ ।
ପ୍ରେମନ୍ତେଣ ଗଲା ସେ କେତେହେଂକ ଦିବସ
ମତ୍ସ୍ୟଦେଶେ ଅଛନ୍ତି ଯୁଧିଷ୍ଠିଦେବ ମନର ହରଷ । ୭୩୫ ।

---

## ଧୃତରାଷ୍ଟ୍ର ଶକୁନିର କଥୋପକଥନ ଓ ଧୃତରାଷ୍ଟ୍ରଙ୍କର ଅପମାନ

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ହସ୍ତିନା ରାଜ୍ୟରେ ବିଜୟେ ଧୃତରାଷ୍ଟ୍ର ନୃପତି । ୧ ।

---

୭୨୭। ''ମଙ୍ଗଳ ଗୀତ ଗାବନ୍ତି ଚଣ୍ଡପୁଚ୍ଛେ ମିଳି । (କ)

ବିଜୟେ ମାନଗୋବିନ୍ଦ ସମ୍ପର ଆସ୍ଥାନେ
ଧୃତରାଷ୍ଟ୍ର ବିଜେକଲେ ସଞ୍ଜୟ ବିଦୁର ସନ୍ନିଧାନେ । ୨ ।
ବହୁତ ବିନୋଦୀ ଯେ ବୋଇଲେ ଧୃତରାଷ୍ଟ୍ର
ସାଧୁ ସେ ପାଣ୍ଡବେ ବାବୁ ସାଧୁ ସାଧୁ ବିରାଟ । ୩ ।
ବାବୁ ମଘଦେଶେ ମହାଦେଶେ ଶୁଣିଲି ମୁଂ ଯାହା
ଆପଣେ ଆସି ଯୁଧିଷ୍ଠିରଂକ ଅଭିଷେକ କଲେ ସୁରନାହା । ୪ ।
କୁବେର ଦେବତା ଯେ କଲେକ ରତ୍ନଲଗି
ପୁଷ୍କର ଦେବ ଅଭିଷେକ କଲ ପରମ ଯୋଗୀ । ୫ ।
ତେତିଶକୋଟି ଦେବତାଏ ଥିଲେ ସମସ୍ତେ ଯେ ଆସି
ଯୁଧିଷ୍ଠିରଂକ ଅଭିଷେକ କରାଇଲେ ବସି । ୬ ।
ବାବୁ ସାମଦଣ୍ଡ ଘେନ ଗଲ ମହାଦେଶ ଯିବା
ପୁରୁଷାର୍ଥ କରଣ ପାଣ୍ଡବନ୍ତ ଘେନଣ ଆସିବା । ୭ ।
ଶକୁନ ବୋଇଲ ପ୍ରାଣୀର ବୃଦ୍ଧକାଳ ହୋଇଲେ
ଲୋଭ ମୋହ କାମ କ୍ରୋଧ ଆବୋରଇ ବୟସ ସରିଲେ । ୮ ।
ଶକୁନ ବୋଇଲ ହୋ ଶୁଣିମା ଧୃତରାଷ୍ଟ୍ର
ବୟସ ଅଧିକ ହୋଇଲେ ପ୍ରାଣୀର ଗ୍ୟାନ ହୁଅଇ ଭ୍ରଷ୍ଟ । ୯ ।
ବ୍ୟାଧିକ ଔଷଧି ଅଛି ପ୍ରକୃତିକ ନାହିଂ ମଉଷଧି
ସୁବଧାନ କଥାରେ ତୁ କଂପେ କରାଇବୁ ବୃଦ୍ଧି । ୧୦ ।
କଂପା ଆନେ ବଧୀତା ତୁମ୍ଭର ହରିଲ ଚେତନ୍ତରୁ
ତୋହୋରେ କସ ପ୍ରୟୋଜନେ ତୁ କଂପେ ଅନ୍ଧ ହୋଇଅଛୁ ।୧୧।
ଭଗ୍ନ ନୟନ ଲୋକ ଆବର ଖିନ୍ନପାଦ
ପିଠି କୁଜ ହାତଭଙ୍ଗା ଆବର ଫଣ୍ଡ ପାଦ । ୧୨ ।
ଦାନ୍ତ ବଙ୍କ ମୁଖ ଖଣ୍ଡଣ କରଖୂର୍ପ କୁବୁଜା
କଦାଚିତେ ଭଲ ନୋହନ୍ତ ଯେ ନଷ୍ଟଯେ ଭଗ୍ନଭଞ୍ଜା । ୧୩ ।

---

୮।୨ ଲୋଭ ମୋହ କ୍ରୋଧ ବଢ଼ଇ ବନସ୍ଥ ହୋଇଲେ । (ଚ,ପ,ଧ,ଛ)
୮।୨ ଲୋଭ ମୋହ କ୍ରୋଧ ସହନ୍ତ ବନସ୍ଥ ହୋଇଲେ । ( କ, ଝ )

ସଭାରେ ଶକୁନ ଯହୁଁ କହିଲା କୂଟବାଣୀ
ସମସ୍ତେହେଁ ହସିଲେ ଯେ ମର୍ମକଥା ଶୁଣି । ୧୪ ।
ଧୃତରାଷ୍ଟ୍ର ବୋଇଲେ ହସିଲ କିନା ସବୁ
ଶକୁନ ବଚନ ସବୁଙ୍କୁହିଁ ରୁଚିଲା କରେ ବାବୁ । ୧୫ ।
ମୋହର ବଚନେ ଶକୁନ କେବଣ ଗୁଣଗ୍ରାହି
ପ୍ରାନ୍ତେ କେମନ୍ତ ହୋଇବ ନ ଥିବ ପୁଣ କେହି । ୧୬ ।
ଭୂରିଶ୍ରବା ଅଶ୍ୱଥାମା ସଂଜୟେ କୃପାଚାର୍ଯ୍ୟ
ସବୁଂକର କଷ୍ଟ ମୁହିଂ ଦେଖିବି ନିର୍ଲଜ । ୧୭ ।
ମଧୁର ସବାଗେ ଯେହ୍ନେ ନାଶଯାଇ ରୋଗୀ
ଦୁର୍ଜନ ଗୋଷ୍ଠୀରେ ପଡଲେ ଗ୍ୟାନଭ୍ରଷ୍ଟ ହୋୟେ ଯୋଗୀ । ୧୮ ।
କପଟୀ ଅସର୍ଜ୍ଜନ ସଙ୍ଗତେ ନାଶଯାଇ ପ୍ରାଣୀ
ଅନ୍ଧମତ୍ତ ପ୍ରାୟେ ହୋଇ ସେହିହା କେହି ନ ଜାଣି । ୧୯ ।
ବାବୁ ସମସ୍ତ ସେନାୟେ ତୁମ୍ଭେ ପରମ ପଣ୍ଡିତ ଅଟ
କାଳେହେଂ ଧୃତରାଷ୍ଟ୍ରିକୁ ହୋଇବ ପୁତ୍ର କଷ୍ଟ । ୨୦ ।
ଆହୋ ଶକୁନି ତୁମ୍ଭର ବଚନେ ପାଣ୍ଡବେ ରାଜ୍ୟକୁ ନଆସିବା
ପରାୟେ
ତୁମ୍ଭ ଘରକୁ ଜସ ହୋ ତାହାଂକର ଭୟେ । ୨୧ ।

---

୧୮।୧ ମଧୁର ସ୍ୱାଦେ ଯେହ୍ନେ ନାଶ ଯାଇ ରୋଗୀ । (ଚ)
୧୮।୨ ସୁନ୍ଦର ରୂପ ଦେଖି ଗ୍ୟାନ ଭ୍ରଷ୍ଟ ହୋୟେ ଯୋଗୀ । (ଦ, ଜ)
୧୮।୨ ସୁନ୍ଦର ରୂପ ଧରି ନାଶଗଲା ଯୋଗୀ । (ଣ)
୧୮।୨ "ଦୁର୍ଜନ ଗୋଷ୍ଠିରେ ପଡଲେ ଗ୍ୟାନଭ୍ରଷ୍ଟ ହୋୟେ ଯୋଗୀ
ଏହି ପଦ ପରେ "ଛ" ପୋଥିରେ ଅଧିକା ପାଠ ଅଛି :—
ପାପୀ ସଂଗତେ ପଡଲେ ପୁଣ୍ୟବନ୍ତ ହୋୟେ ନାଶ
କରାତ ସଙ୍ଗେ ପଡଲେ ଲଗଇ ଜୀବହତ୍ୟା ଦୋଷ ।
ଦୁର୍ଜନ ସଙ୍ଗତରେ ସୁଜନ କୁଜନ ହୁଅଇ
ବ୍ରାହ୍ମଣେ ବିବାଦୀ ହେଲେ ବଂଶ ନାଶ ଯାଇ ।
୧୯।୨ ଅନ୍ଧ ବଧିର ମଣି ଯେ କେହି ତାହା ନ ଜାଣି । (ଝ, ଚ)

ଯେବେହି ପାଣ୍ଡବେ ଦବଶ ମଧ୍ୟେ ରାଜ୍ୟ ବସିବେ ଆସି ମାତ୍ର
ଦେଖି ସିନା ତାହାଂକର ସମ୍ମୁରେ କେ କହିବ ଆଗ ବଢ଼ି । ୨୨ ।
ଆହେ ଶକୁନି ବେଦବ୍ୟାସଂକ ମୁଖରୁ ମୁଂ ଶୁଣିଅଛି ହାଦେ
କୁରୁବଂଶ ବୃଡ଼ିବ ଯେ ତୋହୋର ପରସାଦେ । ୨୩ ।
ଶକୁନି ବୋଇଲା ତୁ ସିନା କୁଳକ୍ଷୟେ ଅନ୍ଧ
ପାଣ୍ଡବନ୍ତ ଅଣାଇ ଯେତେ କରୁଅଛ ଦ୍ୱନ୍ଦ । ୨୪ ।
ବିକର ପ୍ରାୟେ କରଣ ମୁଖ ବନ୍ଦ କରୁ
ଦୂତବାକ୍ୟ ଶୁଣିଣ ମନେ ରୋଷ ଭରୁ । ୨୫ ।
ଅନ୍ଧ ହୋଇଲେ ହୋଅଇ ଗ୍ୟାନଭ୍ରଷ୍ଟ
ଯେତେ ବୁଦ୍ଧି ରଞ୍ଜି ଥାଇ ସବୁ ତାହାର ନଷ୍ଟ । ୨୬ ।
ଧୃତରାଷ୍ଟ୍ରେ ବୋଇଲେ ସରଳନ ଦନ
ଅଳପ ରହିଲା ଦନ ବୁଝ ସିନା ବଧାନ । ୨୭ ।
କର୍ଣ୍ଣ ବୋଇଲା ତାତ ଯେମନ୍ତ କଂପେ କହ
ଦୁର୍ଯୋଧନର ଆଜ୍ୟାଂ ନୋହିଲେ ପାଣ୍ଡବେ ଆସିବେ କାହୁଂ ।୨୮।
ଧୃତରାଷ୍ଟ୍ର ବୋଲେ ତୁ ନୁହ କ ଯେତେ କ୍ଷତ୍ରୀ
କାମ୍ୟକ ବନେ ରାଜାକୁ ବନ୍ଦୀଦେଇ ପଳାଇ ଅଇଲ
ସର୍ବ ରଥୀ ।୨୯।
ଧର୍ମିକ ବବେକ ସେ ପାଣ୍ଡବେ ମହନ୍ତ
ଯେହାନ୍ତ ଉଦ୍ଧାରିବା ନମନ୍ତେ ସେ ଜିଣିଲେ ଚିତ୍ରରଥ । ୩୦ ।
ରାଷ୍ଟ୍ରେ ବୋଇଲେ ହୋ ସେ କଥା ନ କହନ୍ତ ବାବୁ
ଗନ୍ଧର୍ବ ବଳେ ଦେଖି ଆମ୍ଭେ ପଳାଇ ଅଇଲୁ ସବୁ । ୩୧ ।
ଧୃତରାଷ୍ଟ୍ର ବୋଇଲେ ମୁଂ ଜାଣଇ ତୁମ୍ଭର ଗାଡ଼ପଣ
କେତେ ସମର ନ କଲରେ ଗୋଧନ ହରଣ । ୩୨ ।
ଶତେ ପର୍ଯ୍ୟୁଧ ରଥୀ ସହସ୍ରେ ପର୍ଯ୍ୟୁଧ ହସ୍ତୀ
ଅଷ୍ଟାଦଶ କ୍ଷଉଣୀ ତୁଲେ ଜିନ ପାରିଦଣ୍ଡ ନୃପତି । ୩୩ ।

---

୩୦।୧ ରାଜାଂକୁ ଛଡାଇ ଆଣିବା ଜିଣିଣ ଚିତ୍ରରଥ । (ଖ, ଘ, ଖ, ଠ)

ଯେତେ ଯୋଦ୍ଧାନ୍ତ ପାଥ ଉତ୍ତର କୁମାରକଇଂ ଘେନ
କେବଣ ଅବସ୍ଥା ଭୁମ୍ଭନ୍ତ ନ ହଲ ଫାଲଗୁନ । ୩୪ ।
ଭୁମ୍ଭେ ବୋଲ ଦେହଗୋଟି ଧରିଛ ନର୍ଲଜେ
ଦୂଷିତ କର୍ମେ ବ୍ରତିଅଛ କ୍ଷତ୍ରିୟ କୁଳେ ଲାଜ । ୩୫ ।
ବୃଷ୍ଟି ପଡ଼ିଲ କହ ମୁଖ ରଚକ ଖଣ୍ଡି
ବୃଦ୍ଧ ଶ୍ରିକାଲ ପ୍ରାୟେ ଭୁମ୍ଭେ ଖାଉଅଛ ଭଣ୍ଡି । ୩୬ ।
ସରିଲା ବଂଶ ବୋଲ ଧୃତରାଷ୍ଟ୍ର କ୍ରୋଧ କଲେ
ବିଦୁର ସଞ୍ଜୟ ଦୁହେଂ ସତ୍ଵରେ ଉଠାଇ ଘେନଗଲେ । ୩୭ ।
ଉଚ୍ଚସ୍ୱରେ ଧୃତରାଷ୍ଟ୍ର ଯାଉଅଛି କାନ୍ଦ
ଆଜହୁଂ କାଳ ପାଶରେ ସମସ୍ତେ ହେଲ ବନ୍ଦୀ । ୩୮ ।
ଧୃତରାଷ୍ଟ୍ରେ ବୋଇଲେ ବିଦୁର କଥାୟେ କର ପାରିବୁ କି ମୋତେ
ନିର୍ଲଜ ଆତ୍ମାଗୋଟି ମୋର ଯାଇନା କେମନ୍ତେ । ୩୯ ।
ବିଦୁରେ ବୋଇଲେ ଭ୍ରାଥ ନ କହ ଅଶୁଭ କଥା
ବୁଝିବାନା ତାହାଂକର ତଦନ୍ତ ବାରତା । ୪୦ ।
ଅନ୍ତେଶ୍ୱର ଭୁବନେ ବିଜୟେ ଧୃତରାଷ୍ଟ୍ରେ
ଗାନ୍ଧାରୀର ଅଗ୍ରତେ କହିଲେ ଗଦ୍ଗଦକଣ୍ଠେ । ୪୧ ।
ଆରେ ରେ ବଲ୍ଲଭୀ ଶୁଣ ତୁ ମୋହୋର ପ୍ରାଣପ୍ରିୟା
ବଂଶ ନାଶ ନିମନ୍ତେ ଶକୁନ କରୁଅଛି ସେହା । ୪୨ ।

---

୩୪।୨ "କେତେ ଅବସ୍ଥା ଭୁମ୍ଭନ୍ତ ନ ହଲ ଫାଲଗୁନ" ଏହି ପାଠ ପରେ
"ଛ" ପୋଥିରେ ଅଧିକା ପାଠ :—
କ୍ଷତ୍ରିୟଙ୍କର ଗଳାରେ ଗୃଣ୍ଡାଳଂକ ଢୋଲ ହଲା
ବୀରମାନଂକ ମୁକୁଟ ଗୃଣ୍ଡାଳଣ ଶିରେ ବାନ୍ଧିଲା ।
ଭୀଷ୍ମ ଦ୍ରୋଣଂକୁ ଗୁରୁ ବୋଲି ନ କଲା ରେ କିଛି
ଆବର ଯେତେ କ୍ଷତ୍ରୀ କେତେ ଅବସ୍ଥା ନ କଲାରେ ବିବସ୍ତ୍ରି ।
ଭୁମ୍ଭେ ବୋଲକର ସେଠାରୁ କିଂ ଅଇଲ ନିର୍ଲଜ ।
୩୬।୨ ବୃଦ୍ଧ ଗ୍ରିଧ ପ୍ରାୟେ ଭୁମ୍ଭେ ଖାଉଅଛ ଭଣ୍ଡି । (ଖ, ଠ, ଝ)
୩୬।୨ ବୃଦ୍ଧ ଗର୍ଦ୍ଦଭ ପ୍ରାୟେ ଭୁମ୍ଭେ ଖାଉଅଛ ଭଣ୍ଡି । (କ,ଣ,ଦ,ଧ,ପ)

ପରମାର୍ଥ କଥା କହିଲଇ ସଞ୍ଜୟ ମୁନି
ବୋଇଲ ପାଣ୍ଡବନ୍ତ ଚୋଷି ଆଣିବାକ ଯାଇଂ । ୪୩ ।
ବିରାଟ ରାଜ୍ୟେ ବନ ଗୁପତ ଠାରେ
କୋଟିଏ ତୀର୍ଥ ହେନ ଦେବ ଯେ ପୁଷ୍କରେ । ୪୪ ।
ବରୁଣ କୁବେର ଇନ୍ଦ୍ର ଦଶଦିଗପାଳେ ବିଶ୍ୟାନରେ
ଅଭିଷେକ କଲେ ଆସି ଯୁଧିଷ୍ଠିରଙ୍କୁ ବିରାଟ ରାଜ୍ୟରେ । ୪୫ ।
ନୃହନ୍ତ ସାମାନ୍ୟ ସେହୁ ବାସୁଦେବର ପ୍ରାଣବନ୍ଧୁ
କୁଳ ମଣ୍ଡନ ପୁତ୍ର ସେ ଅଟନ୍ତି ଜଗବନ୍ଧୁ । ୪୬ ।
ଅନେକ ମତେ ଭିଆରଲ ପରମାର୍ଥେ
କେବେହେଂ ନ ଶୁଣିଲ ସେ ପ୍ରବେଶ ହୋଇଲ ଅନର୍ଥେ । ୪୭ ।
ଗାନ୍ଧାରୀ ବୋଇଲ ସ୍ୱାମି ଯେତେଥେଂ କିଂପାଇଂ ଆମ୍ଭେ ଥିବା
ନଷ୍ଟପ୍ରେ ସଂଗ୍ରାମ ହୋଇବ ପ୍ରୟାଗ ତୀର୍ଥକଇଂ ଯିବା । ୪୮ ।
କୁଟୁମ୍ବ ବଧ ଦେଖିଲେ ଅନେକ ପାପ ଦୋଷ
ପ୍ରୟାଗ ତୀର୍ଥେ ଯାଇଂ କରିବା ପାପ ନାଶ । ୪୯ ।
ସତ୍ୟପ୍ରେ ଶକୁନ ବୋଇଲେ ବପୁସାଧିକ ଲୋକେ
କୁଟୁମ୍ବ ମୁହାଂସେ ଗ୍ୟାନ ବୁଡାବନ୍ତି ଥୋକେ । ୫୦ ।
ଆସ୍ଥାନ ବୋଇଲ ଯେ ଆହାନକ କାଳେ
ଯେ ଯାହାର ମନ୍ଦିରକୁ ସେ ଚଳଲେ ସକଳେ । ୫୧ ।

---

## ଯୁଧିଷ୍ଠିରଙ୍କର ଇନ୍ଦ୍ରପ୍ରସ୍ଥକୁ ଯିବା

### ଅନୁକୂଳ

ଯେତ୍ଥୁ ଅନନ୍ତରେ ଶୁଣ ବଇବସ୍ୱତ ମନୁ
ଆସ୍ଥାନେ ବିଜେ କର ଅଛନ୍ତି ଧର୍ମରାଜ୍ୟେ ତନୁ । ୧ ।

---

୪୬ { ନୃହନ୍ତ ସାମାନ୍ୟ ସେହୁ ବାସୁଦେବର ପ୍ରସାଦୁଂ
କୁଳମଣ୍ଡନ ପୁତ୍ର ସେ ଅଟନ୍ତି ସତ୍ୟସିନ୍ଧୁ । (କ)

ଯୁଝେଷ୍ଟି ପଚ୍ଛରଲେ ସହଦେବକ ମୁଖ ଚ୍ଛହିଂ
ରାଜ୍ୟକୁ ଅନୁକୂଳ କରିବା ଆମ୍ଭଂକୁହିଂ । ୨ ।
ସହଦେବ ବୋଇଲେ ସ୍ୱାମି କୁମ୍ଭମାସ ଅନ୍ତେ
ମୀନରେ ମଳମାସ ହୋଇବ ଚଇତେ । ୩ ।
ବୈଶାଖ୍ୟ ମାସ ଦେବ ବସନ୍ତ ଷଡ ଋତୁରାଜ
ସେହି ମାସେ ବଜେ କରିବା ସ୍ୱେଥି ଦେବ ଆମ୍ଭ ରାଜ୍ୟ । ୪ ।
ଲେଖ କହନ୍ତେ ପଞ୍ଚଚରଣ ଦିନ ଗଲା
ବୈଶାଖ କୃଷ୍ଣପକ୍ଷ ପ୍ରବେଶ ହୋଇଲା । ୫ ।
ବୈଶାଖ କୃଷ୍ଣପକ୍ଷ ଦୁଖିଆ ବୁଧବାର
ଅନୁରାଧା ନକ୍ଷତ୍ର ଯେ ଭୋଗ୍ୟ ସେ ଦିନର । ୬ ।
ସ୍ୱେସନକ ଯୋଗକୁ ଅମୃତ ଯୋଗ ବୋଲି
ବୁଧ ଅନୁରାଧାକୁ ଅମୃତ ଯୋଗ କହିଲି । ୭ ।
ସହଦେବ ବୋଇଲା ସ୍ୱାମି ମାହେନ୍ଦ୍ର ଯୋଗ କାଳି ଅଟଇ
ସ୍ୱେଥେଂ ଉଦଯୋଗ କଲେ ପ୍ରାପତ ହୋଇବ ରାଷ୍ଟ୍ରଇଂ । ୮ ।
ପ୍ରତିପଦା ଭୃଦବାରେ ବସି କରନ୍ତ ଭାଳେଣି
ଶୁଭେଣ ପାହାନ୍ତ ଯେ ହୋଇଲା ରଯ୍ୱେଣୀ । ୯ ।
ସୋମର ବେଳ ଘେନ ବାରଲେ ନିଶ୍ୱାସ
ଦଧିମୁଖା ବାନରେକ ଆସି ଅଦଭୁତେ ହୋଇଲାକ ଦୃଶ୍ୟ । ୧୦ ।

---

୨ { ଯୁଝେଷ୍ଟି ପଚ୍ଛରଲେ ସହଦେବେ ରାଇ
ରାଜ୍ୟକୁ ଅନୁକୂଳ କରିବା ରେ ଭାଇ । (କ,ଥ,ଠ,ଛ)

୩।୧ ମୀନରେ ମଳସ୍ତ ଆସି ହୋଇବେ ଚଇତେ । (ପ,ଧ,ଟ,ଛ,କ)

୪ { ବୈଶାଖ ମାସ ଦେବ ବସନ୍ତ ଷଡ ଋତୁରାଜ ହେତୁ
ମେଷ ଶେଷେ ବଜସ୍ୱେ କରିବା ହାଦେ ସ୍ୱେଥୁଂ । (ଣ,ଦ,ଜ)

୯।୨ ଶୁଭେଣ ପ୍ରଭାତ ଯେ ହୋଇଲା ରଯ୍ୱେଣୀ । (ଭ)
୯।୨ ଶୁଭେଣ ପ୍ରସର ଯେ ହୋଇଲା ରଯ୍ୱେଣୀ । (କ)
୯।୨ ଶୁଭେଣ ପ୍ରାପତ ଯେ ହୋଇଲା ରଯ୍ୱେଣୀ । (ଣ, ଦ,)
୯।୨ ଶୁଭେଣ ପ୍ରବେଶ ଯେ ହୋଇଲା ରଯ୍ୱେଣୀ । (ଙ, ଖ, ଠ, ଛ)

ପୂର୍ଣ୍ଣ ଘଟ କଳସ ସଜାଡ଼ି ଦଧିବାମନ ସୁମରି
ମେଷଲଗ୍ନ ପାପଗ୍ରହ ନାହିଁ ଅବଧାରି ।୧୧।
ରୂପାର ଭଣ୍ଡେ ସେ ଦଧିମାନନ୍ତି ଯୋଗାଡ଼ି
ତମ୍ବାର ନାଉକାରେ ମତ୍ସ ଯୂଥ ଭରି ।୧୨।
ଗ୍ରୁମୁରେ ଶଙ୍ଖଚିଲ କୃଷ୍ଣଭଦ୍ରା ପକ୍ଷୀ
ଗଗନେ ସୁଲକ୍ଷଣ ଭାଷଇ ତାର୍କ୍ଷେ ।୧୩।
ନଟୀକାଳ ବୃକ୍ଷ ଯେ ଅଦ୍ଭୁତ ଫଳ ଭରି
ତଥିର ଉପରେ ନୀଳକଣ୍ଠ ବଢ଼ାଇ ସିଉକାରି ।୧୪।
ଫଳନ୍ତ କଦଳୀ ବୃକ୍ଷ ଉପରେ ଶ୍ୱେତ କାକ
ଶୁଭ ମଙ୍ଗଳ ବୋଲଣ ସୁସ୍ୱରେ ଦିଅଇ ଡାକ ।୧୫।
ଶ୍ୱେତହସ୍ତୀ ମଣ୍ଡିଲେ ଶ୍ୱେତବାରସ ଅପ୍ରମିତେ
ଆଲମ୍ବ ପାଟଛତ୍ର ଉଡନ୍ତି ଦାସୀନେତେ ।୧୬।
ସୁବର୍ଣ୍ଣର କଲଶ ଯେ ପାତାଙ୍ଗର ଶୋଣା
ମାଳ ମାଳ ହୋଇଣ ଉଡନ୍ତି ଜଗୁଳିଣା ।୧୭।
ଶୁଭଯୋଗେ ଅନୁକୂଳ ପଢନ୍ତି ଚଣ୍ଡିପୁଷେ
ଶୁଷ୍ମୁନା ଆଧାନ କରନ୍ତି ପୁରୋହିତେ ।୧୮।
ବେଦମନ୍ତ୍ର ଆଧାନ କରନ୍ତି ବିଦୁଜନ
ଶଙ୍ଖ ଶବଦ ମର୍ଦ୍ଦଳନାଦ ହୁଳହୁଳି ଧ୍ୱନି ବିତପନ ।୧୯।
ଶ୍ରୀଲକ୍ଷ୍ମୀ ନରସିଂହ ଦଧିବାମନ ଶ୍ରୀ ଦୁର୍ଗାମାଧବ
ସର୍ବମଙ୍ଗଳା ନାମ ଧରି କଲେକ ଉଦ୍‌ଯୋଗ ।୨୦।
ପୂର୍ବକଇଁ ବଦନ ଉତ୍ତରେ ମାହେଶ୍ୱରୀ
ବାମେଣ ଯୋଗ୍ନି ଯେ ବଇଲ ପିଠିରେ ବିଜେକରି ।୨୧।
ଯୋଗିନୀଚକ୍ରେ ସ୍ନେହେନେକ ହୋଇଅଛି ଲଗ୍ନବେଳା
ମୁହିଁ ତାହା କହିବ କି ଅଟଇ ମୂର୍ଖଭାବେ ଭୋଳା ।୨୨।

---

୧୪।୨ ତଥିର ଉପରେ ନୀଳକଣ୍ଠ ଚଢ଼ାଇ ଶୁଭକାରି । (ଜ, ଝ, ଣ, ଛ, ଠ)
୧୪।୨ ତଥିର ଉପରେ ନୀଳକଣ୍ଠ ଚଢ଼ାଇ ସଧିର ହୁଂକାରି । (କ)

ଯାହା ସେ ମହାତମା ଭେଟାଇଲେ ଅଗସ୍ତି
ମୂର୍ଖ ସ୍ୱଭାବେ ଯେ କସ ଭାବ ମତି । ୨୩ ।
ପ୍ରତପ ନବମୀ ଯେ ପୂର୍ବେ ବ୍ରହ୍ମାୟେଣୀ
ଯୋଗ୍ନି ମଣ୍ଡଳକୁ ବେଦ ଆଧାନେ ହଂସ ବାହାନେ ଚଳଣି ।୨୪।
ଉତ୍ତର ଦିଗେ ଥାଇଂ ଦୁତ୍ତିୟା ଦଶମୀ
ବଇଲ ଆରୋହ୍ଵ ଯେ ମାହେଶ୍ୱରୀ ଅନ୍ତରୀକ୍ଷେ ଭ୍ରମି ।୨୫ ।
ତୃତ୍ତିୟା ଏକାଦଶୀ ଅଗ୍ନି କୋଣେ କୁମାରୀ
ମୟୁର ଆସନେଣ ସେ ଥାଇ ଯେ ବଜେକର । ୨୬ ।
ଚଉଠି ଦ୍ୱାଦଶୀ ଯେ ନୈର୍ତେ ନାରାୟଣୀ
ବହଙ୍ଗମ ପିଠିରେ ଚଢି କରଇ ଭ୍ରମଣି । ୨୭ ।
ପଞ୍ଚମୀ ତ୍ରୟୋଦଶୀ ଯେ ବାଇବେ ଚ୍ୟମୁଣ୍ଡା
ମୃତ୍ୟୁପିଣ୍ଡ ଆସନୀ ସେ କରେ ଖପର ଖଣ୍ଡା । ୨୮ ।
ଷଠୀ ଚତୁର୍ଦ୍ଦଶେ ଯେ ଦକ୍ଷିଣେ ବାରାହୀ
ମଇଂଷି ବାହାନେଣ ଚଳନ୍ତ ମହାମାଈ । ୨୯ ।
ସପ୍ତମୀ ପୂର୍ଣ୍ଣମୀ ଉଦେ ହୁଅଇ ଈଶାନେ
ଚଳଇ ମହାଲକ୍ଷ୍ମୀ ଯେ ମଗର ବାହାନେ । ୩୦ ।
ବାର ତିଥି ଯୋଗ ଲଗ୍ନ ଘୃର ଘୃର ଦଣ୍ଡେ
ପିଠି କଡକ ଗୃହାନ୍ତ ଅଷ୍ଟ ଯେ ପହଣ୍ଡେ । ୩୧ ।

---

୨୩।୧ ଯାହା ସେ ମହାତମା ଘଟାଇଲେ ଅଗସ୍ତି । ( ଟ, ପ )
୨୩।୨ ମୁହଂ ତାହା ମୂର୍ଖଭାବେ କରବ କ ମାନବ ମୂର୍ଖମତ । (ସ,ତ,ଥ)
୨୬।୨ ମେଷ ଆସନେ ସେ ଥାଇ ଯେ ବଜେକର । (ଟ, ଫ,ଝ,ଗ,ଞ)
୨୭।୨ ବୈନେଟ ପିଠିରେ ବଜେ କଶ କରଇ ଭ୍ରମଣୀ । ( ପାଠାନ୍ତର )
୩୧।୧ ପଚ୍ଛିମ ମୂରତ ଦେବୀ ଚଳଇ ପ୍ରଚଣ୍ଡେ । ( ଙ )
୩୧।୨ ପିଠି କଡକ ଗୃହାନ୍ତ ହେଠ ଯେ ପହଣ୍ଡେ । ( ପ, ଧ, ଢ )
୩୧।୨ "ପିଠି କଡକ ଗୃହାନ୍ତେ ଅଷ୍ଟ ଯେ ପହଣ୍ଡେ" ଏହି ପାଠ ପରେ
"ଟ" ରେ ଅଧିକା ପାଠ ଅଛି :—
ମହା ବହଇ ସେ ଯେକଇ ପହଣ୍ଡେ
ଦଣ୍ଡେ ପିଠି କଡକ ଗୃହଂଇ ଅଢ ପରଟାଣ୍ଡେ ।

ଯେହ୍ନେ ହା ନ ବାରଣ ଗଲେ ପର୍ଯ୍ୟନ୍ତ ଯେହ୍ନେ ହାର ମୁଖେ
ଯାଇ ଭୂ ନୁଆସଇ ଅବଶ୍ୟ କରଇ ଭକ୍ଷେ । ୩୨ ।
ପିଠି କଣ୍ଟକ ଥିଲେ ସେ କାର୍ଯ୍ୟ ହୋଇଯେ ହାନ
ବ୍ରତେ ନୁଆସଇ ସେ କାର୍ଯ୍ୟ ଧର୍ମେ ନଜ କାଯ୍ୱ ଘେନ । ୩୩ ।
ବାମେ ଯୋଗ୍ନୀ ଯେବେ ଥାଇଟି ସୁଗତେ
ସର୍ବ କାର୍ଯ୍ୟ ସିଦ୍ଧି ହୋଅଇ ରାଜ୍ୟ ହୋଅଇ ପ୍ରାପତେ । ୩୪ ।
ଦକ୍ଷିଣେ ଯୋଗ୍ନୀ ଥିଲେ ଅମୃତ ଯୋଗ ବୋଲି
ଅପର୍ଣ୍ଣା ଅଭିମୁଖେ ଯାହା ମୁଁ ଶୁଣିଲି । ୩୫ ।
ବାଳକାଳେ ତ ନ ପଢ଼ିଲି ନ ଜାଣିଲି ଅକ୍ଷର
ସଞ୍ଚପି କହିବାକୁ କି ସଖ୍ୟ ମୋହର । ୩୬ ।
କୃପାଜଳ ନନ୍ଦିନୀ ଯେ ନର୍ମଦା ସରସ୍ୱତୀ
ମହାତ୍ମାଂକ ବାକ୍ୟେ କର ସଂବୋଳ ଚଣ୍ଡୀ ମୂର୍ତ୍ତି । ୩୭ ।
ଯେହ୍ନେ ସେ ଜମ୍ବୋଦ୍ୱୀପ ଭରଥଖଣ୍ଡ ମଧ୍ୟ ଓଡ଼ ରାଷ୍ଟ୍ରେ
ଭୁବନ ସାସ ନଗରର ପୂର୍ବ ଦିଗ ମଉଦଧି ନିକଟେ । ୩୮ ।
ଶ୍ୱେତ ବରେହା ମଳ ସୁନ୍ଦର ଗିରି ମଧ୍ୟସ୍ଥାନେ
ମହାବାକ୍ୟ ଆଖ୍ୟାନେ ଚନ୍ଦ୍ରଭାଗା ଅର୍କ ତୀର୍ଥ ଈଶାନେ । ୩୯ ।
ପୁରରବା ସଞ୍ଚିତ ସେ ଝଂଖେରପୁର ଯାହା ବୋଲି
ଶ୍ରୀଗିରଜାର ଆଗ୍ୟାଂଯେ ମୁହିଂ ଚହିଂ ଜନମିଲି । ୪୦ ।
ଚଣ୍ଡଉପୂଳା ଭଗୀ ଈଶାନ ମୂରତ
ବୃହଦ୍ଧ୍ୱଜ ମୁନ ତହିଂ ତପେଣ ବସିଛନ୍ତି । ୪୧ ।
ତାହାଂକ ଜଟା ଭେଦ ବହଇ ନଦୀ ବୃଦ୍ଧମାତା
କନକାବତୀ ପାଟଣା ଯେହ୍ନେ ପ୍ରଶୁରାମଂକର ସଞ୍ଚିତା । ୪୨ ।

---

୪୦।୨ ଶ୍ରୀ ବିରଜାଇ ଆଗ୍ୟାଂଯେ ମୁହିଂ ତହିଂ ଜନମିଲି । ( ଝ, ପ )
୪୦।୨ ଶ୍ରୀ ରାମଂକ ଆଗ୍ୟାଂଯେ ମୁହିଂ ତହିଂ ଜନମିଲି । ( କ, ଟ )

ଅଭୟେ କାନ୍ତାନ ସେ ତ୍ରିଭୁବନ ମଣ୍ଡି
ଶଦ୍ରମୁନ ସାରୋଳ ଦାସକୁ ପ୍ରସନ୍ନ ସାରୋଳ ଚଣ୍ଡୀ । ୪୩ ।
ଚତୁର୍ଥ ଖଣ୍ଡ ପର୍ବ ଅନ୍ତରେଣ କଥା
ଇଦଂ ବାକ୍ୟେ କହିଲି ବରାଟ ପର୍ବର ବାରତା । ୪୪ ।
ଯାବତ ଧର୍ମ ସେ ଯେ ତାବତ କର୍ମ ସେ ଯେ ଲେଖା
ବରାଟ ପର୍ବ କହିଲ ଶାସ୍ତ୍ରର ଯେ ବକତା । ୪୫ ।
ମୁନ ଅଂଗ ହୋଇଣ ମୁଂ ଜାତ ଶୁଦ୍ରଯୋନ
ଶ୍ରୀ ସାରୋଳା ପ୍ରସନ୍ନେ ଯେବେ ହୋଇଲି ଶୁଦ୍ରମୁନ । ୪୬ ।
ଶ୍ରୀଚଣ୍ଡୀ ସାରୋଳା ମୋତେ ହୋଇଲେ ପ୍ରସନ୍ନ
ସେ ଯାହା କହଇ ମୁ କଲଇଂ ଲେଖନ । ୪୭ ।
ଆହେ ବୁଧ ଜନମାନେ ନ ଘେନମା ମୋର ଦୋଷ
ଅତ୍ୟନ୍ତକ ମୂର୍ଖ ମୁହିଂ ବୁଦ୍ଧି ମୋହର କସ । ୪୮ ।
ଅଗାଦ ସାଗର ଯେ ମହାଭାରଥ ଯାହା ବୋଲି
ଗଣି କେ ଅନ୍ତ କରିପାରିବ ମଉଦଧିର ବାଲି । ୪୯ ।
ସାଗରେ ପଶନ୍ତେ ଯେହ୍ନେ କଳଣା ନ ଯାଇ
ମାନବ ଜନ୍ମେ ମୁ ତାହା କେହ୍ନେ ଅନ୍ତ କରିବଇଂ । ୫୦ ।
କହୁ ମତେ ସଦୟେ କଲେ ସର୍ବ ଯେ ମଙ୍ଗଳେ
କରଇ ଲେଖନ ମୁ ତାହାଂକ ବୁଦ୍ଧି ବଳେ । ୫୧ ।
ପ୍ରସନ୍ନେ ହଲେ ମୋତେ ଲେଖନ ଗୋଟିଏ
ଯାହା ଘେନ ଲେଖିଲେ ହୋଇବ ଗ୍ରନ୍ଥମୟେ । ୫୨ ।

---

୪୫ { ଯାବତ ଧର୍ମ ତାବତ କର୍ମ ବାକ୍ୟେ
ବରାଟ ପର୍ବ ଲିଖନ କଲି ଶ୍ରୀ ସାରୋଳର ସାକ୍ଷ୍ୟେ । (ଡ,ଥ;ପ,ଧ)

୪୮।୨ ଅପୂର୍ଣ୍ଣା ପ୍ରସନ୍ନେ ହୋଇଲା ମୋତେ ତୂଣ୍ୟେ । (ଧ, ପ, ଡ, ଥ)

୫୨।୧ କଣାକାଳେ ହଲେ ମୋତେ ଲେଖନ ଗୋଟିଏ । (ଧ,ପ,ଡ,ଥ)

ତେଣୁ କରି ଲେଖନ ମୁଂ କଲଇ ସେହୁ ଗ୍ରନ୍ଥ
ସମ୍ପୂର୍ଣ୍ଣ କରି ଶୁଣିଲେ ସକଳ ଧର୍ମ ହୋଅଇ ପ୍ରାପତ । ୫୩ ।

ଆଇଷ୍ୟ ବର୍ଦ୍ଧିତ ହୋଅଇ ଧନ ସନ୍ତାନ ହୋଏ ପୁଣି
ଶ୍ରୀ ସାରଳା ଶ୍ରୀଚରଣେ ବିନଏ ସାରଳା ଦାସ ମୁନି । ୫୪ ।



---

୫୩।୨ "ସମ୍ପୂର୍ଣ୍ଣ କରି ଶୁଣିଲେ ସକଳ ଧର୍ମ ହୋଅଇ ପ୍ରାପତ" ଏହି ପାଠ ପରେ କେତେକ ପୋଥିରେ ଅଧିକା ପାଠ :—

ଆଇଷ ବର୍ଦ୍ଧିତ ହୋଅଇ ଆପଦ କିଛି ନାହିଂ
ଶୂଦ୍ରମୁନି ସାରୋଳା ଦାସକୁ ପ୍ରସନ୍ନ ହୋଅନ୍ତି ମହାମାଈ ।

ଶ୍ରୀ ସାରୋଳା ପ୍ରସନ୍ନେ ମୁଂ ପୂର୍ବ ହେତୁ ବହି
ଶୁଭଯୋଗେ ଗ୍ରନ୍ଥ କଲେ ଶ୍ରୀ ସାରୋଳା ଦାସ ମୁନେହିଂ ।

ଯୁଧିଷ୍ଠି ଦେବ ଯେ ଶୁଭେଣ ଚଳିଗଲେ
ବାରୁଣାବନ୍ତରେଣ ଯେ ଶୁଭରେ ରହିଲେ ।

ତୁମ୍ଭର ଚରଣେ ମୋର ଚିତ୍ତ ଥାଉ ନିତ୍ୟେ
ଶୂଦ୍ରମୁନି ସାରୋଳ ଦାସ ଜପେ ଜପେ ଗୀତେ ।

